# ସୃଷ୍ଟିର ଦର୍ପଣରେ
# କାଳିନ୍ଦୀଚରଣ

ସମ୍ପାଦନା ଓ ସଂକଳନ
**ସାରଳା ସାହିତ୍ୟ ସଂସଦ**
କଟକ

ପରିବେଷକ
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ - ୨

# ସୃଷ୍ଟିର ଦର୍ପଣରେ କାଳିନ୍ଦୀଚରଣ

ସମ୍ପାଦନା ଓ ସଂକଳନ
**ସାରଳା ସାହିତ୍ୟ ସଂସଦ**
କଟକ - ୭୫୩ ୦୦୮



ପ୍ରକାଶକ :
**ଶ୍ରୀ ଗୋବିନ୍ଦଚରଣ ପାତ୍ର**
ଚାଦିନୀଚୌକ, କଟକ - ୭୫୩ ୦୦୨

ପ୍ରାପ୍ତିସ୍ଥାନ :
**ଓଡ଼ିଶା ବୁକ୍ ଷ୍ଟୋର**
ବିନୋଦ ବିହାରୀ, କଟକ - ୭୫୩ ୦୦୨

ପ୍ରଚ୍ଛଦ : ଅଧ୍ୟାପକ ଶିବ ପାଣିଗ୍ରାହୀ

**ପ୍ରଥମ ପ୍ରକାଶ : ମାଘ ନବମୀ, ୨୦୦୩**

**ଛାପା ସଂଖ୍ୟା : ୫୦୦**

ଟାଇପ୍ ସେଟ୍ : ଆନନ୍ଦ ଗ୍ରାଫିକ୍ସ୍, କଟକ - ୯

ମୁଦ୍ରଣ ଗୁରୁପ୍ରସନ୍ନ ପ୍ରେସ୍, କଟକ - ୧

**SRUSTIRA DARPANARE**
**KALINDI CHARAN**

*Published on behalf of*
**SARALA SAHITYA SANSAD**

*Published by*
**Sri Gobinda Charan Patra**
Chandinichowk, Cuttack - 753 002

*Available at :*
**ORISSA BOOK STORE**
Binod Behari,
Cuttack - 753 002

*1st Edition*
**Magha Navami, 2003**

Price : Rs. **160/-**
ISBN 81-7400-397-5

# ପଦେଅଧେ

ଆଦିକବି ସାରଳା ଦାସଙ୍କ ରଚିତ ମହାଭାରତ ଓ ଭାଗବତ ସମଗ୍ର ଓଡ଼ିଶାରେ ସୁପରିଚିତ । ପ୍ରତ୍ୟେକ ଓଡ଼ିଆ ପରିବାରରେ ଏହି ଦୁଇଗ୍ରନ୍ଥ ଆଦୃତ ଓ ଏହାର ପୂଜା ଚଳିଆସୁଅଛି ।

କବି ନିଜେ ଉଚ୍ଚକୋଟୀର ସାଧକ ଥିଲେ । ଲୋକମୁଖରୁ ଶୁଣାଯାଏ ସ୍ୱୟଂ ଭଗବାନ ଲେଖନୀ ଚଳାଇ ଏ ଗ୍ରନ୍ଥଦ୍ୱୟର ଲେଖା ସମାପ୍ତ କରିଥିଲେ । ଅତି ସରଳ ଭାଷାରେ ଭକ୍ତିଦର୍ଶନର ଉଚ୍ଚ ଚିନ୍ତାଧାରା ଭାଗବତର ବିଶେଷତ୍ୱ । ଭାଗବତ ଓ ମହାଭାରତ ସାରଳା ଦାସଙ୍କୁ ଜାତିର ପୂଜାପାତ୍ରରେ ପରିଣତ କରିଛି । ଗାଁ-ଗହଳରେ କବି ମୁନି ଭାବରେ ବିଦିତ ।

କବିଙ୍କ ସ୍ମୃତିରକ୍ଷା ପାଇଁ ସାରଳା ସାହିତ୍ୟ ସଂସଦ ଲାଗିଛନ୍ତି । ମୋର ବିଶ୍ୱାସ ସଂସଦ ତାଙ୍କ ବ୍ରତ ଓ କର୍ତ୍ତବ୍ୟରେ ପୂର୍ଣ୍ଣ ସଫଳତା ଲାଭ କରିବେ ଓ ଏହି କାର୍ଯ୍ୟ ଉପଯୁକ୍ତ ସମୟରେ ସମାହିତ ହୋଇଯିବ ।

ରଙ୍ଗନାଥ ମିଶ୍ର
ମୁଖ୍ୟ ଉପଦେଷ୍ଟା
ସାରଳା ସାହିତ୍ୟ ସଂସଦ

କଟକ
ମାଘ ନବମୀ, ୨୦୦୩

# ଭୂମିକା

ମହାକବି ସାରଳା ଦାସଙ୍କ ସ୍ମୃତିରକ୍ଷା ପାଇଁ ଓଡ଼ିଶାର ବାଣୀପୀଠ କଟକ ଠାରେ ''ସାରଳା ସାହିତ୍ୟ ସଂସଦ''ର ପ୍ରତିଷ୍ଠା । ଓଡ଼ିଶାର ଏକ ଅଗ୍ରଗଣ୍ୟ ସାହିତ୍ୟାନୁଷ୍ଠାନ ରୂପେ ଏହା ସୁପରିଚିତ । ମହାକବି ସାରଳା ଦାସଙ୍କ ରଚିତ ମହାଭାରତ, ଚଣ୍ଡୀ ପୁରାଣ, ରାମାୟଣ ପ୍ରଭୃତିର ଆଧୁନିକତା ପ୍ରକାଶ କରି ଆଦିକବିଙ୍କୁ ଜନମାନସରେ ସ୍ମରଣୀୟ କରାଇବାରେ ଏହି ଅନୁଷ୍ଠାନ ଅନବରତ କାର୍ଯ୍ୟକରି ଆସୁଛି । ସଂସଦ ମାତ୍ର ୨୨ ବର୍ଷର ହୋଇଥିଲେ ମଧ୍ୟ ଏଯାବତ୍ ୩୨ ଖଣ୍ଡ ପୁସ୍ତକ ପ୍ରକାଶ କରି ସାରିଛି । ସେଗୁଡ଼ିକ ହେଉଛି 'ସାରଳା ସାହିତ୍ୟ ସମୀକ୍ଷା', 'ମହାଭାରତର ପଟ୍ଟଭୂମି; ବ୍ୟାସଦେବ ଓ ସାରଳାଦାସ', 'ସାରଳା ମହାଭାରତ : ଚରିତ୍ରର ଚିତ୍ରଶାଳା', 'ସାରଳା ମହାଭାରତର ଆଖ୍ୟାନ', ସାରୋଳ କଥା ସରିତ', ଆଦିକବି ସ୍ମରଣିକା, 'ସାରଳା କଥା କାନନ', 'ସାରଳା କଥା କଲ୍ଲୋଳ', 'ସାରଳା ସୃଷ୍ଟିର ଦିଗ ଦିଗନ୍ତ', 'ସାରଳା ଦାସ କଥା ସାଗର' (ହିନ୍ଦୀ),"Stories from Sarala's Mahabharat" (Eng). 'କଥା ଭାଗବତ', 'କଥା ରାମାୟଣ', 'ଉତ୍କଳର କବି ଜୟଦେବ', 'ଯୁଗପୁରୁଷ ଫକୀରମୋହନ', 'ଅଚ୍ୟୁତାନନ୍ଦ କଥା ସରିତ', 'ସାରଳା କଥା ବିତାନ' 'ଗଙ୍ଗାଧର କାବ୍ୟମାନସ', 'ନୃସିଂହ କଥା ସମ୍ଭାର', 'ସାରଳା କଥା ପ୍ରତିଭା', 'ସାରସ୍ୱତ ପୁରୁଷ ମଧୁସୂଦନ', 'ନନ୍ଦକିଶୋର ସାହିତ୍ୟ ଚିନ୍ତନ', 'ସୂର୍ଯ୍ୟକଥା ଭାରତୀ', 'ଶିବ କଥା କଳ୍ପନା', 'ସନ୍ଥକବି ଭୀମ ଭୋଇ', 'ବ୍ରହ୍ମ ବୈବର୍ତ୍ତ ଭାସ୍ୱର', 'ମାନସିଂହ ମାନସ ମୁକୁର', 'ବ୍ରହ୍ମ ପୁରାଣ କଥା ସାଗର', 'କବିବର କାବ୍ୟ ସମୀକ୍ଷା'; 'କବି ମନୀଷୀ ପଣ୍ଡିତ ଗୋଦାବରୀଶ', 'କଥା କାହାଣୀ' 'ଅଭିମନ୍ୟୁ କାବ୍ୟଚର୍ଯ୍ୟା' । ସଂସଦର କାର୍ଯ୍ୟକଳାପ କେବଳ ପୁସ୍ତକ ମଧ୍ୟରେ ସୀମିତ ରହିନାହିଁ । ବିଗତ ବର୍ଷମାନଙ୍କରେ ସଂସଦ ପକ୍ଷରୁ ବହୁ ଆଲୋଚ଼ନାଚକ୍ର ଅନୁଷ୍ଠିତ ହୋଇଯାଇଛି । ସିମ୍ଳାରେ ମହାଭାରତ ଉପରେ ଜାତୀୟ ଆଲୋଚ଼ନାଚକ୍ର, କଲିକତାଠାରେ ସାରଳା ସାହିତ୍ୟ ଉପରେ ସମ୍ମିଳନୀ, ଶାନ୍ତିନିକେତନଠାରେ ସାରଳା ସାହିତ୍ୟ ଉପରେ ଅନୁଷ୍ଠିତ ଜାତୀୟ ଆଲୋଚ଼ନାଚକ୍ରରେ ସଂସଦର ଯୋଗଦାନ ଉଲ୍ଲେଖନୀୟ । ଏତଦ୍‌ବ୍ୟତୀତ ସାରଳା ସାହିତ୍ୟ ସଂସଦ ଏବଂ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ମିଳିତ ଆନୁକୂଲ୍ୟରେ 'ସନ୍ଥ ସାହିତ୍ୟ' ଶୀର୍ଷକ ଜାତୀୟ ଆଲୋଚ଼ନାଚକ୍ର ଭୁବନେଶ୍ୱର ଠାରେ ଅନୁଷ୍ଠିତ ହୋଇଛି । ଆଉ ମଧ୍ୟ ସାରଳା ସାହିତ୍ୟ ସଂସଦ କେନ୍ଦ୍ର ଓ ସାହିତ୍ୟ ଏକାଡ଼େମୀର ମିଳିତ ଆନୁକୂଲ୍ୟରେ କଟକଠାରେ କଥାକାର ବାମାଚରଣ ମିତ୍ରଙ୍କ କୃତି ସମ୍ପର୍କରେ ଆଲୋଚନା ଚକ୍ର ଅନୁଷ୍ଠିତ ହୋଇଯାଇଛି । ୨୦୦୨ ଡିସେମ୍ବରରେ

ସାରଳା ସାହିତ୍ୟ ସଂସଦ ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ମିଳିତ ଆନୁକୂଲ୍ୟରେ ରାଜ୍ୟ ସ୍ତରୀୟ ଲେଖିକା ସମ୍ମେଳନ ସଂସଦର ସାରଳା ଭବନଠାରେ ଅନୁଷ୍ଠିତ ହୋଇଥିଲା ।

ଅନୁଷ୍ଠାନର ସାମ୍ବତ୍ସରିକ ଉତ୍ସବମାନଙ୍କରେ ଆମ ଦେଶର ଯେଉଁ ବିଦ୍ୱାନ ଓ ସ୍ୱନାମଧନ୍ୟ ସାରସ୍ୱତ ସ୍ରଷ୍ଟାମାନେ ଯୋଗଦାନ କରି ଆମକୁ ଉତ୍ସାହିତ କରିଛନ୍ତି ସେମାନେ ହେଲେ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ପୂର୍ବତନ ସଭାପତି ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଔପନ୍ୟାସିକ ଡଃ ବୀରେନ୍ଦ୍ର କୁମାର ଭଟ୍ଟାଚାର୍ଯ୍ୟ, କେନ୍ଦ୍ର ସାହିତ୍ୟଏକାଡ଼େମୀର ପୂର୍ବତନ ସଂପାଦକ ଡଃ ଇନ୍ଦ୍ରନାଥ ଚୌଧୁରୀ, ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ଡଃ ନାମ୍‌ୱର ସିଂହ, ବିଶିଷ୍ଟ ବଙ୍ଗୀୟ କବି ଶ୍ରୀ ଆଶିଷ ସାନ୍ୟାଲ, ଓଡ଼ିଶାର ପୂର୍ବତନ ରାଜ୍ୟପାଳ ଡଃ ବିଶ୍ୱମ୍ଭର ନାଥ ପାଣ୍ଡେ, ମଣିପୁରର ପୂର୍ବତନ ରାଜ୍ୟପାଳ ଶ୍ରୀ ଚିନ୍ତାମଣି ପାଣିଗ୍ରାହୀ, ପ୍ରବୀଣ ସାହିତ୍ୟିକ ଓ ସାମ୍ବାଦିକ ଡଃ ରାଧାନାଥ ରଥ, ଲୋକସଭାର ପୂର୍ବତନ ବାଚସ୍ପତି ଶ୍ରୀ ରବି ରାୟ, ପ୍ରଖ୍ୟାତ ସାହିତ୍ୟିକ ଓ ଐତିହାସିକ ଡଃ ହରେକୃଷ୍ଣ ମହତାବ, ବିଶିଷ୍ଟ ଐତିହାସିକ ଡଃ ମନ୍ମଥନାଥ ଦାସ, ଭାଷାବିତ୍ ଡଃ ଦେବୀପ୍ରସନ୍ନ ପଟ୍ଟନାୟକ, ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ କବି ଶ୍ରୀ ସଚ୍ଚି ରାଉତରାୟ, ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ପ୍ରଖ୍ୟାତ ବଙ୍ଗୀୟ କବି ଶ୍ରୀ ସୁଭାଷ ମୁଖୋପାଧ୍ୟାୟ, ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ ଡଃ ଶିବପ୍ରସାଦ ସିଂହ, ପ୍ରଫେସର ବାଲ୍‌ସୌରୀ ରେଡ୍‌ଡ୍ରୀ, ଭାରତୀୟ ଜ୍ଞାନପୀଠ ପ୍ରତିଷ୍ଠାନର ପୂର୍ବତନ ନିର୍ଦ୍ଦେଶକ ଡଃ ଆର. ପାଣ୍ଡୁ ରାଙ୍ଗାରାଓ, ବିଶିଷ୍ଟ ବଙ୍ଗୀୟ କବି ଶ୍ରୀମତୀ ନବନୀତା ଦେବସେନ୍, ବିଶିଷ୍ଟ ସାହିତ୍ୟିକ ଓ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀବଲ୍ଲଭ ପଟ୍ଟନାୟକ, କେନ୍ଦ୍ରୀୟ ହିନ୍ଦୀ ନିର୍ଦ୍ଦେଶାଳୟର ପୂର୍ବତନ ନିର୍ଦ୍ଦେଶକ ଡଃ ଗଙ୍ଗାପ୍ରସାଦ ବିମଲ, ପ୍ରଖ୍ୟାତ ହିନ୍ଦୀ ସାହିତ୍ୟିକ ଓ ଜ୍ଞାନପୀଠ ପୁରସ୍କାର ବିଜୟୀ ଶ୍ରୀ ନିର୍ମଳ ବର୍ମା, ପ୍ରଖ୍ୟାତ ପଞ୍ଜାବୀ ସାହିତ୍ୟିକ ଶ୍ରୀ କର୍ତ୍ତାର ସିଂହ ଦୁଗଲ, ସରସ୍ୱତୀ ସମ୍ମାନ ପୁରସ୍କାର ବିଜେତା ପ୍ରଖ୍ୟାତ କବି ଶ୍ରୀ ରମାକାନ୍ତ ରଥ, ଜ୍ଞାନପୀଠ ବିଜେତା କବି ଡ଼ଃ ସୀତାକାନ୍ତ ମହାପାତ୍ର, ପ୍ରଖ୍ୟାତ କବି ଡକ୍ଟର ସୌଭାଗ୍ୟ କୁମାର ମିଶ୍ର, ଭାରତୀୟ ଭାଷା ପରିଷଦର ନିର୍ଦ୍ଦେଶକ ପ୍ରଫେସର ପ୍ରଭାକର ଶ୍ରୋତ୍ରୀୟ ଏବଂ ବିଶିଷ୍ଟ ହିନ୍ଦୀ ସାହିତ୍ୟିକ ଡଃ ହରିଶ୍ଚନ୍ଦ୍ର ମିଶ୍ର ପ୍ରମୁଖ ।

୧୯୮୩ ମସିହାରୁ ସାରଳା ସାହିତ୍ୟ ସଂସଦ 'ସାରଳା ସମ୍ମାନ' ପ୍ରଦାନ କରି ଆସୁଛି । ଏଯାବତ୍ ସାରଳା ସମ୍ମାନରେ ସମ୍ମାନିତ ହୋଇଥିବା ଗବେଷକ ଓ ସାହିତ୍ୟିକମାନେ ହେଉଛନ୍ତି ଡଃ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ଶ୍ରୀ ସୁରେନ୍ଦ୍ର ମହାନ୍ତି, ଡଃ ବଂଶୀଧର ମହାନ୍ତି, ଡଃ କୃଷ୍ଣଚରଣ ସାହୁ, ଡଃ ଦୀନବନ୍ଧୁ ରଥ, ଡଃ କୁଞ୍ଜବିହାରୀ ତ୍ରିପାଠୀ, ଡଃ ସତ୍ୟନାରାୟଣ ରାଜଗୁରୁ, ପ୍ରଫେସର ଭୁବନେଶ୍ୱର ବେହେରା, ଫତୁରାନନ୍ଦ, ଶ୍ରୀମତୀ ବ୍ରହ୍ମୋତ୍ରୀ ମହାନ୍ତି, ଶ୍ରୀ ରାଜକିଶୋର ରାୟ, ଶ୍ରୀ ପଠାଣି ପଟ୍ଟନାୟକ, ପ୍ରଫେସର ଡଃ ଜାନକୀ ବଲ୍ଲଭ ମହାନ୍ତି (ଭରଦ୍ୱାଜ), ଶ୍ରୀ ଚିନ୍ତାମଣି ବେହେରା, ପ୍ରଫେସର ଗଙ୍ଗାଧର ବଳ, ଶ୍ରୀ ଅଚ୍ୟୁତାନନ୍ଦ ପତି, ଶ୍ରୀ ସହଦେବ ସାହୁ ଏବଂ ଶ୍ରୀ ଶ୍ରୀନିବାସ ଉଦ୍‌ଗାତା ।

ସାରଳା ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବାରେ ସଂସଦର ସଭାପତି ଶ୍ରୀ ବସନ୍ତ କୁମାର ବିଶ୍ୱାଳ ଆମ୍ଭମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଛନ୍ତି । ମୁଖ୍ୟ ଉପଦେଷ୍ଟା ନ୍ୟାୟମୂର୍ତ୍ତି ଶ୍ରୀଯୁକ୍ତ ରଙ୍ଗନାଥ ମିଶ୍ରଙ୍କ ସାହାଯ୍ୟ ଓ ପରାମର୍ଶ ଆମକୁ ବହୁ ଭାବରେ ପ୍ରୋତ୍ସାହିତ କରିଛି । ସମ୍ପାଦକ ଇଞ୍ଜିନିୟର ପ୍ରଭାକର ସ୍ୱାଇଁଙ୍କ ଏକନିଷ୍ଠ ପ୍ରଚେଷ୍ଟା ହିଁ ସଂସଦକୁ ଜୀବନ୍ତ କରିଛି । କାର୍ଯ୍ୟକାରୀ କମିଟିର ସଭ୍ୟ ଶ୍ରୀ ଗଗନ ଚନ୍ଦ୍ର ଦାସଙ୍କ ସହଯୋଗ ସଂସଦକୁ ସକ୍ରିୟ କରିଛି । ଏ ସମସ୍ତଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ।

ଆଜି ପ୍ରକାଶିତ ଏହି ଗ୍ରନ୍ଥଟି ଓଡ଼ିଶାର ଯେଉଁ ପ୍ରଥିତଯଶା ସମୀକ୍ଷକଙ୍କ ଲେଖନୀରେ ସମୃଦ୍ଧ ସେମାନଙ୍କୁ ମୋର ଅନ୍ତରର କୃତଜ୍ଞତା ଜ୍ଞାପନ କରୁଛି । ବିଗତ ବର୍ଷମାନଙ୍କ ପରି ଚଳିତ ବର୍ଷ ମଧ୍ୟ ସମ୍ପାଦକ ଇଂ. ପ୍ରଭାକର ସ୍ୱାଇଁ ଗ୍ରନ୍ଥଟି ପାଇଁ ସମସ୍ତ ଲେଖା ସଂଗ୍ରହ କରିଛନ୍ତି । ସମ୍ପାଦନା କରିଛନ୍ତି ଆମ ସଂସଦର ଗ୍ରନ୍ଥ ସମ୍ପାଦକ ଅଧ୍ୟାପକ ପଠାଣି ପଟ୍ଟନାୟକ, ଡଃ ହେମନ୍ତ କୁମାର ଦାସ ଓ ଡଃ ବିଚିତ୍ରାନନ୍ଦ ମହାନ୍ତି । ଗ୍ରନ୍ଥଟି ପ୍ରକାଶ କରିଛନ୍ତି ବିଶିଷ୍ଟ ପ୍ରକାଶକ 'ଓଡ଼ିଶା ବୁକ୍ ଷ୍ଟୋର'ର ସ୍ୱତ୍ୱାଧିକାରୀ ଶ୍ରୀ ଗୋବିନ୍ଦ ଚରଣ ପାତ୍ର । ଏ ମହାଶୟଙ୍କୁ ଅନୁଷ୍ଠାନ ପକ୍ଷରୁ ସାଧୁବାଦ ଜଣାଉଛି ।

ଗତ ୨୦ ଫେବୃୟାରୀ, ୨୦୦୨ରେ କଟକଠାରେ ସଂସଦର ନିଜସ୍ୱ ଗୃହ 'ସାରଳା ଭବନ' ଉଦ୍‌ଘାଟିତ ହୋଇଛି । କିନ୍ତୁ ଏହାର ନିର୍ମାଣ ଶେଷ ହୋଇନାହିଁ । ଏହି ଭବନର ନିର୍ମାଣ ସଂପୂର୍ଣ୍ଣ ହେଲେ ଏହାର କାର୍ଯ୍ୟକ୍ରମ ବ୍ୟାପକ ହେବ ଏବଂ ଆଦିକବି ସାରଳା ଦାସଙ୍କ ସ୍ମୃତିକୁ ଆହୁରି ପ୍ରସାରିତ କରିବାରେ ଓଡ଼ିଶାବାସୀ ବିଶେଷତଃ ଆପଣ ପାଠକମାନେ ଅଧିକରୁ ଅଧିକ ସାହାଯ୍ୟ କରିବେ ।

**ସହଦେବ ସାହୁ**
ଉପଦେଷ୍ଟା
ସାରଳା ସାହିତ୍ୟ ସଂସଦ

କଟକ
ମାଘ ନବମୀ, ୨୦୦୩

# ସୂଚୀପତ୍ର

# କାଳିନ୍ଦୀଚରଣଙ୍କ ଜୀବନ ଆଲେଖ୍ୟ

ଡକ୍ଟର ବିଚିତ୍ରାନନ୍ଦ ମହାନ୍ତି

କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର ।।
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ।।
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ ।।
ବେକାର ରହିବାକୁ ନାହିଁ ଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର ।।
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେ ରଚି ।।

(ଆଗାମୀ - ପୃ. ୫୦)

କବି ସମାଜର, ସମାଜ କବିର, ପରସ୍ପରର ପରିପୂରକ । ସର୍ବଗ୍ରାସୀ କ୍ଷୁଧା ଯେଉଁ ରାଜ୍ୟବାସୀଙ୍କର ଚିର ସହଚର, ପିଲାଠାରୁ ବୁଢ଼ାବୁଢ଼ୀଯାଏ ଯେଉଁଠି ଇଙ୍ଗଳା ଫୁଙ୍ଗୁଳା; ପ୍ରକୃତି ଉପରେ ନିର୍ଭର କରିବା ଯୋଗୁଁ ଯେଉଁ ରାଜ୍ୟର ଅଧିବାସୀ ବନ୍ୟା, ବାତ୍ୟା, ମରୁଡ଼ି ପ୍ରପୀଡ଼ିତ, ସେହି ରାଜ୍ୟର ଲୋକଙ୍କ ଦୁର୍ଦ୍ଦଶା ମୋଚନ ପାଇଁ କବି ଆଉ କି ଭାବନା କରିପାରନ୍ତି ? ଏଇ ସମାଜର ମୌଳିକ ଆବଶ୍ୟକତା ଖାଦ୍ୟ, ବସ୍ତ୍ର ଓ ବାସଗୃହ (ରୋଟି, କପଡ଼ା ଔର ମକାନ୍) । ଏତିକି ନ୍ୟୂନତମ ଆବଶ୍ୟକତା ପୂରଣ ପାଇଁ ନେତାମାନେ ଆଶା ଜଗାନ୍ତି । ଆଶ୍ୱାସନା ଦିଅନ୍ତି; ମାତ୍ର ଭୋଟ ଯୁଦ୍ଧରେ ଜୟୀ ହୋଇ ଶୀତତାପ ନିୟନ୍ତ୍ରିତ ସୁରକ୍ଷିତ ବିଧାନ ସୌଧ ବା ସଚିବାଳୟରେ ଚୌକି ଉପରେ ବସିଗଲେ, ସେ କଥା ଭୁଲିଯାନ୍ତି । ଭୁଲିଯାଆନ୍ତି କହିବା ହୁଏତ ଠିକ୍ ହେବ ନାହିଁ, କାରଣ ସମସ୍ୟାର ସମାଧାନ ଯଦି ଗୋଟିଏ ନିର୍ବାଚନରେ ପୂରଣ ହୁଏ, ତେବେ ଆରଥରକୁ ପୁଣି କି ପ୍ରତିଶ୍ରୁତି ଦେବେ ? ତେଣୁ ଚିହ୍ନା ମୁହଁ ଅଚିହ୍ନା ହୁଏ ।

ପରବର୍ତ୍ତୀ ନିର୍ବାଚନ ବେଳକୁ ସବୁ ଅଚିହ୍ନାମାନେ ଚିହ୍ନା ଚିହ୍ନା ବୋଧ ହୁଅନ୍ତି । ପ୍ରବୀଣ ଓ ବୟସ୍କ ନେତାଏ ତରୁଣ ପୀଢ଼ିଙ୍କ ଭଲମନ୍ଦ ପଚାରିବାଠାରୁ ''ବାପା କେମିତି ଅଛନ୍ତି''

ପଚାରି ବସନ୍ତି । ସେଇ ଯୁବକଟିର ବାପା ଯେ କୋଡ଼ିଏ ବର୍ଷ ତଳୁ ଇହଧାମ ତ୍ୟାଗ କରିଛନ୍ତି, ତେଣୁ ଉତ୍ତର ମିଳେ, ''ହଁ ଭଲରେ ସ୍ୱର୍ଗରେ ଅଛନ୍ତି ।'' ନେତାଙ୍କର ଉତ୍ତର ଶୁଣିବାର ଆନ୍ତରିକତା ନ ଥିବାରୁ ବଧୀର ବନ୍ଧୁର ଉପାଖ୍ୟାନ ପରି କହିଦିଅନ୍ତି, ''ହଉ, ଭଲ ଭଲ ।''

ନେତାମାନଙ୍କ ସହାୟକ ଗ୍ରାମ୍ୟ ବୁଦ୍ଧିଜୀବୀମାନେ ବୁଝେଇ ଦିଅନ୍ତି, ''ଦେଖ ଦେଖ, ପୂଜ୍ୟ ନେତା ତୁମ ବାପା ଜେଜେବାପାଙ୍କ ସହ କେତେ ଘନିଷ୍ଠ ଥିଲେ, ତୁମେ ତ ଆମ ଲୋକ । ଏ ଗାଁ ଦାୟିତ୍ୱ ତୁମ ଉପରେ ରହିଲା । ସବୁରି ଭୋଟ ଯେପରି ଆମରି ଦଳକୁ ମିଳେ, ଦେଖିବେ ।''

ଇଏ ହେଉଛି ଆମ ରାଜ୍ୟରେ ଭୋଟ ରାଜନୀତି । ଏ ରାଜ୍ୟର ଉନ୍ନତି କେମିତି ହେବ, ତାହା ହିଁ ହେଉଛି ବଡ଼ କଥା । ''ଅନ୍ନ ଚିନ୍ତା ଚମତ୍କାରା'' । ଜନତା ଜନାର୍ଦ୍ଦନ ପ୍ରତି ସମ୍ବେଦନଶୀଳ କବି ପୁରୁଷର ଅନୁଚିନ୍ତା, ନିବେଦନ ଓ ମାର୍ଗଦର୍ଶନ ।

ପିତୃଦେବ ସ୍ୱପ୍ନେଶ୍ୱର, ଜ୍ୟେଷ୍ଠଭ୍ରାତା ଦିବ୍ୟସିଂହ, କନିଷ୍ଠଭ୍ରାତା ଭଗବତୀ ଓ କନ୍ୟା ନନ୍ଦିନୀ – ତିନିପୁରୁଷ ଧରି ସାହିତ୍ୟ ଓ ସମାଜସେବା ଏବଂ ପ୍ରଗତିବାଦୀ ଚିନ୍ତାଧାରାରେ ଆପ୍ଲୁତ ପରିବାର ।

ପଲ୍ଲୀ ଗାଁଟିଏ ବିଶ୍ୱନାଥପୁର । ପୁରୁଣା ନାଆଁ ଥିଲା ବିଷ୍ଣୁଦାସପୁର । ସମ୍ବଲପୁର ଆଡୁ ଗଣି ପାଣି ଓ ଅନାମ ପାଣି ବେପାର କରିବା ପାଇଁ ଆସି ବସା ବାନ୍ଧୁ ବାନ୍ଧୁ ବାସିନ୍ଦା ହୋଇ ରହିଯାଇଥିଲେ । ଅନାମଙ୍କ ନାତି ଶ୍ରୀନିବାସ ଥିଲେ ଜଣେ ଧାର୍ମିକ ଓ ନୀତିବାନ୍ ବ୍ୟକ୍ତି । ତାଙ୍କରି ନେତୃତ୍ୱରେ ବିଶ୍ୱନାଥପୁର ପାଲଟିଥିଲା ଗୋଟିଏ ଆଦର୍ଶ ଗ୍ରାମ । ନିଜର ସମ୍ପତ୍ତି ବଢ଼ାଇବାରେ ଚିତ୍ତବୃତ୍ତି ତାଙ୍କର ନଥିଲା । ତେଣୁ ଦାରିଦ୍ର୍ୟରେ ଜୀବନ କଟାଇଥିଲେ । ତାଙ୍କ ମୃତ୍ୟୁଶଯ୍ୟାରେ ପରିବାରର ଲୋକେ ତାଙ୍କୁ ଯେତେବେଳେ ପଚାରିଲେ, ଆମ ପାଇଁ କ'ଣ କେଉଁଠି ଧନ ରଖିଛ ? ସେତେବେଳେ ସେ ବିଶି ଆଙ୍ଗୁଠି ଉପରକୁ ଟେକି କହିଥିଲେ, ''ଧର୍ମ, ତମ ପାଇଁ ରଖିଛି ଧର୍ମ ।'' ସେଇ କଥାର ପୁନରାବୃତ୍ତି ଘଟିଛି ଶ୍ରୀନିବାସଙ୍କ ଅଣନାତି କାଳିନ୍ଦୀଚରଣଙ୍କ ଲିଖିତ 'ମାଟିର ମଣିଷ' ଉପନ୍ୟାସର ଶାମ ପ୍ରଧାନଙ୍କ ମୃତ୍ୟୁଶଯ୍ୟା ନିକଟରେ ବୋହୂ ହାରାବୋଉର ନିର୍ଦ୍ଦେଶନାରେ ହାରା ଦାମ ଆଦି ନାତି ନାତୁଣୀଙ୍କ ପ୍ରଶ୍ନ ପଚାରିବାବେଳେ ।

କାଳିନ୍ଦୀଙ୍କ ପିତା ସ୍ୱପ୍ନେଶ୍ୱର ଥିଲେ ବିଶ୍ୱନାଥପୁରର ଏକମାତ୍ର ଇଂରେଜୀ ଶିକ୍ଷିତ ବ୍ୟକ୍ତି । ସେ ୧୮୮୦ରେ ମୁକ୍ତାରି ପାସ୍ କରି ପୁରୀରେ ଓକିଲାତି କରୁଥିଲେ । ବଡ଼ପୁଅ ଦିବ୍ୟସିଂହ ଯେବେ ପୁରୀରେ ଓକିଲାତି ଆରମ୍ଭ କଲେ, ଏକା ଅଦାଲତରେ ବାପପୁଅ ଦୁହେଁ ଓକିଲାତି କରିବା ଉଚିତ ହେବ ନାହିଁ ବୋଲି ସେହିଦିନଠୁ ଆଇନ ବ୍ୟବସାୟ ଛାଡ଼ିଦେଲେ ।

ସେ ଥିଲେ ସ୍ୱାଧୀନଚେତା । ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଥିଲେ ଘନିଷ୍ଠ, ତାଙ୍କର ଇଚ୍ଛା ଥିଲା ତାଙ୍କ ପିଲାମାନେ ବି ଦେଶ ଓ ସମାଜର ସେବା କରନ୍ତୁ ।

୧୯୧୨ରେ ଗାଁ ଛାଡ଼ି କାଳିନ୍ଦୀ ଆସି ପୁରୀରେ ପଢ଼ିଲେ । ଗ୍ରାମ୍ୟଜୀବନର ସ୍ୱାଧୀନତା ହରାଇଲେ ହେଁ ପୁରୀର ଜଗନ୍ନାଥଙ୍କ ମନ୍ଦିର, ସମୁଦ୍ର ବେଳାଭୂମି, ଦେଶବିଦେଶରୁ ଆସୁଥିବା ପର୍ଯ୍ୟଟକମାନଙ୍କ ସହ ସାକ୍ଷାତ ଏବଂ ନୂତନ ସହପାଠୀ–ବନ୍ଧୁମାନଙ୍କ ସହ ସଂଯୋଗ ଥିଲା ନୂତନ ଓ ଆନନ୍ଦଦାୟକ ଅନୁଭୂତି । କାଳକ୍ରମେ ସେ ବନ୍ଧୁମାନଙ୍କ କେନ୍ଦ୍ରବିନ୍ଦୁ ହୋଇପଡ଼ିଲେ । ରବିବାର ଓ ଛୁଟି ଦିନମାନଙ୍କରେ ସାହିତ୍ୟ ଚର୍ଚ୍ଚା କରୁ କରୁ କାଳିନ୍ଦୀଙ୍କ ସମ୍ପାଦନାରେ ''ଛାତ୍ରଦର୍ପଣ'' ନାମରେ ମାଗାଜିନ୍‌ଟିଏ ପ୍ରକାଶ କଲେ । ଏହି ପତ୍ରିକା ସ୍ଥାନୀୟ କବିମାନଙ୍କ ବ୍ୟତୀତ ତତ୍କାଳୀନ ବିଶିଷ୍ଟ କବି ପଦ୍ମଚରଣ ପଟ୍ଟନାୟକ, ପଣ୍ଡିତ ନୀଳକଣ୍ଠ ଦାସ ଓ ଆଧୁନିକ ଓଡ଼ିଶାର ଜନକ ବିଖ୍ୟାତ ଓକିଲ ମଧୁସୂଦନ ଦାସ (ମଧୁ ବାରିଷ୍ଟର)ଙ୍କ ଦୃଷ୍ଟି ଆକର୍ଷଣ କଲା । ସେହି ସମୟର ଜାତୀୟବାଦୀ ନେତା ମହାତ୍ମା ଗାନ୍ଧୀ, ବିପିନଚନ୍ଦ୍ର ପାଲ, ଲାଲା ଲଜପତ ରାୟ ଏବଂ ଓଡ଼ିଶାର ସତ୍ୟବାଦୀ ବନବିଦ୍ୟାଳୟର ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଓ ଆଚାର୍ଯ୍ୟ ହରିହର ଦାଶଙ୍କ ଦ୍ୱାରା ଅନୁପ୍ରାଣିତ ହୋଇଥିଲେ । ସତ୍ୟବାଦୀର ଏହି ଜ୍ଞାନତପସ୍ୱୀମାନେ କାଳିନ୍ଦୀଙ୍କ ବଡ଼ଭାଇ ଦିବ୍ୟସିଂହଙ୍କ ପାଖକୁ ବେଳେ ବେଳେ ଆସୁଥିଲେ । କାଳିନ୍ଦୀ ସେମାନଙ୍କଠାରୁ ପ୍ରେରଣା ପାଉଥିଲେ ।

କୋଡ଼ିଏ ବର୍ଷ ବୟସବେଳେ ପୁରୀ ଜିଲ୍ଲାସ୍କୁଲ୍‌ରୁ ମାଟ୍ରିକ୍ ପାଶକରି କଟକ ରେଭେନ୍ସା କଲେଜରେ ଆଇ.ଏ. ପଢ଼ିଲେ । ସେତେବେଳକୁ କାଳିନ୍ଦୀ ଜଣେ ତରୁଣ ଲେଖକ ଭାବେ ନାମ କମାଇ ସାରିଥିଲେ । କଲେଜରେ କେତୋଟି ମାସ ଭିତରେ ମିଶିଗଲେ ଆଉ ଚାରୋଟି ବନ୍ଧୁ ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, ଶରତଚନ୍ଦ୍ର ମୁଖାର୍ଜୀ ଆଉ ହରିହର ମହାପାତ୍ର । ଏହି ଛାତ୍ରଗୋଷ୍ଠୀଟି ପରେ ସବୁଜଗୋଷ୍ଠୀ ନାମରେ ପରିଚିତ ହେଲେ । ବ୍ୟକ୍ତିଗତ ଭାବରେ ସେମାନେ ଓଡ଼ିଆ 'ଉତ୍କଳ ସାହିତ୍ୟ', ବଙ୍ଗଳା 'ପ୍ରବାସୀ' ଓ ଇଂରାଜୀରେ 'ରେଭେନ୍ସା ଭିଆନ୍'ରେ ଲେଖୁଥିଲେ, ସେତେବେଳେ ରବୀନ୍ଦ୍ରନାଥ ଟାଗୋର୍‌ଙ୍କ ପୃଷ୍ଠପୋଷକତା ତଥା ପ୍ରମଥ ଚୌଧୁରୀଙ୍କ ସଂପାଦନାରେ ପ୍ରକାଶ ପାଉଥିବା ''ସବୁଜପତ୍ର'' ବଙ୍ଗଳା ମାଗାଜିନ ଦ୍ୱାରା ପ୍ରଭାବିତ ହୋଇ ଆପଣାର ଗୋଷ୍ଠୀଟିକୁ ସେହି ନାମରେ ନାମିତ କରିଥିଲେ । ଓଡ଼ିଆରେ ସେତେବେଳେ ପ୍ରକାଶ ପାଉଥିଲା 'ସତ୍ୟବାଦୀ' ମାସିକ ପତ୍ର । ସେହି ପତ୍ରିକାର ଲେଖକମାନେ ସଂସ୍କୃତରେ ପଣ୍ଡିତ ଥିଲେ ହେଁ ଲେଖୁଥିଲେ ଓଡ଼ିଆରେ । ସେ ସବୁ ଲେଖା ସାଧାରଣ ପାଠକ ପାଇଁ ଅବୋଧ ଥିଲା । 'ସବୁଜ ପତ୍ର' ଥିଲା କଥିତ ଭାଷାର ଅଗ୍ରଣୀ । କେତେ ବର୍ଷ ପରେ 'ସମାଜ' ପ୍ରକାଶ ପାଇଲା ।

'ସମାଜ'ର ଭାଷା ଥିଲା ଜଗନ୍ନାଥ ଦାସଙ୍କ ଓଡ଼ିଆ ଭାଗବତର ଭାଷା ପରି ଲୋକମାନଙ୍କ କଥିତ ଭାଷା, ଏଇ କ୍ଷୁଦ୍ର ଗୋଷ୍ଠୀ ତାକୁ ଆଦର୍ଶ ରୂପେ ମାନୁଥିଲେ ।

ସେତେବେଳେ ବୈକୁଣ୍ଠଙ୍କର ଜଣେ ଆତ୍ମୀୟ ପଶୁ ଡାକ୍ତରଖାନାରେ ଡାକ୍ତର ଥିଲେ । ରାଣୀହାଟର ସେଇ ପଶୁଡାକ୍ତରଖାନା ଥିଲା ସେମାନଙ୍କ ମିଳନସ୍ଥଳ, ସେମାନେ ସ୍ଥିର କଲେ ଏହାକୁ ଗୋଟିଏ କ୍ଲବ୍ କରାଯିବ । ସେହି କ୍ଲବ୍ 'ନନ୍‌ସେନ୍‌ସ କ୍ଲବ୍' ନାମରେ ନାମିତ ହେଲା । ନନ୍‌ସେନ୍‌ସ୍ କ୍ଲବ୍ ମାଗାଜିନ୍ ବାହାରିଲା । ହରିହର ଅନ୍ୟ ଚାରିବନ୍ଧୁଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ 'ଅବକାଶ' (ଅ-ଅନ୍ନଦା, ବ-ବଇକୁଣ୍ଠ, କା-କାଳିନ୍ଦୀ ଓ ଶ-ଶରତ) ନାମକରଣ କଲେ । ଏହି ନାମରେ କେତୋଟି ସଂଖ୍ୟା ବାହାରିବା କରେ ହରିହରଙ୍କ ନାମ ନ ରହିଥିବାରୁ ନାଁ ବଦଳାଇ କଲେ 'ଶକ୍ତି ସାଧନା' । ସେଥିରେ ଓଡ଼ିଆ, ବଙ୍ଗଳା ଓ ଇଂରାଜିରେ ଲେଖାମାନ ପ୍ରକାଶ ପାଉଥିଲା । ସେହି ହାତଲେଖା ପତ୍ରିକାଟି ହଷ୍ଟେଲରେ ପିଲାମାନଙ୍କ ମଧ୍ୟରେ ଆଦରଲାଭ କରିଥିଲା । କେତେଜଣ ପତ୍ରିକାର ଭାଷା ଓ ଭାବଉପରେ ଥଟ୍ଟାପରିହାସ ମଧ୍ୟ କରୁଥିଲେ । ସମାଜସେବୀ ଲକ୍ଷ୍ମୀ ନାରାୟଣ ସାହୁ ସେ ପତ୍ରିକାର ଲେଖାମାନ ତାଙ୍କ ସଂପାଦିତ 'ସହକାର'ରେ ପ୍ରକାଶ କଲେ । ଓଡ଼ିଶାର ତତ୍କାଳୀନ ବିଶିଷ୍ଟ ସାହିତ୍ୟ ପତ୍ରିକା 'ଉତ୍କଳ ସାହିତ୍ୟ' ସମ୍ପାଦକ ବିଶ୍ୱନାଥ କର ଏହି ସବୁଜ କବିମାନଙ୍କ ଲେଖା ପ୍ରକାଶ କଲେ । ବୈକୁଣ୍ଠନାଥଙ୍କ କବିତା 'ସବୁଜ ବନ୍ଧୁ ପ୍ରତି' ଲେଖାରୁ 'ସବୁଜ' ନାମର ସୂତ୍ରପାତ ହେଲା । 'ସବୁଜ' ଶବ୍ଦଟିକୁ ପ୍ରଥମେ ଓଡ଼ିଆ କବିତାରେ ଲଗାଇଲେ ଅନ୍ନଦା ଶଙ୍କର ।

୧୯୨୩ରେ ପାଟଣା ବିଶ୍ୱବିଦ୍ୟାଳୟ ଆଇ.ଏ. ପରୀକ୍ଷାରେ ବିହାର-ଓଡ଼ିଶାରେ ପ୍ରଥମ ହେଲେ ଅନ୍ନଦା ଓ ଦ୍ୱିତୀୟ ହେଲେ ଶରତ । ଦୁହେଁ ବି.ଏ. ପଢ଼ିବାକୁ ପାଟନା ଗଲେ । ସେ ଦୁହେଁ ପାଟନା ଗଲେ ବି ବନ୍ଧୁତା କମି ନଥିଲା । କାଳିନ୍ଦୀଚରଣ ଗୋଟିଏ ନୂତନ ଚିନ୍ତା କଲେ ମିଳିତ ଭାବରେ ଗୋଟିଏ ଉପନ୍ୟାସ ଲେଖିବାକୁ । ସେଇ ଉପନ୍ୟାସ ହେଲା 'ବାସନ୍ତୀ' । କାଳିନ୍ଦୀଙ୍କ କଥାବସ୍ତୁକୁ ଅବଲମ୍ବନ କରି ଗୋଟିଏ ଗୋଟିଏ ପରିଚ୍ଛେଦ ଲେଖିଲେ ଶରତ, ହରିହର, ଅନ୍ନଦା ଶଙ୍କର, ସୁପ୍ରଭା କର, ସରଳା ଦେବୀ, ପ୍ରତିଭା କର, ବୈଷ୍ଣବ ଚରଣ ଦାସ ଓ ମୁରଲୀଧର ମହାନ୍ତି । କାଳିନ୍ଦୀଙ୍କୁ ମିଶାଇ ନଅଜଣ, ବିଶ୍ୱନାଥ କର 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବେ ପ୍ରକାଶ କରି ସବୁଜ ଦଳଙ୍କୁ ଉତ୍ସାହିତ କଲେ । କାଳିନ୍ଦୀଚରଣ ଏହି ଉପନ୍ୟାସର ପ୍ରଥମ ଦୁଇ ପରିଚ୍ଛେଦ ଓ ଶେଷ ଦୁଇ ପରିଚ୍ଛେଦ ଲେଖିଥିଲେ ।

ଏହି ନବୀନ ଗୋଷ୍ଠୀଙ୍କ ନୂତନ ପ୍ରଚେଷ୍ଟା ସେତେବେଳେ ଓଡ଼ିଶାରେ ଚହଳ ପକାଇଦେଲା । ଏହି ସୃଷ୍ଟି ମୂଳରେ କାଳିନ୍ଦୀଙ୍କ କଳ୍ପନା କାର୍ଯ୍ୟ କରିଥିଲା ।

ସବୁଜ ସାହିତ୍ୟ ସମିତି ପ୍ରଥମ ପ୍ରକାଶନ 'ସବୁଜ କବିତା' କାଳିନ୍ଦୀଚରଣଙ୍କ ସମ୍ପାଦିତ । ପ୍ରତ୍ୟେକ ସଭ୍ୟ ସାତ ଆଠଟି କବିତା ଦେଇଥିଲେ । ଅନ୍ନଦା ସେତେବେଳେ

ଆଇ.ସି.ଏସ୍. ଟ୍ରେନିଂ ପାଇଁ ବିଲାତରେ ଥିଲେ ସୁଦ୍ଧା ସେଠାରୁ ସାତଟି କବିତା ପଠାଇଥିଲେ । ତା' ପରେ କାଳିନ୍ଦୀଙ୍କ 'ଅମରଚିତା', 'ମୁକ୍ତାଗଡ଼ର କ୍ଷୁଧା' ଉପନ୍ୟାସ ହରିଶ୍ଚନ୍ଦ୍ର ବଡ଼ାଳଙ୍କ 'ଦେଶର ଡାକ' ନାଟକ, ମାନସିଂହଙ୍କ 'ପୂଜାରିଣୀ', ହରିହର ମିଶ୍ରଙ୍କ 'ଅର୍ଚ୍ଚନା', ବୈକୁଣ୍ଠନାଥଙ୍କ 'ମୁକ୍ତିପଥେ' ନାଟକ, ସଚି ରାଉତରାୟଙ୍କ 'ପୂର୍ଣ୍ଣିମା', ଚିନ୍ତାମଣି ମହାନ୍ତିଙ୍କ 'ଶନିସପ୍ତା' ଉପନ୍ୟସ - ଏହିପରି ପ୍ରାଚୀନ ଓ ଆଧୁନିକ ଲେଖକମାନଙ୍କର ମୋଟ ପଇଁତିରିଶଟି ପୁସ୍ତକ 'ସବୁଜ ସାହିତ୍ୟ ସମିତି' ତରଫରୁ ପ୍ରକାଶ ପାଇଥିଲା । ଦିବ୍ୟସିଂହ ପାଣିଗ୍ରାହୀଙ୍କ 'ତୁ ମୋ ମାଆ' ମଧ ଏହାର ଅନ୍ତର୍ଭୁକ୍ତ ଥିଲା । ସବୁଜ ସାହିତ୍ୟକୁ ଗାଁ ଗହଳିକୁ ପ୍ରସାର କରିବା ଉଦ୍ଦେଶ୍ୟରେ 'ଗୋପାଳନ', 'ସ୍ୱାସ୍ଥ୍ୟରକ୍ଷା' ଓ 'ଗାଁ କଥା' ପରି ବୈଷୟିକ ପୁସ୍ତକମାନ ମଧ ପ୍ରକାଶ କରିଥିଲେ । ଦେଶବାସୀଙ୍କ ମାନସିକତାରେ ପରିବର୍ତ୍ତନ କରି ମଧ୍ୟଯୁଗୀୟ ଚିନ୍ତାଧାରାକୁ ବିଂଶ ଶତାବ୍ଦୀରେ ପରିଣତ କରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ । ସାହିତ୍ୟ ଓ ସମାଜରେ ସଂସ୍କାର ଆଣିବା ଥିଲା ଲକ୍ଷ୍ୟ । ପ୍ରାୟ ସାତ ବର୍ଷ କାର୍ଯ୍ୟ କଲା ପରେ ସବୁଜ ସାହିତ୍ୟ ସମିତି ବନ୍ଦ ହୋଇଗଲା ସତ, ମାତ୍ର ସବୁଜ ଗୀତି, ସବୁଜ ନୀତି ଓ ସବୁଜ ଆଦର୍ଶବାଦ ଓଡ଼ିଆ ସାହିତ୍ୟରେ ସବୁ କ୍ଷେତ୍ରରେ ପ୍ରବେଶ କରିପାରିଲା । ସବୁଜ ସଂଘ ଏକ କାଞ୍ଚନିକ ଯୁଗ ପ୍ରବର୍ତ୍ତନ କରିବା ସଙ୍ଗେ ସଙ୍ଗେ ବାସ୍ତବ ଯୁଗ ପ୍ରତି ଦୃଷ୍ଟି ଆକର୍ଷଣ କରିଛି ଓ ନବଯୁଗର ବୈଜୟନ୍ତୀ ପତାକା ଉଡ଼ାଇଛି ।

ତତ୍କାଳୀନ ସ୍ୱାଧୀନତା ସଂଗ୍ରାମରେ ଯୋଗ ଦେବାକୁ କାଳିନ୍ଦୀଙ୍କର ଇଚ୍ଛା ଥିଲେ ବି ଆଇ.ଏ.ର ଦ୍ୱିତୀୟ ବାର୍ଷିକ ଛାତ୍ର ଥିଲାବେଳୁ ବିବାହ କରିଥିବାରୁ ତାଙ୍କର ସେ ବାସନା ପୂରଣ ହୋଇ ପାରି ନ ଥିଲା । ବି.ଏ. ପାଶ୍ କଲାପରେ ସେ ଚାହିଁଥିଲେ ଏପରି ଗୋଟିଏ ଚାକିରି କରିବେ ଯେପରି ଗାନ୍ଧିବାଦୀଭାବେ ଜୀବନ କଟାଇବା ସାଙ୍ଗେ ସାଙ୍ଗେ ପରିବାର ପ୍ରତିପୋଷଣ ମଧ କରିପାରିବେ । ତେଣୁ ସେ ସମବାୟ ପରିଚାଳନାରେ ପ୍ରଶିକ୍ଷିତ ହୋଇ କୁଜଙ୍ଗଠାରେ ସମବାୟ ସମିତି କେନ୍ଦ୍ରରେ ମ୍ୟାନେଜର ରୂପେ ଯୋଗ ଦେଲେ । ଏହି ଚାକିରିରେ ସେବା ସନ୍ତୋଷ ସାଙ୍ଗକୁ ପଲ୍ଲୀ ଗ୍ରାମମାନଙ୍କୁ ଗସ୍ତ କରି ଗ୍ରାମ୍ୟ ଜୀବନ ସଙ୍ଗେ ଘନିଷ୍ଠ ହୋଇ ପାରିଲେ । ଏହି ସମୟରେ ତାଙ୍କ ଲେଖାଗୁଡ଼ିକ ପ୍ରେମ ଓ ଗଭୀର ମାନବିକ ସମ୍ବେଦନପୂର୍ଣ୍ଣ ଥିଲା ।

କୁଜଙ୍ଗରୁ ପୁରୀ ବଦଳି ହେଲା । ଫଳରେ ସାମାଜିକ ସାହିତ୍ୟିକ ଓ ରାଜନୈତିକ ମେଳାପର ନବୀକରଣ ହେଲା । ଏହି ସମୟରେ ଲେଖିବା ପାଇଁ ଯଥେଷ୍ଟ ଉପାଦାନ ମିଳିଥିଲେ ସୁଦ୍ଧା ଗୋଟିକ ପରେ ଗୋଟିଏ ହୋଇ ଦୁଇଟି ପିଲାଙ୍କ ମୃତ୍ୟୁ ତାଙ୍କୁ ବିଷାଦଗ୍ରସ୍ତ କଲା । ଏପରି ଏକ ଦୁଃଖଦ କାଳରେ ତାଙ୍କର ବଦଳି ହେଲା କଟକ । ଏଠାରେ ତାଙ୍କର କନ୍ୟା ନନ୍ଦିନୀଙ୍କର ଜନ୍ମ ଏବଂ ଦୁଇଟି ମାସର ଚେଷ୍ଟାରେ ଲେଖା, ସୁଖ୍ୟାତ ଉପନ୍ୟାସ 'ମାଟିର ମଣିଷ' ଓ କାବ୍ୟ ନାଟିକା 'ସୌମ୍ୟା' ।

ସେ 'ସବୁଜ ସାହିତ୍ୟ ସମିତି' ଓ ବନ୍ଦ ରହିଥିବା ସାହିତ୍ୟପତ୍ର 'ଯୁଗବୀଣା'ର ପୁନର୍ବାର ପରିଚାଳନା ପାଇଁ ଉଦ୍ୟମ କଲେ । ଏଥିପାଇଁ ତାଙ୍କୁ କେତେକ ପ୍ରଭାବଶାଳୀ ରକ୍ଷଣଶୀଳ ବ୍ୟକ୍ତିଙ୍କୁ ସାମନା କରିବାକୁ ପଡ଼ିଲା । ସେତେବେଳେ ତାଙ୍କର ବନ୍ଧୁ ଶରତ ମୁଖାର୍ଜୀ ସହକାରୀ ସମବାୟ ନିବନ୍ଧକ ଥିବାରୁ ସେ ଦୁହେଁ ସାହିତ୍ୟ ବ୍ୟବସାୟ କଲେଣି ବୋଲି ଗୁଜବ ଉଠିଲା । ଫଳରେ ଶରତଙ୍କ ବଦଳି ହେଲା ବିହାର ଏବଂ ତାର କିଛିଦିନ ପରେ ଆର୍ଥିକ ଦୁଃସ୍ଥିତି ଆଳରେ କାଳିନ୍ଦୀଙ୍କୁ ଚାକିରିରୁ ବିଦାୟ କରାଗଲା ।

ଏପରି ବେକାର ଥିବାବେଳେ ତାଙ୍କ ପାଖରେ ତିନୋଟି ଚାକିରି ପାଇଁ ପତ୍ର ମିଳିଲା । (୧) ଜାମସେଦ୍‌ପୁର ସମବାୟ ସମିତି ସେକ୍ରେଟାରୀ ପଦ, କେନ୍ଦ୍ରାପଡ଼ା ସମବାୟ ବ୍ୟାଙ୍କ ମ୍ୟାନେଜର ଓ ମୟୂରଭଞ୍ଜ ଗେଜେଟ୍‌ର ସଂପାଦକ ।

ଏହି ସମୟରେ ଇଚ୍ଛାପୁରଠାରେ ସାହିତ୍ୟ ସମ୍ମିଳନୀରେ ମୁଖ୍ୟବକ୍ତା ହେବାକୁ ନିମନ୍ତ୍ରଣ ପାଇ ସେଠାକୁ ଗଲେ । ସେଠାରେ ସମସାମୟିକ ଓଡ଼ିଆ ସାହିତ୍ୟ ବିଷୟରେ ନୂତନ ଦୃଷ୍ଟିଭଙ୍ଗୀ ସମ୍ପନ୍ନ ବକ୍ତୃତା ପ୍ରଦାନ କରି ସଭିଙ୍କ ଦୃଷ୍ଟି ଆକର୍ଷଣ କଲେ ।

ସମ୍ମିଳନୀରୁ ଫେରି ବାରିପଦାରେ ମୟୂରଭଞ୍ଜ ଗେଜେଟ୍ ସଂପାଦକ ହେବାକୁ ମନସ୍ଥ କଲେ । କାରଣ ତାଙ୍କ ବଡ଼ ଭାଇ ଦିବ୍ୟସିଂହ ସେଠାରେ ଷ୍ଟେଟ୍ ଓକିଲ ଥିବାରୁ ସେଠାକାର ବାସିନ୍ଦା ହୋଇ ଯାଇଥିଲେ । ସେଠାରେ ତାଙ୍କ ସହିତ ସାନଭାଇ ଭଗବତୀଙ୍କ ପରିବାର ମଧ୍ୟ ରହୁଥିଲେ । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା । ବିଶ୍ୱନାଥ ଦାଶ ମୁଖ୍ୟମନ୍ତ୍ରୀ ଥିବାବେଳେ କାଳିନ୍ଦୀ ସରକାରୀ ଛାପାଖାନାର 'ହେଡ୍ ରିଡ଼ର୍' ଭାବେ କଟକ ଫେରିଲେ ।

ବାରିପଦାରେ ଥିବାବେଳେ 'ପ୍ରିୟଦଶ୍ରି' ନାଟକ ଓ କେତେକ କବିତା ସଂଗ୍ରହ କରି ପ୍ରକାଶ କରିଥିଲେ । ମୟୂରଭଞ୍ଜ ଗେଜେଟିଅର୍ ସଂପାଦକ ଭାବେ ଇଂରାଜୀ ''ମୟୂରଭଞ୍ଜ କ୍ରନିକ୍ଲ୍'' ଓ ଓଡ଼ିଆ ''ଭଞ୍ଜ ପ୍ରଦୀପ'' ସଂପାଦନା କଲେ । ବାରିପଦା ଠାରେ ସାହିତ୍ୟ - ସଂସ୍କୃତି ଚର୍ଚ୍ଚା ନିମନ୍ତେ 'ସାହିତ୍ୟ ସଂସଦ' ଗଠନ କଲେ । ସେତେବେଳେ ''ଷ୍ଟେଟ୍‌ସମାନ'' ଓ ''ଆସୋସିଏଟେଡ୍ ପ୍ରେସ୍ ଅଫ୍ ଇଣ୍ଡିଆ'' ଇଂରାଜୀ କାଗଜମାନଙ୍କର ସମ୍ବାଦଦାତା ଭାବେ କାର୍ଯ୍ୟ ମଧ୍ୟ କରୁଥିଲେ ।

କଟକ ଫେରି ବନ୍ଧୁ ଶରତ ମୁଖର୍ଜିଙ୍କ ଘରେ ଭଡ଼ାରେ ରହିଲେ । ଦୋତାଲାରେ ରହି ସାନଭାଇ ଭଗବତୀ କମ୍ୟୁନିଷ୍ଟ ପାର୍ଟି ଗଢ଼ିଲେ ଓ ପ୍ରଗତିବାଦୀ ସାହିତ୍ୟ ସୃଷ୍ଟି ପାଇଁ ନବଯୁଗ ସାହିତ୍ୟ ସଂସଦ ପ୍ରତିଷ୍ଠା କଲେ ଓ ତାର ମୁଖପତ୍ର ରୂପେ 'ଆଧୁନିକ' ସାହିତ୍ୟ ପତ୍ର ପ୍ରକାଶ କଲେ । କାଳିନ୍ଦୀଙ୍କୁ ଘରଖର୍ଚ୍ଚ ତୁଲାଇବାକୁ ୪ ଘଣ୍ଟା ଅଧିକା କାମ କରିବାକୁ ପଡୁଥିବାରୁ ସକାଳ ୮ ଟାରୁ ଯାଇ ରାତି ୯ ଟା ବେଳେ ଫେରୁଥିଲେ । ଭଗବତୀଙ୍କ ରାଜନୀତି ବିଷୟରେ ସେ ଖବର ରଖୁ ନଥିଲେ, ମାତ୍ର ସାହିତ୍ୟ ସାଧନା ସହିତ ଜଡ଼ିତ ଥିଲେ ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଲାଗିଲା । ଗାନ୍ଧିଜୀଙ୍କ ନିଷ୍ପତ୍ତି ଅନୁସାରେ ଦେଶରୁ କଂଗ୍ରେସୀ ମନ୍ତ୍ରିମଣ୍ଡଳମାନେ ଇସ୍ତଫା ଦେଲେ । ଓଡ଼ିଶାରେ ମଧ୍ୟ ତାହା ହିଁ ଘଟିଲା । ରାଜନୈତିକ

କାରଣରୁ କାଳିନ୍ଦୀଙ୍କୁ ଚାକିରି ହରାଇବାକୁ ହେଲା । ହତାଶ ହୋଇ ମାସକୁ ଷୋଳ ଟଙ୍କାର ଗୋଟିଏ ଟିଉସନ୍ ଧରିଲେ । ଯୋଗକୁ ଦୈନିକ ''ଆଶା'' ପତ୍ରିକାର ସଂପାଦକୀୟ ଲେଖିବା ନିମନ୍ତେ ମାସକୁ ଟ୪୦ଙ୍କା ଲେଖାଏଁ ମିଳିଲା । ଏହି ଦୁଇ ସୂତ୍ରର ଆୟ ମାସିକ ଗୁଜୁରାଣ ମେଣ୍ଟାଇବାକୁ ଯଥେଷ୍ଟ ହେଲା ।

ପୂର୍ବାଞ୍ଚଳ ଗଡ଼ଜାତ ରାଜାମାନେ ଗୋଟିଏ ପବ୍ଲିସିଟି ବ୍ୟୁରୋ କଲେ ଓ ତାର ମୁଖ୍ୟ କାର୍ଯ୍ୟାଳୟ କଲିକତାରେ ଥିଲା । କାଳିନ୍ଦୀବାବୁ ଓଡ଼ିଶା ଦାୟିତ୍ୱ ନେଇ କଟକରେ ରହିଲେ । ଏହା ଫଳରେ ତାଙ୍କୁ ଦେଶସାରା ବୁଲିବାକୁ ପଡ଼ିଲା ଓ ବିଭିନ୍ନ ପ୍ରକାର ଲୋକଙ୍କ ସଂପର୍କରେ ଆସିବାକୁ ହେଲା । ରାଜଶାସନର ଅତ୍ୟାଚାର ବିରୋଧୀ ଗାନ୍ଧିବାଦୀ ନେତାଙ୍କ ସହ ତାଙ୍କର ସଂପର୍କ ଓ ଓଡ଼ିଶାରେ କମ୍ୟୁନିଷ୍ଟ ପାର୍ଟି ପ୍ରତିଷ୍ଠାତା ଭଗବତୀଙ୍କ ବଡ଼ଭାଇ ହୋଇଥିବାରୁ ରାଜାମାନଙ୍କ ସନ୍ଦେହର ବଳୟ ଭିତରେ ଥାଇ ମଧ୍ୟ କାଳିନ୍ଦୀଚରଣ ସାଲିସ୍ କରି କାର୍ଯ୍ୟ ସଂପାଦନ କଲେ ।

ବଡ଼ଭାଇ ଦିବ୍ୟସିଂହ ବାରିପଦାରେ ମଲେ । କାଳିନ୍ଦୀ ଅନ୍ତ୍ୟେଷ୍ଟିକ୍ରିୟାବେଳେ ପାଖରେ ନ ଥିବାରୁ ମନରେ ଗଭୀର ଦୁଃଖ ଅନୁଭବ କଲେ । ମାଆଙ୍କୁ ଧରି କଟକ ଫେରିଲେ । ଭଗବତୀ ଅନୁଗୁଳ ଜେଲରୁ ଫେରି ପୁଣି କମ୍ୟୁନିଷ୍ଟ ପାର୍ଟି କାମରେ ଲାଗି ରହିଲେ । ଝିଅ ନନ୍ଦିନୀ କକାଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ କମ୍ୟୁନିଷ୍ଟ ଆନ୍ଦୋଳନରେ ଯୋଗଦେଲେ । ପରେ ରାଜନୀତିରେ ନାମ ଅର୍ଜନ କରି ଓଡ଼ିଶାର ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଆଦି ହୋଇପାରିଲେ ।

୧୯୪୭ ରେ 'ମାଟିର ମଣିଷ' ର ଦ୍ୱିତୀୟ ଭାଗ 'ଲୁହାର ମଣିଷ' ପ୍ରକାଶ ପାଇଲା । କଟକରେ 'ସ୍ୱପ୍ନପୁରୀ' ନିର୍ମାଣ କରି ସ୍ଥାୟୀ ବାସିନ୍ଦା ହେଲେ ।

ସ୍ୱାଧୀନ ଭାରତରେ ପୋଲିସ୍ ନନ୍ଦିନୀଙ୍କ କାର୍ଯ୍ୟକଳାପ ପାଇଁ ତାଙ୍କ ଘରକୁ ଆସି ଖାନତଲାସି କଲେ ।

ଇଷ୍ଟର୍ଣ୍ଣ ଷ୍ଟେଟ୍ସ୍ ପବ୍ଲିସିଟି ବ୍ୟୁରୋ ଚାକିରି ଚାଲିଗଲା । କାଳିନ୍ଦୀ କେବଳ ଲେଖା ଉପରେ ନିର୍ଭର କଲେ । ପାଠ୍ୟପୁସ୍ତକ ଲେଖିବା ଓ ସାହିତ୍ୟ ସଭାମାନଙ୍କରେ ଭାଷଣ ଦେବା କାର୍ଯ୍ୟ କଲେ । ଜୟପୁର, ଶାନ୍ତି ନିକେତନ, ଲକ୍ଷ୍ନୌ, ବନାରସ୍, ଦିଲ୍ଲୀ, କେରଳ, ମୁମ୍ବାଇ ଆଦି ସ୍ଥାନମାନଙ୍କରୁ ଏଥିପାଇଁ ନିମନ୍ତ୍ରଣ ଆସୁଥିଲା । ଫଳରେ ପଣ୍ଡିତ ଜବାହରଲାଲ ନେହେରୁ, ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍ଙ୍କ ପରି ବିଖ୍ୟାତ ଲୋକମାନଙ୍କ ସହ ଘନିଷ୍ଠ ପରିଚୟ ଘଟିଲା । ପି.ଇ.ଏନ୍. (କବି ନାଟ୍ୟକାର ଶିକ୍ଷାବିତ୍ ଔପନ୍ୟାସିକ ମାନଙ୍କ ସଂସ୍ଥା) ସମ୍ମିଳନୀ, ସାହିତ୍ୟ ଏକାଡ଼େମୀ ପାଠଚକ୍ର ଆଦିରେ ଯୋଗଦେଇ ନିଖିଳ ଭାରତ ବୁଦ୍ଧିଜୀବୀମାନଙ୍କ ସଂସ୍ପର୍ଶରେ ଆସିଲେ ଓ ଓଡ଼ିଶାରେ ଏହି ସବୁ ଅନୁଷ୍ଠାନର ଶାଖା ଖୋଲିବା ଦିଗରେ ଆଗ୍ରହୀ ହେଲେ ।

୧୯୪୮ ରେ କଟକରେ ବେତାରକେନ୍ଦ୍ର ସ୍ଥାପିତ ହେବାରୁ ସେଠାରେ ନିଯୁକ୍ତି ପାଇ ସାହିତ୍ୟ ସାଧନା ନିମନ୍ତେ ଯଥେଷ୍ଟ ସୁଯୋଗ ମିଳିଲା । ସେ ସାହିତ୍ୟ ବିଭାଗର ପ୍ରଯୋଜକ ଦାୟିତ୍ୱ ନେଇଥିଲେ । ୧୯୭୦ ବେଳକୁ ରୋଗ ଯୋଗୁ ଶାରୀରିକ କଷ୍ଟ ଭୋଗ କଲେ । ତାଙ୍କୁ ଆହୁରି ବଡ଼ ପଦବୀର ସୁଯୋଗ ଆସିଥିଲେ ହେଁ ସେ ତାକୁ ଗ୍ରହଣ କରିପାରିଲେ ନାହିଁ ।

ନନ୍ଦିନୀ କେନ୍ଦ୍ରରେ ମନ୍ତ୍ରୀ ଓ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହେଲେ । କାଳିନ୍ଦୀଙ୍କୁ ବହୁତ ସ୍ୱୀକୃତି ମିଳିଲା । ୧୯୭୧ରେ ପଦ୍ମଭୂଷଣ ସମ୍ମାନରେ ସମ୍ମାନିତ ହେଲେ ଓ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ରତ୍ନ ସଦସ୍ୟ ହୋଇଥିଲେ । ସାରା ଜୀବନ ସାହିତ୍ୟ ସେବାକୁ ବ୍ରତ କରିଥିଲେ । ରାଜନୈତିକ ଆନ୍ଦୋଳନ ପ୍ରତି ସଚ୍ଚେତନ ଥିଲେ ହେଁ ନିଜେ ରାଜନୀତିରେ ଜଡ଼ିତ ନଥିଲେ । ୧୯୭୨ ମସିହାରେ ତାଙ୍କ ଆତ୍ମଜୀବନୀ ''ଅଙ୍ଗେ ଯାହା ଲିଭେଇଛି'' ପ୍ରକାଶ ପାଇଲା । ତାଙ୍କର ଦୀର୍ଘ ଜୀବନ ଥିଲା ସାହିତ୍ୟ କୈନ୍ଦ୍ରିକ । ସଂସାର ଚଳାଇବା ପାଇଁ ଯେତିକି ପ୍ରୟୋଜନ ସେତିକି ମିଳିଯିବା ପରେ ଆଉ ଅର୍ଥ ଉପାର୍ଜନ କରି ଧନୀ ହେବା ସ୍ୱପ୍ନ ତାଙ୍କର ନଥିଲା ।

ଆଗରୁ କୁହାଯାଇଥିବା ପୁସ୍ତକ ମାନଙ୍କ ବ୍ୟତୀତ ତାଙ୍କର ଅନ୍ୟାନ୍ୟ ରଚନା ଗୁଡ଼ିକ ହେଲା, ଆଜିର ମଣିଷ (ଉପନ୍ୟାସ), ଦ୍ୱାଦଶୀ, ରାଶିଫଳ, ଶେଷରଶ୍ମି, ସାଗରିକା (ଗଳ୍ପ) ମୋ କବିତା, କ୍ଷଣିକ ସତ୍ୟ, ମହାଦୀପ, ମନେନାହିଁ, ଛୁରୀଟିଏ ଲୋଡ଼ା (କବିତା) ପଦ୍ମିନୀ (ନାଟକ) ଭକ୍ତ କବି ମଧୁସୂଦନ, କର୍ମବୀର ଗୌରୀଶଙ୍କର (ଜୀବନୀ) ସାହିତ୍ୟ ସମାଚାର, ସାହିତ୍ୟିକା, ନେତୃତ୍ୱ ଓ ନେତୃତ୍ୱ (ପ୍ରବନ୍ଧ) ଯାହା ଅଙ୍ଗେ ନିଭାଇଛି (ଆତ୍ମଚରିତ), ଉକ୍ତ ପୁସ୍ତକଗୁଡ଼ିକ ଗ୍ରନ୍ଥାବଳୀ ମଧ୍ୟରେ ସ୍ଥାନିତ । 'ମାଟିର ମଣିଷ' ଭାରତର ବିଭିନ୍ନ ଭାଷାରେ ଅନୁବାଦିତ ଏବଂ ଚଳଚ୍ଚିତ୍ରରେ ରୂପାୟିତ ହୋଇ ଦେଶ ବିଦେଶର ପୁରସ୍କାର ଲାଭ କରିଅଛି । ଜଣେ ଆତ୍ମସଚେତନ ଶିଳ୍ପୀ ଭାବରେ ସେ ଥିଲେ ମାନବ ବାଦର ବାର୍ତ୍ତାବହ ଓ ଗଣଚେତନା ଅଭିମୁଖୀ । ଦଳିତ, ନିଷ୍ପେଷିତ, ଚାଷୀ ମୂଲିଆ ଓ ଶ୍ରମିକର ଚିତ୍ର ଫୁଟାଇବାରେ କାଳିନ୍ଦୀଚରଣଙ୍କ ଲେଖନୀ ଥିଲା ଚିର ଜାଗ୍ରତ । ତାଙ୍କ ଲେଖନୀରେ ଜୀବନର ହା'ହୁତାଶ ଭିତରେ ବଞ୍ଚି ରହିବାର ମୂର୍ଚ୍ଛନା ଥିଲା ଜୀବନ୍ତ ।

''ଧ୍ୱଂସର ଡାକ ଭାସି ଆସେ ଦଶ ଦିଗୁଁ
ରଣ ଭେରୀ ତୋର ସେ ଭୀମ ଶବଦେ ମିଶୁ
ମରଣ ତୋହର ମୁକତିରେ ବୀର ଶିଶୁ,
ତିନିକାଳ ତୋର ଜୀବନର ଅନୁଯାୟୀ
ପଥ କାହିଁ ପଥ କାହିଁ ?



# ରବୀନ୍ଦ୍ର ଆଲୋକରେ ମାଟିର ମଣିଷ

**ଦାଶରଥି ଦାସ**

(ଏକ)

ଶ୍ରୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ସାହିତ୍ୟିକ ଜୀବନରେ ସ୍ପଷ୍ଟ ଦୁଇଟି ପର୍ବ ଅଛି– ସବୁଜ ପର୍ବ ଓ ପ୍ରଗତି ପର୍ବ । ଓଡ଼ିଆ ସାହିତ୍ୟ ଇତିହାସରେ ଯଥାକ୍ରମେ ସବୁଜଚେତନା ଓ ପ୍ରଗତିଚେତନା ପ୍ରବର୍ତ୍ତନ କ୍ଷେତ୍ରରେ ଯେଉଁମାନେ ନେତୃତ୍ୱ ଘେନିଥିଲେ ତନ୍ମଧ୍ୟରେ ଶ୍ରୀ ପାଣିଗ୍ରାହୀଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ । ସବୁଜଚେତନାର ସେ ଥିଲେ ଅନ୍ୟତମ ପ୍ରବର୍ତ୍ତକ ଆଉ ପ୍ରଗତିଚେତନାର ଅନ୍ୟତମ ମୁଖ୍ୟ ଉଦ୍‌ଗାତା– ନବଯୁଗ ସାହିତ୍ୟ ସଂସଦର ସଭାପତି । ପ୍ରଥମ ପର୍ବରେ ସେ ଥିଲେ ବଡ଼ ରୋମାଣ୍ଟିକ୍– ମାନବିକ ବାଦ (humanism) ର ପ୍ରବକ୍ତା ଓ ଯୌବନର ଉପାସକ । ଅନ୍ତର୍ଦୃଷ୍ଟି ଥିଲା କଳ୍ପନାପ୍ରବଣ, ରଙ୍ଗ ବିହ୍ୱଳ ଓ ଭାବାବେଗ ମୁଗ୍ଧ । ହିରୋ ତାଙ୍କର ବିଶ୍ୱକବି ରବୀନ୍ଦ୍ରନାଥ । ଦ୍ୱିତୀୟ ପର୍ବରେ ସେ ପୂରା କମ୍ୟୁନିଷ୍ଟ, ଯଦିଓ ସକ୍ରିୟ ସଭ୍ୟ ଭାବରେ ତାଙ୍କର ଭୂମିକା ଅନୁପସ୍ଥିତ । ଏବେ ସେ ମାର୍କସ୍‌ବାଦରେ ପ୍ରଦୀକ୍ଷିତ । ଦୃଷ୍ଟିଭଙ୍ଗି ଶାଣିତ ସାମାଜିକ ବାସ୍ତବାନୁଗ । ହିରୋମାର୍କସ୍ । ପଥମ ପର୍ବର ମାନବିକବାଦ ପରିବର୍ତ୍ତେ ଏବେ ସେ ସମାଜତାନ୍ତ୍ରିକ ବାସ୍ତବବାଦ (Socialist realism) କୁ ସ୍ୱୀକାର କରି ନେଇଛନ୍ତି । ସମାଜର ଭୌତିକ ଉନ୍ନତି ଏକମାତ୍ର ଧ୍ୟେୟ; ଧର୍ମ ନାହିଁ କି ଭଗବାନ ନାହାନ୍ତି । ସବୁ ମଣିଷ ସମାନ; ଅନ୍ନ, ବସ୍ତ୍ର ଓ ବାସଗୃହରେ ସମସ୍ତଙ୍କର ସମାନ ଅଧିକାର । ମାନବିକବାଦ ମଣିଷକୁ ଈଶ୍ୱରଙ୍କ ଉପରେ ସ୍ଥାନ ଦେଇଥାଏ ଅବଶ୍ୟ; କିନ୍ତୁ ପୂରା ଅସ୍ୱୀକାର କରେନାହିଁ କି ସୈତାନ ବୋଲି ଅଭିହିତ କରେନାହିଁ । କାଳିନ୍ଦୀଚରଣଙ୍କ ସାରସ୍ୱତ ଜୀବନର ପ୍ରଥମ ପର୍ବର କବିତାରେ ମର୍ତ୍ତ୍ୟଭୂମି ଓ ମର୍ତ୍ତ୍ୟର ମଣିଷ ଜୀବନ ପ୍ରତି ଅନୁରାଗ ଓ ସମ୍ମାନବୋଧ ଦୁର୍ଲକ୍ଷ୍ୟ ନୁହେଁ, ଧନୀ ଦରିଦ୍ରଙ୍କ ମଧ୍ୟରେ ଥିବା ବ୍ୟବଧାନଜନିତ ଦୁଃଖ ବି ଅଛି, କିନ୍ତୁ ତାହାକୁ ସାମ୍ୟବାଦୀ ମାନସିକତାର ଉପକ୍ରମ ବୋଲି ଭାବିଲେ ଭୁଲ ହେବ । ସେହି ପର୍ବରେ ସେ କିଛି କମ୍ ଆଧ୍ୟାତ୍ମିକ ନୁହନ୍ତି– ତାଙ୍କର ସେହି ଜଗତ ଅଛି; ଜଗଦୀଶ୍ୱର ବି ଅଛନ୍ତି– ଯିଏ କରି କରାଉଥାନ୍ତି ସବୁ । ସେଦିନ କାଳିନ୍ଦୀଚରଣ ଭାବୁଥିଲେ ରୋମାଣ୍ଟିକ୍ ନ ହେଲେ କବି ହୋଇ ହୁଏ ନାହିଁ । ଦ୍ୱିତୀୟ ପର୍ବରେ ହୃଦୟଙ୍ଗମ କଲେ କମ୍ୟୁନିଷ୍ଟ ନ ହୋଇ କେହି କବି ହୋଇ ନ ପାରନ୍ତି; ଯଦିଓ ସାମ୍ୟବାଦୀ କବିଙ୍କର

ରୋମାଣ୍ଟିକ୍ ହେବା କ୍ଷେତ୍ରରେ ବାଧା ଅନୁପସ୍ଥିତ । ଆମ କବି ଅନନ୍ତ ପଟ୍ଟନାୟକ କ'ଣ କିଛି କମ୍ ରୋମାଣ୍ଟିକ୍ ? ଅବଶ୍ୟ ତାଙ୍କର ସ୍ୱପ୍ନ ଅଲଗା, କଳ୍ପନାର ରଙ୍ଗ ନିଆରା । ଏଠାରେ ପ୍ରଶ୍ନ ଉଠେ କାଳିନ୍ଦୀ ଚରଣଙ୍କ କବିମନର ପର୍ବରୁ ପର୍ବାନ୍ତର ଯାତ୍ରା କ'ଣ ଶ୍ଳାଘ୍ୟ ? ଶ୍ଳାଘ୍ୟ ନିଶ୍ଚୟ । ତାଙ୍କ କବିମନଟି ଚଳିଷ୍ଣୁ । ବୟୋବୃଦ୍ଧି, ଅନୁସନ୍ଧାନର ବିସ୍ତାର ଓ ପରିବର୍ତ୍ତିତ ସାଂସ୍କୃତିକ ସାମାଜିକ ରାଜନୈତିକ ପରିବେଶ ପ୍ରତି ସଚେତନତା ବଶତଃ କବିମନ ତାଙ୍କର ପ୍ରତ୍ୟୟରୁ ପ୍ରତ୍ୟୟାନ୍ତର ଯାତ୍ରା କରିଛି ସ୍ୱାଭାବିକ ଭାବରେ । ତଦ୍ୱାରା ଓଡ଼ିଆ ସାହିତ୍ୟର କି ଲାଭ ହୋଇଛି ? ଓଡ଼ିଆ କବିତା ବୈଚିତ୍ର୍ୟ ଅର୍ଜିଛି, ନୂଆ ଭାଷା ଓ ଛନ୍ଦରେ ଜଗତ, ଜୀବନ ଓ ଭଗବାନଙ୍କ ସମ୍ପର୍କରେ ନୂଆ କଥା କହିଛି, ସାମାଜିକ ଅନ୍ୟାୟ ଓ ଅନୀତିର ପ୍ରତିବାଦ କରିଛି,ବକ୍ତବ୍ୟର ପୁନରାବୃତ୍ତି ହାତରୁ ରକ୍ଷା ପାଇଛି, ସାମ୍ୟବାଦୀ ବିଚାର ଓ ଉପଲବ୍ଧି ଅନୁସାରେ ଯେଉଁ ନୀତି ଓ ଆଦର୍ଶ ମନୁଷ୍ୟ ପ୍ରଜାତି ପକ୍ଷରେ କଲ୍ୟାଣକର ତାହା ପ୍ରଚାରିଛି । ତେବେ କାଳିନ୍ଦୀ ଚରଣଙ୍କ କବିତାର କ୍ଷତି ଘଟିଛି ଯଥେଷ୍ଟ । ବିଶେଷ ଏକ ମତବାଦ ପାଖରେ ଦାୟବଦ୍ଧ ବୋଧକରିବା କବିତା ପକ୍ଷରେ ସ୍ୱାସ୍ଥ୍ୟକର ହେବ କିପରି ? ପାର୍ଟି କି ମତବାଦ ପାଖରେ ପ୍ରତିବଦ୍ଧ ଲେଖକ ଉତ୍କୃଷ୍ଟ ସାହିତ୍ୟ ସୃଷ୍ଟି କରିଥାନ୍ତି କ୍ୱଚିତ । ପ୍ରଥମ ପର୍ବରେ କାଳିନ୍ଦୀଚରଣଙ୍କ ଗଳ୍ପ, କବିତା ଓ ଉପନ୍ୟାସ ପରିଣତି ପଥରେ ଯେପରି କ୍ରମଶଃ ଅଗ୍ରସର ହେଉଥିଲେ, ମାନସ ବୃତ୍ତିର ପରିବର୍ତ୍ତନ ସଂଘଟିତ ହୋଇ ନଥିଲେ ସେଗୁଡ଼ିକ ଦିନକୁଦିନ ଆହୁରି ଯଥେଷ୍ଟ ଅଧିକ ପରିଣତ ଓ ପରିପକ୍ୱ ହୋଇ ପାରିଥାନ୍ତେ । ମହତ୍ ସାହିତ୍ୟିକମାନେ ସମଗ୍ର ସାରସ୍ୱତ ଜୀବନକାଳ ନିଜକୁ ନିରନ୍ତର ପୁନରାବୃତ୍ତ କରିଥାନ୍ତି । କାବ୍ୟଚେତନାରେ ବୈଚିତ୍ର୍ୟ ଅବଶ୍ୟ ନଥାଏ, କିନ୍ତୁ ଦିନୁଦିନ ତାହା ପରିଣତ ହେଉଥାଏ । କାଳିନ୍ଦୀଚରଣଙ୍କ ରଚନାରେ ପରିଣତି ଅନୁପସ୍ଥିତି, ସିଦ୍ଧି ବିଭଙ୍ଗ । ପ୍ରଥମ ପର୍ବର ଚୂଡ଼ାନ୍ତ କୃତିତ୍ୱ ଅଛି 'ମାଟିର ମଣିଷ'ରେ । ମାଟିର ମଣିଷ ସ୍ୱୟଂସମ୍ପୂର୍ଣ୍ଣ ଏକ ଉପନ୍ୟାସ । ପ୍ରକାଶିତ ୧୯୩୧ରେ । ଏହାର ୧୬ ବର୍ଷ ପରେ କାଳିନ୍ଦୀଚରଣ ଲେଖିଛନ୍ତି 'ଲୁହାର ମଣିଷ' । ଆଖ୍ୟାନ ବସ୍ତୁ ଦୃଷ୍ଟିରୁ ଏହା ମାଟିର ମଣିଷର ଦ୍ୱିତୀୟ ଖଣ୍ଡ ହୋଇପାରେ । କିନ୍ତୁ ଚେତନା ଓ ଚରିତ୍ରରେ ସମ୍ପୂର୍ଣ୍ଣ ଭିନ୍ନ ଏକ ସୃଷ୍ଟି । କଥା ସାହିତ୍ୟରେ ଯେଉଁଠି ଜୀବନ ସମଗ୍ରତାର ଉପଲବ୍ଧି ଅଭିପ୍ରାୟ, ସେଠାରେ ସୃଷ୍ଟି ଭିତରୁ ଜନ୍ମ ଘେନିଥାଏ ବଢ଼ି ଚାଲିବାର ପ୍ରବଣତା । କାଳିନ୍ଦୀଚରଣ କିନ୍ତୁ ଏକାସାଙ୍ଗରେ ସମୟ ଓ ମଣିଷର ଗତିଶୀଳତା ଦେଖାଇବାକୁ ଚାହିଁଛନ୍ତି । ଯାହା ନିଜ ଜୀବନରେ ଘଟିଛି, ତାହା ଘଟିବ ବରଜୁ ଜୀବନରେ । ସେ ହେଲେ ମାନବିକବାଦୀରୁ ସାମ୍ୟବାଦୀ, ବରଜୁ ହେବ ମାଟିର ମଣିଷରୁ ଲୁହାର ମଣିଷ । 'ଲୁହାର ମଣିଷ'ରେ ବସ୍ତୁଭିତ୍ତିକ କାଳଚେତନା ଓ ସମାଜ ପ୍ରଗତିର ଦିଗନ୍ତ ପ୍ରତି ଲେଖକଙ୍କର ସଜାଗ ଦୃଷ୍ଟି ଆମେ ଦେଖିଥାଉ । କିନ୍ତୁ ସେଥିରେ 'ମାଟିର ମଣିଷ'ର କବିତ୍ୱ ନାହିଁ କି ଜୀବନସ୍ପର୍ଶୀ ସତେଜ ଭାବ ନାହିଁ । ତେଣୁ ତାହାଠାରୁ ବିଚ୍ଛିନ୍ନ କରି 'ମାଟିର ମଣିଷ'ର ମୂଲ୍ୟାୟନ କରିବାକୁ ହୁଏ ।

(ଦୁଇ)

ସାରସ୍ୱତ ଜୀବନର ପ୍ରଥମ ପର୍ବରେ କାଳିନ୍ଦୀଚରଣଙ୍କ ମନ ଓ ମନନ ପରିଣତିର ଯେଉଁ ସ୍ତରକୁ ଉତ୍ତୀର୍ଣ୍ଣ ହୋଇଥିଲା, ତାହାର ସବୁ ସ୍ୱାକ୍ଷର 'ମାଟିର ମଣିଷ'ରେ ଉତ୍‌କୀର୍ଣ୍ଣ । ସେଦିନ ଧ୍ରୁବ ଆସ୍ତିକ୍ୟବୋଧରେ ତାଙ୍କର ସମଗ୍ର ଅସ୍ତିତ୍ୱ ଉଦ୍ଦୀପ୍ତ ରହିଥିଲା । ସାହିତ୍ୟସୃଷ୍ଟି ହୋଇ ଉଠିଥିଲା ଅମୃତତତ୍ତ୍ୱର ସନ୍ଧାନ । ପୁଣ୍ୟ, ମଣିଷପଣିଆ, ବୈକୁଣ୍ଠ ଯାତ୍ରା ଓ 'କରି କରାଉଥାଏ ମୁହିଁ' ଆଦି ଭାଗବତବାଣୀର ଅନୁଷଙ୍ଗରୁ 'ମାଟିର ମଣିଷ'ରେ ଯେଉଁ ଆଧ୍ୟାତ୍ମିକ ଆବହ ସୃଷ୍ଟ ସେଥିରେ ବୁଢ଼ା ଶାମ ପଧାନ ସ୍ୱାଭାବିକ ଭାବରେ ନାତି ନାତୁଣୀଙ୍କ ପାଇଁ ଧର୍ମର ଉତ୍ତରାଧିକାର ରଖି ଦେଇଯାଇଛନ୍ତି । କ'ଣ ସେହି ଧର୍ମର ସ୍ୱରୂପ ? ଈଶ୍ୱରଙ୍କ ପ୍ରତି ଅନୁରାଗ ତ ନିଶ୍ଚୟ । ତେବେ ସେତିକି ମାତ୍ର ନୁହେଁ । ବୁଢ଼ାଙ୍କ ପାଇଁ ଧର୍ମ ସେହି ଲକ୍ଷ୍ୟସ୍ଥଳ — ନୀତି ଓ ସତ୍ୟତା ଅବଧାରିତ ଭାବରେ ମଣିଷକୁ ଯେଉଁଠି ଉପନୀତ କରାଇଥାଏ । ଆଉ କିଛି କାଳ ପରେ କାଳିନ୍ଦୀଚରଣ ଧର୍ମର ଏହି ତାତ୍ପର୍ଯ୍ୟ ଅସ୍ୱୀକାର କରିବେ । ମାର୍କସ୍‌ଙ୍କଠାରୁ ନୂଆ କଥା ଶିଖିଥିବେ । ଧର୍ମ ମଣିଷର ଇଚ୍ଛାପୂରଣର କଳ୍ପନା ମାତ୍ର— ଅଫିମଜାତୀୟ ମାଦକଦ୍ରବ୍ୟଠାରୁ ବିଶେଷ ମୂଲ୍ୟବାନ ନୁହେଁ । ଫ୍ରଏଡ଼ ଶିଖାଇଥିବେ, ଧର୍ମ ଏକ କାଳ୍ପନିକ ଆଶ୍ୱାସ – ମଣିଷର ଯୌଥ ସ୍ନାୟବିକ ବିକାର – ମରୀଚିକାର ଛଳନା । ଏପରି କ୍ଷେତ୍ରରେ ଭଗବାନ ନ ଥିଲେ କିଛି ମନ୍ଦ ହୁଅନ୍ତା ନାହିଁ । କାଳିନ୍ଦୀଚରଣ କ'ଣ ପ୍ରଗତିପର୍ବରେ 'ମାଟିର ମଣିଷ' ଲେଖି ପାରିଥାନ୍ତେ ? 'ମାଟିର ମଣିଷ'ରେ ସେ କେବଳ ପ୍ରଚଳିତ ଭାଗବତୀୟ ଧାରଣା ଘେନି ଆମ ଭାରତୀୟ ଅଧ୍ୟାତ୍ମ -ଐତିହ୍ୟର ଉତ୍ତରାଧିକାର ସାବ୍ୟସ୍ତ କରି ନାହାନ୍ତି । ଆନୁଷଙ୍ଗିକ ଭାବରେ ସମୁଦ୍ୟତ ସେଦିନର ଅନେକ ବିଚାର ଓ ବିବେଚନାକୁ କାହାଣୀ ବୟନରେ ବ୍ୟବହାର କରିଛନ୍ତି । ଉପନ୍ୟାସଟିରେ ମହାତ୍ମା ଗାନ୍ଧୀଙ୍କର ନାମୋଲ୍ଲେଖ ନାହିଁ । ଅଥଚ, ସତ୍ୟାଗ୍ରହୀ ବରଜୁ ଚରିତ୍ର ସହିତ ଗାନ୍ଧିଜୀଙ୍କ ଚରିତ୍ରର ଐକ୍ୟ ଏତେ ପ୍ରକଟ ଯେ, ତାହାକୁ ବ୍ୟାଖ୍ୟା କରି ବୁଝାଇବାକୁ ପଡ଼େ ନାହିଁ । ପରାଧୀନ ଭାରତବର୍ଷର ଲୋଭ-ଦ୍ୱନ୍ଦ୍ୱ-ଈର୍ଷା-ସଙ୍କୁଳ କାଳର ବେଦନା କାଳିନ୍ଦୀଚରଣଙ୍କୁ ଯେଉଁ ମହତ୍ ଆଦର୍ଶ ମଣିଷଟିଏ ଗଢ଼ିବାକୁ ଉନ୍ମୁଖ କରି ଦେଇଥିଲା, ସେ ତାଙ୍କୁ ମହାତ୍ମା ଗାନ୍ଧୀଙ୍କ ଭିତରେ ଦେଖିପାରିଥିଲେ । ଏପରିକି ଦେଶବିଭାଗର ବାସ୍ତବ ସତ୍ୟ ବାସ୍ତବ ରୂପ ପରିଗ୍ରହ କରିବା ପୂର୍ବରୁ ତାଙ୍କ କଳ୍ପନାର ଦର୍ପଣରେ ଆଭାସିତ ରହିଥିଲା, ଆଉ ସେ ଗାନ୍ଧୀଙ୍କ ସମାଧାନଟିକୁ ହିଁ ନିଃଶ୍ରେୟ ମଣିଥିଲେ । ପଧାନ ଡିହ ଉପରେ ପାଚେରି ଉଠିବ ନାହିଁ କି ବିଲ ମଝିରେ ହିଡ଼ ପଡ଼ିବ ନାହିଁ । ଭାରତ ବିଭାଜିତ ହେବ ନାହିଁ । ଦେଶ ବିଭକ୍ତ ହେଲା, କଳ୍ପନା ବିଡ଼ମ୍ବିତ ହେଲା, ଅଚରିତାର୍ଥ ରହିଗଲା । ତେବେ କ'ଣ ଗାନ୍ଧୀ ଦର୍ଶନ ଉପନ୍ୟାସଟିର ମୂଳ ଭିତ୍ତି ନୁହେଁ ? ଗାନ୍ଧୀ ଦର୍ଶନ ମୂଳଭିତ୍ତି ପ୍ରସ୍ତୁତ କରିଛି ନିଶ୍ଚୟ, କିନ୍ତୁ ତାହା ଏକମାତ୍ର ଉପାଦାନ ନୁହେଁ । ଏବେ ଶ୍ରୀ ଦେବେନ୍ଦ୍ର କୁମାର ଦାଶ ଦର୍ଶାଇଛନ୍ତି, ''ସମବାୟ ଆନ୍ଦୋଳନର ବାର୍ତ୍ତା ଓ ଦର୍ଶନ 'ମାଟିର ମଣିଷ'

ଉପନ୍ୟାସର ମୌଳଭିତ୍ତି ।'' (କାଳିନ୍ଦୀଚରଣଙ୍କ ପ୍ରବନ୍ଧର ଭାବବସ୍ତୁ, କାଳିନ୍ଦୀଚରଣ ସମୀକ୍ଷାୟନ,- ପୃଷ୍ଠା - ୧୯୮) ସେ ପ୍ରମାଣ ସ୍ୱରୂପ ଦୁଇଟି ପ୍ରବନ୍ଧର ନାମୋଲ୍ଲେଖ କରିଛନ୍ତି । ଯଥା : ସମବାୟ ଓ ସ୍ୱାଧୀନତା ଓ ସମବାୟ ଓ ସମାଜ ସଂସ୍କାର । ସିଦ୍ଧାନ୍ତ ଅଯୌକ୍ତିକ ନୁହେଁ । କାଳିନ୍ଦୀଚରଣ ତାଙ୍କ ସାରସ୍ୱତ ଜୀବନର ସବୁଜ ପର୍ବରେ ବିଶ୍ୱାସ କରୁଥିଲେ , ''ଧନୀ ଦରିଦ୍ର କି ଥିଲା ବାଲା ନ ଥିଲା ବାଲା ଘେନି ସମାଜରେ ଯେଉଁ ଅସାମ୍ୟ ସମସ୍ୟା ଅଛି ସମବାୟ ଏ ସମସ୍ୟାର ସମାଧାନ ବହୁ ପରିମାଣରେ କରିପାରେ — ଧନୀ ଲୋକମାନଙ୍କ ସହିତ ଲଢ଼ାଇ ବା ଦ୍ୱନ୍ଦ୍ୱ ନ କରି ଶାନ୍ତ ସମାହିତ ଭାବରେ ।'' (ସମବାୟ ଓ ସ୍ୱାଧୀନତା) ଉଦ୍ୟମଟି ଅଛି 'ମାଟିର ମଣିଷ'ରେ । ପ୍ରଗତି ପର୍ବରେ ଏଥିପାଇଁ ଛୁରୀ ଓ ଚାବୁକ ଖୋଜାଯାଇଛି । ଦ୍ୱନ୍ଦ୍ୱ ଓ ଲଢ଼ାଇକୁ ଅବଶ୍ୟ ପ୍ରୟୋଜନୀୟ ମନେ କରାଯାଇଛି । ବରଜୁ ସେଦିନ ହୋଇଛି ସମବାୟ ଆନ୍ଦୋଳନର ଉଦ୍‌ଗାତା । ଯେଉଁଠି ନେତାର ଆବଶ୍ୟକତା ନାହିଁ — ''ଏହି ଆନ୍ଦୋଳନ ହିଁ ନିଜେ ନିଜର ନେତା.... । ପ୍ରତ୍ୟେକ ମଣିଷକୁ ନିଜେ ନିଜର ନେତୃତ୍ୱ ଗ୍ରହଣ କରିବାକୁ ହେବ – ସମବାୟ ମନ୍ତ୍ରର ଅଭ୍ୟାସ କରି, ଅନୁଶୀଳନ କରି ।'' ବରଜୁ ସେହି ତପସ୍ୟା ସେହି ସାଧନାର ପ୍ରତିଭୂ । ସେତେବେଳେ ମହାତ୍ମା ଗାନ୍ଧୀଙ୍କ ରଚନାତ୍ମକ ବିଚାରରେ ଗ୍ରାମ ଉନ୍ନୟନର ଭୂମିକା ଥିଲା, ବ୍ୟାପକ ଅର୍ଥରେ ସମବାୟ ଆନ୍ଦୋଳନ ସେହି ଗ୍ରାମ ଉନ୍ନୟନ କାର୍ଯ୍ୟକ୍ରମର ଅନ୍ତର୍ଭୁକ୍ତ ଅବଶ୍ୟ । ତେବେ, ଶ୍ରୀ ଦାଶଙ୍କ ସିଦ୍ଧାନ୍ତ ପାଖରେ ଅଟକି ଗଲେ 'ମାଟିର ମଣିଷ'ର ଆହୁରି ଅନେକ ତାତ୍ପର୍ଯ୍ୟ ଓ ସୌନ୍ଦର୍ଯ୍ୟ ଅନ୍ତରାଳରେ ରହିଯିବ । ତାହାର ପରିକଳ୍ପନା ପଛରେ ଆହୁରି ନାନା ସ୍ତରର ବାସ୍ତବତା ଅଛି । ମହତ୍ ସୃଷ୍ଟିର ଅନେକ ସଦ୍‌ଗୁଣ 'ମାଟିଣ ମଣିଷ'ରେ ବର୍ତ୍ତମାନ । ମହତ୍ ସୃଷ୍ଟିକୁ ବହୁ କୋଟିଯୁକ୍ତ ହୀରାଖଣ୍ଡ ସହିତ ତୁଳନା କରାଯାଇଥାଏ । କେଉଁ ଆଡ଼କୁ ତାହା କେମିତି କେଉଁ ତାତ୍ପର୍ଯ୍ୟର ଭଂଗୀରେ ସ୍ୱାଭାବିକ ହିଲ୍ଲୋଳରେ ଉଜ୍ଜ୍ୱଳ ଦିଶିବ, ତାହା ଦର୍ଶକର ଦେଶକାଳ, ବିଦ୍ୟାବୁଦ୍ଧି ଓ କଳ୍ପନାସମ୍ବେଦନା ଉପରେ ନିର୍ଭର କରିଥାଏ । ଯୁଗେ ଯୁଗେ ନୂଆ ନୂଆ ଉଦ୍ଭାସନରେ ମହତ୍ ସୃଷ୍ଟି ନିରନ୍ତର ଯଥାର୍ଥ ପାଠକକୁ ମୁଗ୍ଧ ଓ ଚକିତ କରିବାର ସାମର୍ଥ୍ୟ ଅର୍ଜିଥାଏ । 'ମାଟିର ମଣିଷ'ର ତାତ୍ପର୍ଯ୍ୟ ତେଣୁ ଏଇଠି ଶେଷ ହେଉନାହିଁ । ତା'ର ମୌଳଭିତ୍ତିର ସବୁ ଉପାଦାନ ଉଦ୍‌ଘାଟନ କରିବା କଥା ଭାବି ହେଉନାହିଁ । ରଚନାଟି କବିତ୍ୱପୂର୍ଣ୍ଣ । କବିତ୍ୱ ବି ତା'ର ଆଉ ଏକ ବଳିଷ୍ଠ ଉପାଦାନ । ସରଳ ସହଜ ସାଧାରଣ ଜୀବନ ରୂପାୟନରେ ଔପନ୍ୟାସିକ ମଣିଷକୁ ଶିଳ୍ପରେଖାରେ ଏମିତି ଜୀବନ୍ତ ଆଙ୍କି ଦେଇଛନ୍ତି ଯେ, ବାସ୍ତବ କାହାଣୀ ମଧ୍ୟରୁ ଜୀବନର ନୂଆ ଦିଗନ୍ତଟିଏ ଉନ୍ମୋଚିତ ହୋଇଯାଏ, ମନେହୁଏ ଶେଷ ପର୍ଯ୍ୟନ୍ତ ମାଟିର ମଣିଷ ବିଶେଷ କୌଣସି କାଳର କି ବିଶେଷ କୌଣସି ଅଞ୍ଚଳର ସାମାଜିକ ଆଲେଖ୍ୟ ଚିତ୍ରଣ ନୁହେଁ, ସାମଗ୍ରିକ ଭାବରେ ଜୀବନ ପ୍ରବାହର ଦୁର୍ଜ୍ଞେୟ ରହସ୍ୟର ସନ୍ଧାନ ମାତ୍ର — ବାସ୍ତବ ପରିପ୍ରେକ୍ଷୀରେ ଯାହାର ଅସ୍ତିତ୍ୱ ଅବଧାରଣ କରିହୁଏ ନାହିଁ । ମାଟି ଓ ମଣିଷର ନୂଆ ମହିମା ଅନୁସନ୍ଧାନର ଅବଲମ୍ବନ ହୋଇଉଠିଛି ଓଡ଼ିଶାର ପ୍ରାକୃତିକ ଓ ସାମାଜିକ ଚିତ୍ର । ଗାଁ ଭୂଇଁର ଚାଷିମୂଲିଆଙ୍କ ବାସସ୍ଥାନ, ଜୀବନଯାତ୍ରା, ବିଶ୍ୱାସ, ସଂସ୍ଥାନ

ଅର୍ଥନୈତିକ ପରିସ୍ଥିତି, ଜୀବିକାର ସଙ୍କଟ ଓ ଧୂର୍ତ୍ତତା ସହିତ ମୁକାବିଲାର କଥା କହିଛନ୍ତି କାଳିନ୍ଦୀଚରଣ – ମନେ ହେଉଛି ଯେମିତି ଚିତ୍ରଣରେ କେଉଁଠି କଳ୍ପଲୋକର ରଙ୍ଗ ଲାଗିନାହିଁ । ସବୁ ଯେମିତି ବାସ୍ତବିକ, ସେମିତି ବି ସତ୍ୟ ଓତପ୍ରୋତ । ଅଥଚ ଶେଷ ପର୍ଯ୍ୟନ୍ତ ଉପନ୍ୟାସଟି ପଲ୍ଲୀ ଜୀବନର କବିତାଟିଏ ହୋଇଉଠେ । ପଲ୍ଲୀ ଜୀବନ ମଧ୍ୟରେ ଯେ ଅନାବିଷ୍କୃତ ଏପରି ଏକ ମାଧୁର୍ଯ୍ୟ ଅଛି, କାବ୍ୟୋଚିତ ରସସୃଷ୍ଟିର ଏପରି ଅନାସ୍ୱାଦିତ ପୂର୍ବ ରହସ୍ୟ ବିସ୍ମୟ ଅଛି, ମାଟିର ମଣିଷ ଲେଖା ହୋଇ ନଥିଲେ ତାହା ଆମେ ଜାଣିଥାନ୍ତୁ କିପରି ? ଲୋକ ମୁହଁର ଭାଷା ପୁଣି ଏତେ ବ୍ୟଞ୍ଜନାଢ଼୍ୟ – ତାହା ଆମେ ଉପଲବ୍ଧ କରିଥାନ୍ତୁ କିପରି ? କବିତ୍ୱ ଉପନ୍ୟାସଟିକୁ ନୂଆ ମାତ୍ରା ଯୋଗାଇଛି । କବି କାଳିନ୍ଦୀଚରଣ ନିଜର ଆବେଗାନୁଭୂତିରୁ ସଂଗୃହୀତ ଉପକରଣ ବ୍ୟବହାର କରିଛନ୍ତି, ପଲ୍ଲୀ ଓଡ଼ିଶାର ଯେଉଁ ପ୍ରାତିସ୍ୱିକ ପରିଚୟ ପାଇଥିଲେ ତାହାକୁ ହିଁ ସହଜ କାହାଣୀ ନିର୍ମାଣରେ ଏମିତି କବିତ୍ୱାକ୍ରାନ୍ତ କରି ବ୍ୟବହାର କରିଛନ୍ତି ଯେ, 'ମାଟିର ମଣିଷ' ବିନା ଚେଷ୍ଟାରେ ହୋଇ ଉଠିଛି ବାସ୍ତବ – ଉଦ୍ଭାବନ କରିବାକୁ ପଡ଼ିନାହିଁ ପ୍ଲଟ୍, ସବୁ ସ୍ୱତଃସିଦ୍ଧ ଓ ସ୍ୱାଭାବିକ । ଏତଭିନ୍ନ କବିତ୍ୱମଣ୍ଡିତ ବର୍ଣ୍ଣନା ବି ଅଛି । ଦ୍ରଷ୍ଟବ୍ୟ :

୧. ହରିମିଶ୍ରଙ୍କ ପ୍ରକୃତିକୁ ଅଭିବ୍ୟକ୍ତି ଦେବାକୁ ଦୃଷ୍ଟାନ୍ତ ଦିଆଯାଇଛି ।

କେଳା ବାଟରେ ଚାଲି ଯାଉଁ ଯାଉଁ ଭଲ ଚଢ଼େଇ ପଲେ ଦେଖିଲେ ଯେମିତି ମାରିବା ପାଇଁ ଲୋଭ କରେ, କେଉଟ ବାଟରେ ନଈ ପାଣିରେ ମାଛ ଗୁଡ଼ିଏ ଖେଳୁଥିବାର ଦେଖିଲେ ଜାଲଖଣ୍ଡ ପାଖରେ ନାହିଁ ବୋଲି ଯେମିତି ଦୁଃଖ କରେ, ଏ ସେମିତି ।

– ମଣିଷଖିଆ ମଣିଷ ହରି ମିଶ୍ରେ । ତାଙ୍କ ଲୋଲୁପ ହିଂସ୍ର ଦୃଷ୍ଟିକୁ କବିତା ବିନା ଆଉ କେଉଁ ଭାଷାରେ ବୁଝାଇ ହୋଇଥାନ୍ତା ଏମିତି !

୨. ବରଜୁ ଓ ହାରାବୋଉଙ୍କ ଦୃଢ଼ ଦାମ୍ପତ୍ୟ ବନ୍ଧନର ମାଧୁର୍ଯ୍ୟ ବୁଝାଇବାକୁ କବିତାଟିଏ ଲେଖିଛନ୍ତି ଔପନ୍ୟାସିକ ।

ହାରାବୋଉ ବରଜୁର ମୁହଁକୁ ଚାହିଁ ଟିକିଏ ମୁରୁକି ହସିଲା, ବରଜୁ ବି ସ୍ତ୍ରୀକୁ ଚାହିଁ ଟିକିଏ ହସିଲା । ଦୁହେଁ ଆଉ କେଉଁ ଦିନ ଏମିତି ଚାହାଁଚାହିଁ ହୋଇ ହସିଛନ୍ତି, ଦୁହିଁଙ୍କର ମନେ ନାହିଁ । ବରଜୁ ଯେପରି ଦର୍ପଣରେ ଚାହିଁଲାପରି ତା' ହସକୁ ଦେଖୁଛି ହାରାବୋଉ ମୁହଁରେ — ହାରାବୋଉ ନିଜ ହସକୁ ଦେଖୁଛି ବରଜୁ ମୁହଁରେ । ଅଶିଣ ମାସର କାଟକେନ୍ଦୁ ପରି ନେଳିଆ ପାଣିରେ କୁଆଁର ପୁନିଅଁ ଜହ୍ନ ଯେମିତି ହସେ — ଚାନ୍ଦ ବିଚାରେ ସେ ଅଛି ପାଣି ଭିତରେ — ପାଣି ଭାବେ ସେ ଅଛି ଚାନ୍ଦ ଭିତରେ ! ଦୁହିଁଙ୍କ ଦେହ ଉଲୁସି ପଡ଼େ — ଦୁହିଁଙ୍କ ରୋମ ଟାଙ୍କୁରି ଉଠେ ।

ଉପମା ହୋଇ ଉଠିଛି ଉପନ୍ୟାସର ଭାଷା, ଅଳଙ୍କରଣ ନୁହେଁ, ଲେଖକ, ପାଠକ ଓ ଚରିତ୍ର ଉପଲବ୍ଧ କରୁଛନ୍ତି ଏକାଘଟରେ ଏକାବେଳେକେ ଦାମ୍ପତ୍ୟ ବୁଝାମଣାର ଆନନ୍ଦ ଓ ଉତ୍ସାହ ।

୩. ବରଜ୍ଜୁର ଜୀବନ ବିଶ୍ଳେଷଣ :

କେତେକାଳ ଧରି ମଣିଷ ଜାତିର ସୁଅ ବହି ଯାଉଛି । ମଣିଷ ଉପରେ ମଣିଷ ମାଡ଼ିକୁଦି ଚାଲିଯାଉଛି । ଗୋଡ଼ ତଳରୁ ଦରମଲା ମଣିଷର ମଲି ମଲି ଡାକ ତା କାନକୁ ଶୁଭୁନାହିଁ । ସେ ସୁଅରେ ଭାସି ଚାଲିଛି । ଦଣ୍ଡେ ହେଲେ ଅଟକି ଠିଆ ହେଉନାହିଁ —କିଏ ଡାକୁଛି ଟିକିଏ ଖାଲି ଶୁଣିବା ......... କେତେ ମଣିଷ ଗଲେଣି, ରାଜାମହାରାଜା ଗଲେଣି – ତୁ ଟିକିଏ ଅଟକି ଯା । ଶୁଣୁ ହେଲେ କିଏ ଡାକୁଛି – ମଣିଷ ପାଟି ନା ?

ଜୀବନ ପ୍ରବାହରେ କେବଳ ବ୍ୟକ୍ତିଗତ ଆଶାଆକାଙ୍‌କ୍ଷା ଓ ସ୍ନେହମମତା କାଠିକୁଟାପରି ଭାସି ଯାଉ ନାହିଁ । ମଣିଷ ବି ଭାସି ଚାଲିଛି ଅସହାୟ ଭାବରେ । ବରଜୁ ପ୍ରବାହ ବିରୁଦ୍ଧରେ ମଣିଷର ନିରୁପାୟତା ଦେଖି ଯେତେ ବିଚଳିତ ନୁହେଁ, ତାହାଠାରୁ ବଳି ଦୁଃଖିତ ମଣିଷର ନିର୍ମମତା ଦେଖି, ''ଯାହାର ଧନ ଅଛି, ବଳ ଅଛି, ଶକ୍ତି ଅଛି, ତାଙ୍କୁ କ'ଣ ଧର୍ମ ସଦ୍‌ବୁଦ୍ଧି ଦିଅନ୍ତା ନାହିଁ ? ଭଲ କଥା ଶିଖାନ୍ତା ନାହିଁ ? ଦୁଃଖୀ ଦୁର୍ବଳଙ୍କ ପାଇଁ ଦୟାର୍ଦ୍ର କରି ପାରନ୍ତା ନାହିଁ ? ମଣିଷକୁ ମଣିଷ କରନ୍ତା ନାହିଁ ?

ପ୍ରଗତି ପର୍ବରେ ଏପରି କବିତା ଆଉ କବି ଲେଖି ପାରିବେ ନାହିଁ । ଧର୍ମ ଓ ସତ୍ୟର ମଙ୍ଗଳବିଧାନ କଥାରେ ତାଙ୍କର ଆଉ ବିଶ୍ୱାସ ରହିବ ନାହିଁ । ଧର୍ମ ଓ ସତ୍ୟ ଉପରେ ଭରସା ରଖି ଜୀବନର ସ୍ତୂପୀକୃତ ଭାର ଓ ଝଡ଼ଝଞ୍ଜା ଲାଘବ କରିବାକୁ ଚାହିଁବା ବରଂ ମୂର୍ଖତା । ସେ ପାଠକକୁ ଡାକି କହିଛନ୍ତି, ବିଜ୍ଞତା ହେଉଛି ଭଗବାନଙ୍କ ଆନୁକୂଲ୍ୟ ଓ ମଙ୍ଗଳମୟତା ପ୍ରତି ଆସ୍ଥା ନ ରଖିବା । ସେଥିପାଇଁ ପରବର୍ତ୍ତୀ କାଳରେ ତାଙ୍କ ରଚନା ପାଠକଙ୍କ ଶିଳ୍ପ-ବିବେକ ଓ ସୁକୁମାର ବୃତ୍ତିଗୁଡ଼ିକୁ ମନୁଷ୍ୟତ୍ୱର ସମ୍ଭାବନା ବିଷୟରେ ସମୁତ୍ସୁକ ନ କରାଇ ସାଂସାରିକ ବୁଦ୍ଧି ଓ ବିଚାର ଆଡ଼କୁ ଉନ୍ମୁଖ କରାଇଦିଏ ।

(ତିନି)

ସାରସ୍ୱତ ଜୀବନର ଯେଉଁ ପର୍ବରେ କାଳିନ୍ଦୀଚରଣ ସବୁଜ ଚେତନାର ଅନ୍ୟତମ ପ୍ରବକ୍ତା ଥିଲେ, ସେହି ପର୍ବର ପରିଣତ ଅନ୍ତିମ ପର୍ଯ୍ୟାୟରେ 'ମାଟିର ମଣିଷ' ରଚିତ । ତେଣୁ ସେଥିରେ ରବୀନ୍ଦ୍ର ପ୍ରଭାବ ଅନୁସନ୍ଧାନ ଅପ୍ରତ୍ୟାଶିତ ନୁହେଁ । କାରଣ ସବୁଜଚେତନା ଓ ଓଡ଼ିଆ କବିତାରେ ରବୀନ୍ଦ୍ରାନୁସରଣ ପ୍ରାୟ ଏକା କଥା । ସବୁଜ ଚେତନା ବିରୁଦ୍ଧରେ ଅପବାଦ ଅଛି, ଏହା ଅଯଥା ଓଡ଼ିଆ କାବ୍ୟଭାଷା ଓ କାବ୍ୟଚେତନାକୁ ବଙ୍ଗାଭିମୁଖୀ କରି ଦେଇଛି, ନିକଟକୁ ଛାଡ଼ି ସୁଦୂର ମୋହରେ ଘାରି ହୋଇଛି । କିନ୍ତୁ 'ମାଟିର ମଣିଷ'ରେ ଅଛି ଠିକ୍ ଓଲଟା କଥା । ଏଥିରେ ଓଡ଼ିଆ ଭାଷା ଓ ଓଡ଼ିଆଙ୍କ ଆତ୍ମସତ୍ତାର ଅବୈକଲ୍ୟ ଅନୁସନ୍ଧାନ ଆମୂଳାନ୍ତ ସମୁଦ୍ୟତ ଅଛି । ଯେକୌଣସି ପାଠକ ଏଥିରେ ଓଡ଼ିଶାର ମୁହଁ ଦେଖିପାରିବେ, ଯେଉଁ ଓଡ଼ିଆ ମାନବିକ ଓ ପ୍ରାକୃତିକ ରହସ୍ୟରେ ପରିପୂର୍ଣ୍ଣ । ସବୁ ନିବିଡ଼ ନିକଟର ସାମଗ୍ରୀ ।

ଏକାନ୍ତ ସ୍ୱାଭାବିକ ଘରୁଆ ଜୀବନ ଭିତରେ ବାରମ୍ବାର ଜଗନ୍ନାଥ ଦାସଙ୍କ ଭାଗବତ ବାଣୀ ଉଚ୍ଚାରିତ ହୋଇ ଏହାକୁ ଏପରି ଶୁଚିବନ୍ତ ନିର୍ମଳ ଓଡ଼ିଶୀ ଚରିତ୍ର ଯୋଗାଇଛି ଯେ, ରବୀନ୍ଦ୍ର ପ୍ରଭାବ ସଂଜାତ ବଂଗଭାଷା କି ବଂଗ ସଂସ୍କୃତିର ସାମାନ୍ୟ ଚିହ୍ନ ପର୍ଯ୍ୟନ୍ତ ନାହିଁ । ରବୀନ୍ଦ୍ର ପ୍ରଭାବ ଖୋଜିବା ଅମୂଳକ ବରଂ । 'ମାଟିର ମଣିଷ'ରେ କାଳିନ୍ଦୀଚରଣ ନିଜସ୍ୱ ଦେଶକାଳ, ଐତିହ୍ୟ, ସଂସ୍କୃତି ଓ ସମାଜକୁ ମୁଖ୍ୟ ବିଷୟ ଭାବରେ ଗ୍ରହଣ କରିଛନ୍ତି ନିଶ୍ଚୟ । କିନ୍ତୁ ରବୀନ୍ଦ୍ର ପ୍ରଭାବରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ପାରିନାହାନ୍ତି । ସବୁଜ କବିତାରେ ରବୀନ୍ଦ୍ର ପ୍ରଭାବ ଥିଲା ପିଲାଳିଆ ସ୍ତରର । ସବୁଜ କବିଙ୍କର ସେଦିନ ଉତ୍ସାହ ଥିଲା, କିନ୍ତୁ ରବୀନ୍ଦ୍ରଙ୍କ କବିତାର ବ୍ୟାପ୍ତି ଓ ଗଭୀରତା କି ରବୀନ୍ଦ୍ରଙ୍କ କାବ୍ୟଶିଳ୍ପର ଅନୁପମତ୍ୱ କଳିବାର ସାମର୍ଥ୍ୟ ନଥିଲା । ସେଥିପାଇଁ ସେମାନେ ତାହାର ଭାବୁକତାକୁ ଭାବାଳୁତା ବୋଲି ବୁଝିଥିଲେ । ଦିବ୍ୟଦୃଷ୍ଟିକୁ ଦିବାସ୍ୱପ୍ନରେ ପର୍ଯ୍ୟବସିତ କରିଥିଲେ । ମାଟିର ମଣିଷରେ କାଳିନ୍ଦୀଚରଣ ରବୀନ୍ଦ୍ରଙ୍କ କାବ୍ୟଭାବନାର ଗଭୀରତାକୁ ବୁଝିବାର ସାମର୍ଥ୍ୟ ଅର୍ଜିଛନ୍ତି; ପରିଣତ ବୁଦ୍ଧିପ୍ରବୀଣ ସାହିତ୍ୟିକ ହୋଇ ଉଠିଛନ୍ତି, ରିକ୍ତ ସୂତ୍ରରେ ସଂଗୃହୀତ ଭାବଚେତନାକୁ ସ୍ୱକୀୟ ସୃଷ୍ଟିର ପ୍ରାଣସ୍ପନ୍ଦନ କିପରି ମିଶାଇ ଦିଆଯାଇ ପାରିବ ସେହି ଶିଳ୍ପ କୌଶଳ ବି ଶିଖିଛନ୍ତି ।

ଉପନ୍ୟାସ ଲେଖାଯାଏ କାହିଁକି ? ଉପନ୍ୟାସ ରଚନାକୁ କୁହାଯାଏ, 'a philosophical occupation' – ଏକ ଦାର୍ଶନିକ ବୃତ୍ତି । ସମସାମୟିକ ଘଟନାର ସାମ୍ବାଦିକତା ନୁହେଁ କି କାଳ ବିଶେଷର ଇତିହାସ ରଚନା ନୁହେଁ । ବୃହତ୍ତର ମାନବସତ୍ତା ସମ୍ବନ୍ଧରେ ଅନୁସନ୍ଧିତ୍ସା ଓ ତାହାର କୌଣସି ଏକ ଅପରିଜ୍ଞାତ ଦିଗର ଆବିଷ୍କାର ଉପନ୍ୟାସ ସୃଷ୍ଟିର ସଚେତନ ଆଭିମୁଖ୍ୟ ଅଟେ । ଉପନ୍ୟାସ ବିଶେଷ ହୋଇ ବି ହୁଏ ନିର୍ବିଶେଷ । 'ମାଟିର ମଣିଷ'ରେ ଔପନ୍ୟାସିକ ମଣିଷ ଜୀବନ ସମ୍ବନ୍ଧରେ ଯେଉଁ ଦିଗଟି ଆବିଷ୍କାର କରିଛନ୍ତି ତାହାର ଭାବାଦର୍ଶ ରବୀନ୍ଦ୍ର ସାହିତ୍ୟରେ ଉତ୍କୀର୍ଣ୍ଣ ଥିଲା । ରବୀନ୍ଦ୍ର ନାଥ କାଳିନ୍ଦୀଚରଣଙ୍କୁ ପଥର ସନ୍ଧାନ ଦେଇଛନ୍ତି, ପଦକ୍ଷେପର ଛନ୍ଦଟି କିନ୍ତୁ ତାଙ୍କର ଏକାନ୍ତ ନିଜସ୍ୱ – ସେଇଥିପାଇଁ 'ମାଟିର ମଣିଷ' ଏତେ ମୌଳିକ ଓ ସାର୍ଥକ । ସେଥିରେ ରବୀନ୍ଦ୍ର ପ୍ରଭାବ ସ୍ପଷ୍ଟ ଓ ସଚେତନ ଚିନ୍ତାର ଫଳ ନୁହେଁ । ସେଇଥିପାଇଁ ତାହାର ଶିଳ୍ପଗତ ମୂଲ୍ୟ ଏତେ ଅପରିସୀମ ।

(ଚାରି)

କବି ରବୀନ୍ଦ୍ର ନାଥ (୧୮୬୧-୧୯୪୧) ଏକାନ୍ତ ଭାବରେ ଆଧୁନିକ ପୃଥିବୀର ମଣିଷ । କିନ୍ତୁ ତାଙ୍କ ଭିତରେ ଉତ୍ତରାଧିକାର-ସୂତ୍ରରେ ଉପନିଷଦର ବୀଜ ଉପ୍ତ ଥିଲା । ପ୍ରାଚୀନ ଭାରତବର୍ଷର ତପୋବନବାସୀ ଋଷିଙ୍କ ସାଧନା ଉଜ୍ଜୀବିତ ଥିଲା । ତାଙ୍କ ଚେତନାରେ ତେଣୁ ଦୁଇଟି ପୁରୁଷ ଏକାଠି ବାସ କରିଛନ୍ତି, ଜଣେ ବିଷୟୀ ଅନ୍ୟ ଜଣକ ଗୃହତ୍ୟାଗୀ । ଜଣେ ଜୀବଧର୍ମା, ଅନ୍ୟଜଣକ ବିଶ୍ୱଧର୍ମା । ଜଣକର ଆସକ୍ତି ମୃଣ୍ମୟ, ଅନ୍ୟ ଜଣକର ମୁମୁକ୍ଷା

ଚିନ୍ମୟ । ସେଇଥିପାଇଁ ରବୀନ୍ଦ୍ରନାଥଙ୍କ ସାରସ୍ୱତ ବ୍ୟକ୍ତିତ୍ୱ ଜୀବଲୀଳା ଓ ବିଶ୍ୱଲୀଳାର ଦ୍ୱନ୍ଦ୍ୱ ଓ ସଂଗତିରେ ଗଢ଼ି ଉଠିଥିଲା । କବି ଭାବନ୍ତି ତାଙ୍କ ସାହିତ୍ୟିକ ସତ୍ତାରେ ଏ ଯେଉଁ ଅସମ୍ପୂର୍ଣ୍ଣତା ଅଭିମୁଖୀ ଓ ସମ୍ପୂର୍ଣ୍ଣତାକାଙ୍କ୍ଷୀ ଦୁଇଟି ପୁରୁଷଙ୍କ ଦ୍ୱନ୍ଦ୍ୱ ଓ ମୂଲ୍ୟାୟନ, ତାହା ହିଁ ଭଲ ମଣିଷ ଭିତରର ଦ୍ୱନ୍ଦ୍ୱ ଓ ମୂଲ୍ୟାୟନ । ମଣିଷର ଏହି ମାନସିକ ଦ୍ୱନ୍ଦ୍ୱକୁ କବି ଭିନ୍ନ ଭିନ୍ନ ଉପମା ଓ ଚିତ୍ରକଳ୍ପ ମାଧ୍ୟମରେ ଅଭିବ୍ୟକ୍ତି ପ୍ରଦାନ କରିଛନ୍ତି । ଦୁଇଟି ଉଦାହରଣ ଦ୍ରଷ୍ଟବ୍ୟ ।

୧. ଆମାର ତ ମନେ ହୟ, ଆମାର କାବ୍ୟରଚନାର ଏଇ ଏକଟି ମାତ୍ରା ପାଲା । ସେ ପାଲାର ନାମ ଦେଓୟା ଯାଇତେ ପାରେ, ସୀମାର ମଧ୍ୟେଇ ଅସୀମେର ସହିତ ମିଲନ ସାଧନେର ପାଲା । (ଜୀବନ ସ୍ମୃତି)

୨. ଆମାଦେର ପ୍ରକୃତିର ମଧ୍ୟେ ଏକଟି ବନ୍ଧନ - ଅସହିଷ୍ଣୁ ସ୍ୱେଚ୍ଛାବିହାରପ୍ରିୟ ପୁରୁଷ ଏବଂ ଗୃହବାସିନୀ ଅବରୁଦ୍ଧ ରମଣୀ ଦୃଢ଼ ଅବିଚ୍ଛେଦ୍ୟ ବନ୍ଧନେ ଆବଦ୍ଧ ହଇୟା ଆଛେ । ଏକ ଜନ ଜଗତେର ସମସ୍ତ ନୂତନ ନୂତନ ଦେଶ, ଘଟନା ଏବଂ ଅବସ୍ଥାର ମଧ୍ୟେ ନବ ନବ ରସାସ୍ୱାଦ କରିୟା ଆପନ ଅମର ଶକ୍ତିକେ ବିଚିତ୍ର ବିପୁଳ ଭାବେ ପରିପୁଷ୍ଟ କରିୟା ତୁଲିବାର ଜନ୍ୟ ସର୍ବଦା ବ୍ୟାକୁଳ, ଆର ଏକ ଜନ ଶତସହସ୍ର ଅଭ୍ୟାସେ ବନ୍ଧନେ ପ୍ରଥାୟ ପ୍ରଚ୍ଛନ୍ନ ଏବଂ ପରିବେଷ୍ଟିତ । ଏକ ଜନ ବାହିରେର ଦିକେ ଲଇୟା ଯାୟ, ଆର ଏକ ଜନ ଗୃହେର ଦିକେ ଟାନେ । ଏକ ଜନ ବନେର ପାଖି, ଆର ଏକ ଜନ ଖାଁଚାର ପାଖି । (ଆଧୁନିକ ସାହିତ୍ୟ, ବିହାରୀଲାଲ)

ବନପକ୍ଷୀ ଚାହେଁ ଆକାଶ, ଆଉ ପିଞ୍ଜରାବଦ୍ଧ ପକ୍ଷୀ ଚାହେଁ ନୀଡ଼; ତେଣୁ ଏହି ବନପକ୍ଷୀ ଓ ପିଞ୍ଜରାବଦ୍ଧ ପକ୍ଷୀ କଳ୍ପନା 'ନୀଡ଼ ଓ ଆକାଶ' ତଥା 'ଘର ଓ ପଥ'ର ଉପମାନକୁ ଆଶ୍ରୟ କରିଛି କବିଙ୍କ ରଚନାରେ, କେବେ ବା ସାରମେୟ ଓ କୃଷ୍ଣସାର ପ୍ରତୀକକୁ ଅବଲମ୍ବନ କରିଛି; କବିଙ୍କ ପାଇଁ ମଣିଷର ପଥିକ ସତ୍ତା ହିଁ ତାହାର ମାନବସତ୍ତା ।

## (ପାଞ୍ଚ)

କବି ରବୀନ୍ଦ୍ରନାଥଙ୍କ ପରି କାଳିନ୍ଦୀଚରଣ କବିତା ଲେଖିଛନ୍ତି, ଲେଖିଛନ୍ତି ବି ଗଳ୍ପ ଉପନ୍ୟାସ । ଉଭୟଙ୍କ କ୍ଷେତ୍ରରେ କବିତ୍ୱ ସହଯୋଗୀ ହୋଇ ଉଠିଛି କଥାଶିଳ୍ପର । ରବୀନ୍ଦ୍ରନାଥଙ୍କ କ୍ଷୁଦ୍ରଗଳ୍ପ କିଛି କମ୍ କାବ୍ୟଧର୍ମୀ ନୁହେଁ । ଯେଉଁ ଶିଳ୍ପୀ ଏକାଧାରରେ କବି ଓ କଥାଶିଳ୍ପୀ ସାଧାରଣତଃ ତାଙ୍କର ଗୋଟିଏ ଦିଗ ପ୍ରଶ୍ରୟ ପାଇ ଅନ୍ୟଦିଗଟିକୁ ବିପନ୍ନ କରିଥାଏ । ରବୀନ୍ଦ୍ରନାଥ ବ୍ୟତିକ୍ରମ ବୋଧହୁଏ । ତଥାପି ତାଙ୍କ ଉପନ୍ୟାସ କ୍ଷତି ସହିଛି କିଛି, ଆଉ କାଳିନ୍ଦୀଚରଣଙ୍କ କବିତା କଥାଶିଳ୍ପ ତୁଳନାରେ ଅନୁଜ୍ଜ୍ୱଳ ଦିଶିଛି ବିଶେଷ । ତଥାପି କବି ଓ କଥାଶିଳ୍ପୀଙ୍କର ସଙ୍ଗତି ଅଛି ଅନେକତ୍ର । ବିଶେଷତଃ 'ମାଟିର ମଣିଷ'ରେ କବିତ୍ୱ ପ୍ରଶ୍ରୟ ପାଇନାହିଁ କି ଦମିତ ହୋଇ ନାହିଁ ଯଦୃଚ୍ଛା । ଏହି ପ୍ରସଙ୍ଗରେ ତାଙ୍କର ଦୁଇଟି ଗଳ୍ପ ସ୍ମର୍ତ୍ତବ୍ୟ

: ଉପହାର ଓ ମାଂସର ବିଳାପ । ଉପହାର, ମାଂସର ବିଳାପ ଓ ମାଟିର ମଣିଷ – ଏହି ତିନୋଟି ରଚନା ଏକ ପକ୍ଷରେ ଯେମିତି ବାସ୍ତବ ସତ୍ୟକୁ ଲଙ୍ଘନ୍ତି ନାହିଁ, ଅନ୍ୟ ପକ୍ଷରେ ସେମିତି ମହତ୍ତର ଜୀବନାଦର୍ଶକୁ ଅତିକ୍ରମ କରନ୍ତି ନାହିଁ; ବକ୍ତବ୍ୟ ପ୍ରଧାନ ହୋଇ ବି ଭାବନା ନିର୍ଭର ରହିଥାନ୍ତି; କବିତ୍ୱ ସହଯୋଗ କରିଥାଏ କଥାଶିଳ୍ପ ସହିତ । ଏହି ତିନୋଟିରେ ରବୀନ୍ଦ୍ରନାଥଙ୍କ ସୀମା ଓ ଅସୀମ, ଘର ଓ ପଥ, ନୀଡ଼ ଓ ଆକାଶ ତଥା ଜୀବଭାବ ଓ ବିଶ୍ୱଭାବର ଦ୍ୱନ୍ଦ୍ୱ ଓ ସଂଗତି ଦୁର୍ଲକ୍ଷ୍ୟ ରହେନାହିଁ । ତିନୋଟିଯାକ Parable — ବ୍ୟାଖ୍ୟାଗମ୍ୟ ରୂପକ କାହାଣୀ । କିନ୍ତୁ ମନେ ରଖିବାକୁ ହୁଏ ଯେ, ଏ ମଧ୍ୟରୁ କୌଣସିଟି ବାଳାବବୋଧନ ଉଦ୍ଦେଶ୍ୟରେ ରଚିତ ହୋଇ ନାହାନ୍ତି, ଉପହାର ଓ ମାଂସର ବିଳାପ କ୍ଷୁଦ୍ରଗଳ୍ପ; ମାଟିର ମଣିଷ ଉପନ୍ୟାସ । 'Parable'ରେ ତାତ୍ପର୍ଯ୍ୟଟି ପୃଥକଭାବରେ ସଂଯୋଜିତ ହୋଇଥାଏ । ଏଠାରେ ତାତ୍ପର୍ଯ୍ୟ ଗଳ୍ପ ଓ ଉପନ୍ୟାସ ଦେହରେ ଅଙ୍ଗାଙ୍ଗୀ ଭାବରେ ଜଡ଼ିତ, ବରଂ ଅନୁକ୍ତ ଓ ବ୍ୟଞ୍ଜନାଧର୍ମୀ । କୌଣସିଟି ରବୀନ୍ଦ୍ରଙ୍କ ସୀମା ଅସୀମ, ଘର ଓ ପଥ କି ନୀଡ଼ ଆକାଶ ତତ୍ତ୍ୱର ଭାଷ୍ୟ ନୁହନ୍ତି । ଭାବାଦର୍ଶ ଲେଖକଙ୍କ ଅନ୍ତରରେ ଆକାର ଓ ଜୀବନ ପ୍ରାପ୍ତ ହୋଇ ସୃଜିତ ହୋଇ ଉଠିଛି ସ୍ୱତଃସ୍ଫୂର୍ତ୍ତ ଭାବରେ ସର୍ବତ୍ର ।

'ଉପହାର' ଓ 'ମାଂସର ବିଳାପ' ଗଳ୍ପ ପ୍ରଥମେ ବିଚାର୍ଯ୍ୟ । ଦୁଇଟି ଗଳ୍ପରେ ସାମ୍ୟ ଅଛି । 'ଉପହାର' ଗଳ୍ପର ପ୍ରଫୁଲ୍ଲ ମରିଛି, ମରିଛି ବି 'ମାଂସର ବିଳାପ'ର ଜଲି । ମୃତ୍ୟୁ ସ୍ପଷ୍ଟ କରିଦିଏ ଆକ୍ଷରିକ ଅର୍ଥରେ ଉଭୟେ ଜୀବନ୍ତ ଓ ବାସ୍ତବ । କୌଣସିଟି ରୂପକ କି ରୂପକଥା ନୁହନ୍ତି । ବିଶେଷତଃ ରୂପକଥାର ନାୟକ ନାୟିକା କେହି ମରନ୍ତି ନାହିଁ । ଶେଷ ପର୍ଯ୍ୟନ୍ତ ସୁଖ-ସ୍ୱାଚ୍ଛନ୍ଦ୍ୟରେ ଘର ସଂସାର କରିଥାନ୍ତି । କ୍ଷୁଦ୍ରଗଳ୍ପରେ ମରନ୍ତି, ତେବେ କେହି ହଠାତ୍ ମରନ୍ତି ନାହିଁ । ସାହିତ୍ୟରେ ଅକାଳ ମୃତ୍ୟୁ ନାହିଁ । ସାହିତ୍ୟିକ ଯାହାର ମୃତ୍ୟୁ ଘଟାନ୍ତି, ତାହାର ସାହିତ୍ୟ ଲୀଳା ସରିଥାଏ, ଅର୍ଥାତ୍ ସେ ତାହାର ଚରିତ୍ରଟିକୁ ପରିପୂର୍ଣ୍ଣ କରି ଗଢ଼ି ସାରିଥାନ୍ତି । ମୃତ୍ୟୁ ଅନ୍ୟତମ କୌଶଳ ଓ ଅଳଙ୍କରଣ । ମୃତ୍ୟୁକୁ ଅବଲମ୍ବନ କରି ଯେଉଁ ଚରିତ୍ରଟିର ସମାପ୍ତି ଘଟେ, ସେ ତଦ୍ୱାରା ବହୁଗୁଣ ଜୀବନୀଶକ୍ତି ଲାଭ କରିଥାଏ । ପ୍ରଫୁଲ୍ଲ ଓ ଜଲି ମୃତ୍ୟୁ ଗଳ୍ପ ଶେଷ କରିବାର ଅସ୍ତ୍ରନୁହେଁ, ବରଂ ଗଳ୍ପକୁ ଗଳ୍ପଶେଷରେ ଅନେକ କାଳ ଧରି ଅନୁରଣିତ ରଖିବାର କରଣ କୌଶଳ । ଗଳ୍ପ ଦୁଇଟିର ବକ୍ତବ୍ୟ ପ୍ରାୟ ସମାନ । ଉଭୟତ୍ର ମଣିଷ ଭିତରେ ସୀମା ଓ ଅସୀମର ଦ୍ୱନ୍ଦ୍ୱ ଓ ସଂଗତି ପ୍ରତିପାଦ୍ୟ । 'ଉପହାର' ଗଳ୍ପରେ ଅଛନ୍ତି ମାତୃହରା ଦୁଇଟି ଭାଇ – ପ୍ରଫୁଲ୍ଲ ଓ ବସନ୍ତ । ଦୁହେଁ ବାଳକ, ଦୁହେଁ ବି ସୁନ୍ଦର । ବସନ୍ତ ସାନ, ନାମ ସହିତ ତାହାର ମାନସିକତାରେ କୌଣସି ସାମ୍ୟ ଅନୁପସ୍ଥିତ । ତାହାର ବିଚାର ବୁଢ଼ାଙ୍କ ପରି । ବଡ଼ ସାବଧାନୀ ଓ ଚତୁର – ସେ ପୁଣି ଚିରରୁଗ୍ଣ ଓ କୃମିଗ୍ରସ୍ତ । ଖେଳି ବୁଲିବାକୁ ଅସମର୍ଥ । ପ୍ରଫୁଲ୍ଲ ପ୍ରଫୁଲ୍ଲତା ରସରେ ପରିପୂର୍ଣ୍ଣ – ନାମ ଯଥାର୍ଥ । ଅଧିକନ୍ତୁ ଚଞ୍ଚଳ, ବୁଦ୍ଧିବୃତ୍ତି ପ୍ରଖର, ବଡ଼ ଅଝଟ ବି, ଯାହାର କୌତୁକ କୌତୂହଳକୁ ନିୟନ୍ତ୍ରଣ କରିବା ଶକ୍ତି କାହାର ନାହିଁ । ଓକିଲ ବାପାଙ୍କ ବୁଦ୍ଧିବୃତ୍ତି ତାହା ପାଇଁ ହାସ୍ୟକର ମନେ ହୁଏ, 'ଲୋକଟା

ଜାମାଯୋଡ଼ ପିନ୍ଧି ଆଉ କିଛି କାମ ନ କରି ଖାଲି ପରଲୋକଙ୍କ କଜିଆକୁ ଗଣ୍ଠିକରି କାହିଁକି କଚେରୀକୁ ଯାନ୍ତି ? ଖେଳିଲେ ଦୌଡ଼ିଲେ କ'ଣ ଆନନ୍ଦ ମିଳନ୍ତା ନାହିଁ ? ବସନ୍ତ ସୀମା (real), ପ୍ରଫୁଲ୍ଲ ଅସୀମ (ideal) – (ଏ ଦୁହିଁଙ୍କୁ କେହି ରବୀନ୍ଦ୍ରନାଥଙ୍କ 'ଛୁଟି' ଗଳ୍ପର ମାଖନଲାଲ ଓ ଫଟିକଙ୍କ ଭିତରେ ଲକ୍ଷ୍ୟ କରିପାରନ୍ତି ।) ମଝିରେ ମଣିଷ ଓକିଲ ମଧୁସୂଦନ ବାବୁ, ଯାହାର ଦୁହିଁଙ୍କ ପ୍ରତି ସମାନ ଦାୟିତ୍ୱ । ଅଥଚ ସାଧାରଣ ମଣିଷ ସୀମାଠାରୁ ଅସୀମକୁ ଅଲଗା କରି ଦେଖେ (ମୃତ୍ୟୁ ଶଯ୍ୟାରେ ପତ୍ନୀ ମଧୁସୂଦନଙ୍କୁ କହିଥିଲେ, ''ପ୍ରଫୁଲ୍ଲ ମୋର ଭାରି ଅଝଟ, ବସନ୍ତଠାରୁ ତାକୁ ଅଲଗା କରି କେଭେଁ ଦେଖିବ ନାହିଁ ।'')— ଅସମ୍ପୂର୍ଣ୍ଣତାରେ ସୁଖୀ ହୁଏ, ସୌନ୍ଦର୍ଯ୍ୟର ନିରୁଦ୍ଦେଶ ଅକାଙ୍କ୍ଷାକୁ ସହ୍ୟ କରିପାରେ ନାହିଁ । ଶେଷ ପର୍ଯ୍ୟନ୍ତ ମଧୁସୂଦନ ଯେଉଁ ଆଶଙ୍କା କରୁଥିଲେ, ତାହା ସତ ହେଲା, ପ୍ରଫୁଲ୍ଲ ବସନ୍ତକୁ ଘେନି ଅନର୍ଥ ଘଟାଇଲା । ଗଛରୁ ପଡ଼ି ଦୁହେଁ ଆହତ ହେଲେ – ବସନ୍ତର ଆଘାତ ଅବଶ୍ୟ ସାମାନ୍ୟ । ପ୍ରଫୁଲ୍ଲର ସାଂଘାତିକ । ସଂସାର ବିରୁଦ୍ଧରେ ଅଭିଯୋଗ କରି ଅଭିମାନରେ ସେ ବିଦାୟ ଘେନେ । କେହି ତାକୁ ଭଲ ପାଆନ୍ତି ନାହିଁ । ବସନ୍ତ ପ୍ରଫୁଲ୍ଲ ପଛରେ ନ ଗୋଡ଼ାଏ ନୁହେଁ, କିନ୍ତୁ ତା ଧାଇଁବାର ସୀମା ଥାଏ । ମଧୁସୂଦନ ପ୍ରଫୁଲ୍ଲକୁ ଭଲ ନ ପାଆନ୍ତି ନୁହେଁ, ଭଲ ପାଆନ୍ତି, କିନ୍ତୁ ତା'ର ଅମିତାଚାରିତାକୁ ପ୍ରଶ୍ରୟ ଦେଇ ପାରନ୍ତି ନାହିଁ । ବିଷୟାସକ୍ତ ମଣିଷଟିଏ କ'ଣ ପ୍ରଫୁଲ୍ଲକୁ ଘେନି ଘରସଂସାର କରିପାରେ ? ତା'ର ବିଦାୟରେ ବରଂ ସେ ଆଶ୍ୱସ୍ତ ହୁଏ । ବାପ ପୁଅ ପ୍ରଫୁଲ୍ଲକୁ ଅଚିରେ ପାସୋରି ଯାଇ ଭିନ୍ନ ଏକ ପ୍ରକାର ଆନନ୍ଦ ଉତ୍ସାହରେ ମାତିଛନ୍ତି । ଶେଷ ପର୍ଯ୍ୟନ୍ତ କିନ୍ତୁ ମଣିଷ ଅସୀମ ଆହ୍ୱାନ ଶୁଣିଛି, ବସନ୍ତର ବିଭାଘର ଦିନ ମଧୁବାବୁ ପ୍ରଫୁଲ୍ଲ ପ୍ରଦତ୍ତ ପୁରାତନ କର୍ପୂର ମାଳାଟିକୁ ତା'ର ବେକରେ ଲମ୍ବାଇ ଦେଇ କହିଲେ, ''ଏଇଟି ତୋ ବଡ଼ ଭାଇର ଉପହାର ।'' ମାନବସତ୍ତାର ଆଶୀର୍ବାଦ ନ ପାଇଲେ ଜୈବସତ୍ତାର ସଦ୍‌ଗତି କାହିଁ ? 'ମାଂସର ବିଳାପ'ରେ ଡ଼ୋରା ସୀମା (real), ଜଲି ଅସୀମ (ideal); ମଝିରେ ମଣିଷ ଜମିଦାର ବାବୁ । ଯେଉଁମାନେ ରବୀନ୍ଦ୍ର ସାହିତ୍ୟରେ ସାରମେୟ ଓ କୃଷ୍ଣସାର ପ୍ରତୀକ ଲକ୍ଷ୍ୟ କରିଥିବେ ସେମାନେ ଡ଼ୋରା ଓ ଜଲିକୁ ଠିକ୍ ଚିହ୍ନି ପାରିବେ । ଆସକ୍ତି ଓ ମୁକ୍ତିର ଲୀଳାରସ ମଧ୍ୟରେ ମଣିଷର ମନୁଷ୍ୟତ୍ୱ, ଭୂମି ଓ ଆକାଶ ମଝିରେ ଜୀବନର ପରିପୂର୍ଣ୍ଣତା । ମାଟିର ଡୋରା ସାରମେୟ ପ୍ରୟୋଜନ ଜଗତର ପ୍ରତୀକ — ଶିକାର ସ୍ଥଳୀରେ ତା'ର ଆବଶ୍ୟକତା ଅଛି, କୃଷ୍ଣସାର ଜଲି କିନ୍ତୁ ଅପ୍ରୟୋଜନ ଆନନ୍ଦର ଧନ । ''ଜଲିର ଦୌଡ଼ ଭଙ୍ଗିମା ଭିନ୍ନ ଧରଣର । ସେ ଯେପରି ପ୍ୟାରିସ୍ ଡ୍ୟାନସ୍ – ଗୋଡ଼ ଯେପରି ତା'ର ତଳେ (ଭୂମିରେ) ଲାଗେ ନାହିଁ – କେବଳ ଶୂନ୍ୟେ ଶୂନ୍ୟେ ସେ ନାଚି ନାଚି ଯାଏ '' ମଣିଷ ଭାଗ୍ୟରେ ପରିପୂର୍ଣ୍ଣତା ଅତୁଟ ରହେ ନାହିଁ । ଜଲି ମରେ । ଅପ୍ରୟୋଜନ ଜଗତର ଭୂମିକା ଅଚିରେ ସରେ । ଉପସ୍ଥିତ ପ୍ରୟୋଜନ ଜୈବସତ୍ତା ପାଖରେ ଅମୋଘ । ଜମିଦାର ବାବୁ ସମ୍ଭ୍ରାନ୍ତ ଅତିଥିଙ୍କ ସୁନ୍ଦର ଆହାର ପାଇଁ ହରିଣଟିକୁ ମରାଇବାକୁ କୁଣ୍ଠିତ ହୁଅନ୍ତି ନାହିଁ । ଅବଶ୍ୟ ଗାଳ୍ପିକ Animalness of people ଓ Peopleness of animal–ର

କଣ୍ଟ୍ରାଷ୍ଟ କୌତୁକ ସୃଷ୍ଟିର ଅବକାଶ ଦେଖାଇଛନ୍ତି, ଡ଼ୋରାକୁ ମାନବୋଚିତ ବୁଦ୍ଧି, ସମ୍ବେଦନା, ବନ୍ଧୁବାତ୍ସଲ୍ୟ ଓ ବନ୍ଧୁ ବିଚ୍ଛେଦ ବେଦନାତୁରତା ଆଦି ଗୁଣର ଅଧିକାରୀ କରାଇ ପ୍ରକାରାନ୍ତରେ ମଣିଷର ପାଶବିକ ଲାଳସା ଓ ଜିଘାଂସାକୁ ବଡ଼ କରି ଉପସ୍ଥାପନ କରିଛନ୍ତି । ଡୋରା ଖୋଜିଛି ଜଲିକୁ, ସୀମା ଝୁରିଛି ଅସୀମକୁ । ବସନ୍ତ ପ୍ରଫୁଲ୍ଲକୁ ଭୁଲିଛି । ଡୋରା କିନ୍ତୁ ଆହାର ପରିହାର କରି ବନଭୂମିରେ ସାଥିଟିକୁ ଲୋଡ଼ିଛି ଚିରଦିନ । ଏପରି କ୍ଷେତ୍ରରେ ଜମିଦାରବାବୁଙ୍କ ଚେତନା ଅସୀମ ଉଦ୍ଦେଶ୍ୟରେ ଅଭିସରଣ ସମୁତ୍ସୁକ ନ ହୋଇ ରହିପାରି ନାହିଁ । ସେ ଅବଶ୍ୟ ଡୋରାପରି ଘର ଛାଡ଼ି ନାହାନ୍ତି, ତେବେ ଅସୀମର ପ୍ରେରଣା ତାଙ୍କୁ ବ୍ୟକ୍ତିସତ୍ୟରୁ ବିଶ୍ୱସତ୍ୟ ଆଡ଼କୁ ପରିଚାଳିତ କରିଛି ଯଥେଷ୍ଟ । ଜୈବସତ୍ତାରୁ ସେ ମାନବସତ୍ତାକୁ ଉତ୍ତୀର୍ଣ୍ଣ ହୋଇଛନ୍ତି – ''ହରିଣ ଶାବକର ପ୍ରତ୍ୟେକ ଖଣ୍ଡ ଭୁକ୍ତ ମାଂସର କ୍ରନ୍ଦନ ତାଙ୍କ ପ୍ରତ୍ୟେକ ଲୋମକୂପରୁ ବାହାରିବାର ସେ ଶୁଣିଲେ – ''ପରିତାପର ସୀମା ରହିଲା ନାହିଁ । ସେ ଏତେ ରୁଗ୍ଣ ହୋଇ ପଡ଼ିଲେ ଯେ, ଏଇ ଯେମିତି ମରିଯିବେ । ''କିନ୍ତୁ ସୁସ୍ଥ ହେଲେ, ଅଥଚ ନୂଆଲୋକ ହୋଇ । ସାହେବଙ୍କ ଉପଯୋଗୀ ଅତିଥିଶାଳା, ଦରିଦ୍ରମାନଙ୍କ ପାଇଁ ପାନ୍ଥନିବାସରେ ପରିଣତ ହେଲା । ଜମିଦାରଙ୍କ ଉଆସରେ ଆମିଷ ପ୍ରବେଶ ନିଷିଦ୍ଧ ହେଲା, ଇତ୍ୟାଦି ଇତ୍ୟାଦି । ପ୍ରଫୁଲ୍ଲର ମୃତ୍ୟୁରେ ଓକିଲବାବୁ ବିଚଳିତ ହୋଇ ପଡ଼ିଥିଲେ ସାମାନ୍ୟ କିଛି ଦିନ ପାଇଁ । ଜଲିର ମୃତ୍ୟୁରେ ଜମିଦାରବାବୁ କିନ୍ତୁ ବଦଳିଗଲେ ସମ୍ପୂର୍ଣ୍ଣ । ଓକିଲଙ୍କ ମନ ଥିଲା ମନ୍ଥର, ତାଙ୍କ ପାଇଁ ଯାହା ଅଛି, ତାହା ହିଁ ଭଲ । କିନ୍ତୁ ଜମିଦାର ବାବୁଙ୍କ ମନ ଚଳିଷ୍ଣୁ – ତାହା ମାନବଧର୍ମ ଉଦ୍ଦେଶ୍ୟରେ ଅଭିସାର ରଚିଛି । ଜନ୍ତୁଧର୍ମର ସ୍ଥାବର ପ୍ରାଚୀର ମଧ୍ୟରେ ବିଷୟସୁଖ ଭୋଗିବାକୁ ଚାହିଁନାହିଁ । ମନୁଷ୍ୟତ୍ୱ ଏଠି ଏଇ ଯେଉଁ ସ୍ତରରେ ଅଛି, ତାହାକୁ ଘେନି କାଳିନ୍ଦୀଚରଣ ସନ୍ତୁଷ୍ଟ ନୁହନ୍ତି । 'ମାଟିର ମଣିଷ'ରେ ତାହାକୁ ଆଉ କିଛି ଦୂର ଅଗ୍ରସର କରାଇ ଦେଇଛନ୍ତି ।

କବି ରବୀନ୍ଦ୍ରନାଥଙ୍କ ସୀମା ଓ ଅସୀମ, ଘର ଓ ପଥ ତଥା ନୀଡ଼ ଓ ଆକାଶର ଦ୍ୱନ୍ଦ୍ୱ ଓ ସଂଗତି 'ମାଟିର ମଣିଷ'ରେ ଆଉଥରେ ନୂଆଭାବରେ ଶିଳ୍ପରୂପ ଲାଭ କରିଛି । ଜୀବନ ସମ୍ପର୍କିତ ରବୀନ୍ଦ୍ରନାଥଙ୍କ ଦର୍ଶନ ଉପନ୍ୟାସଟିର କଥାବସ୍ତୁ, ପ୍ଲଟଗଠନ, ପ୍ଲଟ ଓ ଚରିତ୍ରଙ୍କ ସମ୍ବନ୍ଧ ସ୍ଥାପନ ଓ ପରିଣାମୀ ସମ୍ବେଦନାକୁ ସମ୍ପୂର୍ଣ୍ଣ ନିୟନ୍ତ୍ରଣ କରିଛି । ଏଥିରେ ମଣିଷ ପ୍ରକୃତି ମଧ୍ୟରେ ଥିବା 'ଗୃହ ବାସିନୀ ଅବରୁଦ୍ଧ ରମଣୀ' ଓ 'ବଂଧନ ଅସହିଷ୍ଣୁ ସ୍ୱେଚ୍ଛା ବିହାର ପ୍ରିୟ ପୁରୁଷ''ଟିକୁ ଚିହ୍ନିବାକୁ କଷ୍ଟ ହୁଏ ନାହିଁ । ନେତ୍ରମଣି ସୀମା (real) ଓ ଘର, ବରଜୁ ଅସୀମ (ideal) ଓ ପଥ – ମଝିରେ ମଣିଷ ଛକଡ଼ି । ଗୋଟିଏ ସ୍ତରରେ 'ମାଟିର ମଣିଷ' ବିଶେଷ ଅଞ୍ଚଳର କଥା କହୁ କହୁ ଯେପରି ଆଞ୍ଚଳିକ ସୀମାକୁ ଅତିକ୍ରମି ଭାରତର ଆଶାକାଙ୍କ୍ଷାକୁ ସମୁଦ୍ଭାସିତ ରଖିଛି, ସେପରି ଅନ୍ୟ ଏକ ସ୍ତରରେ ମୃତ୍ତିକାନୁରଂଜିତ ମାଟିର ମଣିଷ ଗଡ଼ୁ ଗଡ଼ୁ ଅଖ୍ୟାତ ଅପାଙ୍‌କ୍ତେୟ ମାଟିର ପିତୁଳାଗୁଡ଼ିକର ମୃଣ୍ମୟ ସତ୍ତାକୁ ଅତିକ୍ରମି ଜୀବନାଭିସାରୀ ଚିରନ୍ତନ ମଣିଷର ମହତ୍ତର ଜୀବନାଦର୍ଶକୁ ଅଭିବ୍ୟକ୍ତି ଦେଇଛି । ରଚନାଟି ଆଦର୍ଶବାଦୀ

ନିଶ୍ଚୟ, କିନ୍ତୁ କେଉଁଠି ଅବସାଦକର ଭାବରେ କି ବିରକ୍ତିକର ଭାବାଳୁତା ସର୍ବସ୍ୱ ନୁହେଁ । କାବ୍ୟତ୍ୱ ଅର୍ଜିଛି, କିନ୍ତୁ ବସ୍ତୁଘନତା ବିସର୍ଜନ ଦେଇନାହିଁ । ପାତ୍ରପାତ୍ରୀ ତେଣୁ ଗାର୍ହସ୍ଥ୍ୟ ସ୍ନେହପ୍ରେମପ୍ରୀତିର ଘରୋଇ ଆବେଗ ତରଙ୍ଗରୁ କେବେ ବିଚ୍ୟୁତ ନ ହେଲେ ହେଁ ଦେଶକାଳାତୀତ ଭାବଲୋକର ଅଧିବାସୀ ହୋଇ ପାରିଛନ୍ତି । ମଣିଷ ଭିତରେ ଥିବା ସୁପ୍ତ ମାନବିକ ସତ୍ତାକୁ ଜଗାଇ ଚିହ୍ନାଇ ଦେବାରେ ଉପନ୍ୟାସଟିର କୃତିତ୍ୱ ନିହିତ । ନେତ୍ରମଣି ଘର, ବରଜୁ ପଥ । ନେତ୍ରମଣି ଛକଡ଼ିକୁ ଘର ଆଡ଼କୁ ଟାଣୁଛି, ବରଜୁ ତାହାକୁ ବାହାରକୁ ପଥ ଦେଖାଉଛି । କୁଆଡ଼େ ଯିବ ମଣିଷ ? ନେତ୍ରମଣି ମାସ ମାସ ଧରି ନିଭୃତରେ ତାଲିମ ଦେଇଛି, ହରିମିଶ୍ରେ ସଦ୍‌ବୁଦ୍ଧି ଶିଖାଇଛନ୍ତି, ବିଷୟାସକ୍ତିରେ ମଣିଷର ସଦ୍‌ଗତି । ଛକଡ଼ି ବୁଝୁଛି ବାଧ ଶିଷ୍ୟପରି, ଅଥଚ ବରଜୁକୁ ଅସ୍ୱୀକାର କରିପାରୁନାହିଁ । ରବୀନ୍ଦ୍ରନାଥଙ୍କ ଭାଷାରେ କହିଲେ, ‘‘ପଶୁ ସହଜ ଧର୍ମେର ପଥେ ଭୋଗକରେ, ମାନୁଷ ବଲତେ, ମାନବ ଧର୍ମେର ଦିକେ ତପସ୍ୟା କରେ ।’’ କାହାକଥା ଶୁଣିବ ମଣିଷ ? ଛକଡ଼ିର ମନ ମନ୍ଥର, କିନ୍ତୁ ଓକିଲ ମଧୁସୂଦନଙ୍କ ମନ ପରି ଅଥର୍ବ ନୁହେଁ; ଚଳିଷ୍ଣୁ, କିନ୍ତୁ ଜମିଦାର ବାବୁଙ୍କ ମନ ପରି ତା’ର ଗତି ଗୃହସୀମାବଦ୍ଧ ନୁହେଁ । ବରଜୁ ପଥ ନିର୍ମାତା, ପଥ ପ୍ରଦର୍ଶକ – ରବୀନ୍ଦ୍ର ନାଥଙ୍କ ଶ୍ରେଷ୍ଠ ମଣିଷ ମହାତ୍ମା ଗାନ୍ଧିଙ୍କ ପରି ଅଗାଧ କ୍ଷମାସହିଷ୍ଣୁତା ଓ ପ୍ରେମର ପ୍ରତିଭୂ । ଛକଡ଼ି ସାଧାରଣ ମଣିଷ – ନୀଡ଼ ଚାହେଁ, ଆକାଶ ବି ଚାହେଁ, ଘର ଚାହେଁ, ପଥ ବି ଚାହେଁ । ବଡ଼ ଯତ୍ନରେ ଗଢ଼ିଛନ୍ତି ତାକୁ ଔପନ୍ୟାସିକ – ପ୍ରାଣବନ୍ତ ଏକ ଶୈଳ୍ପିକ ଚରିତ୍ର ସେ – ଘର ଓ ପଥର ଦ୍ୱନ୍ଦ୍ୱକୁ ଅତିକ୍ରମ କରିଛି, ଘରୁ ବାହାରିପଡ଼ିଛି ବରଜୁ ପଛେ ପଛେ । ପ୍ରାପ୍ତିର ପରିବେଦନା ସେ ଭୋଗିଛି, ମୁକ୍ତିରେ ଖୋଜିଛି ପରିତ୍ରାଣ । ଶେଷ ଦୃଶ୍ୟଟିକୁ ଔପନ୍ୟାସିକ ଯେପରି ନାଟକୀୟ କରି ଆଙ୍କିଛନ୍ତି, ସେମିତି ବି କରିଛନ୍ତି କାବ୍ୟୋଚିତ । ଘଟନା ଓ ଚରିତ୍ର ଅଙ୍ଗାଙ୍ଗୀ ଭାବେ ଯୁକ୍ତ । ସଂଳାପ ସ୍ୱତଃସ୍ଫୂର୍ତ୍ତ । ଘରଦ୍ୱାର ସବୁ ଛକଡ଼ି ହାତରେ ସମର୍ପି ବରଜୁ ଏବେ ହରିପୁର ଗାଁରେ ଅଛି । ଗୌରାଙ୍ଗ ସେଣର ଅନୁରୋଧ କ୍ରମେ । ଆଉ ସକାଳୁ ଉଠି ଛକଡ଼ି ଯାଇଁ ବସିଛି ସେହି ଗୌରାଙ୍ଗ ସେଣ ଦୁଆର ମୁହଁରେ । ତାକୁ ପ୍ରଥମେ ଆବିଷ୍କାର କରେ ଦାମ ଆଉ ଡାକ ପକାଏ, ‘ବୋଉଲୋ, ଦାଦି ଆସିଚି !’’ ବରଜୁ ଆସି ଦେଖିଲା ଛକଡ଼ି ତୁନିଟି ହୋଇ ଦାଣ୍ଡ ପିଣ୍ଡାରେ ବସିଛି । ‘‘କିରେ ! ଏଠି କାହିଁକି ବସିଛୁ, ଭିତରକୁ ଆ’’ କହି ଘର ଭିତରକୁ ଡାକି ନେଇ ପଚାରିଲା, କିରେ, ‘‘କୁଆଡ଼େ ଆସିଗଲୁ ?’’

ଛକଡ଼ି ଧୀରେ ଧୀରେ କହିଲା, ‘‘ମୁଁ ଯିବି ।’’

ବରଜୁ ପଚାରିଲା, ‘‘ତୁ କୁଆଡ଼େ ଯିବୁ ?’’

‘‘ତମେ ଯୁଆଡ଼େ ଯିବ ।’’

ଠକ ଠକ ହୋଇ ଛକଡ଼ି ଆଖିରୁ ପାଣି ବହି ପଡ଼ିଲା ।

ଛି ଛି ମାଇଚିଆ ଟୋକାଟା ।

ପାଠକ କ'ଣ କମ୍ ମାଇଚିଆ ହୋଇ ଉଠେ ଏଇଠି ? ତାଙ୍କ ଆଖିରୁ ବି ପାଣି ନିଗିଡ଼ି ପଡ଼େ । ଉପନ୍ୟାସ ପାଠଜାତ କୌତୂହଳ ଓ ସମ୍ବେଦନା ପାଠକକୁ ନିଗୂଢ଼ ଭାବରେ ଆବେଗ ମୁହଁକୁ ଠେଲିଦିଏ, ଆଉ ବୁଝାଇ ଦିଏ ଯେ, ମଣିଷର ପୃଥକ୍‌ସତ୍ତାରେ ହିଁ ମାନବସତ୍ତା ନିହିତ, ମନୁଷ୍ୟତ୍ୱ ବର୍ତ୍ତମାନ । ଛକଡ଼ି ଘରର ସଂକୀର୍ଣ୍ଣ ସୁଛ ପରିଧି ଅତିକ୍ରମ କରି ଏଇ ବରଜୁର ଆଦର୍ଶର ପଥକୁ ଅବଲମ୍ବନ କରିବାକୁ ଯାଇ ନାହିଁ ଯେ, ବ୍ୟକ୍ତିପରିଚ୍ଛେଦର ପ୍ରାଚୀର ଭାଙ୍ଗି ମନୁଷ୍ୟତ୍ୱ କ୍ଷେତ୍ରରେ ବିକଶିତ ହୋଇ ଉଠିଛି । ପ୍ରକୃତରେ ଯାତ୍ରାହିଁ ଆତ୍ମବିକାଶ ଓ ଆତ୍ମବ୍ୟାପ୍ତି । ଛକଡ଼ି ମଧ୍ୟରେ ଔପନ୍ୟାସିକ ଆବିଷ୍କାର କରିଛନ୍ତି ରବୀନ୍ଦ୍ରନାଥଙ୍କ 'ଅମିତ ମାନବକୁ' । ''ସେଇ ଅମିତ ମାନବ ସୁଖେର କାଙ୍ଗାଳ ନୟ, ଦୁଃଖଭୀରୁ ନୟ । ସେଇ ଅମିତ ମାନବ ଆରାମେର ଦ୍ୱାର ଭେଙ୍ଗେ କେବଲ ମାନୁଷକେ ବେର କରେ ନିୟେ ଚଲେଛେ କଠୋର ତପସ୍ୟାୟେ ।'' ଏହି ସୂତ୍ରରେ କାଳିନ୍ଦୀଚରଣ ବ୍ୟକ୍ତି ନିୟତିକୁ ମାନବନିୟତିର ପ୍ରତିଭୂ କରିଦେଇଛନ୍ତି, ଇଦାନୀନ୍ତନ ମଧ୍ୟରେ ଚିନ୍ତନକୁ ପ୍ରତିଷ୍ଠିତ ରଖିଛନ୍ତି । 'ମାଟିର ମଣିଷ'ରେ କୁହାଯାଇଛି, ''ରାମାୟଣ ମହାଭାରତରେ ଯେ ଦେବତା ଅସୁରଙ୍କ ଭିତରେ ଯୁଦ୍ଧ, ସେ ତ ଭଲ ମନ୍ଦର ଯୁଦ୍ଧ – ଇତ୍ୟାଦି ।'' ମଣିଷଙ୍କ ଭିତରେ ଦେବତା ଅଛନ୍ତି, ଅସୁର ଅଛନ୍ତି, ଏପରିକି ପ୍ରତି ମଣିଷ ଭିତରେ ରାମାୟଣ ମହାଭାରତ ଅନୁଷ୍ଠିତ – ପ୍ରତ୍ୟେକଙ୍କ ଭିତରେ ଦେବତା ଅଛନ୍ତି, ମଣିଷ ଅଛନ୍ତି । ସେମିତି ଦିନ ଆସିବ କୁହାଯିବ, ପ୍ରତ୍ୟେକ ମଣିଷ ଭିତରେ 'ମାଟିର ମଣିଷ' ଅନୁଷ୍ଠିତ; ପ୍ରତ୍ୟେକ ମଣିଷ ଭିତରେ ବରଜୁ ଅଛି, ଅଛି ବି ନେତ୍ରମଣି । ସେ ପଥ ଚାହେଁ, ଘର ବି ଚାହେଁ । ଅବଶ୍ୟ ଏହି ଦୁଇ ଅଂଶ ମଧ୍ୟରୁ କିଏ କେଉଁଟିକୁ ଅଧିକ ଅନୁଭବ କରିବ ତାହା ଅଲଗା କଥା । କିନ୍ତୁ କାଳିନ୍ଦୀଚରଣ ରବୀନ୍ଦ୍ରଙ୍କ ପରି ମଣିଷର ପୃଥକ ସତ୍ତାକୁ ହିଁ ତା'ର ମାନବସତ୍ତା ବୋଲି ଅଭିହିତ କରିଛନ୍ତି ।

'ମାଟିର ମଣିଷ' ଉପନ୍ୟାସରେ ଆଙ୍ଗିକର ପରିମିତି ଅଛି । ତେବେ ତା'ର ଭାବଗତ ମହାକାବ୍ୟିକ ବିଶାଳତାକୁ ଅସ୍ୱୀକାର କରିହୁଏ ନାହିଁ । ଉପନ୍ୟାସରେ ବିଶେଷ ଦେଶକାଳ ପରିବ୍ୟାପ୍ତ କାହାଣୀ ଓ ଜୀବନର ବିପୁଳ ପ୍ରସାର ହୃଦ୍ୟ ସାମଗ୍ରୀ ନିଶ୍ଚୟ; କିନ୍ତୁ ତା'ର କୁଶଳୀ କାରିଗରୀ ସହିତ ବିଶାଳତା ବୋଧ ନ ଥିଲେ ତାହା ଯୁଗକୁ ଅତିକ୍ରମ କରିପାରେ ନାହିଁ । ବିଶାଳତା କହିଲେ ପଟ୍ଟଭୂମିର ପ୍ରସାର ବୁଝାଏ ନାହିଁ, ଘଟନାର ଚରିତ୍ରାବଳୀ ପ୍ରତିଦିନର ଧୂଳିମଳିନ ଗ୍ଳାନି ଅତିକ୍ରମ କରି ଅପରିମେୟ ମାନବିକ ଐଶ୍ୱର୍ଯ୍ୟର ତୁଙ୍ଗଲୋକରେ ଉନ୍ନୀତ ନ ହେଲେ ଭାବଗତ ବିଶାଳତା ଫୁଟେ ନାହିଁ । 'ମାଟିର ମଣିଷ'ର ପ୍ରମୁଖ ପାତ୍ରପାତ୍ରୀ ତାଙ୍କର ଅବ୍ୟବହିତ ପରିବେଶରୁ କେବେ ବିଚ୍ୟୁତ ନୁହନ୍ତି । ଅଥଚ ସେମାନେ ଦେଶକାଳାତୀତ ଚିରନ୍ତନ ଭାବଲୋକର ଅଧିବାସୀ ଅଟନ୍ତି । ସେଇଥିପାଇଁ ତାହା ସାମୟିକତାର ଓ ଆଞ୍ଚଳିକତାର ସବୁ ସୀମା ଛାଡ଼ି ଚିରନ୍ତନ ଜୀବନର ଭାସ୍କର୍ଯ୍ୟ ହୋଇ ଉଠିଛି ।



# କାଳିନ୍ଦୀଚରଣ : ଉପନ୍ୟାସ ବିଚାର

ଡକ୍ଟର ନଟବର ଶତପଥୀ

କାଳିନ୍ଦୀଚରଣଙ୍କ ଉପନ୍ୟାସ ମାଟିର ମଣିଷ (୧୯୩୧), ମୁକ୍ତାଗଡ଼ର କ୍ଷୁଧା, ଅମରି ଚିତା (୧୯୩୨) ଲୁହାର ମଣିଷ (୧୯୪୭), ଆଜିର ମଣିଷ (୧୯୫୭)। ପାଞ୍ଚୋଟି ହେଲେ ହେଁ କାହାଣୀ, ପୃଷ୍ଠଭୂମି ଓ ଉଦ୍ଦେଶ୍ୟ ଭିତ୍ତିରେ ତିନୋଟି ଉପନ୍ୟାସ ବୋଲି ଏଗୁଡ଼ିକୁ କହିହେବ। ଊନବିଂଶ ଶତକର ସପ୍ତମ ଦଶକରୁ ବିଂଶ ଶତକର ଚତୁର୍ଥ ଦଶକ ମଧ୍ୟରେ କଥାବସ୍ତୁର ପରିସର ଏକ କାଳଗତ ବିବେଚନାରେ ବର୍ଣ୍ଣିତ। ଏହି ଦୃଷ୍ଟିରୁ 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମର ଚିତା'ର ସ୍ଥାନ ପ୍ରଥମରେ। ସାମନ୍ତବାଦର ଶାସନ - ଶୋଷଣ ବେଦୀରେ ସାମୟିକ ନୃତ୍ୟରତ ହେଲେ ହେଁ ସେଥିରୁ କ୍ଷାନ୍ତ ହେବାର ପ୍ରବଳ ଉଦ୍ୟମରତ ଶାସକ ଓ ପରିଣତିରେ ଜନକଲ୍ୟାଣ ବ୍ରତାଚାର ପ୍ରତି ତାର ବିହ୍ୱଳ ପ୍ରବୀଣ ମାନସିକତା ଉପନ୍ୟାସର ବିଶ୍ଳେଷ୍ୟ ବିଷୟ। ଏହି ଦୁଇଟି କୃତିର ବିଷୟ ଗୋଟିଏ, ଦୁଇଟି ନାମ, ଦୁଇଟି ନାୟକ; ଲକ୍ଷ୍ୟ ଓ ଉଦ୍ଦେଶ୍ୟ ଗୋଟିଏ। ପରବର୍ତ୍ତୀ କୃତି 'ମାଟିର ମଣିଷ' ଓ 'ଲୁହାର ମଣିଷ'। ବିଷୟ ସଂପ୍ରସାରିତ; ଭିନ୍ନ ପରିବେଶ ଓ ଏକନାୟକତା ସତ୍ତ୍ୱେ ଶିରୋନାମାରେ ଭିନ୍ନତା। ଏହି ଭିନ୍ନତାରୁ କେହି ପାଠକ ଉପନ୍ୟାସର ଉଦ୍ଦେଶ୍ୟ ଭିନ୍ନ ବୋଲି ମନେକରିବା ଅସ୍ୱାଭାବିକ ହେବ ନାହିଁ, କିନ୍ତୁ ସେପରି ମନେ କରିବାର ଲେଖକୀୟ ଅଭିଳାଷ ନିରର୍ଥକ ହୋଇଛି। ମାଟିର ମଣିଷର ରୂପାନ୍ତର ଲୁହାର ମଣିଷରେ ନୁହେଁ। ମଣିଷ ଭିତରେ ଲୌହଭାବ ଏକ ସହଜ ସୁଲଭ ଗୁଣ ବୋଲି ଭାରତ ପରିପ୍ରେକ୍ଷୀରେ ମନେହୁଏ ନାହିଁ, ହେଲେ ବି ତାହା ଅସ୍ୱାଭାବିକ ମନେହେବ। ସ୍ଥାନାନ୍ତରରେ ତାହା ଆଲୋଚିତ ହେଉଛି। ତୃତୀୟ ପର୍ଯ୍ୟାୟରେ ଆସୁଛି ଆଜିର ମଣିଷ। ନାମ ଦୃଷ୍ଟିରୁ ଏହି କୃତିକୁ ଅନ୍ୟ ଦୁଇଟି ସହ ବନ୍ଧିତ କରି ପ୍ରଫେସର ମିଶ୍ର (ନରେନ୍ଦ୍ର ନାଥ) ଗୋଟିଏ ପର୍ଯ୍ୟାୟରେ ରଖିଛନ୍ତି। କିନ୍ତୁ ଏପରି ବନ୍ଧନର ହେତୁ ନାହିଁ। ନାମକୁ ଧରି ପ୍ରଲମ୍ବିତ ଭାବର ବିଦ୍ୟମାନତାକୁ ଏକ ସାର୍ଥକ ଅନୁସନ୍ଧାନ ବୋଲି କହିହେବ ନାହିଁ। ଅପିତୁ 'ଆଜିର ମଣିଷ'ରେ ଆସିଛି ନୂଆ ପରିବେଶ, ନୂଆ ବିଷୟ ଓ ଚରିତ୍ର। କେହି ହୁଏତ ଭାବିପାରନ୍ତି ମାଟିର ମଣିଷରୁ ଲୁହାର ମଣିଷ ମଧ୍ୟଦେଇ ଆଜିର ମଣିଷରେ ରୂପାନ୍ତରିତ ମଣିଷର କାହାଣୀ ଶୁଣାଇବାକୁ ଲେଖକ ପ୍ରୟାସ କରିଛନ୍ତି। ମନେହୁଏ

ଲେଖକଙ୍କ ଅନ୍ତର୍ପୁରୁଷ ଏହି କଳ୍ପନା କରିଥିବ । ଥାଉ; ଏହା ତାଙ୍କର ଏକ ବ୍ୟକ୍ତିଗତ ଭାବନା ବୋଲି ଧରିନିଆଯାଉ । କିନ୍ତୁ ଉପନ୍ୟାସରେ ସେପରି ସଙ୍କେତ ସୁଲଭ ନୁହେଁ ।

'ମାଟିର ମଣିଷ' ବହୁ ପଠିତ ଲୋକପ୍ରିୟ ଉପନ୍ୟାସ । ଏକଦା ଭାରତୀୟ ଉପନ୍ୟାସ ନିର୍ବାଚନରେ ଦଶଟି ଉପନ୍ୟାସ ମଧ୍ୟରେ ଏହା ସ୍ଥାନ ପାଇଥିଲା । ଏ ସୌଭାଗ୍ୟ ଓ ସିଦ୍ଧି କେବଳ କୃତିଟିର ନୁହେଁ ଓଡ଼ିଆ ଜାତିର ଓ ସାହିତ୍ୟର । ଏଣୁ ଏହାକୁ କେହି ଊଣା ଦୃଷ୍ଟିରେ ଦେଖିବାକୁ ପ୍ରୟାସ କରି ନ ପାରନ୍ତି, ମାତ୍ର କଳା ଓ ତାର ଦାୟିତ୍ୱର ପ୍ରସଙ୍ଗ ଏକ ଭିନ୍ନ କଥା । ଏହି ଦୃଷ୍ଟିରୁ 'ମାଟିର ମଣିଷ'ର ବିଚାର କରାଯାଇ ପାରେ ।

କୃତିଟିର ପ୍ରସଙ୍ଗ ଭୂକୈନ୍ଦ୍ରିକ, କୃଷିଭିତ୍ତିକ, ଯୌଥ ପରିବାରର ସଂସ୍କୃତିପ୍ରବଣ ଏକ ସାଧାରଣ ଗୃହସ୍ଥର କାହାଣୀ । ବର୍ଣ୍ଣିତ ଜୀବନଚର୍ଯ୍ୟା ଯେତିକି ସରଳ, ତାର ସ୍ୱପ୍ନ ଓ କର୍ମଧାରା ମଧ୍ୟ ଅନୁରୂପ ଅକୃତ୍ରିମ । ଅକୃତ୍ରିମତା ଯେପରି ଏକ ସ୍ୱତନ୍ତ୍ର ଜୀବନଶୈଳୀ, ଯାର ଏକ ନିଜସ୍ୱ ବିଚାରଶୀଳ ଆଦର୍ଶ ରହିଛି । ଏହି ଆଦର୍ଶଟି ବାହ୍ୟ ବିଷୟ ନୁହେଁ, ଅନୁଭୂତ ଓ ପରୀକ୍ଷିତ ସତ୍ୟ ଆଶ୍ରିତ । ପଧାନବୁଢ଼ା ଭିତରେ ତାର ପ୍ରତିଷ୍ଠା । ଏହାତ ବରଜୁର ଆଖିଦେଖା ଓ ହୃଦୟ-ଦ୍ରବିତ କାହାଣୀ । ବୁଢ଼ାର କିଛି ନଥାଇ ସବୁଥିଲା ଏବଂ ଏହି ଶୂନ୍ୟ ଅଥଚ ପୂର୍ଣ୍ଣ ବିଭବଟି ଅନ୍ୟ କିଛି ନୁହେଁ, ତାହା ଭାରତୀୟ କୃଷି ସଂସ୍କୃତିର ମୂଳପିଣ୍ଡ । ତାହା ହେଉଛି ପରମ୍ପରା ଓ ପ୍ରଥାକୁ ମାନିନେବା । ବାପ ଅଜାମାନେ ଯେପରି ମାନି ଆସିଥିଲେ । ସେମାନଙ୍କର ଅନ୍ତର୍ଗତ ବିକଶିତ ଚେତନାଟି ଥିଲା ଧର୍ମ ଆଶ୍ରିତ । ଧର୍ମବୋଧ ପ୍ରଥା ଓ ପରମ୍ପରା ପ୍ରତି ଅନୁଗତ କରିବା ଯେ କୌଣସି କୃଷି ସମାଜର ଗୁରୁ-ଲକ୍ଷଣ । ଏଣୁ ମରିବା ସମୟରେ ବୁଢ଼ା ଉପରକୁ ହାତ ଟେକି ଯେଉଁ ସଙ୍କେତ ଦେଲା ସେ ସଙ୍କେତ ପ୍ରଥାପ୍ରଧାନ ଜୀବନର ଯେ କେହି କିଙ୍କର ନ ବୁଝି ଗତ୍ୟନ୍ତର କାହିଁ ? ବସ୍ତୁତଃ ବରଜୁ ବାପର ପ୍ରତିମା ରୂପୀ ପ୍ରତିମା ହେବା ବିଚିତ୍ର ନୁହେଁ । ପରମ୍ପରାର ଆବାହକ ବୁଢ଼ା ପ୍ରଲମ୍ବିତ କାଳରେ ନିଜର ବିଶ୍ୱାସ ଓ ଆଚରଣକୁ ଦୀର୍ଘତର କରିବାକୁ ଚାହେଁ, ତାହା କେବଳ ସମ୍ଭବ ବରଜୁ ଦ୍ୱାରା । ସେଥିପାଇଁ ଅମିନ ପରି ସରକାରୀ କର୍ମଚାରୀ ଦାୟିତ୍ୱରୁ ସେ ମୁକୁଳେଇ ଆଣିଥିଲା । ବାହୁଲ୍ୟ ହେବ ନାହିଁ ବୁଢ଼ାର ବିଶ୍ୱାସକୁ ବରଜୁ ଅକ୍ଷରସ ପାଳନ କରିଛି । ଏଇ ପ୍ରାଥମିକ ଭିତ୍ତି ଉପରେ ମାଟିର ମଣିଷର ପ୍ରତିଷ୍ଠା । ମାତ୍ର କାଳିନ୍ଦୀଚରଣ ସେଇ ତିରିଶ ବର୍ଷ ବୟସରେ ଏପରି ଏକ ଚିନ୍ତାର ଭାବୁକ ହେଲେ - ଏଥିରେ ବୈଚିତ୍ର୍ୟ କଣ ଅଛି ?

ସେ ଅବଧି ଭୂମିକୈନ୍ଦ୍ରିକ ସମସ୍ୟା ବିଶ୍ୱର ସର୍ବତ୍ର ଚିନ୍ତାପ୍ରସୂ ହୋଇଛି । ବଲଜାକଙ୍କର 'ଦି ପିଜାଣ୍ଟ', ଟଲଷ୍ଟୟଙ୍କ 'କଥା ସାହିତ୍ୟ ସମଗ୍ର', ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ', ପ୍ରେମଚାନ୍ଦଙ୍କ 'ଗୋଦାନ' ଆଦି ବହୁଶ୍ରୁତ ଓ ଆଲୋଚିତ । ସର୍ବୋପରି ଭାରତୀୟ ଜନ ଜୀବନରେ ଜମିପ୍ରତି ମମତା ଓ ସେଥିନେଇ ଗଢ଼ି ଉଠିଥିବା ଗ୍ରାମୀଣ ସଂସ୍କୃତିର ଆଧାରଶିଳା ଥିଲା ଯୌଥ ପରିବାର । କୃଷି ସଭ୍ୟତାର ଆରମ୍ଭରୁ ପରିବାରର ଧାରଣା ଜନ୍ମ ଏବଂ ପରିବାର କହିଲେ ଏକାନ୍ନବର୍ତ୍ତୀ ପରିବାର – ଯେଉଁଠି ଦୈହିକ ଶ୍ରମ ପାଇଁ ଲୋକବଳର

ଅଭାବ ରହିବ ନାହିଁ । କୃଷିର ଆର୍ଥିକ ସ୍ଥିତି ଅଧିକାଧିକ ଲୋକବଳ ନିର୍ଭର ହେତୁ ଯୌଥ ପରିବାର ଥିଲା ଏକାନ୍ତ ପ୍ରାଚୀନ ଆଦର୍ଶ । ପୁଣି ଏହାର ବିଲୟ ଘଟିଲେ ଘରଠୁ କ୍ଷେତ୍ର ଯାଏ ହେବ ବିଭାଜନ । ବାଣ୍ଟୁରାର ସବୁଜ ପତ୍ର ଖେତକୁ ରକ୍ତ ରଞ୍ଜିତ କରି ଯେଉଁ ସମସ୍ୟା ଡାକି ଆଣିବ ତାହା କୃଷି-ଉତ୍ପାଦନ ମୂଳରେ କୁଠାରାଘାତ କରିବ । ଏ ଧାରଣା ନିଶ୍ଚିତ ସେ କାଳର ସମାଜ ବା ପରିବାରର ମୁଖ୍ୟମାନଙ୍କର ଥିଲା । ଭ୍ରାତୃବିବାଦ ନୂଆ କଥା ନୁହେଁ, ମହାଭାରତ ମହତ ଶିକ୍ଷା ଦେଇଛି ଏ ବିଷୟରେ । ତାକୁ ଆଡ଼େଇ ଦେଇ ଲୋକେ ତଥାପି କହନ୍ତି 'ଯେତେ ଭାଇ ସେତେ ଘର' ଏବଂ ଏହାର ଅପର ପକ୍ଷରେ 'କଳିକରିବାକୁ ହେଲେ ସାଙ୍ଗେ ଥିବ ଭାଇ' । ପ୍ରସଙ୍ଗ ଭିତ୍ତିରେ ଏପରି ସାମାଜିକ ପ୍ରବାଦ ଗୁଡ଼ିକର ମହାର୍ଘ ପରାମର୍ଶର ସତ୍ୟତା ଅନେକ । ତାତ୍ପର୍ଯ୍ୟ ଏହା ଯେ ପଧାନ ବୁଢ଼ା ଦ୍ୱିତୀୟଟିରେ ବିଶ୍ୱାସୀ ଥିବାରୁ ଗ୍ରାମକୁ ଏକତା ସୂତ୍ରରେ ବାନ୍ଧିବା ପାଇଁ ବାହାରିଥିଲା । ତାର ପଣର ମୂଳରେ ଥିଲା ସେବା ଓ ସାହାଯ୍ୟ । କାରଣ ସେ ଜାଣିଥିଲା ଚାଷୀର ଜାତି ଗୋଟିଏ । ସେ ଜାତିର ଅଣ୍ଟାରେ ଆଣ୍ଟ ନ ରହିଲେ ଭୁଷୁଡ଼ି ପଡ଼ିବ ପରିବାର, ନାରଖାର ହେବ କୃଷି ସଭ୍ୟତା । ବ୍ୟକ୍ତିର ଅହଂକାର-କୁଠାର ଆତ୍ମ ସ୍ୱାର୍ଥ ବୃକ୍ଷକୁ ନ କାଟି ସଂସ୍କୃତି ବୃକ୍ଷକୁ କାଟି ବସିଲେ ସମୂଳେ ଧ୍ୱଂସ ପାଇବାହିଁ ହେବ ଚରମ ପରିଣତି !

ଯୌଥ ଜୀବନର ମୂଳ କଥା ରହିଛି ଯୌଥଶ୍ରମରେ - ସମୂହ ଶ୍ରମରେ । ତାହା କୃଷି-ଶ୍ରମ ପରକ । ଶ୍ରମରୁ ସଂସ୍କୃତିର ଅଭିସାର । ଏହି ଅଭିସାର ଯୌଥଜୀବନ ଆଡ଼କୁ । ଯେଉଁଠି ଯୌଥତା ସେଇଠି ପ୍ରଥାବଦ୍ଧତା । ପ୍ରଥା ପ୍ରୀତିର ମୂଳରେ ପୁଣି ଅଛି ଅନ୍ୟ ଏକ ବିଶେଷ ଲକ୍ଷଣ । ତାହା ହେଉଛି ନିମ୍ନବିତ୍ତର ଟଣା ଓଟରା ଜୀବନ, ଯଥା ସମ୍ଭବ ସ୍ୱଚ୍ଛଳ ଅର୍ଥନୀତିକ ବ୍ୟବସ୍ଥାର ନିର୍ଦ୍ଦେଶ । ଅଧିକ ସ୍ୱପ୍ନ ଦେଖିବା ମନା ସେ ଜୀବନରେ । ଯୁକ୍ତି ମନା, ତର୍କ ମନା । ବିକଳ୍ପ ଓ ବ୍ୟତିକ୍ରମ ସେଇଠି ଅନାଦୃତ ବ୍ୟାପାର । କୃଷି ଋତୁଉପଯୋଗୀ କର୍ମ । କର୍ମ ଶେଷରେ ଅବସର ହୁଏତ ଦୀର୍ଘ । ପୁଣି ଆଉ ଏକ ଋତୁକାଳକୁ ଅପେକ୍ଷା । ଏ ଅପେକ୍ଷା ବିରକ୍ତିକର ନ ହେବା ପାଇଁ ପର୍ବ ପର୍ବାଣିର ମହୋତ୍ସବର ଆୟୋଜନ । ଉତ୍ପନ୍ନ ଦ୍ରବ୍ୟର ସ୍ୱାଦରେ ରସନା ତୃପ୍ତି ସାଙ୍ଗକୁ ଅବସର ବିନୋଦନ ମୂଳକ ନାନାବିଧ କୌତୁକ । ସାମଗ୍ରିକ ଭାବେ ପଲ୍ଲୀ କୃଷି ସଂସ୍କୃତିର ବୈଚିତ୍ର୍ୟ ହେଉଛି ଉତ୍ପାଦନ ପଦ୍ଧତି ଆଶ୍ରିତ । ଏଣୁ ପ୍ରଥା ବୋଲି ଯାହା ସର୍ବମାନ୍ୟ ପ୍ରାପ୍ତ ତାହାର ସାର୍ଥକତା ଯୌଥ ଜୀବନାଚାର ନିର୍ଭର । ଏହା ଆହ୍ୱାନରେ ସ୍ନେହ ପ୍ରେମର ବାରିବର୍ଷଣ ବ୍ୟତୀତ ବୁଦ୍ଧିମାନ କୃଷକର ଭିନ୍ନଗତି ନାହିଁ । ସେ ଅନୁବ୍ରତୀ ହେବ ବାପା ମାଆଙ୍କର । ଅଥର୍ବ ବେଦ କହୁଛନ୍ତି -

ଅନୁବ୍ରତଃ ପିତୁଃ ପୁତ୍ରୋ ମାତ୍ରା ଭବନ୍ତୁ ସଂମନାଃ
ଜାୟା ପତ୍ୟେ ମଧୁମତୀଂ ବାଚଂ ବଦତୁ ଶାନ୍ତିବାମ୍ । ୩ /୩୦/ ୨

(ପୁତ୍ର ପିତାର ଅନୁକୂଳ କର୍ମ କରୁ । ମାତା ପୁତ୍ରର ସମାନମନସ୍କା ହେଉ । ପତ୍ନୀ ପତିକୁ ମଧୁମୟ ବାକ୍ୟରେ ସନ୍ତୁଷ୍ଟ କରୁ) । ପରିବାରରୁ ଗୃହୀତ ଏହି ଶିକ୍ଷା ସେ ସମାଜ ଉଦ୍ଦେଶ୍ୟରେ ଅର୍ପଣ କରିବ । କବି ଭାସ ସ୍ମରଣ କରାନ୍ତି –

କର୍ତ୍ତବ୍ୟୋ ଭ୍ରାତୃଷୁ ସ୍ନେହୋ ବିସ୍ମର୍ତବ୍ୟା ଗୁଣେତରାଃ
ସମ୍ବନ୍ଧୋ ବନ୍ଧୁଭିଃ ଶ୍ରେୟାଂଲ୍ଲୋକୟୋରୁଭୟୋରପି । (ଦୂତ କାବ୍ୟମ (୨/୨୯)

(ଦୋଷ ଭୁଲି ଭାଇକୁ କେବଳ ସ୍ନେହ କର, ବନ୍ଧୁ ସହିତ ପ୍ରେମ ସ୍ଥାପିତ କର । ଏହା ହେଲେ ଲୋକ ପରଲୋକ ଉଭୟତ୍ର ଲାଭବାନ ହେବ) । ପଧାନ ବୁଢ଼ା ଓ ବରଜୁଙ୍କ ଭିତରେ ଏଣୁ ତଫାତ କାହିଁ ? ବସ୍ତୁତଃ କୃଷି ସଂସ୍କୃତିର ପ୍ରବାହ ନିରବଚ୍ଛିନ୍ନ ଭାବରେ ଚାଲିଥିଲା ।

ବରଜୁର ଜନ୍ମ ଦୁଇଟି ଅବସ୍ଥାନ୍ତର କାଳରେ । ବାପଅଜାର ଯୌଥ ପରିବାର ଓ ଛକଡ଼ି, ହରିମିଶ୍ର, ନେତ୍ରମଣିଙ୍କର ଏକକ ପରିବାର, ଏ ଦୁଇଟି ମଧରେ । ସାମାନ୍ୟ ମାତ୍ର ଶିକ୍ଷା ଭିତରେ ତାର ଜ୍ଞାନ ଥିଲା ଅନୁଭୂତିପ୍ରଧାନ – ବାହ୍ୟ ଶିକ୍ଷାକୁ ତେଣୁ ସେ ବିରୋଧ କରେ, ଅନ୍ତର୍ଜ୍ଞାନକୁ ଦିଏ ମର୍ଯ୍ୟାଦା । ସେହି ଜ୍ଞାନ ବଳରେ ସେ ଭାବିଥିଲା ଛକଡ଼ି ପରିପୂର୍ଣ୍ଣ ହେବ । ଯୌଥ ପରିବାରର ମହତ୍ତ୍ୱ ବୁଝିବ । ମାତ୍ର ତାହା ହେବାର ନୁହେଁ । ଏହାର କାରଣ ତାର ଶିକ୍ଷାର ଅଭାବ । ଶିକ୍ଷା ଏ ସ୍ଥଳରେ ଆନୁଷ୍ଠାନିକ ଶିକ୍ଷା ନୁହେଁ, ତାଲିମ । ଛକଡ଼ି ଏକାନ୍ନବର୍ତ୍ତୀ ପରିବାରର ମହତ୍ତ୍ୱ ନ ବୁଝେ ନୁହେଁ, ସ୍ତ୍ରୀକୁ ଲୁଚାଇ ପୁତୁରାଝିଆରୀଙ୍କ ପାଇଁ ନାନା ଜିନିଷ ଆଣେ । ଏ ସୂଚନା ମାତ୍ର, ତାର ଶ୍ରଦ୍ଧାର । ଭୟ ବିଜଡ଼ିତ ସ୍ନେହ । ଭୟ ପତ୍ନୀକୁ । ପତ୍ନୀର ଏକାଧିପତ୍ୟକୁ । ଅପର ପକ୍ଷରେ ହରିମିଶ୍ରର କୁଶିକ୍ଷା । ଛକଡ଼ି ହରିମିଶ୍ର ଓ ନେତ୍ରମଣି ଦୁଇଙ୍କ ମଝିରେ ପେଷା ବସ୍ତୁଟିଏ । ହରିମିଶ୍ର ଆଧୁନିକ ଫିସାଦ ଓ କୋର୍ଟ କଚେରୀ ଜାଲ ଖଚ ମିଛ ପ୍ରସୂତ ଭଦ୍ରବ୍ୟକ୍ତି । ନେତ୍ରମଣି ଥିଲାବାଲାର ଦୁଲାଳୀ - ଏଣୁ ଗର୍ବ ଓ ଅହଂକାର । ତାକୁ ଯିଏ ସୁଧାରିବାର କଥା ହାରାବୋଉ ତାର ସେ ଯୋଗ୍ୟତା ନାହିଁ, ବରଂ ତାକତର୍କକୁ ସେ ଦେଇଛି ପ୍ରଶ୍ରୟ । ଏଣୁ ପରିବାରରେ କଳିର ମଞ୍ଜି ପୋତା ହୋଇଛି ନାରୀ ଦ୍ୱାରା । ତେଣୁ ବିଶୃଙ୍ଖଳା, ଛକଡ଼ି ନାରୀବଶ - କାମବଶ । ସେଥିରୁ ମୁକ୍ତିର ବାଟ ନଥିଲା ନୁହେଁ । ଉପାୟ ଥିଲା ବରଜୁ ପାଖରେ, ବାପ ସମାନ ବଡ଼ଭାଇ ବୋଲି ଜ୍ଞାନ କରେ ଛକଡ଼ି, ମାତ୍ର ବରଜୁ ଦିନେ ବି ଛକଡ଼ିର ଶିକ୍ଷା ପାଇଁ କ୍ଷେତ୍ର ପ୍ରସ୍ତୁତ କରିନାହିଁ । ବହୁ ପରେ ସେ ହାରାମଣିର ପରିବର୍ତ୍ତନ ପାଇଁ ଉଦ୍ୟମ କରିଛି । ମାତ୍ର ଛକଡ଼ିର ତ୍ରୁଟି ବା ବିରୁଦ୍ଧ ଆଚରଣର ସଂଶୋଧନ ପାଇଁ ତାର ନିରୁଦ୍ୟମ ଛକଡ଼ିକୁ ସ୍ୱେଚ୍ଛାଚାରୀ ଓ ସ୍ତ୍ରୀ ବୋଲା ହେବାର ସୁଯୋଗ ସୃଷ୍ଟିକରିଛି । ଏପରି କାହିଁକି କରିଲେ କାଳିନ୍ଦୀଚରଣ ? ଗ୍ରାମ ସଂଗଠନ ଓ ବାହାରର ଲୋକଙ୍କର ପରିବର୍ତ୍ତନରେ ବରଜୁର ବ୍ୟକ୍ତିତ୍ୱର ଦୃଢ଼ତା ବର୍ଣ୍ଣନା କରି ଲେଖକ ଥରେ ହାରାବୋଉ ଆଗରେ କୁହାଇଛନ୍ତି ବରଜୁକୁ । ଘର ସଜାଡ଼ି ନ ପାରିଲେ ବାହାର କିପରି ସଜାଡ଼ି ପାରିବ ? ତେବେ ପ୍ରଶ୍ନ ହୁଏ ଘର କହିଲେ କେବଳ ତାର ପରିବାର ? ଛକଡ଼ି ନେତ୍ରମଣି ନୁହନ୍ତି ?

ନୁହନ୍ତି । କାରଣ ସେ ଅବଧି ସାମାଜିକ ରୀତିଟି ସୁପ୍ତ ଭାବେ ରକ୍ତରେ ପ୍ରବାହିତ, ତଥାଚ ଆଧୁନିକତାର ସ୍ପର୍ଶ ଆସିଲାଣି - ପରିବାର ଭାଙ୍ଗିବ । ହରିମିଶ୍ର ଭଙ୍ଗାଭଙ୍ଗୀର ଏଜେଣ୍ଟ । ଯେଉଁଦିନ ହରିମିଶ୍ର ଅନାହୂତ ଭାବେ ଆସି ଛକଡ଼ିର ଗୋଟିପଣ ହୋଇ ତା ତରଫରୁ ଭିନ୍ନେ ହେବାର ପ୍ରସ୍ତାବ ଶୁଣାଇ ଦେଲା ସେଦିନ ବରଜୁ ବିଶ୍ୱାସ କରି ପାରିଲାନାହିଁ । ଅନେକ ଦିନୁ ଆନମନା ହୋଇଥିବା ଛକଡ଼ିର ଆଚରଣ ଏବଂ ଘର ଭିତରେ ନେତ୍ରମଣିର ରିହ ପ୍ରତି ଉଦାସୀନ ରହିଛି ବରଜୁ । ସେ ଜାଣି ନ ଜାଣିବା ପରି ନୀରବ । ସଂଗଠନ ପିପାସା ବାହ୍ୟପରିବେଶ ପ୍ରତି ଅଧିକ ଉନ୍ମୁଖ ହେବାବେଳେ ପରିବାର ପ୍ରତି କାତର । ଏହା ବରଜୁ ବ୍ୟକ୍ତିତ୍ୱର ଏକ ଦୁର୍ବଳ ଦିଗ ବୋଲି ଯୁକ୍ତିହେବା ସ୍ୱାଭାବିକ । ଏହି ପରିପ୍ରେକ୍ଷୀରେ, ବରଜୁର ତ୍ୟାଗ କେବଳ ଆଦର୍ଶର ଦ୍ୱାହି ବୋଲି କହିବାକୁ ହେବ । ତ୍ୟାଗ ଅନେକ ସମୟରେ ଅହଂକାରର ସାମାଜିକ ରୂପାନ୍ତର ହୁଏ । ଘରଛାଡ଼ିବା ପୂର୍ବରୁ ଗ୍ରାମରେ ବରଜୁ ବହୁ ସମ୍ମାନିତ ଶ୍ରଦ୍ଧେୟ ଓ ଶ୍ରଦ୍ଧାଳୁ ମଣିଷଟିଏ ପରି ବିବେଚିତ ହୋଇଛି । ଏହି ଚରିତ୍ର ସମ୍ପନ୍ନତା ତାକୁ ବାଧ କରିଛି ପିନ୍ଧିଲା ଲୁଗା ବ୍ୟତୀତ ଅନ୍ୟକିଛି ନ ନେବା ପାଇଁ । ଏହାକୁ ନିର୍ଲୋଭ କହିବା କି ? କୁହାଯାଉ । କିନ୍ତୁ ଏହାର ଭିତ୍ତିଟି କଣ ? ବାପ କହିଥିଲା ପାଚେରୀ ଉଠିବ ନାହିଁ । ଅର୍ଥାତ 'ତୋର ମୋର' ଭାବ ବିଦୀର୍ଣ୍ଣ କରିବ ନାହିଁ ଯୌଥ ପ୍ରଥାକୁ । ଯାହା ମୋର ନୁହେଁ, ତାକୁ ନେବି କାହିଁକି ? ସବୁତ ଛକଡ଼ିର । ଏହା ସ୍ୱାଭାବିକତାର ପରିପନ୍ଥୀ ହେଉଛି । ବ୍ୟକ୍ତିର ଅନ୍ତର୍ଲୀନ ମନର କେଉଁ ଗ୍ରନ୍ଥିରେ ନିର୍ଲୋଭର ଅବସ୍ଥାନ ? ତାହାର ପରିଚୟଟି କଣ ? ଏ ପ୍ରଶ୍ନର ଉତ୍ତର ମାଟିର ମଣିଷରୁ ମିଳି ପାରେନା - ତ୍ୟାଗ ଓ ଆଦର୍ଶର ଭିତ୍ତିସ୍ଥାପନ କରି କାଳିନ୍ଦୀଚରଣ ଯୁକ୍ତିବାଦୀ ହୋଇ ପାରିନାହାନ୍ତି ବୋଲି ମନେହୁଏ । ଆବେଗର ଦାସ ରୂପ କଥାବସ୍ତୁକୁ ସେ ଗଢ଼ିଛନ୍ତି ମାତ୍ର ।

ମାଟିର ମଣିଷର ସଫଳତାକୁ ଏକ ଆଭିମୁଖ୍ୟ ସହ ଗଣ୍ଠି ପକାଇ ଅଦ୍ୟାବଧି ବିଚାର କରାଯାଉଛି । ତାହା ହେଲା ହୃଦୟର ପରିବର୍ତ୍ତନ । ଗାନ୍ଧୀବାଦୀ ସତ୍ୟାଗ୍ରହର ଡାକରା ଏହା ଏକ ପ୍ରତିଧ୍ୱନି - ପୁଣି ନିପଟ ମଫସଲ ଅଞ୍ଚଳରେ, ଯେଉଁଠି ଗାନ୍ଧୀ ଶବ୍ଦର ଉଚ୍ଚାରଣ ଶୁଣିବା ଭିନ୍ନ ପଲ୍ଲିବାସୀ ଅଧିକ କିଛି ଜାଣି ନାହାନ୍ତି । ତେବେ ଏହା ପ୍ରତିପକ୍ଷ ବିଷୟ ନୁହେଁ । ଲେଖକ 'ହୃଦୟର ପରିବର୍ତ୍ତନ'କୁ ମୂଳକରି ଧରିଥିଲେ କଥାବସ୍ତୁ ଅନେକ ଆଡୁ ଜଳ ଜଳ ଦିଶିଥାନ୍ତା । ସମସ୍ୟା କଣ୍ଟକିତ ଓଡ଼ିଶାର ଜନଜୀବନରେ ସାମନ୍ତବାଦ ସହିତ ସେ କାଳର ଉପନିବେଶ ଧର୍ମ ଜଡ଼ିତ ଶୋଷଣ ଓ ଅର୍ଥନୀତିକ ବୈଷମ୍ୟ ଥିଲା ବଡ଼ ସମସ୍ୟା । ପଲ୍ଲୀ ଅଞ୍ଚଳ ତଦବଧି ଥିଲା ନିସ୍ତରଙ୍ଗ, ଶାନ୍ତି ଓ ସୌହାର୍ଦ୍ଦ୍ୟର ଭୂମି । ଭାଇ ଭାଗକୁ ସାମାଜିକ ସ୍ତରରେ ସ୍ୱୀକୃତି ମିଳିଥିଲା - ଯେତେ ଭାଇ ସେତେ ଘର । ଏ ସ୍ଥଳରେ ଲେଖକ ଏପରି ବିଷୟ ବାଛିବାର କାରଣଟି କଣ ? ଲେଖକ ଏପରି ଏକ ଚିତ୍ର ବା ଧାରଣାର ପକ୍ଷପାତି ନୁହନ୍ତି । କୃଷି ସଭ୍ୟତା ମୂଳତଃ ଯୋଗ ଜୀବନ ଉପଯୋଗୀ ଏବଂ ତାହା ଉପରେ ନିର୍ଭର କରି ବିକଶିତ ହୁଏ - ଏହି

କଥାର ବିରୁଦ୍ଧାଚରଣ ଘଟୁଛି । ତେଣୁ ଲେଖକ ସତର୍କ କରାଇବାକୁ ଚାହିଁଛନ୍ତି । ହୃଦୟର ପରିବର୍ତ୍ତନ ବୋଲି ଉଠୁଥିବା ଦୁଆଟି ସାର୍ଥକ ହେଉନାହିଁ । ଗ୍ରାମ ବା ସଂକୀର୍ଣ୍ଣ ଓ ସୀମିତ ପରିବାରର ପରିବେଶ ଭିତରେ ତାହା ସାର୍ଥକତା ଆଣିଛି କିନ୍ତୁ ମୁଖ୍ୟ ସମସ୍ୟାର ପରିଣତିରେ ତାହା ସମ୍ଭବ ହୋଇନାହିଁ । ମାଟିର ମଣିଷର ଶେଷରେ ଛକଡ଼ି ଯାଇଛି ହରିପୁର ଗାଁକୁ, ବରଜୁକୁ ଫେରାଇ ଆଣିବା ପାଇଁ । ବରଜୁ ଫେରିଲା ନାହିଁ । ଲୁହାର ମଣିଷରେ ସେପରି ମଧ ସମ୍ଭାବନା ଦେଖାଯାଇ ନାହିଁ । ବରଂ ଭିନ୍ନଭାବେ ବରଜୁ ମନର ଅପ୍ରୀତି ପ୍ରକାଶ ପାଇଛି । ହରିପୁର ଗାଁରେ ଅବସ୍ଥାନ କାଳରେ ଦିନେ ବରଜୁ ଶୁଣିଲା ହରିମିଶ୍ର ଘରୁ ଚୋରିହେବା ଘଟଣାରେ ପଧାନପଡ଼ା ଗାଁର ନିରୀହ କେତେଜଣଙ୍କୁ ପୁଲିସ ବାନ୍ଧି ନେଇଛି । ଏ ଘଟଣାରେ ବିବ୍ରତ ବରଜୁ ଆସିଛି ନିଜ ଗାଁକୁ । ନେତ୍ରମଣି ଭାଇ ଆସିବା ଶୁଣି ବଡ଼ମାଛ ରାନ୍ଧି ଛକଡ଼ିକୁ ପଠାଇଛି ଭାଇଙ୍କୁ ନେଇ ଯିବାପାଇଁ । ବରଜୁ ଗାଁ ଦାଣ୍ଡରେ ଚାଲିଗଲା, ବର୍ଷାର କୋପ ସତ୍ତ୍ୱେ ସେ ହରିପୁର ଫେରିଲା, ଅଥଚ ଘରକୁ ଗଲାନାହିଁ, କିମ୍ବା ଛକଡ଼ି ସହ ଘର ଭଲମନ୍ଦର ପ୍ରଶ୍ନ କରିଲା ନାହିଁ । ଛକଡ଼ି ବା ନେତ୍ରମଣି ମନରେ ଏଥିପାଇଁ ସୃଷ୍ଟି ହେଲାନାହିଁ ପ୍ରତିକ୍ରିୟା । ତା'ପରେ ବରଜୁ ଗଲା ଗାନ୍ଧୀ ଆନ୍ଦୋଳନର ନେତାରୂପେ ଜେଲକୁ । ମାଟିର ମଣିଷ ଭିତରେ ହୃଦୟର ପରିବର୍ତ୍ତନ ଏକ ସାର୍ଥକ ଆଭିମୁଖ୍ୟ ବୋଲି କହିବା ସମୀଚୀନ ମନେହେଉ ନାହିଁ । ଏହାକୁ ମୁଖ୍ୟ ଉଦ୍ଦେଶ୍ୟ ମନେ କରିଥିଲେ ଉପନ୍ୟାସର ଗତି ଓ ପରିଣତି ଭିନ୍ନ ହେବାର ଥିଲା । ତାର ଅଭାବରେ ଉଦ୍ଦେଶ୍ୟ ସିଦ୍ଧ ହେଉନାହିଁ !

ଅର୍ଥାତ ମାଟିର ମଣିଷର ଦ୍ୱନ୍ଦ୍ୱଟି ଦୁର୍ବଳ । ସରଳ ଗ୍ରାମୀଣ ଭାଷାରେ ନିରାଡ଼ମ୍ବର ଦୁଃସ୍ଥ ପରିବାରିକ ଚିତ୍ର ପ୍ରଦାନ ଭିତରେ ତାତ୍‌କାଳିକ ଭାଇ ଭାଗର ଚିତ୍ରଟି ଉପସ୍ଥାପନ ବ୍ୟତୀତ ଏହି ଉପନ୍ୟାସ ଅଧିକ କିଛି କରି ପାରିଛି ବୋଲି ମନେହୁଏ ନାହିଁ । ବରଜୁ ଯେହେତୁ ପ୍ରାଚୀନ ଯୌଥଜୀବନର ପକ୍ଷପାତୀ ତେଣୁ ସେ ଘର ଛାଡ଼ିଛି ପଛେ ଭାଇଭାଗକୁ ସମର୍ଥନ କରିନାହିଁ । ତ୍ୟାଗରେ ସମସ୍ୟା ସମାଧାନ ହୋଇ ନାହିଁ । ଗାନ୍ଧୀ ଆଦର୍ଶଭୂତ ସତ୍ୟାଗ୍ରହ ବା ବିପକ୍ଷକୁ ଅସନ୍ତୁଷ୍ଟ ନ କରିବା ନୀତିକୁ ଉପନ୍ୟାସରେ ଅସ୍ତ୍ର ବୋଲି ଗ୍ରହଣ କରାଯାଇଛି । ସେପରି କରିବା ବ୍ୟତୀତ ବରଜୁର ଭିନ୍ନ ପନ୍ଥା ନଥିଲା । କାଳିନ୍ଦୀଚରଣଙ୍କ ଯୁବକ ମନ ଓ ଆବେଶଶୀଳ ଚେତନ ପୁରୁଷଟି ଭିନ୍ନ କିଛି କଳ୍ପନା କରିବାକୁ ସମର୍ଥ ହୋଇ ନଥିଲା । ସେ ଗାନ୍ଧୀ ଆନ୍ଦୋଳନ ଦ୍ୱାରା ପ୍ରଭାବିତ ହୋଇଥିଲେ, କିନ୍ତୁ ଲେଖକୀୟ ଦିବ୍ୟ ଯୁକ୍ତି ବୋଧ ବା ଅନ୍ତର୍ଦୃଷ୍ଟିଟି ହରାଇ ବସିଥିଲେ ।

ମାଟିର ମଣିଷ ମାଟିର ଚିତ୍ର, ମଣିଷରେ ସାଧାରଣ ତେଲ ଲୁଣ ସଂସାରର ଚିତ୍ର । ଏହାର ଉର୍ଦ୍ଧ୍ୱକୁ ଉଠିବାର ସମ୍ଭାବନାକୁ ଲେଖକ ଆଣିଛନ୍ତି 'ଲୁହାର ମଣିଷ' ରେ । ଲୁହାର ମଣିଷ ପ୍ରତୀକାତ୍ମକ ବୋଲି କୁହାଯାଉଛି । ତଥାସ୍ତୁ । ଅର୍ଥାତ ଦୃଢ଼ତା ସେ ମଣିଷର ପରିଚୟ । ମାଟିର ମଣିଷ ଭିତରେ ଭଙ୍ଗୁରତା ଥିଲା, ଲୁହାର ମଣିଷରେ ତାହା ଅନୁପସ୍ଥିତ । ପ୍ରତୀକଟିକୁ

ଏଇଠୁ ଚିହ୍ନାଯାଉ, କିନ୍ତୁ ଏତିକିରେ ସୀମିତ ନ ହେଉ । ପ୍ରତୀକର ଅର୍ଥର ବ୍ୟାପ୍ତି ପର୍ଯ୍ୟାପ୍ତ ହେତୁ ଅର୍ଥ ସମ୍ଭାବନା ଅନେକ । ଦୁଇଟି କୃତିର ଆଖ୍ୟାନକୁ ବିଶ୍ଳେଷଣ କଲେ ବରଜୁ ଭିତରେ ତାର ଉପଲବ୍ଧି ଓ ବ୍ରତାଚାର ଅଧିକ ଦୃଢ଼, ସ୍ଥାୟୀ ଓ ବିପରୀତ ମୁଖୀ ଶକ୍ତିର ସମ୍ମୁଖୀନ ହେବାର ସାମର୍ଥ୍ୟ ବଢ଼ିଛି । ତାର ଗୋଟିଏ ମାତ୍ର ସୂଚନା ଦ୍ୱିତୀୟ କୃତିରେ ମିଳେ । ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାର ଅବସରରେ ବରଜୁ ନିଜର ସ୍ୱଭାବ ସୁଲଭ ଢ଼ଙ୍ଗରେ ଭାଷଣ ଦେବା ଘଟଣା ପ୍ରତିପାଦନ କରେ ସେ ପାଇଛି ଆତ୍ମବିଶ୍ୱାସ । ଭାଷଣ ଦେଇ ଜାଣି ନଥିବା ଲୋକ ଅଭ୍ୟସ୍ତଙ୍କ ଠାରୁ ସୁନ୍ଦର କରି କହିପାରେ, ସେ ସୂଚନା କର୍ମୀମାନେ ଦେଇଛନ୍ତି । ଏଇଟି ବିସ୍ମୟର ବ୍ୟାପାର, ମାତ୍ର ସତ୍ୟ ଯେ ବରଜୁ ଦଶଜଣଙ୍କ ମଝିରେ ବସି ଯାହା ବୁଝାଉ ଥିଲା ସେ କଥାକୁ ଶହେ ଜଣଙ୍କ ସାମ୍ନାରେ କହିବା ଅସୁବିଧା କଣ ? ଯଦି ଅଛି ଦୃଢ଼ତା, ଆତ୍ମ ବିଶ୍ୱାସ ଏବଂ ଏକ ଆନ୍ତରିକ ଉଦ୍ୟମ ବା ନିଷ୍ଠା । ସତ୍ୟାଶ୍ରିତ ବିଷୟ ଆପେ ପ୍ରକଟିତ ହେବ । ହୃଦୟ ତାକୁ ବାଟ କଢ଼ାଇ ଦେବ । ବରଜୁର ବିଶ୍ୱାସ ତାକୁ ସାଥିତ୍ୱ ଦେଇଛି । ତେଣୁ ହାରାବୋଉ ଓ କେତେକ ଦେଖାଣାହାରି ନାରୀମାନଙ୍କ ନେତ୍ରରେ ଲୁହର ସାଙ୍ଖୋଇ କରି ଗୌରାଙ୍ଗର 'ମହାତ୍ମା ଗାନ୍ଧୀକି ଜୟ' ଆବାଜ ଭିତରେ ସ୍ୱାଧୀନତା ସଂଗ୍ରାମୀ ରୂପେ ସେ ଜେଲ ଯାଇଛି । ଏ ସାର୍ଥକତା ବରଜୁର ନୁହେଁ, ମାଟିର ମଣିଷର । ସ୍ୱାଧନୀତା ଲୋଡୁଥିବା ମାଟିର । ମାଟିର ହୋଇ ସେ ଫଳ ଫଳାଇପାରେ । ମାଟିର ମହତ୍ତ୍ୱ ରକ୍ଷା ପାଇଁ ଲୁହାପରି ଟାଣ ହୋଇ ଜେଲ ଯାଇପାରେ । କିନ୍ତୁ ନିଜର ସ୍ୱପ୍ନରୁ ସେ ବିଚ୍ୟୁତ ହୁଏ ନାହିଁ । ମାଟିର ରୂପାନ୍ତର ଲୁହା ନୁହେଁ, ଲୁହା ଓ ମାଟି ସମାନ୍ତରାଳ । ଭିନ୍ନ ପରିବେଶ ଓ ଆବଶ୍ୟକତାରେ ଏ ଦୁଇଟିର ସ୍ୱାତନ୍ତ୍ର୍ୟ ବରଣୀୟ । ତେଣୁ ଗୋଟିଏକୁ ଅନ୍ୟର ପୂରକ ଶକ୍ତି କହିବାରେ ତ୍ରୁଟି ନାହିଁ । ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ ଯେ ମାଟିର ମଣିଷ ରଚନାର ୧୬ ବର୍ଷ ପରେ ଲୁହାର ମଣିଷ ରଚିତ । ମାଟିର ମଣିଷ ପରେ ମୁକ୍ତାଗଡ଼ର କ୍ଷୁଧା ଓ ଅମର ଚିତା ରଚିତ ହେଲା, ଅଥଚ ଲୁହାର ମଣିଷର ଆବିର୍ଭାବ ପାଇଁ ଘଟିଲା ବିଳମ୍ବ । ଏଥିରୁ ଜଣାଯାଏ ଲେଖକଙ୍କ ପରିକଳ୍ପନା ନଥିଲା ବରଜୁର ରୂପାନ୍ତର କରିବା ପାଇଁ । ଗାନ୍ଧିବାଦର ସଫଳତା ପରେ ଅର୍ଥାତ ସ୍ୱାଧୀନତା ପ୍ରାପ୍ତିରେ ଏବଂ ବିଶେଷ କରି ମାଟିର ମଣିଷ ବହୁ ଲୋକପ୍ରିୟ ହେବାର ଦେଖି ଲେଖକ ବୋଧହୁଏ ଆକୃଷ୍ଟ ହୋଇଛନ୍ତି । ଭାବିଛନ୍ତି ବରଜୁକୁ ଜେଲ ପଠାଇ ଦେଲେ ସେ ହୋଇଯିବ ଲୁହାର ମଣିଷ । ଏ ପରିକଳ୍ପନା ଆବେଗ ବ୍ୟତୀତ ଆଉ କଣ ହୋଇପାରେ ?

'ଆଜିର ମଣିଷ' ସଂପର୍କରେ ଲେଖକଙ୍କର ସୂଚନାର କୌଣସି ଗୁରୁତ୍ୱ ଥିବା ପରି ମନେହୁଏ ନାହିଁ । ପ୍ରଥମ ଲେଖାଟିର ନାମ କଣଥିଲା ଜଣାନାହିଁ । ତାହା ହଜିଗଲା, ପୁଣି ଲେଖାହେଲା ଓ ଗୌରୀ ନାମରେ ବେତାରରେ ପ୍ରଚାରିତ ହେଲା । ପ୍ରକାଶ ବେଳକୁ ଆଜିର ରୂପନେଲା । ଏସବୁ ଘଟଣା ୧୯୫୭ ଓ ତାର ପରକାଳର । ତେବେ ଆଜିର ମଣିଷ ପରି ଉପନ୍ୟାସଟି ଖଣ୍ଡିତ ଚିନ୍ତାଧାରାର ଗର୍ଭାଶୟରୁ ଜନମ । ରେଡ଼ିଓରେ ପେଟ ପୂରଣ ପାଇଁ

ବଦଳିଛି ଭାଷା, ପରିବେଶ ଏବଂ ସମୟର ଧ୍ୱନି ସହ ଗିନି ବଜାଇବା ପରି ଆସିଛନ୍ତି ଖଣ୍ଡିତ ଚରିତ୍ରମାନେ । ମନେହୁଏ ଏହାର ନାୟକ ଦିବାକର ହେଉଛନ୍ତି ସ୍ୱୟଂ କାଳିନ୍ଦୀଚରଣ । ଉଭୟେ ଆଇ.ଏ.ଫେଲ । କାଳିନ୍ଦୀଙ୍କ ପରି ବହୁ ପରିବାର ସ୍ୱପ୍ନ, ମନରେ ଗୋଟିଏ କଥା କାର୍ଯ୍ୟରେ ଆନ, ସଂସ୍କାର ପ୍ରତି ପ୍ରବଣତା ସତ୍ତ୍ୱେ ସେଥିରେ ନିଷ୍ଠାର ଅଭାବ । ବ୍ୟକ୍ତିତ୍ୱ ଆଚ୍ଛନ୍ନ । ଯୁବକର ତରଳ ଓ କମ୍ପିତ ଚିନ୍ତାରେ ତାହା ଅସ୍ଥିର । ସ୍ଥିରତା ତାଙ୍କର ଦିବାସ୍ୱପ୍ନ । ଏଣୁ ପ୍ରଭାବଶାଳୀ ନୁହେଁ । ଦିବାକର ଅସଫଳ ବ୍ୟକ୍ତି, ଠିକ୍ କାଳିନ୍ଦୀଙ୍କ ମୂର୍ଚ୍ଛନାରେ ସେ ଗଢ଼ା । କାଳିନ୍ଦୀ ଜୀବନରେ କମ୍ ଲେଖିନାହାନ୍ତି । ଚିନ୍ତାମଣି ମହାନ୍ତିଙ୍କ ସାଧନାରେ ଯେଉଁ ସିଦ୍ଧି, କାଳିନ୍ଦୀଙ୍କ ସିଦ୍ଧି ତାଠାରୁ ସାମାନ୍ୟ ଉର୍ଦ୍ଧ୍ୱକୁ ଉଠିଛି ଏବଂ ଏ ସିଦ୍ଧି ଗୋଟିଏ ଉପନ୍ୟାସ, ଗୋଟିଏ ଗଳ୍ପ ଓ କେତୋଟି କବିତା ମାତ୍ରକୁ ଆଶ୍ରୟ କରେ । ଏତକ ସିଦ୍ଧିରେ ସହାୟକ ହୋଇଛି ତାଙ୍କ ସମୟ । ବିଶେଷ କରି 'ସବୁଜଯୁଗ' ବୋଲି ଏକ ଅବାଞ୍ଛିତ ଯୁଗର ଆବିର୍ଭାବ ସମୟର ଘଟାନ୍ତରକୁ ପ୍ରତିଫଳିତ କରିବାକୁ ଯାଇ ଅସ୍ଥିର ଓ ପ୍ରତ୍ୟୟହୀନ ଯୁବଚିତ୍ତର ପ୍ରତିଷ୍ଠା କରିଛି । ମନେହୁଏ ଏପରି ଯୁଗଟିଏ ବୋଲି ଯଦି କେହି ଦୃଢ଼ୋକ୍ତି କରି ନଥାନ୍ତେ ଓଡ଼ିଆ ସାହିତ୍ୟରେ କାଳିନ୍ଦୀଙ୍କ ସ୍ଥାନ ଦୟନୀୟ ହୋଇ ପଡ଼ିଥାନ୍ତା । ଆଜିର ମଣିଷର ଦୟନୀୟ ଚିତ୍ରର ପୃଷ୍ଠଭୂମି ସ୍ୱୟଂ କାଳିନ୍ଦୀଚରଣ ଓ ତାଙ୍କ ତଥାକଥିତ ଯୁଗ । ତେଣୁ ଉପନ୍ୟାସଟି ଅତି ମଳିନ ଦେଖାଯାଏ । ଏମିତି ତ ମାଟିର ମଣିଷ ପଢ଼ିବାର ଉତ୍କଣ୍ଠା ଲୁହାର ମଣିଷ ଭିତରେ ମିଳେ ନାହିଁ । ଡଗ ଡଗ ପଢ଼ିବାକୁ ବାଧ ହୁଏ ପାଠକ, ପୃଷ୍ଠା ଓଲଟାଇ ଯିବା ସାର ହୁଏ ।

ଏହି ଅବସ୍ଥା ମଧ୍ୟ 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମର ଚିତା'ରେ । କାହାଣୀ ଧର୍ମିତା ଏହାର ପ୍ରାଣ । ଏଣୁ ପାଠକର ହୃଦୟରେ ତା'ର ସ୍ପନ୍ଦନ କେବଳ କୌତୂହଳ ସୃଷ୍ଟି କରିବା ଛଡ଼ା ତା'ର ମାନସିକ କ୍ଷୁଧାକୁ ଚରିତାର୍ଥ କରେ ନାହିଁ । ଏହାକୁ ଓଡ଼ିଶାର ନଅଙ୍କ କାଳର ଚିତ୍ର ବୋଲି କୁହାଯାଉଛି । ଏହି ହେତୁ କ'ଣ କୃତିର ବୈଶିଷ୍ଟ୍ୟ ବଢ଼ିବ ? ସମାଜର ସମସ୍ୟା ରଚନାର ପୃଷ୍ଠିଭୂମି ହେଉ, ମାତ୍ର ବସ୍ତୁ ବିନ୍ୟାସ, ଚରିତ୍ର ବିଶ୍ଳେଷଣ ଓ ସର୍ବୋପରି ସେଥିର ଗଭୀର ଜୀବନ ଚିତ୍ର ନାହିଁ । ଉନବିଂଶ ଶତାବ୍ଦୀର ଗଡ଼ଜାତ ଶାସନକୁ ଲେଖକ ଉଦାହରଣ ସ୍ୱରୂପ ନେଇ ଚନ୍ଦ୍ରକାନ୍ତ ଓ ଶୁଭକାନ୍ତ ଚରିତ୍ର ଗଢ଼ିଛନ୍ତି । ଶୁଭକାନ୍ତଙ୍କ ପ୍ରାଥମିକ ଜୀବନରେ ଥିବା ରୁକ୍ଷତା ଓ ସ୍ୱେଚ୍ଛାଚାରର ପରିବର୍ତ୍ତନ ଘଟିଛି । ନରହନ୍ତାର ପିପାଶା ରକ୍ତ ନ ହୋଇ ପ୍ରେମରେ ପାରାୟଣ କରିବାର ଅନଳାକାଙ୍କ୍ଷା ପ୍ରକାଶ ପାଇଛି । ଚନ୍ଦ୍ରକାନ୍ତ ଆଶା କରିଥିଲେ ଦୁର୍ଦ୍ଦାନ୍ତ ଲଣ୍ଡାବାବୁ ଯେଉଁ ରକ୍ତର ବାହକ ସେ କେବେ ଚିରଦିନ ଦୁର୍ବିନୀତ ହୋଇପାରେ ନାହିଁ । ନିଜର ପ୍ରଜାମାନଙ୍କୁ ଏଇ ଭରସା ଶୁଣାଇଥିଲେ । ଅବଶ୍ୟ ତାହା ହିଁ ଫଳିଲା । ଲମ୍ପଟ ଲଣ୍ଡାର ପରିବର୍ତ୍ତନ ଘଟିଲା ଶୁଭକାନ୍ତରେ । ସେ ହେଲେ ପ୍ରଜାପ୍ରେମୀ, ତ୍ୟାଗୀ, ପ୍ରେମର ପାତ୍ର ଧରି ସେବା ସାହାଯ୍ୟର ମନ୍ତ୍ର ସେ ଶୁଣାଇଲେ । ସେତେବେଳୁ ଗାନ୍ଧୀ ଆସି ନଥିଲେ । କିନ୍ତୁ ଲେଖକ ହୃଦୟରେ ପରିବର୍ତ୍ତନକୁ ଏକ ଜରୁରୀ ରାଷ୍ଟ୍ରୀୟ ଧ୍ୱନି ମନେକରି ଉପନ୍ୟାସ ରଚିଲେ ।

ଏ ଦିଗରେ ସାର୍ଥକତା ଊଣା ନୁହେଁ । ହୃଦୟର ପରିବର୍ତ୍ତନ ପାଇଁ ଗଡ଼ଜାତ ବା ସାମନ୍ତବାଦୀଙ୍କୁ ଆଣିଛନ୍ତି । ଚନ୍ଦ୍ରକାନ୍ତ ନିଃସନ୍ତାନ । ଦ୍ୱିତୀୟା ପତ୍ନୀ ଗ୍ରହଣ କଲେ ନାହିଁ । ପୁରୋହିତ କନ୍ୟା ସୁନନ୍ଦା ପ୍ରତି କୈଶୋରରୁ ଥିଲା ପ୍ରେମ, ତାହା ସଫଳ ହେଲା ନାହିଁ । ରାଜ ପରିବାରରେ ସେପରି ହେବା ବିରଳ । କିନ୍ତୁ ଯେଉଁ ବ୍ୟତିକ୍ରମ ସାଧାରଣତଃ ସାମନ୍ତ ବା ରାଜତନ୍ତ୍ରରେ ଘଟେ ଲେଖକ ତାହା ଘଟାଇଲେ ନାହିଁ । ଚନ୍ଦ୍ରକାନ୍ତଙ୍କୁ ଏକପତ୍ନୀବ୍ରତୀ କରାଇଲେ । ରାଜା ସନ୍ତାନ ଇଚ୍ଛି ମିଳିତ ହୋଇଛନ୍ତି ସୁନନ୍ଦା ସହ ବାର୍ଦ୍ଧକ୍ୟ ବେଳକୁ । ଲେଖକ କ'ଣ କହିବାକୁ ଚାହିଁଛନ୍ତି ? ଚନ୍ଦ୍ରକାନ୍ତ ରାଜବଂଶର ଚରିତ୍ରରୁ ଭିନ୍ନ, ସେ ପରମ୍ପରାର ବିରୋଧୀ ? ଦ୍ୱିତୀୟା ପତ୍ନୀ ଗ୍ରହଣ କଲେ ନାହିଁ । ବ୍ରାହ୍ମଣ କନ୍ୟାକୁ ଅତିକ୍ରମ ବୟସର ଅପରାହ୍ନରେ ଭୋଗ କଲେ । ଏ ଉପଭୋଗ କ'ଣ ଯୌନ କ୍ଷୁଧା ନୁହେଁ ? ଲେଖକ ଚନ୍ଦ୍ରକାନ୍ତଙ୍କର ଚରିତ୍ର ଭିତରେ ଏପରି ଆଚରଣକୁ ଅତି ସଂଗୁପ୍ତରେ ବର୍ଣ୍ଣନା କରିଛନ୍ତି । ସେମାନଙ୍କ ମିଳନରୁ ଅକସ୍ମାତ୍ ଜନ୍ମିତ ପୁତ୍ର ଉପରେ ରାଜା ଭରସା କରିଛନ୍ତି – ଯେଉଁ ରକ୍ତରୁ ସେ ଜନ୍ମ ସେ କଦାପି ଭ୍ରଷ୍ଟାଚାରୀ ହେବ ନାହିଁ । ବ୍ରାହ୍ମଣୀ ଓ କ୍ଷତ୍ରିୟ (?)ଙ୍କ ସନ୍ତାନ - ବର୍ଣ୍ଣସଙ୍କର - ଚରିତ୍ରରେ ଅଛି ଉଭୟ କୁଳର ପ୍ରଭାବ ଶୌର୍ଯ୍ୟ ସହ ଦୟା କ୍ଷାନ୍ତି କରୁଣାଦି ଗୁଣ । ପିତାର ଗୁଣ ଆଦ୍ୟ ଜୀବନରେ ପ୍ରକଟିତ, ମାତାର ଗୁଣରେ ପରବର୍ତ୍ତୀ ଜୀବନକାଳ ହୋଇଛି ତ୍ୟାଗ ଓ ତିତିକ୍ଷାର । ବର୍ଣ୍ଣସଙ୍କର ହେଲେ ଅବଶ୍ୟ ସାଧାରଣ ବ୍ୟକ୍ତିଠାରୁ ବ୍ୟତିକ୍ରମ ଆଚରଣ ଦେଖାଯାଏ ବୋଲି ପ୍ରଚଳିତ ମତ ଅଛି । ଲେଖକ ତାହାକୁ ଗ୍ରହଣ କରିଛନ୍ତି କି ? ତାହାଦ୍ୱାରା ସେ କ'ଣ କହୁଛନ୍ତି 'ତୁମେ ବର୍ଣ୍ଣସଙ୍କର ସନ୍ତାନ ଉତ୍ପନ୍ନ କର ?' ତେବେ ହୃଦୟର ପରିବର୍ତ୍ତନ ଘଟିବ ? ଶୁଭକାନ୍ତଙ୍କ ଚରିତ୍ରରେ ମାତା-ଗୁଣର ଆଧିକ୍ୟ ତଥା ବିଷୟ ବିନ୍ୟାସ ଓ ଚାରିତ୍ରିକ ବିଭବରୁ ଏପରି ମନେହୁଏ । ଅଧିକନ୍ତୁ ଉପନ୍ୟାସର ବକ୍ତବ୍ୟ ଭିନ୍ନ ପରି ମନେହୁଏ ନାହିଁ ।

ଗାନ୍ଧୀବାଦକୁ ଗ୍ରହଣ କରିନେଲେ କେହି ସଫଳ ସ୍ରଷ୍ଟା ହୁଏ କି ? ସାହିତ୍ୟିକ ସଫଳତା ବା କଳାତ୍ମକ ଉତ୍କର୍ଷର ମାପକାଠି କୌଣସି ଏକ ମତାଦର୍ଶ କି ? ମନେହୁଏ ଆମର ସାହିତ୍ୟ ସମାଲୋଚକମାନେ ଭାବିଛନ୍ତି କାଳିନ୍ଦୀଚରଣ ଗାନ୍ଧୀଙ୍କୁ ଏବଂ କେତେକ କ୍ଷେତ୍ରରେ ମାର୍କସଙ୍କୁ ଗ୍ରହଣ କରି ସଫଳ ସ୍ରଷ୍ଟା ହୋଇଛନ୍ତି । ସମାଲୋଚନାରେ ବ୍ୟକ୍ତିଗତ ରୁଚି ନାହିଁ; ଅଧିକନ୍ତୁ ତାହା ବିଚାରକୁ ପ୍ରଭାବିତ କରିଛି । ଫଳରେ ବିଚାର ନିରପେକ୍ଷ ହୋଇନାହିଁ । ଅଦ୍ୟାବଧି କାଳିନ୍ଦୀଙ୍କ ସାହିତ୍ୟ ସମାଲୋଚନାରେ ଏପରି ବ୍ୟାପାର ଘଟିଛି । ଠାଏ ପ୍ରଖ୍ୟାତ କଥାକାର ଯଶସ୍ୱୀ ଚିନ୍ତାଶୀଳ ସ୍ରଷ୍ଟା ଶ୍ରୀଯୁକ୍ତ ମହାପାତ୍ର ନୀଳମଣି ସାହୁ କହିଛନ୍ତି – ''ତାଙ୍କର ସାହିତ୍ୟିକ ଚେତନାରେ ମନନଶୀଳତା ସହିତ ଅନୁଭୂତି ପ୍ରବଣତାର ଏବଂ ବ୍ୟକ୍ତିବାଦୀ ଦୃଷ୍ଟିକୋଣ ସହିତ ସମାଜବାଦୀ ଦୃଷ୍ଟିକୋଣର ଯେଉଁ ଅପୂର୍ବ ସମନ୍ୱୟ ଘଟିଛି – ସର୍ବୋପରି କି କବିତା କି ପ୍ରବନ୍ଧ, କି ଗଳ୍ପ ଉପନ୍ୟାସ; ସର୍ବକ୍ଷେତ୍ରରେ ତାଙ୍କର ଭାବାବେଗ ଓ ଭାବାଦର୍ଶର ଯେଉଁ ସୁଷମ ସଙ୍ଗତ କାବ୍ୟକୁଶଳ ଅଭିବ୍ୟକ୍ତି ଘଟିଛି, ତାହା ତାଙ୍କର ସମସାମୟିକ ସାହିତ୍ୟକାର

ମାନଙ୍କ ମଧ୍ୟରେ ନିଶ୍ଚୟ ଏକ ବିରଳ ବିଲକ୍ଷଣ । ଏହି ସଦ୍‌ଗୁଣଟି ଲାଗି ଉଗ୍ର ବାମପନ୍ଥୀ ସାହିତ୍ୟ ସମାଲୋଚକମାନେ ତାଙ୍କୁ ମଧ୍ୟମପନ୍ଥୀ ବୋଲି ଯେପରି ଅପବାଦ ଦିଅନ୍ତି, ଅନ୍ୟ ପକ୍ଷରେ ଉଗ୍ର ରୋମାଣ୍ଟିକ୍ ଭାବାବେଗୀ ସମାଲୋଚକମାନେ ମଧ୍ୟ ତାଙ୍କୁ ସେହିପରି 'ବୃଥା ଆଦର୍ଶବାଦୀ'' ବୋଲି ମୃଦୁ କଟାକ୍ଷ କରିଥାନ୍ତି । କିନ୍ତୁ ଦୁଇପଟର ଉଗ୍ରବାଦୀମାନଙ୍କୁ ଅସନ୍ତୁଷ୍ଟ କରିଥିଲେ ବି କାଳିନ୍ଦୀଚରଣ ଗତ ଅର୍ଦ୍ଧଶତାବ୍ଦୀରୁ ବେଶୀ ହେବ କାଳ ବିସ୍ତାର ମଧ୍ୟରେ ଓଡ଼ିଆ ସାହିତ୍ୟର ଯେଉଁ ସର୍ବପ୍ରିୟ ଓ ସର୍ବମାନ୍ୟ ଆସନରେ ସୁପ୍ରତିଷ୍ଠିତ ହୋଇ ରହିଛନ୍ତି ଏବଂ ଯେଉଁ ନିର୍ବିବାଦୀୟ ସାରସ୍ୱତ ଭୂମିକାରେ ନିରାପଦରେ ଦଣ୍ଡାୟମାନ ରହିଛନ୍ତି, ତାହା ହିଁ ତାଙ୍କର ସାହିତ୍ୟିକ କୃତିତ୍ୱ ଓ ସାହିତ୍ୟିକ ବ୍ୟକ୍ତିତ୍ୱର ମହିମା ପ୍ରଖ୍ୟାପିତ କରୁଛି । (କାଳିନ୍ଦୀଚରଣ ଉପନ୍ୟାସ ସମଗ୍ର - ଅଗ୍ରଲେଖ ଭାବରେ ସ୍ଥାନିତ । ଔପନ୍ୟାସିକ କାଳିନ୍ଦୀଚରଣ - ମହାପାତ୍ର ନୀଳମଣି ସାହୁ, ପ୍ରକାଶକ - କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର) ।

ମନେହୁଏ ଶ୍ରୀଯୁକ୍ତ ସାହୁ ମହାଶୟ କେବଳ ଜଣେ ପାଠକର ଆବେଗକୁ ସମାଲୋଚନାରେ ସାଇତି ନେଇଛନ୍ତି । ଜଣେ ସହୃଦୟ ସ୍ରଷ୍ଟାର ହୃଦବେଦୀରେ ପୂର୍ବସୂରୀଙ୍କୁ ମୁଗ୍ଧ ପୁଷ୍ପାଞ୍ଜଳି ଦେଇ ସାରସ୍ୱତ ଉପାସନା କରିଛନ୍ତି । ପାଠକର ଅଭିଭୂତ ହୃଦୟବେଦୀରେ ବସନ୍ତୁ କାଳିନ୍ଦୀଚରଣ – ସେଥିରେ କେହି ପ୍ରତିବାଦ କରିବା ଅନୁଚିତ । ତାହା ତ ଲୋକପ୍ରିୟତାର ନିଦର୍ଶନ, କିନ୍ତୁ ସମାଲୋଚନାର କଥା ଅଲଗା । ଶ୍ରୀଯୁକ୍ତ ସାହୁ ଯେଉଁ ଦ୍ୱିଗୋଷ୍ଠୀ ସମାଲୋଚନାର ପ୍ରଶ୍ନ ଉଠାଇଛନ୍ତି, ତାହା ଏବେ ମଧ୍ୟ କାର୍ଯ୍ୟରତ । କାଳିନ୍ଦୀଚରଣ ଯଥାର୍ଥରେ ମଧ୍ୟମପନ୍ଥୀ, ଆଦର୍ଶବାଦୀ । ଉପନ୍ୟାସ ବାସ୍ତବବାଦୀ ଶିଳ୍ପକଳାର କ୍ଷେତ୍ର । ଆଦର୍ଶ ଏକ ସାମାଜିକ ଲକ୍ଷଣ, ଶିଳ୍ପର ବୈଶିଷ୍ଟ୍ୟରେ ତାହାର ସ୍ଥାନ ଗୌଣ । ଆଦର୍ଶକୁ (ସାମାଜିକ) ଜୀବନର ପ୍ରକଳ୍ପନା ମନେକରିଲେ ତାହା ହୁଏତ ନୀତି ଓ ଆଧ୍ୟାତ୍ମିକତା ପାଇଁ ପଥ ସୁଗମ କରିପାରେ, କିନ୍ତୁ ଯଥାର୍ଥ ଜୀବନର ପ୍ରତିନିଧିତ୍ୱ କରିପାରେ ନାହିଁ । ଆଦର୍ଶକୁ ଛାଡ଼ିଲେ ଜୀବନ ବାଟବଣା ହବ ହିଁ, ମାତ୍ର ତାହାକୁ ଶିଳ୍ପ କ୍ଷେତ୍ରରେ ଗ୍ରହଣ କରିନେବାକୁ ଗ୍ରହଣ କରାଯାଇ ପାରୁନାହିଁ । କଳାପନ୍ଥୀମାନେ କଳାକୁ ଚିତ୍ରପ୍ରଦାୟିନୀ ଯାଦୁ ବୋଲି ମନେକରନ୍ତି; ଯାହା ବାସ୍ତବ, ସ୍ୱାଭାବିକ ବା ଜୀବନର ତୁଲ୍ୟତାରେ ସର୍ବତ୍ର ସମ୍ଭବ ତାହା ଗ୍ରହଣୀୟ ।

ଶ୍ରୀଯୁକ୍ତ ସାହୁଙ୍କର ଦ୍ୱିତୀୟ ମନ୍ତବ୍ୟଟି ପୁନଶ୍ଚ ଏ ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ । ସେ କୁହନ୍ତି, ''କାଳିନ୍ଦୀଚରଣ ଫକୀର ମୋହନଙ୍କ ପ୍ରଭାବକୁ ପୂରା କାଟି ପାରି ନଥିଲେ ବି ଗୋଟିଏ ଦିଗରେ ସେ ତାଙ୍କୁ ଅତିକ୍ରମ କରିଯାଇଛନ୍ତି । × × ସାରିଆ ଭଗିଆ ସେମାନଙ୍କର ବିପର୍ଯ୍ୟୟକାରୀ ନିୟତିର ହାତରେ ଅସହାୟ କ୍ରୀଡ଼ନକ ମାତ୍ର × × କୌଣସି ବିଦ୍ରୋହ ନାହିଁ ଅଥବା କୌଣସି ଉନ୍ନତ ଭାବାଦର୍ଶ ଲାଗି ଅଭିପ୍ସା ନାହିଁ । ନାହିଁ ମଧ୍ୟ ସେମାନଙ୍କର ସେ ସମ୍ବନ୍ଧରେ କିଛି ଜ୍ଞାନ ବା ସଚେତନତା । ସାମାଜିକ କ୍ଷେତ୍ରରେ ମଧ୍ୟ ସେମାନଙ୍କ ପଛରେ

କୌଣସି ଆଦର୍ଶବାଦୀ ସଂଗ୍ରାମୀ ସଙ୍ଗଠନ ନାହିଁ ବା ବିପର୍ଯ୍ୟୟ ହାତରୁ ସେମାନଙ୍କୁ ଉଦ୍ଧାର କରିବା ଦିଗରେ କୌଣସି ସାମାଜିକ ନେତୃତ୍ୱ ବି ନାହିଁ । 'ଛ' ମାଣ ଆଠ' ଗୁଣ୍ଠ'ରେ ଖଳଚରିତ୍ର ରୂପେ ପରିଚିତ ରାମଚନ୍ଦ୍ର ମଙ୍ଗରାଜ ଏପରି ଏକ ଆମୂଳ ଚୂଳ ମନ୍ଦ ବ୍ୟକ୍ତି, ଯାହାର ବ୍ୟକ୍ତିତ୍ୱରେ ଦ୍ୱିତୀୟ ସତ୍ତା ବୋଲି କିଛି ନାହିଁ – ଯାହାର ପ୍ରକୃତରେ କିଛି ମାତ୍ରାରେ ବି ବିଚାର ବିବେକ ଦ୍ୱନ୍ଦ୍ୱଶୀଳତାର ସୂଚନାଇ ନାହିଁ । ସେ କେବଳ ପରିଣାମରେ ଆପଣାର କଲା କର୍ମମାନଙ୍କର ପ୍ରତିଫଳ ଭୋଗିଛି'' (ତତ୍ରୈବ) । ଅପର ପକ୍ଷରେ ସେ କୁହନ୍ତି, ''ବରଲୁ ସଚେତନ, ଆଦର୍ଶ ପରାୟଣ ଓ ସଂଗ୍ରାମ ବୀର ପୁରୁଷ, ଯେ କି ତା'ର ଦୁର୍ଭାଗ୍ୟ ସହ ମୁକାବିଲା କରିଛି ଗାନ୍ଧିଜୀଙ୍କର ଆଦର୍ଶର ଅନୁପ୍ରେରଣାରେ'' (ତତ୍ରୈବ) । ଶ୍ରୀଯୁକ୍ତ ସାହୁଙ୍କୁ ଏବେ ପଚାରିଲେ ସେ ତାଙ୍କର ଏ କଥାକୁ ଦୋହରାଇବେ ବୋଲି ମନେହୁଏ ନାହିଁ । ନିଜ ଅଲକ୍ଷରେ ସେ କେତେକ ତ୍ରୁଟି କରିଛନ୍ତି ଏବଂ ଫକୀରମୋହନ ଓ କାଳିନ୍ଦୀଙ୍କ ଭିତରେ ସମୟଗତ ପାର୍ଥକ୍ୟକୁ ବିଚାରି ନାହାନ୍ତି । ନିରକ୍ଷର ଏବଂ ମାଛିକୁ ମ' କହିବାରେ ଅସମର୍ଥ ସାରିଆ ଭଗିଆ କି ପ୍ରକାର ପ୍ରତିବାଦ କରନ୍ତେ ? ସଂଗଠନ କରନ୍ତେ ? ସେତେବେଳେ କେଉଁ ସାମାଜିକ ସଂଗଠନମାନ ଗରିବ ଅସହାୟମାନଙ୍କର ନେତୃତ୍ୱ ନେଇଥିଲା ? ଇତିହାସକୁ ନିର୍ବାକ କରି ସାହିତ୍ୟିକ ସେ ସମୟର ଲକ୍ଷଣକୁ ଊର୍ଦ୍ଧ୍ୱକୁ ଉଠି ପାରନ୍ତା କି ? ଏହା ସତ୍ତ୍ୱେ ସାରିଆ ମଙ୍ଗରାଜର ବାଡ଼ିରେ ପଡ଼ି ମଲା କାହିଁକି ? କାହିଁକି ଭଗିଆ ମଙ୍ଗରାଜଙ୍କ ନାକ କାମୁଡ଼ିଦେଲା ? ପ୍ରତିବାଦ କିପରି କରିପାରେ ସେପରି ଚରିତ୍ର ? ମଙ୍ଗରାଜଙ୍କର ପୁଣି ଦ୍ୱିତୀୟ ସତ୍ତାଟିର ଆବଶ୍ୟକତା କ'ଣ ପାଇଁ ? ଏପରି ନାନା ପ୍ରଶ୍ନର ଉତ୍ତର ତାଙ୍କ ମନ୍ତବ୍ୟରୁ ମିଳିପାରେନା । ଆବଶ୍ୟକତା ଦୃଷ୍ଟିରୁ କାଳିନ୍ଦୀଙ୍କୁ ବଡ଼ କରିବାର ମୋହରେ ସେ ପଡ଼ିଗଲେ କି ? ଫକୀରମୋହନଙ୍କ ଶିଳ୍ପରୀତି ଓ ବର୍ଣ୍ଣନାରେ ସ୍ୱାଭାବିକତା ଏବେ ମଧ୍ୟ ଅନେକ ସ୍ଥଳରେ ଅନତିକ୍ରମ୍ୟ ହୋଇ ରହିଛି । ତାକୁ ଅତିକ୍ରମ କରିବା ପରି ଶିଳ୍ପରୀତି କାଳିନ୍ଦୀଙ୍କ ପାଖରେ ସ୍ୱପ୍ନତୁଲ୍ୟ । ଗ୍ରାମୀଣ ଜୀବନ ଉଭୟଙ୍କ କୃତିର ଭିତ୍ତିଭୂମି ଓ କଥାବସ୍ତୁର ଆଧାର । ସ୍ୱର୍ଗତ ସେନାପତି ବ୍ୟକ୍ତିଗତ ଭାବେ ଭାଗ୍ୟବାଦୀ ଥିଲେ, ତେଣୁ ସେ ମଙ୍ଗରାଜଙ୍କୁ ଧର୍ମଦଣ୍ଡ ଦିଆଇଛନ୍ତି ଯାହାକୁ ଶ୍ରୀ ମହାପାତ୍ର 'ଆପଣା କଲା କର୍ମମାନଙ୍କର ପ୍ରତିଫଳ' ବୋଲି କୁହନ୍ତି । କିନ୍ତୁ ଏ ବିଚାର ଠିକ୍ କି ? ଏପରି କରିବାକୁ ସେନାପତି ବାଧ ହୋଇ ନାହାନ୍ତି କି ? ବ୍ରିଟିଶ୍ ଆଇନ ବ୍ୟବସ୍ଥାକୁ ଅକାମୀ ଦର୍ଶାଇବାର ଲକ୍ଷ୍ୟ ନେଇ ସେ ଯେଉଁ ବ୍ୟଙ୍ଗ କରିଛନ୍ତି, ତାହା ଯେ କୌଣସି ସମୟର ସ୍ରଷ୍ଟା ପାଖରେ ଦୁର୍ଲଭ ଚିନ୍ତାଟିଏ । ସବୁ ଅପକର୍ମରୁ ମଙ୍ଗରାଜଙ୍କୁ ମୁକ୍ତି ମିଳିଲା, ମାତ୍ର ନେତ ନାମକ ଗାଈର ଚୋରିରେ ସେ ଦଣ୍ଡ ପାଇଲେ । ଏ ଚିତ୍ରଟି ନ ଥିଲେ ଫକୀର ମୋହନଙ୍କୁ ଭାଗ୍ୟବାଦୀ କହିବାକୁ ଯଥେଷ୍ଟ ସୁଯୋଗ ଥାଆନ୍ତା । ତାଙ୍କର ବ୍ୟଞ୍ଜନା ଶିଳ୍ପାତୁର, ବ୍ୟଙ୍ଗ ବ୍ୟବସ୍ଥାର ତ୍ରୁଟି ପ୍ରକଟନରେ ଶତକଣ୍ଠ – ଏ କଥା ଭୁଲିଗଲେ ବୋଧହୁଏ ତାଙ୍କୁ ଅନ୍ୟାୟ କରାଯିବ ।

ଏଇ ପରିପ୍ରେକ୍ଷୀରେ ବରଜୁର ଦ୍ୱିତୀୟ ସତ୍ତାଟି କ'ଣ ? ଶ୍ରୀଯୁକ୍ତ ସାହୁ ମଙ୍ଗରାଜଙ୍କ ଭିତରେ ନ ପାଇ ତାକୁ ଆବିଷ୍କାର କରିଛନ୍ତି ବରଜୁ ଭିତରେ ? ବୋଧହୁଏ ହଁ । ସେଇଟି କ'ଣ ? ବସ୍ତୁ ବିଚାର ବିବେକ ବୋଧ ? ବରଜୁର ଅଛି । ନିଶ୍ଚିତ ରହନ୍ତୁ କଥାକାର । ବାହୁଲ୍ୟ, ସେଇଥିପାଇଁ କେବଳ ବରଜୁ ଆଦର୍ଶବାଦୀ । ତାଙ୍କୁ ଅନ୍ୟମାନେ ଯାହା ମନେକରିଛନ୍ତି, ଶ୍ରୀଯୁକ୍ତ ସାହୁ ପରୋକ୍ଷରେ ତାକୁ ସମର୍ଥନ କରନ୍ତି ନାହିଁ କି ? ଦ୍ୱିତୀୟ ସତ୍ତାଟି ସାମାଜିକ । ପ୍ରଥମ ସତ୍ତା ତା'ର ବ୍ୟକ୍ତିଗତ ଜୀବନର ଅତ୍ୟନ୍ତ ଗୋପନ ବା ଜୀବନ୍ତ ଅବସ୍ଥାର ଚିତ୍ର ଦେବା ବେଳେ ଅପରଟି ଦେଶକାଳପାତ୍ରର ବିଚାରକୁ ଧରି ପ୍ରଥମଟିର ଊର୍ଦ୍ଧ୍ୱକୁ ଉଠେ । ଶ୍ରୀଯୁକ୍ତ ସାହୁ ଯଦି ଏପରି ମନେ କରନ୍ତି ତେବେ ବରଜୁ ଚରିତ୍ର ଭିତରେ ପ୍ରଥମଟିର ଆଭାସ ମିଳେ କି ? ଥରଟିଏ ମାତ୍ର ସେ ହାରାବୋଉ ଟାଣିନେଇଥିଲା କୋଳକୁ, ତାହା ପୁଣି ହାରାବୋଉକୁ ପୁରସ୍କାର ଦେବା ଭଳି କ୍ଷେତ୍ରରେ । ଅନ୍ୟଥା ଆମୂଳାନ୍ତ ବରଜୁ ଭିତରେ ଦ୍ୱିତୀୟ ସତ୍ତା ମୂର୍ତ୍ତିମାନ ।

ଫକୀର ମୋହନଙ୍କ ପରେ ସ୍ମରଣୀୟ କଥାକାର ସ୍ୱର୍ଗତ ପାଣିଗ୍ରାହୀ । କିନ୍ତୁ ସେ ଫକୀରମୋହନଙ୍କ ଯଥାର୍ଥ ଉତ୍ତରାଧିକାରୀ ନୁହନ୍ତି । ଅନ୍ତତଃ ଉପନ୍ୟାସ ବିଚାରରେ ତାଙ୍କୁ ସେ ଗୌରବ ଦେଇହୁଏ ନାହିଁ । ସେନାପତିଙ୍କ ପ୍ରତ୍ୟେକ ଉପନ୍ୟାସ ଅନନ୍ୟ, ଭିନ୍ନ ବସ୍ତୁ ଗୌରବ ନେଇ ସେଗୁଡ଼ିକର ଦୀପ୍ତି ରହିଛି । ପାଣିଗ୍ରାହୀ ପାଞ୍ଚୋଟି ରଚନା କରି ମାତ୍ର ଗୋଟିଏର ସାର୍ଥକ ପିତୃତ୍ୱ ପାଇଛନ୍ତି । ଚରିତ୍ର, ପରିବେଶ ଓ ଦ୍ୱନ୍ଦ୍ୱ ସଂଗଠନରେ ଫକୀର ମୋହନ ଯେଉଁ ଉତ୍କର୍ଷ ପ୍ରତିପାଦନ କରିଥିଲେ ସେଥିରୁ କିଛି କାଳିନ୍ଦୀ ଶିକ୍ଷା କରିଥିଲା ପରି ମନେହୁଏ ନାହିଁ । ମାଟିର ମଣିଷ ବା ଲୁହାର ମଣିଷ ଏକ ସରଳ ରେଖାରେ ଗତିଶୀଳ । ବାହ୍ୟ ଘଟଣାରେ ସେପରି ଦ୍ୱନ୍ଦ୍ୱ ବା ଚମତ୍କାରିତା ନାଟକୀୟ ଉତ୍କଣ୍ଠାର ଅଭାବ ପରିଲକ୍ଷିତ ହୁଏ । ଏଣୁ ବହିର୍ଦ୍ୱନ୍ଦ୍ୱଗୁଡ଼ିକ ଅନ୍ତର୍ଦ୍ୱନ୍ଦ୍ୱରେ ସହାୟକ ହୋଇ ପାରନ୍ତି ନାହିଁ । ସରଳ ରୈଖିକ ଗତି ବାହ୍ୟ ଦ୍ୱନ୍ଦ୍ୱର ନିୟାମକ ରୂପେ ଚରିତ୍ରକୁ ଅନେକାଂଶରେ ମଳିନ କରି ରଖେ । ଅନ୍ତର୍ଦ୍ୱନ୍ଦ୍ୱ ସେଥିରେ ତୀବ୍ର ଗତିଶୀଳତା ଆଣି ଚଞ୍ଚଳ ଓ ଜୀବନ୍ତ କରେ । ନାଟକୀୟତା କଥାବସ୍ତୁକୁ ବକ୍ରଗତି ସମ୍ପନ୍ନ କରି କାହାଣୀକୁ ପ୍ଲଟଧର୍ମିତା ଦିଏ, ଫଳରେ ବିଷୟବସ୍ତୁ ଯୁଗପତ୍ କାହାଣୀ ଓ ପ୍ଲଟର ସମନ୍ୱୟରେ ଅଧିକ ପ୍ରାଣସ୍ପର୍ଶୀ ହୁଏ । ମାଟିର ମଣିଷ ଓ ଲୁହାର ମଣିଷରେ ଏହାର ବହୁ ଅଭାବ । ଅଥଚ, ମୁକ୍ତାଗଡ଼ର କ୍ଷୁଧା ଓ ଅନେକ ପରିମାଣରେ ଅମରଚିତାରେ ତାହା ସୁଲଭ । କାଳିନ୍ଦୀ ବର୍ଣ୍ଣନା ଚତୁର ନୁହନ୍ତି । ଭାଷାର ସରଳତା ଓ ଚମତ୍କାରୀ ଅର୍ଥ ପାଟବତା ସତ୍ତ୍ୱେ ଆବେଗହୀନ ଗତି ଆଜିର ପାଠକକୁ ବାନ୍ଧି ରଖିବାରେ ସମର୍ଥ ହୁଏ ନାହିଁ ବୋଲି ମନେହୁଏ ।



# ମୁକ୍ତାଗଡ଼ର କ୍ଷୁଧା ଓ ଅମରଚିଂତା

ଡ: ଅର୍ଚ୍ଚନା ନାୟକ

ଔପନ୍ୟାସିକ କାଳିନ୍ଦୀଚରଣ ପ୍ରାଣିଗ୍ରାହୀଙ୍କର ଏକ ବର୍ଷର ବ୍ୟବଧାନ ମଧ୍ୟରେ ରଚିତ ଦୁଇଟି ଉପନ୍ୟାସ 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମରଚିତା' ଓଡ଼ିଆ ଉପନ୍ୟାସ ଜଗତର ଦୁଇଟି ଉଲ୍ଲେଖନୀୟ କୃତି । ଉଭୟ ଉପନ୍ୟାସ ମଧ୍ୟରେ ଥିବା ସାଦୃଶ୍ୟ ହେତୁ ମୁକ୍ତାଗଡ଼ର କ୍ଷୁଧାକୁ ଯଦି ଏକ ପୂର୍ଣ୍ଣାଙ୍ଗ ଉପନ୍ୟାସର ପୂର୍ବ ପ୍ରସ୍ଥ ବୋଲି ବିଚାର କରାଯାଏ, ତେବେ ଅମରଚିଂତା ଏହି ଉପନ୍ୟାସର ଉତ୍ତର ପ୍ରସ୍ଥ ଭାବରେ ବିବେଚିତ ହେବ । ଇଂରେଜ ଶାସନାଧୀନ ଓଡ଼ିଶାରେ ବୁଭୁକ୍ଷୁ ଜନତାର ହା' ଅନ୍ନ ଚିତ୍‌କାର ସାମାଜିକ ଜୀବନ-ବିପର୍ଯ୍ୟୟ ଯେଉଁ ଅନ୍ଧାରୀ ଗହ୍ୱର ସୃଷ୍ଟି କରିଥିଲା, ଏହି ଉପନ୍ୟାସ ଦୁଇଟି ତା'ର କରୁଣ ମାର୍ମିକ ପ୍ରତିଲିପି ।

ଦୁଇଟି ପୃଥକ ଉପନ୍ୟାସର ସ୍ୱୀକୃତି ଘେନିଥିବା 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମରଚିଂତା' କାଳିନ୍ଦୀଚରଣଙ୍କର ପ୍ରଖ୍ୟାତ ଉପନ୍ୟାସ 'ମାଟିର ମଣିଷ' (୧୯୩୧)ର ରଚନା ପରବର୍ତ୍ତୀ ଦୁଇବର୍ଷ ମଧ୍ୟରେ ରଚିତ ହୋଇଛି । ଔପନ୍ୟାସିକଙ୍କର ଅନ୍ୟ ଦୁଇଟି ଉପନ୍ୟାସ 'ଲୁହାର ମଣିଷ' ଓ 'ଆଜିର ମଣିଷ' ପ୍ରଥମକାଳରେ ରଚିତ ତିନୋଟି ଉପନ୍ୟାସର ବହୁ ବର୍ଷ ପରେ ରଚିତ ହୋଇଥିଲା । ଉଲ୍ଲେଖଯୋଗ୍ୟ କଥା ହେଲା ଭିନ୍ନ ପୃଷ୍ଠଭୂମି ସମୃଦ୍ଧ ପ୍ରଥମ ତିନୋଟି ଉପନ୍ୟାସ ଜାତୀୟତାବାଦୀ ପ୍ରେରଣା ବଶରୁ ରଚିତ ଓ ମାନବିକ ଆବେଦନ ଉପରେ ପ୍ରତିଷ୍ଠିତ । ଉକ୍ତ ତିନିଗୋଟି ଉପନ୍ୟାସ ମଧ୍ୟରୁ 'ମାଟିର ମଣିଷ' ଉପନ୍ୟାସଟି ଗାନ୍ଧୀବାଦୀ ଦର୍ଶନର ଜୟ ଜୟକାର କରୁଥିବା ବେଳେ ଅନ୍ୟ ଦୁଇଟି ଉପନ୍ୟାସ ଗୋଟିଏ ଐତିହାସିକ ଜାତିର ବିପର୍ଯ୍ୟୟ କାଳର ବର୍ଣ୍ଣନା ସଂଗେ, ବ୍ୟକ୍ତିର ଚରମ ଆକାଂକ୍ଷା ଯେ ମାନବପ୍ରୀତି, ତାହା ସୂଚାଇଥାଏ ।

'ମୁକ୍ତାଗଡ଼ର କ୍ଷୁଧା' ଉପନ୍ୟାସର ରଚନାକାଳ ୧୯୩୨ ମସିହା । ଉପନ୍ୟାସରେ ବର୍ଣ୍ଣିତ ଘଟଣାର ପୃଷ୍ଠଭୂମି ହେଉଛି ୧୮୩୦ ମସିହା । ଏହି ଉପନ୍ୟାସରେ ପ୍ରାୟତଃ ଛତିଶ ବର୍ଷର ଘଟଣାକାଳ ସ୍ଥାନ ପାଇଛି ଓ ୧୮୬୬-୬୭ ମସିହାର ଘଟଣା ବର୍ଣ୍ଣନା ମଧ୍ୟରେ ଉପନ୍ୟାସଟିର ପରିସମାପ୍ତି ଘଟିଛି । ସେହିପରି 'ଅମରଚିଂତା' ଉପନ୍ୟାସର ରଚନାକାଳ ୧୯୩୩ ମସିହା ଓ ଏହାର ପୃଷ୍ଠଭୂମି ମୁକ୍ତାଗଡ଼ର କ୍ଷୁଧା ଉପନ୍ୟାସର ବିଷୟବସ୍ତୁ ବର୍ଣ୍ଣନାର ଅନ୍ତିମକାଳ ଅର୍ଥାତ ୧୮୬୬- ୬୭ରୁ ହିଁ ଆରମ୍ଭ ହୋଇଛି । ଅମରଚିଂତା ଉପନ୍ୟାସରେ

ରହିଛି ପ୍ରାୟ ଦଶବର୍ଷର ଘଟଣା ପ୍ରବାହ ଓ ଏହା ୧୮୬୬-୬୭ ମସିହା ମଧ୍ୟରେ ଶେଷ ହୋଇଛି । ପ୍ରାୟତଃ ଅର୍ଦ୍ଧଶତାବ୍ଦୀର ଘଟଣାକ୍ରମକୁ ନେଇ ଉପନ୍ୟାସ ଦୁଇଟି ରଚିତ ହୋଇଥିଲେ ମଧ୍ୟ ଦୁଇଟି ଉପନ୍ୟାସର ଦୁଇତୃତୀୟାଂଶ ଭାଗରେ ନ'ଅଙ୍କ ଦୁର୍ଭିକ୍ଷ (୧୮୬୬-୬୭) ର ପ୍ରଭାବ ଓ ତା'ର ସୁଦୂରପ୍ରସାରୀ ପରିଣତି ସ୍ଥାନ ଲାଭ କରିଥିବାବେଳେ ଅବଶିଷ୍ଟ ଏକ ତୃତୀୟାଂଶରୁ କମ୍ ଭାଗରେ ରହିଛି ଅନ୍ୟ କେତୋଟି ବର୍ଷର ଘଟଣାବଳୀ । ଷଡ଼ବିଂଶ ପରିଚ୍ଛେଦବିଶିଷ୍ଟ ଉଭୟ ଉପନ୍ୟାସ ଓଡ଼ିଶାରେ ଘଟିଥିବା ନ'ଅଙ୍କ ଦୁର୍ଭିକ୍ଷର ଏକ କରୁଣ ଅଭିଲିପି ।

ଉପନ୍ୟାସର ପରିକଳ୍ପନା ଓ ଘଟଣାପ୍ରବାହର ସଂଯୋଜନା ଦୃଷ୍ଟିରୁ 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମରଚିତା' ଉପନ୍ୟାସ ମଧ୍ୟରେ ସାମାନ୍ୟ କେତେକ ପ୍ରଭେଦ ଲକ୍ଷ୍ୟ କରାଯାଏ । ଔପନ୍ୟାସିକ 'ମୁକ୍ତାଗଡ଼ର କ୍ଷୁଧା' ରଚନା କାଳରେ କେତେକାଂଶରେ ତଥ୍ୟଭିତ୍ତିକ ଓ ସମୟ ସଚେତନ ମନେ ହେଉଥିବା ବେଳେ 'ଅମରଚିତା' ଉପନ୍ୟାସରେ ଏହାର କେତେକ ବ୍ୟତିକ୍ରମ ଲକ୍ଷ୍ୟ କରାଯାଏ । ମୁକ୍ତାଗଡ଼ର କ୍ଷୁଧାରେ ବର୍ଣ୍ଣନାତ୍ମକ ଓ ବେଳେ ବେଳେ କାବ୍ୟଧର୍ମୀ ଶୈଳୀକୁ ଗ୍ରହଣ କରାଯାଇଥିବା ବେଳେ ଅମରଚିତା ଉପନ୍ୟାସରେ ବିବରଣାତ୍ମକ ଶୈଳୀର ପ୍ରୟୋଗ କରାଯାଇଛି । ମୁକ୍ତାଗଡ଼ର କ୍ଷୁଧା ଉପନ୍ୟାସର ପ୍ରଥମ ଭାଗରେ ରହିଛି କ୍ଷୟିଷ୍ଣୁ ସାମନ୍ତବାଦୀ ଧାରାର ଚିତ୍ର । ଯେଉଁଠି ଶାସକର ଇଚ୍ଛାର ଦାସ ସାଜି ବ୍ୟକ୍ତି କେବେ ଅନ୍ୟାୟ, ଅତ୍ୟାଚାର ଓ ଅପମାନ ସହ୍ୟ କରିଛି ତ ପୁଣି କେବେ କେବେ ପ୍ରଜାବତ୍ସଳ ଶାସକର ଶାସନ ଦଣ୍ଡ ତଳେ ବ୍ୟକ୍ତି ନିଜକୁ ସୁଖୀ ଓ ନିରାପଦ ମନେକରିଛି । କିନ୍ତୁ ଉକ୍ତ ଉପନ୍ୟାସର ଅପର ଅର୍ଦ୍ଧେକ ଓ ଅମରଚିତା ଉପନ୍ୟାସରେ ମୁଖ୍ୟତଃ ସ୍ଥାନ ପାଇଛି ନ'ଅଙ୍କର କରୁଣ ଚିତ୍ର ।

ମୁକ୍ତାଗଡ଼ର କ୍ଷୁଧାର କଥାଭାଗ ଆରମ୍ଭ ହୋଇଛି ୧୮୩୦ ମସିହାରୁ ଓ ୩୬/୩୭ ବର୍ଷର ଘଟଣା ପ୍ରବାହ ପରେ ଏହା ୧୮୬୬/୬୭ ରେ ଶେଷ ହୋଇଛି । ଏହାର କାହାଣୀ ଭାଗ ତିନିଗୋଟି ପର୍ଯ୍ୟାୟ ଦେଇ ଗତିଶୀଳ । ୧୮୩୦-୧୮୫୦ ମସିହା ମଧ୍ୟରେ ଘଟିଥିବା ଘଟଣାର ବିବରଣୀ ଏଗାରଗୋଟି ପରିଚ୍ଛେଦ ବିଶିଷ୍ଟ ଉପନ୍ୟାସର ପ୍ରଥମ ପର୍ଯ୍ୟାୟ । ଏହା ମୁକ୍ତାଗଡ଼ର ରାଜା ଚନ୍ଦ୍ରକାନ୍ତ ପଟ୍ଟଦେବଙ୍କୁ କେନ୍ଦ୍ରକରି ଗତିଶୀଳ ହୋଇଛି । ୧୮୫୦ - ୧୮୬୬ ମସିହା ହେଉଛି ଉପନ୍ୟାସର ଦ୍ୱିତୀୟ ପର୍ଯ୍ୟାୟର କାହାଣୀ । ଏହାର ଆଠଗୋଟି ପରିଚ୍ଛେଦରେ ବର୍ଣ୍ଣିତ ହୋଇଛି ମୁକ୍ତାଗଡ଼ର ପରବର୍ତ୍ତୀ ଶାସକ ଶୁଭକାନ୍ତ ପଟ୍ଟଦେବଙ୍କର ପ୍ରଜାମାରଣ ଓ ବିଳାଶମୟ ଜୀବନର ପ୍ରସଙ୍ଗ । ୧୮୬୬-୬୭ ମସିହାର ଘଟଣାବଳୀକୁ ନେଇ ଉପନ୍ୟାସର ତୃତୀୟ ବା ଅନ୍ତିମ ପର୍ଯ୍ୟାୟର ପରିକଳ୍ପନା କରାଯାଇଛି । ସାତଗୋଟି ପରିଚ୍ଛେଦରେ ପ୍ରସ୍ତୁତ ଏହି ଅଂଶରେ ମୁଖ୍ୟତଃ ବର୍ଣ୍ଣିତ ହୋଇଛି ନ'ଅଙ୍କର ଚିତ୍ର ଓ ରାଜା ଶୁଭକାନ୍ତଙ୍କର ଜନହିତକର କାର୍ଯ୍ୟାବଳୀ ।

ମୁକ୍ତାଗଡ଼ର କ୍ଷୁଧା ଉପନ୍ୟାସ ରାଜା ଚନ୍ଦ୍ରକାନ୍ତ ପଟ୍ଟଦେବଙ୍କ ଠାରୁ ଆରମ୍ଭ ହୁଏ । ସେ ପ୍ରଥମେ କବି ଓ ପ୍ରେମିକ । ପରେ ରାଜା । ସେ ଥିଲେ ଜଣେ ପ୍ରଜାବତ୍ସଳ ଶାସକ । ତାଙ୍କର ସୁଖ୍ୟାତି ମୁକ୍ତାଗଡ଼ର କୋଣ ଅନୁକୋଣରେ ପ୍ରଚାରିତ ଥିଲା । ରାଜାଙ୍କର ଦୁଃଖ ଥିଲା, ସେ ନିଃସନ୍ତାନ । ଏକ ପତ୍ନୀବ୍ରତୀ ରାଜାଙ୍କର ଗୋଟିଏ ଦୁର୍ବଳତା ଥିଲା ସୁନନ୍ଦା, ରାଜ ପୁରୋହିତଙ୍କର ବାଲ୍ୟବିଧବା କନ୍ୟା । ରାଜାଙ୍କର ଦୁର୍ବଳ ମୁହୂର୍ତ୍ତର ପରିଣତି ସ୍ୱରୂପ ସୁନନ୍ଦାଙ୍କର ଗର୍ଭରୁ ଅନ୍ୟମାନଙ୍କ ଅଗୋଚ଼ରରେ ଜନ୍ମ ନେଇଥିଲା ଏକ ଶିଶୁପୁତ୍ର । ଯାହାର ପାଳନର ଦାୟିତ୍ୱ ନେଇଥିଲା ଫୁଲବାଇ ଗୌରୀ । ଲଣ୍ଡା ନାମରେ ପରିଚ଼ିତ ଏହି ବାଳକଟି ପ୍ରତି ଅଦ୍ଭୁତ ଆକର୍ଷଣ ଅନୁଭବ କରନ୍ତି ରାଣୀ । କିନ୍ତୁ ଶିଶୁଟିକୁ ପୋଷ୍ୟପୁତ୍ର ଭାବରେ ଗ୍ରହଣ କରିବା ପୂର୍ବରୁ ରାଣୀ ଦେହ ତ୍ୟାଗ କରନ୍ତି । ଗୌରୀର ମୃତ୍ୟୁପରେ ପରେ ରାଜା ସୁନନ୍ଦାଙ୍କ ଉପରେ ନ୍ୟସ୍ତ କରନ୍ତି ବାଳକ ଲଣ୍ଡାର ଦାୟିତ୍ୱ । ମାତ୍ର ରାଣୀଙ୍କ ମୃତ୍ୟୁ ପରେ ପରେ ରାଜା ଚନ୍ଦ୍ରକାନ୍ତ ମଧ ଇହଧାମ ତ୍ୟାଗ କରନ୍ତି । କିନ୍ତୁ ମୃତ୍ୟୁପୂର୍ବରୁ ରାଜା ନିଜର ଅପରାଧ ସ୍ୱୀକାର କରନ୍ତି ଓ ନିର୍ଦ୍ଦେଶ ଦିଅନ୍ତି, 'ମୋର ଶ୍ରାଦ୍ଧ କ୍ରିୟା ଲଣ୍ଡାବାବୁ ଦ୍ୱାରା ହିଁ ସମାହିତ ହେବ । ଗୌରୀ ଦ୍ୱାରା ଲାଳିତ ଲଣ୍ଡାବାବୁ ମୋର ମୃତ୍ୟୁ ପରଠାରୁ ରାଜା ଶୁଭକାନ୍ତ ପଟ୍ଟଦେବ ନାମରେ ଅଭିହିତ ହେବେ । ଆମ୍ଭମାନଙ୍କର ବଂଶ ପରମ୍ପରା ବିଧି ଅନୁସାରେ । ଏ ଘଟଣାକୁ କେହି ଆଦର୍ଶ ବୋଲି ଗ୍ରହଣ ନକରନ୍ତୁ । ମାନବ ଜୀବନର କେବଳ ଏକ ଅତିରିକ୍ତ ସହଜ ପ୍ରକାଶ ରୂପେ ଏହା ଗୃହୀତ ହେଉ । ଏହାହିଁ ମୋର ଆନ୍ତରିକ କାମନା ।'' (ପୃଷ୍ଠା - ୪୮, କା. ର. ଚ, ୨ୟ ଖଣ୍ଡ)

ଉପନ୍ୟାସର ଏହି ପର୍ଯ୍ୟାୟଟି ଏକ ଗଭୀର, ସୂକ୍ଷ୍ମ, ମାନବିକ ଆବେଗ ଉପରେ ପ୍ରତିଷ୍ଠିତ । କାରଣ ସୁନନ୍ଦାଙ୍କ ପ୍ରତି ଆକର୍ଷଣ ବଶରୁ ହେଉ ବା ବଂଶ ରକ୍ଷାର ଅଦୃଶ୍ୟ ଆହ୍ୱାନ କାରଣରୁ ହେଉ ସୁନନ୍ଦାଙ୍କ ସହ ଚନ୍ଦ୍ରକାନ୍ତଙ୍କର ଗୋପନ ଅଭିସାର ରାଜାଙ୍କର ଐଶ୍ୱର୍ଯ୍ୟମୟ ବ୍ୟକ୍ତିତ୍ୱର ବିରୁଦ୍ଧାଚରଣ କଲେ ବି ସୂକ୍ଷ୍ମ ବିଚାର ଦୃଷ୍ଟିରୁ ଏହା ଖୁବ୍ ସ୍ୱାଭାବିକ ମନେହୁଏ । ରାଜାଙ୍କ ଭାଷାରେ ଏହା ଆଦର୍ଶ ନ ହୋଇପାରେ, ମାତ୍ର ମଣିଷ ଜୀବନଧି ଏକ ସହଜ ପ୍ରକାଶ । ଅନ୍ୟତ୍ର ସେ ସ୍ୱୀକାର କରିଛନ୍ତି, - ''କିନ୍ତୁ ଜୀବନର ଗତି ଯେ ଏପରି ବିଚ଼ିତ୍ର ଭାବରେ ଫେରିପାରେ ତା' କଳ୍ପନା କରିବା ମଧ ମୋ ପକ୍ଷରେ କୌଣସି ଦିନ ସମ୍ଭବ ହେଲାନାହିଁ । ହାୟ କଳ୍ପନାଠାରୁ ସତ୍ୟ ଯେ ଆହୁରି ଅଦ୍ଭୁତ । ଏହା କିଏ ଜାଣେ ।''(ପୃଷ୍ଠା ୪୬, କା.ର.ଚ.୨ୟ ଖଣ୍ଡ) ଏହି ପର୍ଯ୍ୟାୟରେ ଫୁଲବାଇ ଗୌରୀ ଶିଶୁଟିକୁ ଲାଳନ ପାଳନ କରିବା, ସୁନନ୍ଦା ଓ ରାଣୀଙ୍କର ବାତ୍ସଲ୍ୟ ସ୍ନେହ, କୃଷକ କନ୍ୟା ସୁନାର ଶିଶୁକୁ ସ୍ତନ୍ୟଦାନ ଭଳି ପ୍ରସଙ୍ଗ ଗଭୀର ଭାବରେ ଆବେଗଧର୍ମୀ । ତେବେ ଏଥିରେ ଚନ୍ଦ୍ରକାନ୍ତ ପଟ୍ଟଦେବଙ୍କର ଶାସନ ଅପେକ୍ଷା ବ୍ୟକ୍ତିଗତ ଜୀବନଚିତ୍ର ବିଶେଷ ଅଗ୍ରାଧିକାର ଲାଭ କରିଛି ।

ଲଣ୍ଡା ଓରଫ ଶୁଭକାନ୍ତ ପଟ୍ଟଦେବଙ୍କ ରାଜ୍ୟାଭିଷେକ ଠାରୁ ଉପନ୍ୟାସରେ କାହାଣୀର ଦ୍ୱିତୀୟ ପର୍ଯ୍ୟାୟ ଆରମ୍ଭ । ଫୁଲବାଇର ପୁତ୍ରରୂପେ ରାଜଦାଣ୍ଡରେ ଭ୍ରମଣ କରୁଥିବା ଲଣ୍ଡା

ମୁକ୍ତାଗଡ଼ର ରାଜସିଂହାସନ ଲାଭ କରିବା ଘଟଣାଥିଲା ଆକସ୍ମିକ ଓ ବିସ୍ମୟଜନକ । ତେଣୁ ରାଜକୀୟ କ୍ଷମତାର ଅସଦ୍ ବ୍ୟବହାର ବୃଦ୍ଧି ପାଇଲା । ଅନଭିଜ୍ଞ ଯୁବକ ଶୁଭକାନ୍ତଙ୍କର ଦୁର୍ବଳତାର ସୁଯୋଗ ନେଲା ରାଜକର୍ମଚାରୀ ବଳରାମ । ରାଜାଙ୍କର ବ୍ୟୟବହୁଳ ବିବାହ ଖର୍ଚ୍ଚ, ପ୍ରାଚୁର୍ଯ୍ୟମୟ ଜୀବନଯାପନ ପ୍ରଣାଳୀ, ନୂତନ ନବର ନିର୍ମାଣ ଯୋଗୁଁ ମୁକ୍ତାଗଡ଼ର ରାଜକୋଷ ଶୂନ୍ୟହେଲା । ଅଧିକ ରାଜସ୍ୱ ସଂଗ୍ରହ ଲକ୍ଷ୍ୟ ହିଁ ଶୁଭକାନ୍ତଙ୍କୁ ଜଣେ ଅତ୍ୟାଚାରୀ ଓ ପ୍ରଜା ଉତ୍ପୀଡ଼କ ଶାସକରେ ରୂପାନ୍ତରିତ କଲା । ଶେଷରେ ସନାତନ ନାମକ ଜଣେ ବ୍ରାହ୍ମଣ ଯୁବକର ନେତୃତ୍ୱରେ ପ୍ରଜାଗଣ ଦୁଃଖ ଜଣାଇବାକୁ ଆସି ବଳରାମଙ୍କ ବାକ୍‌ଚାତୁରୀ ଯୋଗୁଁ ରାଜାଙ୍କ କ୍ରୋଧର ଶିକାର ହେଲେ ଓ ରାଜାଙ୍କ ନିର୍ଦ୍ଦେଶରେ ସନାତନ ମୁକ୍ତାଗଡ଼ର ପରିସୀମା ତ୍ୟାଗ କରିବାକୁ ବାଧ ହେଲେ । ନଅଙ୍କ ଦୁର୍ଭିକ୍ଷର ଏହି ପ୍ରାରମ୍ଭ କାଳରେ ରାଜା ଶୁଭକାନ୍ତଙ୍କୁ ଶୈଶବରେ ସ୍ତନ୍ୟଦାନ କରିଥିବା କୃଷକ କନ୍ୟା ସୁନା ଅନାହାରରେ ମୃତ୍ୟୁବରଣ କରିବା, ଶୁଭକାନ୍ତଙ୍କୁ ଘୋର ବ୍ୟଥିତ କରେ । ରାଜାଙ୍କର ଆସେ ପରିବର୍ତ୍ତନ ।

ଉପରୋକ୍ତ ଘଟଣାବଳୀକୁ ନେଇ ଶୁଭକାନ୍ତ ପଟ୍ଟଦେବଙ୍କ ଶାସନର ଦୀର୍ଘ ପନ୍ଦରବର୍ଷ ପରିକଳ୍ପିତ । ଏଥିରେ ମୁଖ୍ୟତଃ କ୍ଷୟିଷ୍ଣୁ ସାମନ୍ତବାଦୀ ସଭ୍ୟତାର ନଗ୍ନସ୍ୱରୂପର ଉଦ୍‌ଘାଟନ କରାଯାଇଛି । ପ୍ରଜାପୀଡ଼କ ଶୁଭକାନ୍ତଙ୍କୁ ବ୍ରାହ୍ମଣ ଯୁବକ ସନାତନ ଆହ୍ୱାନ ଦେଇଛନ୍ତି - ‘‘ରାଜା ପ୍ରଜା ମଧରେ ସମ୍ବନ୍ଧ ଦେବତ୍ୱର ସମ୍ବନ୍ଧ ହେବା ତ ଦୂରର କଥା, ଅନ୍ତତଃପକ୍ଷେ ମନୁଷ୍ୟତାର ସ୍ଥାନ ସେଥିରେ ରହୁ; ପଶୁତ୍ୱ ଏବଂ ପିଶାଚ୍ ସମ୍ବନ୍ଧ ଦୂର ହେଉ । ରାଜା କେବଳ ପ୍ରଜାର ପ୍ରଭୁ ନୁହେଁ ମହାରାଜ ! ତାହାର ଭୃତ୍ୟ ମଧ୍ୟ । ପ୍ରଜା ସାଧାରଣର ଅର୍ଥରେ ଯେଉଁ ରାଜା ଓ ରାଜ ପରିଷଦ ପ୍ରତିପୋଷିତ, ସେଇ ପ୍ରଜାମାନଙ୍କ ମଙ୍ଗଳପାଇଁ ମଧ୍ୟ ରାଜାର କର୍ତ୍ତବ୍ୟ ଅଛି ।’’ (ପୃଷ୍ଠା - ୭୭, କାଳିନ୍ଦୀ ରଚ଼ନାଚ଼ୟ, ଦ୍ୱିତୀୟଖଣ୍ଡ) ଏହି ଆହ୍ୱାନ ଶୁଭକାନ୍ତଙ୍କ ଜୀବନର ଗତିପଥକୁ ବଦଳାଇ ଦିଏ । ଭୋଗ ବିଳାସର ସିଂହାସନ ତ୍ୟାଗ କରି ସେ ରାଜମାର୍ଗକୁ ଓହ୍ଲାଇ ଆସନ୍ତି ।

ଦୁର୍ଭିକ୍ଷଗ୍ରସ୍ତ ମୁକ୍ତାଗଡ଼ର ସାଧାରଣ ପ୍ରଜାଙ୍କୁ ସାହାଯ୍ୟ କରିବାର ଅଙ୍ଗୀକାର ନେଇ ଶୁଭକାନ୍ତ ନିଜକୁ ପ୍ରଜା-ସେବାରେ ଉତ୍ସର୍ଗ କରନ୍ତି; ଏହାହିଁ ଉପନ୍ୟାସର ତୃତୀୟ ପର୍ଯ୍ୟାୟ । ଶୁଭକାନ୍ତ ନିଜସ୍ୱ ଉଦ୍ୟମରେ ସାହାଯ୍ୟକେନ୍ଦ୍ର ସ୍ଥାପନ କରି ଦୁର୍ଭିକ୍ଷଗ୍ରସ୍ତ ନରନାରୀମାନଙ୍କୁ ଯଥା ସମ୍ଭବ ସାହାଯ୍ୟ ପ୍ରଦାନ କରନ୍ତି । ଉପନ୍ୟାସର ଏହି ଅନ୍ତିମ ପର୍ଯ୍ୟାୟରେ ଯେଉଁ ତିନୋଟି ପ୍ରମୁଖ ଚରିତ୍ର କାହାଣୀ ପରିସରକୁ ସମୃଦ୍ଧ କରନ୍ତି, ସେମାନେ ହେଲେ ପାଇକ ଦଳପତି ବଳିୟାର ସିଂହ, ମୁକ୍ତାଗଡ଼ ତ୍ୟାଗ କରିଥିବା ସନାତନଙ୍କ ଭଗ୍ନୀ ଅଳକା ଓ ହାକିମ କୃପାନାଥ ବାବୁ । ପରବର୍ତ୍ତୀ ଉପନ୍ୟାସ ଅମରଚିତାରେ ଉପରୋକ୍ତ ଚରିତ୍ରମାନେ ହିଁ ପ୍ରମୁଖ ଭୂମିକା ଗ୍ରହଣ କରନ୍ତି ।

ଶେଷ ଦୁଇ ପରିଚ୍ଛେଦକୁ ବାଦ ଦେଲେ ଅମରଚିତା ଉପନ୍ୟାସଟି ମୁଖ୍ୟତଃ ନ’ଅଙ୍କ ଦୁର୍ଭିକ୍ଷର କରୁଣ ଓ ଭୟାବହ ଚିତ୍ରକୁ ନେଇ ରଚ଼ିତ । ତେବେ ମୁକ୍ତାଗଡ଼ର କ୍ଷୁଧା ଉପନ୍ୟାସର

ଅଷ୍ଟାଦଶ ପରିଚ୍ଛେଦରେ ଔପନ୍ୟାସିକ ପ୍ରଥମେ ନ'ଅଙ୍କର ଚିତ୍ର ପ୍ରଦାନ କରି ଉଲ୍ଲେଖ କରନ୍ତି– ''କିନ୍ତୁ ଅକ୍ଟୋବର ୨୦ ତାରିଖରେ ସମସ୍ତ ଦେଶରେ ଅନାହାରର ଘୋର ଆତଙ୍କ ଉପସ୍ଥିତ ହେଲା । ଧାନ ଚାଉଳର ବ୍ୟବସାୟ ବନ୍ଦ ହୋଇଯାଏ । ବିନା ହରତାଳରେ କଟକ ସହରର ସମସ୍ତ ଦୋକାନ ପାଟ ବନ୍ଦ ହୋଇଗଲା । ମଫସଲ ଆଉ ସହରକୁ ଧାନ ଚାଉଳ ଯୋଗାଇବା ପାଇଁ ରାଜି ହେଲା ନାହିଁ । ଏ ଦେଶର ମୃତ୍ତିକା, ପାଷାଣ, ଲତାଗୁଳ୍ମ, ନଦୀ ପର୍ବତ ସମସ୍ତେ ଯେପରି ହାହାକାର କରି ଉଠିଲେ । ଟଙ୍କାରେ ତିନିଚାରି ସେର ଦରରେ ଚାଉଳ ଖୋଜିଲେ ମଧ୍ୟ ଅନେକ ସମୟରେ ମିଳିଲା ନାହିଁ ।'' (ପୃଷ୍ଠା - ୮୯, କାଳିନ୍ଦୀ ରଚ଼ନା ଚୟ, ଦ୍ୱିତୀୟ ଖଣ୍ଡ) ଏହିଭଳି ଏକ ଜାତୀୟ ବିପର୍ଯ୍ୟୟ କାଳରେ ଶୁଭକାନ୍ତ ସାଧାରଣ ଜନତାକୁ ସାହାଯ୍ୟ ପ୍ରଦାନ କରିବାକୁ ଜୀବନର ବ୍ରତ ଭାବରେ ସ୍ୱୀକାର କରନ୍ତି । ଶୁଭକାନ୍ତଙ୍କୁ ସାହାଯ୍ୟର ହାତବଢ଼ାନ୍ତି ପାଇକନେତା ବଳିୟାର ସିଂହ । ଶୁଭକାନ୍ତଙ୍କ ଅନୁରୋଧରେ ଦେଶାନ୍ତର ଦଣ୍ଡ ପାଇଥିବା ସନାତନ ମୁକ୍ତାଗଡ଼ ଫେରି ଆସନ୍ତି । ଅନ୍ୟ ଦିଗରେ ଶୁଭକାନ୍ତଙ୍କ ପ୍ରକୃତ ଜନନୀ ସୁନନ୍ଦା ନିଜର ଚେଷ୍ଟାରେ ଅବହେଳିତ ଶିଶୁମାନଙ୍କର ଥଇଥାନ କରନ୍ତି । ଅମରଚିତା ଉପନ୍ୟାସ ନ'ଅଙ୍କ ଦୁର୍ଭିକ୍ଷଗ୍ରସ୍ତ ଓଡ଼ିଆମାନଙ୍କୁ ବିପର୍ଯ୍ୟୟରୁ ଉଦ୍ଧାର କରିବାର ବଜ୍ର ଶପଥ ନେଇଥିବା ଉପରୋକ୍ତ ଚରିତ୍ରମାନଙ୍କର ଇତିହାସ ଉପନ୍ୟାସର ପରିଣତିରେ ସେମାନଙ୍କ ଜୀବନଚିତା ଜଳିଚି ସତ କିନ୍ତୁ ସେ ଚିତା ଅମର-ଚିତା ହୋଇଛି ।

ଔପନ୍ୟାସିକ ନ'ଅଙ୍କ ଦୁର୍ଭିକ୍ଷ ଓ ପରବର୍ତ୍ତୀ କାଳୀନ ଓଡ଼ିଶାର ସାମାଜିକ ଜୀବନ ଚିତ୍ରର ବ୍ୟାପକ ବର୍ଣ୍ଣନା - ବିଶ୍ଳେଷଣ କରି ଗୋଟିଏ ଜାତିର ଅନ୍ତରାତ୍ମାରେ ଦୁର୍ଭିକ୍ଷ କିପରି ଗଭୀର କ୍ଷତ ସୃଷ୍ଟି କରିଛି ସୂଚାଇଛନ୍ତି । ଦୁର୍ଭିକ୍ଷ ଓ ଦୁର୍ଭିକ୍ଷ ପରେ ଆସିଛି ବନ୍ୟା । ଔପନ୍ୟାସିକଙ୍କ ଭାଷାରେ - ''ନଦୀଗର୍ଭ ଓ ସ୍ଥଳଭାଗ ମଧ୍ୟରେ ପାର୍ଥକ୍ୟ ଦେଖାଗଲା ନାହିଁ ସେହିପରି ଜୀବନ ଓ ମୃତ୍ୟୁ ମଧ୍ୟରେ । ଉଦର ଜ୍ୱାଳାରେ ଯେଉଁମାନେ ରୁଗ୍ଣ ଅର୍ଦ୍ଧମୃତ ଅବସ୍ଥାରେ ପଡ଼ିଥିଲେ, ଏହି ଅସୀମ ଜଳରାଶି ମଧ୍ୟରେ ସେମାନେ ସ୍ୱୀୟ ଧନ ଜନର ସକଳ ଅବଶେଷ ଅବା ଭସାଇନେଲା ।'' (ପୃଷ୍ଠା - ୨୧୧, କାଳିନ୍ଦୀ ରଚ଼ନାଚ଼ୟ - ଦ୍ୱିତୀୟ ଖଣ୍ଡ) ଗୋଟିଏ ପାର୍ଶ୍ୱରେ ପ୍ରକୃତିର ଅନୁଦାର ଦୃଷ୍ଟି ଅପର ପାର୍ଶ୍ୱରେ ରକ୍ଷଣଶୀଳ ସାମାଜିକ ଚଳଣି ବ୍ୟକ୍ତିଜୀବନକୁ ଦୁର୍ବିସହ କରିଥିଲା । ଏହିଭଳି ଏକ ଅର୍ଦ୍ଧମୃତ ଜାତିକୁ ଘୋର ସଂକଟ ଭିତରୁ ରକ୍ଷା କରିବାକୁ ସନାତନ, ବଳିୟାର ସିଂହ ଭଳି ଚରିତ୍ରମାନେ ଯେକୌଣସି ପଦକ୍ଷେପ ନେବାକୁ କୁଣ୍ଠା ପ୍ରକାଶ କରି ନଥିଲେ । ପ୍ରଥମେ ଶ୍ୟାମ ରଥଙ୍କ ସମ୍ପତ୍ତି ଲୁଣ୍ଠିତ ହୋଇଥିଲା ପରେ ସନାତନ ଶ୍ୟାମ ରଥଙ୍କୁ ହତ୍ୟାକଲେ । ପରିଣତିରେ ସନାତନ ପାଇଲେ ଫାଶି । ଶୁଭକାନ୍ତଙ୍କୁ ମିଳିଲା ଦ୍ୱୀପାନ୍ତର । ଅମରଚିତା ଉପନ୍ୟାସରେ ଚିତାଗ୍ନିକୁ ଯିବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ସନାତନ, ଶୁଭକାନ୍ତ ମାନବ ସେବାକୁ ଜୀବନର ଶ୍ରେୟ ପଥ ଭାବରେ ବାଛି ନେଇଥିଲେ । ଔପନ୍ୟାସିକଙ୍କ ଭାଷାରେ -''ସନାତନ କାଳର ଅଗ୍ରଗାମୀ ପୁରୁଷ ସେ ।

ହାତଠାରି ସମସ୍ତ ଜଗତକୁ ଡାକିଯାଏ; କିନ୍ତୁ କାହାରିକୁ ଧରାଦିଏ ନାହିଁ । ଆଗେ ଆଗେ ଚାଲିଯାଏ । ବିଦ୍ୟୁତ୍ ବେଗରେ । ପଶ୍ଚାତକୁ ଫେରି ଚାହେଁ ନାହିଁ । ଅନୁଗାମୀ ବର୍ଗକୁ ଅପେକ୍ଷା କରେ ନାହିଁ । ସର୍ବପ୍ରଥମେ ସେ ଅଗ୍ନିକୁଣ୍ଡରେ ପ୍ରବେଶ କରେ । ସେ ଉପଦେଶ ବୁଝେ ନାହିଁ; ପରାମର୍ଶ ଦିଏ ନାହିଁ । ସତ୍ୟ ଯେପରି ତା'ର ଚିରଦିନ ଆକାଂକ୍ଷାର ବସ୍ତୁ । ସମ୍ମୁଖରେ ସେ ସତ୍ୟର ଆଲୋକ ଦର୍ଶନ କରେ ଏବଂ ପାର୍ଶ୍ଵ ପଶ୍ଚାତକୁ ଦୃଷ୍ଟି ନ ଦେଇ ତାହାରି ଅଭିମୁଖରେ ଧାବମାନ ହୋଇଯାଏ । ଦେହଜ୍ଞାନ ବିସ୍ମୃତ ସେ ।'' (ପୃଷ୍ଠା - ୨୯୦, କାଳିନ୍ଦୀ ରଚନାଚୟ ଦ୍ଵିତୀୟ ଖଣ୍ଡ) ଉପନ୍ୟାସର ପରିଣତିରେ ଶୁଭକାନ୍ତ ନିର୍ବାସନ ଦଣ୍ଡପରେ ପୁନଃ ଫେରି ଆସନ୍ତି ଜନ୍ମଭୂମିକୁ । ଶୋଭାର ମୃତ୍ୟୁ ଓ ଚିତ୍ରାର ଆତ୍ମହତ୍ୟା ସମ୍ବାଦ ତାଙ୍କୁ ପ୍ରଭାବିତ କରେନା । ଶେଷରେ ଖଣ୍ଡଗିରି ନିକଟରେ ଅଳକା ନିକଟକୁ ପତ୍ର ପ୍ରେରଣ ପରେ ତାଙ୍କର ଦେହାବସାନ ଘଟେ ।

ମୁକ୍ତାଗଡ଼ର କ୍ଷୁଧା ଓ ଅମରଚିତା ଉପନ୍ୟାସ ଦ୍ଵୟର ନାମକରଣ ବେଶ୍ ପ୍ରତୀକାତ୍ମକ । ମୁକ୍ତାଗଡ଼ର ହା' ଅନ୍ନର ଚିତ୍କାର କ୍ଷୁଧାର ସାର୍ବଜନୀନତା ଓ ସାର୍ବକାଳୀନତାକୁ ହିଁ ପ୍ରକଟିତ କରେ । ଉପନ୍ୟାସର ଦ୍ଵିତୀୟ ପ୍ରସ୍ଥ ବୋଲି ବିବେଚନା କରାଯାଉଥିବା ଅମରଚିତା ପ୍ରକୃତରେ ମୁକ୍ତାଗଡ଼ର କ୍ଷୁଧାକୁ ଦୂର କରିବାକୁ ଅଦମ୍ୟ ସାହସ ବାନ୍ଧିଥିବା ଚରିତ୍ରମାନଙ୍କ ପ୍ରତି ଔପନ୍ୟାସିକଙ୍କ ଶ୍ରଦ୍ଧା ପ୍ରକାଶ । ଯେଉଁ ଚରିତ୍ରମାନଙ୍କର ତ୍ୟାଗ, ନିଷ୍ଠା, ଦେଶପ୍ରେମ ସର୍ବୋପରି ଆତ୍ମବଳିଦାନ ହିଁ କାହାଣୀ ଭାଗକୁ ବିଭବମଣ୍ଡିତ କରିଛି । ଔପନ୍ୟାସିକ କାଳିନ୍ଦୀଚରଣଙ୍କ ସୃଷ୍ଟିରେ ସେମାନଙ୍କର ବଳିଦାନ ଚିତା ହିଁ ଅମରଚିତା । ଶେଷତଃ, ଓଡ଼ିଆ ସାହିତ୍ୟ ଇତିହାସକୁ ଯେଉଁ ଜାତୀୟତାବାଦୀ ଆନ୍ଦୋଳନ ବିଶେଷ ଭାବରେ ପ୍ରଭାବିତ କରିଥିଲା, କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର ମୁକ୍ତାଗଡ଼ର କ୍ଷୁଧା ଓ ଅମରଚିତା ଉପନ୍ୟାସ ଦ୍ଵୟ ଉକ୍ତ ଧାରାର ସଫଳ ଦିଗବାରେଣୀ ଭାବରେ ହିଁ ବିବେଚିତ ହେବେ ।



# ପର୍ଯ୍ୟାୟ କ୍ରମିକ ଉପନ୍ୟାସ ଓ କାଳିନ୍ଦୀଚରଣ

ଡକ୍ଟର ସବିତା ପ୍ରଧାନ

ଉପନ୍ୟାସ ବା କୌଣସି ସୃଜନ ଧର୍ମୀ ସାହିତ୍ୟିକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଏ । ଆଙ୍ଗିକ ଓ  ଆତ୍ମିକ । ବିଷୟବସ୍ତୁ, ଚରିତ୍ର ଚିତ୍ରଣ, ଭାଷା ସଂଳାପ, ପୃଷ୍ଠଭୂମି, ଲେଖକୀୟ ବକ୍ତବ୍ୟ ଓ ଶୈଳୀ ଆଦି ଉପନ୍ୟାସର ଉପାଦାନ । ଏ ସମସ୍ତ ମଧ୍ୟରୁ ଶେଷଟିକୁ ଛାଡ଼ିଦେଲେ ଅନ୍ୟଗୁଡ଼ିକ ଉପନ୍ୟାସର ଆତ୍ମାସ୍ଥାନୀୟ ବା ଆତ୍ମିକ ଉପାଦାନ । ଶୈଳୀକୁ ଆଙ୍ଗିକ ଅନ୍ତର୍ଭୁକ୍ତ କରାଯାଉଥିଲେ ହେଁ ଆତ୍ମିକ ଉପାଦାନ ସହ ଏହାର ସମ୍ପର୍କ ନିବିଡ଼ । ଉପନ୍ୟାସକୁ ଚ଼ରିତ୍ର ପ୍ରଧାନ ଓ ଘଟଣା ପ୍ରଧାନ ବା ଆତ୍ମନିଷ୍ଠ ଓ ବସ୍ତୁନିଷ୍ଠ ଭାବରେ ମଧ୍ୟ ବିଭକ୍ତ କରାଯାଇଥାଏ । ବିଷୟନିଷ୍ଠ ବା ବସ୍ତୁନିଷ୍ଠ ଉପନ୍ୟାସ ପୁନଶ୍ଚ ଐତିହାସିକ, ରାଜନୀତିକ, ପୌରାଣିକ, ସାମାଜିକ, ସମସ୍ୟାମୂଳକ, ବୈଜ୍ଞାନିକ, ପାରିବାରିକ ଆଦି ବିବିଧ ଶ୍ରେଣୀରେ ବିଭକ୍ତ । ଆତ୍ମନିଷ୍ଠ ଉପନ୍ୟାସ ଭାବରେ ମୁଖ୍ୟତଃ ଆତ୍ମଜୀବନୀମୂଳକ ରଚ଼ନାକୁ ଗ୍ରହଣ କରାଯାଇପାରେ । ଅନେକ ସମାଲୋଚ଼କ ଉପନ୍ୟାସର ପ୍ରକାର ଭେଦ ଆଲୋଚ଼ନା ସମୟରେ ଉପରୋକ୍ତ ବିଭାଗୀକରଣ ସହିତ ଆତ୍ମଜୀବନୀ ମୂଳକ ଉପନ୍ୟାସ, ପତ୍ର ଉପନ୍ୟାସ, ଚରିତ ଉପନ୍ୟାସ, ଭ୍ରମଣ ଉପନ୍ୟାସ ଆଦିକୁ ମଧ୍ୟ ଗ୍ରହଣ କରିଥାନ୍ତି । ସ୍ୱରୂପ ଦୃଷ୍ଟିରୁ ଏ ସମସ୍ତ ଗୋଟିଏ ବର୍ଗ ଅନ୍ତର୍ଭୁକ୍ତ ହେବା ଯଥାର୍ଥ ହେଲେ ହେଁ ଏହା ମଧ୍ୟରେ ରହିଛି ଏକ ସୂକ୍ଷ୍ମ ପାର୍ଥକ୍ୟ । ଗୋଟିଏ ଉପନ୍ୟାସର ବିଷୟବସ୍ତୁ ସାମାଜିକ ବା ରୋମାଣ୍ଟିକ ହେବା ସହିତ ପତ୍ର ଶୈଳୀ ଯୁକ୍ତ ହୋଇପାରେ । ରହସ୍ୟମୂଳକ ବା ରାଜନୈତିକ ବିଷୟବସ୍ତୁକୁ ଭିତ୍ତିକରି ମଧ୍ୟ ଉପନ୍ୟାସ ଆତ୍ମକଥନ ଶୈଳୀ ଅବଲମ୍ବନ କରିପାରେ । ସୁତରାଂ ବିଷୟବସ୍ତୁ ଦୃଷ୍ଟିରୁ ଉପନ୍ୟାସ ହୋଇପାରେ ରାଜନୀତିକ. ଐତିହାସିକ, ସାମାଜିକ ବା ପୌରାଣିକ । ମାତ୍ର ଶୈଳୀ ଦୃଷ୍ଟିରୁ ଏହା ଗ୍ରହଣ କରିପାରେ ଆତ୍ମକଥନ, ପତ୍ର, ଚ଼ରିତ, ଭ୍ରମଣ ବା ପର୍ଯ୍ୟାୟ କ୍ରମିକ ରୀତି । ଏହା ଉପନ୍ୟାସର ଆଙ୍ଗିକ ଦିଗ । ଆଙ୍ଗିକ ରୀତି ମଧ୍ୟରୁ ପର୍ଯ୍ୟାୟ କ୍ରମିକ ସ୍ୱତନ୍ତ୍ର । ଶୈଳୀ ଦୃଷ୍ଟିରୁ ଏହା ଅଧିକ ସ୍ଥୂଳ । ଶୈଳୀର ଆତ୍ମିକ ଉପାଦାନ ସହିତ ଯେଉଁ ନିବିଡ଼ତା ବା ଆନ୍ତରିକ ସମ୍ପର୍କ ରହିଛି ତାହା ଏଠାରେ ଶିଥିଳ ।

ପର୍ଯ୍ୟାୟ କ୍ରମିକ ରଚ଼ନା ଉପନ୍ୟାସ ସାହିତ୍ୟରେ ବିଶେଷ ଭାବରେ ପରିଲକ୍ଷିତ ହୁଏ । ଉପନ୍ୟାସକୁ ଗଦ୍ୟ ମହାକାବ୍ୟ ଆଖ୍ୟା ଦିଆଯାଇଥାଏ । ଏକ ବିସ୍ତୃତ ପଟ୍ଟଭୂମିରେ ମାନବ

ଜୀବନର ବହୁଧାରା ଏଥିରେ ବର୍ଣ୍ଣିତ । ଚରିତ୍ର ଘଟଣା, ଭାବର ଏହା ଏକ ପ୍ରୟୋଗ ଓ ବର୍ଣ୍ଣନଶାଳା । ଔପନ୍ୟାସିକ ବ୍ୟକ୍ତିର ଅନ୍ତର୍ଜଗତ ଓ ବହିର୍ଜଗତକୁ ରୂପାୟନ କରେ ଉପନ୍ୟାସରେ । ଯେଉଁ ବକ୍ତବ୍ୟ ପ୍ରକାଶ କରିବା ତା'ର ମୁଖ୍ୟ ଉଦ୍ଦେଶ୍ୟ, ସେଥିନିମନ୍ତେ ସେ ଚୟନ କରେ କେତୋଟି ଚରିତ୍ର, ତାଙ୍କ ମଧ୍ୟରେ ସଂଳାପ, ତା'ର ସଜୀବ ଚିତ୍ରଣ ନିମନ୍ତେ ବିରାଟ ପୃଷ୍ଠଭୂମି । ଦ୍ୱନ୍ଦ୍ୱ ସଂଘର୍ଷ ମଧ୍ୟଦେଇ, ନାଟକୀୟ ଶୈଳୀ ଅବ୍ୟାହତ ରଖି ପରିଣତି ଦିଗରେ ଗତିକରେ ଉପନ୍ୟାସ । ସଦ୍ୟଜାତ ଉପନ୍ୟାସଟିକୁ ଦେଖି ପିତୃତ୍ୱର ଆନନ୍ଦରେ ଅଭିଭୂତ ହୁଏ ଔପନ୍ୟାସିକ । ସମୟ କ୍ରମେ ଏହାର ଆବେଦନ ଓ ଯୁଗୋପଯୋଗିତା ଊଣା ହୁଏ । ଲେଖକର ଭାବରାଜ୍ୟରେ କେତେ ନୂତନ ଚିନ୍ତା ଓ ଚେତନାର ଆଗମନ ଘଟେ । ତେଣୁ ସେ ଗୋଟିଏ ସୃଷ୍ଟିରେ ସନ୍ତୁଷ୍ଟ ରହି ପାରେନା । ପୁନଶ୍ଚ ଅନ୍ୟ ଏକ ଭାବନାକୁ ରୂପାୟିତ କରିବା ପାଇଁ ଲୋଡ଼େ ଅନ୍ୟାନ୍ୟ ଚରିତ୍ର, ଚରିତ୍ରାନୁଯାୟୀ ଘଟଣା, ଭାଷା ସଂଳାପ ଆଦି । ମାତ୍ର କେତେକ ଔପନ୍ୟାସିକ ତାଙ୍କର ପ୍ରଥମ ସୃଷ୍ଟି ବା ଉଲ୍ଲେଖଯୋଗ୍ୟ ସୃଷ୍ଟି ମଧ୍ୟରେ ଏତେ ନିମଜ୍ଜିତ ରହିଥାନ୍ତି ଯେ ତା'ର ଅଭାବ ଅସୁବିଧା, ଅପୂର୍ଣ୍ଣତା ତାଙ୍କୁ ଆନ୍ଦୋଳିତ କରୁଥାଏ । ଉପନ୍ୟାସର ପରିଣତି କିମ୍ବା ଚରିତ୍ରର ପରିଣତିରେ ସ୍ରଷ୍ଟା ମାନସ ସନ୍ତୁଷ୍ଟ ହୁଏନା । ଉପନ୍ୟାସର ଅନ୍ତକୁ ଭିନ୍ନମୁଖୀ କରିବା ପାଇଁ ବା ଚରିତ୍ରର ଭିନ୍ନ ଦିଗ ପାଠକ ସମ୍ମୁଖରେ ଉପସ୍ଥାପିତ କରିବା ପାଇଁ ରଚିତ ହୁଏ ଆଉ ଏକ ଉପନ୍ୟାସ । ଉଲ୍ଲେଖଯୋଗ୍ୟ ଯେ ଏ ଦୁଇଟି ଉପନ୍ୟାସ ମଧ୍ୟରେ ଚରିତ୍ରଗତ ସାମଞ୍ଜସ୍ୟ ପୂର୍ଣ୍ଣ ଭାବରେ ସଂରକ୍ଷିତ । ପ୍ରଥମ ଉପନ୍ୟାସର ପରିଣତି ଯେଉଁଠାରେ ଦ୍ୱିତୀୟ ଉପନ୍ୟାସର ଆରମ୍ଭ ସେହିଠାରୁ । ବିଷୟବସ୍ତୁ, ଭାବ, ଚରିତ୍ରଗତ ସଂହତି ରକ୍ଷାକରି ତା'ର ପରବର୍ତ୍ତୀ ଅଂଶଭାବେ ଦ୍ୱିତୀୟ ଉପନ୍ୟାସଟି ରଚିତ ହୁଏ । ଏହି ଧାରାରେ ଓଡ଼ିଆରେ ବିଂଶାଧିକ ଉପନ୍ୟାସ ରଚିତ୍ । କେବଳ ଯେ ଓଡ଼ିଆରେ ଏହା ରଚିତ ହୋଇଛି ତା' ନୁହେଁ ଭାରତର ଅନ୍ୟାନ୍ୟ ପ୍ରାନ୍ତୀୟ ସାହିତ୍ୟ ଏ ଦିଗରେ ସମୃଦ୍ଧ । ବଂଗଳାରେ ତାରାଶଙ୍କର ବନ୍ଦୋପାଧ୍ୟାୟଙ୍କ ଗଣଦେବତା ଓ ପଞ୍ଚଗ୍ରାମ, ଆଶାପୂର୍ଣ୍ଣା ଦେବୀଙ୍କ ପ୍ରଥମ ପ୍ରତିଶ୍ରୁତି, ସୁବର୍ଣ୍ଣଲତା ଓ ବକୁଳ କଥା, ଅନ୍ନଦା ଶଂକର ରାୟଙ୍କ 'ସତ୍ୟାସତ୍ୟ' (ଯାରଯେଥା ଦେଶ୍, ଅଜ୍ଞାତବାସ, କଲଙ୍କ ବତୀ, ଦୁଃଖ ମୋଚନ, ମର୍ତ୍ତେର ସ୍ୱର୍ଗ, ଅପସରଣ) ଆଦି ଉଲ୍ଲେଖନୀୟ ।

ପର୍ଯ୍ୟାୟ କ୍ରମିକ ଉପନ୍ୟାସ ରଚନାର କାରଣ ଓ ସ୍ୱରୂପ ଆଲୋଚନାରୁ ସ୍ପଷ୍ଟ ହୁଏ ଯେ ଏହା ଏକ ଆଙ୍ଗିକ । ସାଧାରଣତଃ ଔପନ୍ୟାସିକ ଉପନ୍ୟାସ ରଚନା ଆରମ୍ଭରେ ଏହି ଧାରାରେ ରଚନା କରିବେ ବୋଲି ମନସ୍ଥ କରି ନଥାନ୍ତି । ଯେପରି ଘଟେ ପତ୍ରୋପନ୍ୟାସ ବା ଭ୍ରମଣୋପନ୍ୟାସ ଆଦି କ୍ଷେତ୍ରରେ । କୌତୂହଳ ଓ ବିସ୍ମୟର ବ୍ୟାପାର ଏହି ଯେ ଓଡ଼ିଆ ସାହିତ୍ୟର ବିଶିଷ୍ଟ ଓ ଲୋକପ୍ରିୟ ଉପନ୍ୟାସଗୁଡ଼ିକ ଏହି ରୀତିରେ ରଚିତ । କନକଲତା, ମନେ ମନେ ଆଦି ଯେପରି ଏକ ଗଳ୍ପ ଭାବେ ଜନ୍ମଗ୍ରହଣ କରି ଉପନ୍ୟାସ ରୂପ ନେଇଛି

ପାଠକୀୟ ଅନୁରୋଧ ଯୋଗୁଁ, ସେହିପରି ପାଠକ ମହଲରେ ଆଲୋଡ଼ନ ସୃଷ୍ଟିକରିଥିବା ଉପନ୍ୟାସ ଜନ୍ମଦେଇଛି ଦ୍ୱିତୀୟ ଓ ତୃତୀୟ ଭାଗ ରୂପରେ କେତେକ ଉପନ୍ୟାସକୁ । ମଲାଜହ୍ନ ଉପନ୍ୟାସଠାରୁ ଓଡ଼ିଆ ଉପନ୍ୟାସ ସାହିତ୍ୟର ଏ ଯାତ୍ରା କିଶୋରୀ ଚରଣ ଦାସଙ୍କ ସାତୋଟି ଦିନର ସତୀ ଓ ବିଦେଶିନୀ ଉପନ୍ୟାସ ପର୍ଯ୍ୟନ୍ତ ଅବ୍ୟାହତ ।

ଏ ଜାତୀୟ ଉପନ୍ୟାସ ଦୁଇ, ତିନି ବା ଚାରିଖଣ୍ଡ ମଧ୍ୟରେ ସାଧାରଣତଃ ସୀମିତ । ପ୍ରଥମ ଭାଗ ରଚିତ ହେବାପରେ ପାଠକୀୟ ଅନୁରୋଧ ହେଉ ବା ଉପନ୍ୟାସର କୌଣସି ଅପୂର୍ଣ୍ଣତା ଜନିତ ଆଲୋଡ଼ନ ଯୋଗୁଁ ହେଉ ଅବା ପରିଣତିର ପରିବର୍ତ୍ତନ କାମନାରେ ହେଉ ଔପନ୍ୟାସିକ ପ୍ରଥମ ଭାଗର ପରବର୍ତ୍ତୀ ଅଂଶ ବା ଉତ୍ତରାର୍ଦ୍ଧ ରଚନା କରିଥାଏ । ଓଡ଼ିଆରେ ଦୁଇଟି ଭାଗରେ ଅଧିକାଂଶ ପର୍ଯ୍ୟାୟ କ୍ରମିକ ଉପନ୍ୟାସ ରଚିତ । ଯେମିତି ଅମଡ଼ାବାଟ - ଚୋରାବାଲି, ନୀଳଶୈଳ - ନୀଳାଦ୍ରି ବିଜୟ ଆଦି । ନିତ୍ୟାନନ୍ଦ ମହାପାତ୍ରଙ୍କ ଉପନ୍ୟାସ କଳେବର ଦୃଷ୍ଟିରୁ ପ୍ରକାଶକଙ୍କ ନିର୍ଦ୍ଦେଶ କ୍ରମେ ତିନୋଟି ଭାଗରେ ଜନ୍ମନେଇଛି - ହିଡ଼ମାଟି, ଭଙ୍ଗାହାଡ଼ ଓ ଘରଡ଼ିହ । ସେହିପରି ପାଠକୀୟ ଚାହିଦା ଯୋଗୁଁ ଚନ୍ଦ୍ରମଣି ଦାସଙ୍କର 'ନରବଳି' ଉପନ୍ୟାସ ଚାରି ଖଣ୍ଡରେ ଏକା ନାମରେ ଆତ୍ମପ୍ରକାଶ କରିଥିଲା । ଏ ଜାତୀୟ ଉପନ୍ୟାସ ଗୋଟିଏ ନାମରେ ପ୍ରକାଶ କରିବାରେ ବାଧା ନଥିଲେ ବି ପାଠକମାନଙ୍କର ସୁବିଧା ଓ ଲେଖକର ଆତ୍ମସନ୍ତୋଷ ନିମନ୍ତେ ପ୍ରତ୍ୟେକ ଖଣ୍ଡର ନୂତନ ନାମକରଣ ପରିଲକ୍ଷିତ ହୁଏ । ପ୍ରତ୍ୟେକ ଭାଗର ବିଷୟବସ୍ତୁ ଅନ୍ୟଠାରୁ ଭିନ୍ନ । ଦ୍ୱିତୀୟ ଭାଗର ବିଷୟବସ୍ତୁ, ଚରିତ୍ର, ଘଟଣାସହ ପ୍ରଥମ ଭାଗର ଗଭୀର ଯୋଗସୂତ୍ର ପରିଲକ୍ଷିତ ହୁଏ । ମୁଖ୍ୟ ଚରିତ୍ରଗୁଡ଼ିକ ସହିତ କିଛି ନୂତନ ଚରିତ୍ର ଓ ଘଟଣା ସଂଯୋଜନରେ ଉତ୍ତରାର୍ଦ୍ଧ ପୂର୍ଣ୍ଣାଙ୍ଗ ରୂପ ଲାଭ କରେ । ଏହା ସ୍ୱୟଂ ସଂପୂର୍ଣ୍ଣ ହେବା ସହିତ ପ୍ରଥମ ଭାଗର ପରିବର୍ଦ୍ଧିତ ଅଂଶ । ସୁତରାଂ ଦ୍ୱିତୀୟ ଭାଗର ନୂତନ ସଂଯୋଜିତ ବିଷୟବସ୍ତୁ ଓ ଲେଖକୀୟ ବକ୍ତବ୍ୟକୁ ଆଧାର କରି ଔପନ୍ୟାସିକ ଏହାର ନାମକରଣ କରିଥାଏ । ଡିଟେକ୍ଟିଭ ବା ରହସ୍ୟ ଧର୍ମୀ ଉପନ୍ୟାସ କଥା ସ୍ୱତନ୍ତ୍ର । ଏହା ପର୍ଯ୍ୟାୟ କ୍ରମିକ ସଦୃଶ ହେଲେହେଁ ଠିକ୍ ଏହି ଧାରାରେ ରଚିତ ହୁଏ ନାହିଁ । ମୁଖ୍ୟ ଚରିତ୍ର ପୋଲିସ ବା ଡିଟେକ୍ଟିଭ ଅଫିସର ଓ ଖଳନାୟକ ଦସ୍ୟୁ ବା ଖୁନୀ ପ୍ରତ୍ୟେକ ଉପନ୍ୟାସରେ ସମାନ ଥିବା ସ୍ଥଳେ ଡକାୟତି ବା ଖୁନ୍ କରିବାର କୌଶଳ ଏବଂ ଡିଟେକ୍ଟିଭ ଅଫିସରଙ୍କ ଅନୁସନ୍ଧାନ କୌଶଳ ପ୍ରତ୍ୟେକଥର ଭିନ୍ନ ଭିନ୍ନ ହୋଇଥାଏ । ଓଡ଼ିଆରେ ଦସ୍ୟୁ ମୀରା ସିରିଜ୍, ଦସ୍ୟୁ ରତନ ଲାଲ ସିରିଜ ଇତ୍ୟାଦି ଏହି ଜାତୀୟ । ଦ୍ୱିତୀୟ ଖଣ୍ଡ ପ୍ରଥମ ଖଣ୍ଡର ପରିବର୍ତ୍ତିତ ବା ପରିବର୍ଦ୍ଧିତ ଅଂଶ ନୁହେଁ । ଏହାର ପ୍ରତ୍ୟେକଟି ଭାଗ ଏକ ଏକ ସଂପୂର୍ଣ୍ଣ ନୂତନ ଉପନ୍ୟାସ । ୩ ବା ୪ ଖଣ୍ଡରେ ଏହା ସୀମିତ ନରହି ୩୦/୪୦ ଖଣ୍ଡ ମଧ୍ୟ ହୋଇପାରେ । ଓଡ଼ିଆ ଉପନ୍ୟାସ ସାହିତ୍ୟରେ ରଚିତ ପର୍ଯ୍ୟାୟ କ୍ରମିକ ଉପନ୍ୟାସର ସୂଚୀ –

| | | |
|---|---|---|
| ମଲାଜହ୍ନ ( ୧୯୨୮) | - | ଉପେନ୍ଦ୍ର କିଶୋର ଦାସ |
| ହସିଲା ଜହ୍ନ (୧୯୮୦) | - | ଚକ୍ରଧର ମହାପାତ୍ର |
| ମାଟିର ମଣିଷ (୧୯୩୧) | - | କାଳିନ୍ଦୀଚରଣ ପାଣିଗ୍ରାହୀ |
| ଲୁହାର ମଣିଷ (୧୯୪୭) | - | କାଳିନ୍ଦୀଚରଣ ପାଣିଗ୍ରାହୀ |
| ମୁଣ୍ଡାଗଡ଼ର କ୍ଷୁଧା (୧୯୩୩) | - | କାଳିନ୍ଦୀଚରଣ ପାଣିଗ୍ରାହୀ |
| ଅମର ଚିତା (୧୯୩୩) | - | କାଳିନ୍ଦୀଚରଣ ପାଣିଗ୍ରାହୀ |
| ସିନ୍ଦୂର ଗାର (୧୯୩୭) | - | ରାଜ କିଶୋର ପଟ୍ଟନାୟକ |
| ସିନ୍ଦୂର ଗାର (୧୯୫୯) | - | ରାଜ କିଶୋର ପଟ୍ଟନାୟକ |
| ହିଡ଼ମାଟି (୧୯୪୭) | - | ନିତ୍ୟାନନ୍ଦ ମହାପାତ୍ର |
| ଭଂଗା ହାଡ଼ (୧୯୫୬) | - | ନିତ୍ୟାନନ୍ଦ ମହାପାତ୍ର |
| ଘରଡ଼ିହ (୧୯୮୬) | - | ନିତ୍ୟାନନ୍ଦ ମହାପାତ୍ର |
| କଣାମାମୁଁ (୧୯୪୭) | - | ଲକ୍ଷ୍ମୀକାନ୍ତ ମହାପାତ୍ର |
| କଣାମାମୁଁ (୧୯୮୫) | - | ମୋହନଦାସ ରତିକାନ୍ତ ରାଓ (ଏମାର୍ କେ ଆର୍) |
| ଅମଡ଼ାବାଟ (୧୯୫୭) | - | ବସନ୍ତ କୁମାରୀ ପଟ୍ଟନାୟକ |
| ଚୋରାବାଲି (୧୯୭୩) | - | ବସନ୍ତ କୁମାରୀ ପଟ୍ଟନାୟକ |
| ଶତାବ୍ଦୀର ନଚିକେତା (୧୯୬୫) | - | ଶାନ୍ତନୁ କୁମାର ଆଚାର୍ଯ୍ୟ |
| ତିନୋଟି ରାତିର ସକାଳ (୧୯୬୬) | - | ଶାନ୍ତନୁ କୁମାର ଆଚାର୍ଯ୍ୟ |
| ନୀଳଶୈଳ (୧୯୬୮) | - | ସୁରେନ୍ଦ୍ର ମହାନ୍ତି |
| ନୀଳାଦ୍ରି ବିଜୟ (୧୯୮୦) | - | ସୁରେନ୍ଦ୍ର ମହାନ୍ତି |
| ଶତାବ୍ଦୀର ସୂର୍ଯ୍ୟ (୧୯୭୦) | - | ସୁରେନ୍ଦ୍ର ମହାନ୍ତି |
| କୂଳବୃଦ୍ଧ (୧୯୭୮) | - | ସୁରେନ୍ଦ୍ର ମହାନ୍ତି |
| ସାତୋଟି ଦିନର ସତୀ (୧୯୯୩) | - | କିଶୋରୀ ଚରଣ ଦାସ |
| ବିଦେଶିନୀ (୨୦୦୦) | - | କିଶୋରୀ ଚରଣ ଦାସ |

ସିନ୍ଦୂରଗାର, ମଲାଜହ୍ନ, କଣାମାମୁଁ ଉପନ୍ୟାସ ଏ ଧାରାର ଏକ ବ୍ୟତିକ୍ରମ । ସିନ୍ଦୂରଗାରର ଦ୍ୱିତୀୟ ଭାଗ ଚରିତ୍ର, ବିଷୟବସ୍ତୁ, ପରିଣତି ଆଦି ଦିଗରୁ ପରିବର୍ଦ୍ଧିତ ନୁହେଁ ପରିବର୍ତ୍ତିତ । ଏହାକୁ ଦ୍ୱିତୀୟ ଭାଗ କହିବା ସମ୍ପୂର୍ଣ୍ଣ ଠିକ୍ ହେବନାହିଁ । ଦ୍ୱିତୀୟବାର 'ସନ୍ଦୂରଗାର' ରଚନା କରିବା ସମୟରେ କେତେକ ଚରିତ୍ରର ନାମ ପରିବର୍ତ୍ତନ କରିବା ସହିତ ଚରିତ୍ରଗୁଡ଼ିକ ଭିନ୍ନମୁଖୀ ହୋଇଛନ୍ତି । ପ୍ରଥମ 'ସିନ୍ଦୂରଗାର'କୁ ନୂତନ ଭାବରେ ଦ୍ୱିତୀୟ 'ସିନ୍ଦୂରଗାର'ରେ ଉପସ୍ଥାପନ କରିଛନ୍ତି । ତେଣୁ ଘଟଣାଗୁଡ଼ିକ ଯଥାକ୍ରମେ ପ୍ରଥମ ଉପନ୍ୟାସ ସଦୃଶ ଘଟିଛି, କେତେକ ସ୍ଥଳରେ ଏଥିରେ ଦେଖାଦେଇଛି ପରିବର୍ତ୍ତନ ।

କାଳିନ୍ଦୀଚରଣ ପାଣିଗ୍ରାହୀ ପର୍ଯ୍ୟାୟ କ୍ରମିକ ଉପନ୍ୟାସ ଧାରାରେ ପ୍ରଥମ ଔପନ୍ୟାସିକ । 'ମଲାଜହ୍ନ', 'ମାଟିର ମଣିଷ' ଲେଖାହେବାର ୯ବର୍ଷ ପୂର୍ବରୁ ରଚିତ ହୋଇଥିଲେ ହେଁ ଉପେନ୍ଦ୍ର କିଶୋର ଦାସ ଏହାର ଦ୍ୱିତୀୟ ଭାଗ 'ହସିଲା ଜହ୍ନ' ଲେଖିନାହାନ୍ତି । 'ମଲାଜହ୍ନ' ରଚନାର ଦୀର୍ଘ ୫୨ବର୍ଷ ପରେ ୧୯୮୦ରେ ଏହାର ପରବର୍ତ୍ତୀ ଅଂଶ ଚକ୍ରଧର ମହାପାତ୍ରଙ୍କ ଦ୍ୱାରା ଲିଖିତ । ଉପେନ୍ଦ୍ର କିଶୋରଙ୍କର 'ମଲାଜହ୍ନ'ର ପରବର୍ତ୍ତୀ ଭାଗ ରଚନା କରିବାର ଉଦ୍ଦେଶ୍ୟ ନଥିଲା । ତେଣୁ 'ମଲାଜହ୍ନ' ପରିଣତିରେ ନାୟିକା ସତୀ ନଦୀରେ ଝାସ ଦେଇଛି । ଚକ୍ରଧର ମହାପାତ୍ର ଏହି ଉପନ୍ୟାସର ଆବେଦନରେ ଏତେ ପରିମାଣରେ ପ୍ରଭାବିତ ହୋଇଥିଲେ ଯେ ଦୀର୍ଘ ବର୍ଷ ପରେ ସେ ଔପନ୍ୟାସିକଙ୍କୁ ଅନୁରୋଧ ଜଣାନ୍ତି ସତୀକୁ ପୁନର୍ଜୀବନ ଦେବାପାଇଁ । ଉପେନ୍ଦ୍ର କିଶୋର ଉତ୍ତରରେ 'ମୋ ଦ୍ୱାରା ଆଉ ନୁହେଁ' ବୋଲି ଜଣାନ୍ତି । ଚିଠି ପତ୍ରର ଉତ୍ତର ପ୍ରତ୍ୟୁତ୍ତରରୁ ସ୍ପଷ୍ଟ ହୁଏ ଯେ ଉପେନ୍ଦ୍ର କିଶୋରଙ୍କର ପରବର୍ତ୍ତୀ ଅଂଶ ଲେଖିବାର କୌଣସି ଯୋଜନା ନଥିଲା । 'ମଲାଜହ୍ନ' ଉପନ୍ୟାସରେ ମଧ୍ୟ ସେପରି କୌଣସି ସୂଚନା ଦିଆଯାଇନାହିଁ । ଉପରନ୍ତୁ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ 'ମାଟିର ମଣିଷ' ଆତ୍ମପ୍ରକାଶ କରିବା ପରେ ପାଠକ ମହଲରେ ଯଥେଷ୍ଟ ଆଦୃତ ହୋଇଥିଲା । ଅନେକ ପାଠକଙ୍କର ଆଗ୍ରହ ଓ ଅନୁରୋଧ କ୍ରମେ ସେ ପରବର୍ତ୍ତୀ ଅଂଶ ରଚନା କରିବାର ପ୍ରେରଣା ପାଉଛନ୍ତି । ଷୋହଳ ବର୍ଷ ପରେ ଦେଶ ସ୍ୱାଧୀନ ହେବା କାଳରେ ଗାନ୍ଧୀଙ୍କ ଆଦର୍ଶରେ ପ୍ରଭାବିତ ବରଜୁର କର୍ମକ୍ଷେତ୍ର ପରିବର୍ତ୍ତିତ ହେବାର ଆବଶ୍ୟକତା ଅନୁଭବ କଲେ ଲେଖକ । ତେଣୁ ଜନ୍ମ ନିଏ 'ଲୁହାର ମଣିଷ' । ଉପନ୍ୟାସ ଆରମ୍ଭରେ ସେ ସୂଚନା ଦେଇଛନ୍ତି, ''ଏହି ଲମ୍ବା ଷୋଳବର୍ଷ ଭିତରେ ଲେଖକ ମାଟିରୁ କେତେ ଲୁହା ବାହାରିବାର ଦେଖିଛି, କେତେ ଲୁହା ପୁଣି ମାଟିରେ ମିଶିଯାଇ ଆହୁରି ତହିଁରୁ ଲୁହା ବାହାରୁଛି । ମାଟି ଆଉ ଲୁହାର ଏହି ଅଦଳ ବଦଳ ଭିତରେ ଆଜି 'ଲୁହାର ମଣିଷ' ଛିଡ଼ା ହୋଇଛି ।'' (୧) ମାଟିର ମଣିଷ ରଚନା କରିବା ସମୟରେ ହୁଏତ ଲେଖକଙ୍କ ମନରେ 'ଲୁହାର ମଣିଷ'ର ପରିକଳ୍ପନା ନଥିଲା । ପାଠକଙ୍କର ଆଗ୍ରହ ଓ ଅନୁରୋଧ ସହିତ ପରିବର୍ତ୍ତିତ ପୃଷ୍ଠଭୂମି ସ୍ରଷ୍ଟାମାନସକୁ ଅନୁପ୍ରେରିତ କରିଛି ପରବର୍ତ୍ତୀ ଭାଗ ରଚନା କରିବା ପାଇଁ । ତ୍ୟାଗର ପ୍ରତିମୂର୍ତ୍ତି ବରଜୁ 'ଲୁହାର ମଣିଷ'ରେ ହୋଇଛି କଂଗ୍ରେସ ଓ ସ୍ୱରାଜ କର୍ମୀ । କାଳିନ୍ଦୀଚରଣ ପାଣିଗ୍ରାହୀ ଉପନ୍ୟାସର ଦୁଇଟିଯାକ ଭାଗ ନିଜେ ରଚନା କରିଛନ୍ତି । ମାତ୍ର 'ମଲାଜହ୍ନ'ର ପରବର୍ତ୍ତୀ ଭାଗ ଉପେନ୍ଦ୍ର କିଶୋର ଦାସ ରଚନା କରିନାହାନ୍ତି । ଲେଖକ ଉପନ୍ୟାସର ନାମକରଣରେ ମଧ୍ୟ କ୍ରମିକତା ରକ୍ଷା କରିଛନ୍ତି । ଏପରିକି 'ଆଜିର ମଣିଷ' ଉପନ୍ୟାସଟି ବିଷୟବସ୍ତୁ, ଚରିତ୍ର, ଆଦିରେ କ୍ରମିକ ନ ହେଲେ ହେଁ ଭାବ ଦୃଷ୍ଟିରୁ ଏହା କ୍ରମିକ । ନାମକରଣ ଦୃଷ୍ଟିରୁ ମଧ୍ୟ । ଏଥିରେ ଗାନ୍ଧୀଙ୍କ ନିର୍ଦ୍ଦେଶିତ ଅହିଂସା ନୀତି, ନାରୀଶିକ୍ଷା, ସହର ପରିତ୍ୟାଗ କରି ଗ୍ରାମାଭିମୁଖୀ ହେବା ବିଷୟ ଉଲ୍ଲିଖିତ । ସୁତରାଂ 'ମାଟିର ମଣିଷ' ଓ 'ଲୁହାର ମଣିଷ' ଉପନ୍ୟାସ ଦୁଇଟି ପର୍ଯ୍ୟାୟ କ୍ରମିକ ରୀତିରେ ପ୍ରଥମେ ରଚନା କରିଛନ୍ତି କାଳିନ୍ଦୀଚରଣ ପାଣିଗ୍ରାହୀ । ଏହି ଧାରାରେ ସେ ଯେ ପ୍ରଥମ ଲେଖକ ତା' ନୁହେଁ ଏ ଧାରାକୁ

ପ୍ରତିଷ୍ଠିତ କରିଛନ୍ତି ମଧ୍ୟ । 'ମୁଣ୍ଡାଗଡ଼ର କ୍ଷୁଧା' ଓ 'ଅମର ଚିତା' ତାଙ୍କର ଦ୍ୱିତୀୟ ପର୍ଯ୍ୟାୟ କ୍ରମିକ ଉପନ୍ୟାସ ।

ମାଟିର ମଣିଷ, ଲୁହାର ମଣିଷ ଓ ଆଜିର ମଣିଷ ଏକ ବିରାଟ ପୃଷ୍ଠଭୂମି ଉପରେ ଆଧାରିତ । ତତ୍‌କାଳୀନ ସାମାଜିକ, ସାଂସ୍କୃତିକ, ରାଜନୈତିକ ପୃଷ୍ଠଭୂମି ଉପରେ ଏହି ଉପନ୍ୟାସତ୍ରୟ ରଚିତ । ପ୍ରାକ୍ ସ୍ୱାଧୀନତା କାଳରେ ଗାନ୍ଧିଜୀଙ୍କ ଅହିଂସା ଓ ସତ୍ୟ ପ୍ରଦର୍ଶିତ ମାର୍ଗ, ମାର୍କସ୍ ଓ ଲେନିନ୍‌ଙ୍କର ଶୋଷଣ ବିରୁଦ୍ଧରେ ସାମ୍ୟବାଦର ଆହ୍ୱାନ୍ ଭାରତୀୟ ଜନମାନସକୁ ଗଭୀର ଭାବରେ ପ୍ରଭାବିତ କରିଥିଲା । ପାଶ୍ଚାତ୍ୟ ଶିକ୍ଷା ଓ ପରାଧୀନ ସଚେତନ ମନୁଷ୍ୟ ମନରେ ଦେଖାଦେଇଥିଲା ଉଗ୍ର ଦେଶପ୍ରେମ । ପ୍ରତ୍ୟେକ ଭାରତୀୟ ପ୍ରତ୍ୟକ୍ଷ ବା ପରୋକ୍ଷଭାବରେ ଦେଶ ସେବାକୁ ଜ୍ଞାନ କରୁଥିଲେ ପରମ ଧର୍ମ ସଦୃଶ । ଏକ ନୂତନ ଚିନ୍ତା ଚେତନା ଓ ଜାଗରଣ ସମଗ୍ର ଭାରତ ବର୍ଷରେ ଦେଖାଦେଇଥିଲା । ସମୟର ସ୍ପନ୍ଦନରେ ସ୍ପନ୍ଦିତ କାଳିନ୍ଦୀଙ୍କ ସ୍ରଷ୍ଟାମାନସ ପ୍ରାକ୍ ସ୍ୱାଧୀନତା କାଳୀନ ମୂଲ୍ୟବୋଧରେ ଅନୁପ୍ରେରିତ ହୋଇ ରଚନା କରିଛି 'ମାଟିର ମଣିଷ' । ବାପା ଶାମ ପଧାନର ଶେଷକଥା ରକ୍ଷାକରି ଜମି ମଧ୍ୟରେ ହିଡ଼, ଘର ଭିତରେ ପାଚେରୀ ନଉଠେଇ ଦେବା ପାଇଁ ବରଜୁ ବହୁ ସାଧ ସାଧନା କରିଛି । ସ୍ତ୍ରୀ ହାରାବୋଉର ଯାଆ ନେତ୍ରମଣି ସହିତ କଳିତକରାଳ, ସାନଭାଇ ଛକଡ଼ିର ସଂକୀର୍ଣ୍ଣତାକୁ ରୋକି ପାରିନାହିଁ । ବିଭିନ୍ନ ଗ୍ରାମ୍ୟ ସମସ୍ୟାର ମୀମାଂସା କରୁଥିବା ବରଜୁ ଘରେ ହୋଇପଡ଼ିଛି ଉପାୟହୀନ । ଛକଡ଼ିର ବ୍ୟକ୍ତିତ୍ୱହୀନତା ସାଙ୍ଗକୁ ଗାଁ ଟାଉଟର ହରିମିଶ୍ରଙ୍କ ତେଲଢ଼ାଳିବା ବରଜୁ ଘରେ ଅଶାନ୍ତିର ନିଆଁ ନିର୍ବାପିତ ହେବାକୁ ଦେଇନି । ବରଜୁ ଗୃହ ଓ ସମସ୍ତ ସମ୍ପତ୍ତି ଛକଡ଼ି ହାତରେ ଛାଡ଼ି ସ୍ତ୍ରୀ ଓ ଦୁଇପିଲାଙ୍କ ସହିତ ଶୂନ୍ୟ ହସ୍ତରେ ଗ୍ରାମ ଛାଡ଼ି ଚାଲିଯାଇଛି । ତା'ର ଅହିଂସା ମାର୍ଗ ଅବଲମ୍ବନ ଓ ତ୍ୟାଗ ମଧ୍ୟରେ ପ୍ରତିଫଳିତ ହୁଏ ଗାନ୍ଧୀ ଆଦର୍ଶ । ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ପ୍ରସାର, କ୍ରମେ ଭାରତର ସାଂସ୍କୃତିକ ଓ ସାମାଜିକ ଜୀବନକୁ ଏକ ଦିଗରେ କ୍ଷୟ କରିବା ସମୟରେ ଅନ୍ୟ ଦିଗରେ ବ୍ୟକ୍ତି ଜୀବନର ଅଧଃପତନର କାରଣ ହୋଇଥିଲା । ଈର୍ଷା, ଦ୍ୱେଷ, ସ୍ୱାର୍ଥପରତା ବ୍ୟକ୍ତିଜୀବନ ଓ ଯୌଥ ପରିବାରକୁ ପତନମୁଖୀ କରାଇଥିଲା । ବରଜୁର ଯୌଥ ପରିବାର ଛକଡ଼ି ଓ ନେତ୍ରମଣିର ସଂକୀର୍ଣ୍ଣତା ଯୋଗୁଁ ବିପର୍ଯ୍ୟସ୍ତ । ଓଡ଼ିଶୀ ଗ୍ରାମ୍ୟ ଜୀବନର ଏକ ନିଛକ ଚିତ୍ର 'ମାଟିର ମଣିଷ' । କୃଷକ ଜୀବନର ଦୁଃଖ, ସୁଖ, ଜୀବନ ସଂଘର୍ଷ ଅତି ମର୍ମସ୍ପର୍ଶୀ ଭାବେ ଏଥିରେ ଚିତ୍ରିତ । ମାଟିର ମଣିଷ – କୃଷକ ଦିନରାତି ଖଟୁଥାଏ, ଖରାବର୍ଷା, ଶୀତ, କାକର, ଭଲମନ୍ଦର ଊର୍ଦ୍ଧ୍ୱରେ ଯେପରି ଏ ମାଟି, ଏ ଖଟଣି । ଦୁନିଆଁ ଦେଖେ ତା'ର ହାଡ଼ଭଙ୍ଗା ପରିଶ୍ରମ । ମାତ୍ର ମାଟି ପ୍ରତି ତା'ର ମମତା, ବ୍ୟାକୁଳତା, ମାଟି ସହିତ ଏକାକାର ହୋଇଯାଉଥିବା ଚାଷୀର ସମର୍ପିତ ମନ, ହୃଦୟ, ତା' ଜୀବନର ଦୁଃଖ ବେଦନା, ଅସହାୟତା, ହର୍ଷ ପୁଲକର ଅନ୍ତରଙ୍ଗ ଚିତ୍ର ବହନ କଲା ଏ ଉପନ୍ୟାସ । ଔପନ୍ୟାସିକ

ଗଭୀର ସମବେଦନା ସହିତ ମାଟିହେଇ ଯାଉଥିବା ନିର୍ବିକାର ଚାଷୀଟିଏର ମର୍ମସ୍ପର୍ଶୀ ଚିତ୍ରଣ ଦେବା ସହିତ ତା'ର ନିରୁତ୍ତାପ, ନିରୁଦବିଗ୍ନ ପ୍ରତିବାଦହୀନ ଦିଗଟିକୁ ମଧ୍ୟ ଦର୍ଶାଇଛନ୍ତି । ହରିମିଶ୍ରର କୁମନ୍ତ୍ରଣା ଓ ଷଡ଼ଯନ୍ତ୍ର ଶତ ଶତ ନିରୀହ ଚାଷୀ ପରିବାରକୁ କରୁଛି ବିପନ୍ନ । ଲେଖକଙ୍କ ଅନ୍ତରାତ୍ମାରୁ ଯେପରି ଏ ଚାଷୀକୁଳ ପାଇଁ ଝରିପଡ଼ିଛି ସହାନୁଭୂତିର ନିର୍ଝରିଣୀ । ଏକ ଦିଗରେ ଗାନ୍ଧୀବାଦ ଓ ଅନ୍ୟ ଦିଗରେ ସାମ୍ୟବାଦର ସୂଚନା ଏଥିରେ ମିଳିଥାଏ । 'ଲୁହାର ମଣିଷ' ଉପନ୍ୟାସରେ ବରଜୁ ମାଟିରେ ସୀମିତ ନୁହେଁ । ଗୌରାଙ୍ଗ ଶେଣ ଘରେ ଆଶ୍ରୟ ନେଇ ସେ ସଜାଡ଼ିଛି ତା'ର ଉଜୁଡ଼ା ସଂସାରକୁ । ତା' ପରେ ତା'ର କର୍ମଭୂମି ବ୍ୟାପ୍ତ ହୋଇଛି । ମାଟିରୁ ବିସ୍ତୃତ ହୋଇଛି ମାଟି ମା' ଆଡ଼କୁ । ସ୍ୱାଧୀନତା କାଳୀନ ଅସହଯୋଗ ଆନ୍ଦୋଳନ, ସ୍ୱଦେଶ ନୀତି, ସ୍ୱରାଜ୍ୟ ଦାବୀ, ଅରଟରେ ସୂତା କାଟିବା, କଂଗ୍ରେସ କର୍ମୀଙ୍କ ସହିତ ମିଶିବା ଭିତରେ ବରଜୁ ପରିଣତ ହେଲା ଲୁହାର ମଣିଷରେ । ତା' ମତରେ ''ବରଜୁ ମଣିଷ ହୋଇ କଲା କ'ଣ ? ଝିଅ, ପୁଅ, ନାତି, ନାତୁଣୀ କେଉଁ ଜନ୍ମ କରୁନାହାନ୍ତି କି ! ବାହା ପୁଆଣି ମେଳା ମଉଛ ବା କେତେ ଘଡ଼ିର ସୁଖ । କେତେ ତ ସେ ଦେଖିଲାଣି, କଲାଣି ।'' (୨) ଏଇ ସାଧାରଣ ମଣିଷ ମନରେ ଦେଶପାଇଁ କିଛି କରିବାର ସିଦ୍ଧାନ୍ତ ସୃଷ୍ଟି କରିଛନ୍ତି ଔପନ୍ୟାସିକ । 'ମାଟିର ମଣିଷ'ରେ ବରଜୁ ନିଜ ପରିବାର, ପଧାନ ପଡ଼ା ଓ ଚାଷ ଖେତ ଭିତରେ ସୀମିତ ଥିଲା । ଗାନ୍ଧୀଙ୍କ ଆହ୍ୱାନରେ ଶତ ସହସ୍ର ନିରକ୍ଷର ଚାଷୀ ଯେପରି ଭାବରେ ପରିବାର, ଗ୍ରାମକୁ ଉପେକ୍ଷା କରି ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିଲେ, ଆତ୍ମାରେ ଗାନ୍ଧୀ ଆହ୍ୱାନର ଆଲୋଡ଼ନ ଅନୁଭବ କରିଥିଲେ, ତାହା 'ଲୁହାର ମଣିଷ'ରେ ବରଜୁ ଚରିତ୍ରରେ ପ୍ରତିଫଳିତ । 'ମାଟିର ମଣିଷ'ରେ ମାନବତାବାଦ, ବାସ୍ତବତାବାଦ, ଗାନ୍ଧୀବାଦ ଓ ସାମ୍ୟବାଦର ପ୍ରତିଫଳନ ଅନୁଭୂତ ହୁଏ । 'ମାଟିର ମଣିଷ'ରେ ରହିଛି ଏକ ଚିରନ୍ତନ ମୂଲ୍ୟବୋଧ । ମାନବ ଜୀବନ ପ୍ରତି ସଦିଚ୍ଛା, ସହାନୁଭୂତି, ଗଭୀର ଆନ୍ତରିକତାର ସହିତ ଅତି ବିଶ୍ୱସ୍ତଭାବେ ଏଥିରେ ପ୍ରକାଶିତ । ସ୍ୱାଧୀନତା ପୂର୍ବ ସମୟର 'ମାଟିର ମଣିଷ'ର ପରିବର୍ତ୍ତନ ଘଟିଛି ଅନେକ । ଦେଶ ସ୍ୱାଧୀନତା ମନ୍ତ୍ରରେ ଦୀକ୍ଷିତ ହୋଇ ଅନେକ ମାଟିର ମଣିଷ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇ କାରାବରଣ କରିଛନ୍ତି । ଔପନ୍ୟାସିକ ବରଜୁକୁ ମାଟିରୁ ଉନ୍ନୀତ କରି କାରାଦଣ୍ଡ ଦିଆଇଛନ୍ତି । ସ୍ୱାଧୀନତା ପ୍ରାପ୍ତି ପରବର୍ତ୍ତୀ ସମାଜରେ ଯେଉଁ ପରିବର୍ତ୍ତନ ଦେଖାଦେଇଛି, ତାକୁ ସ୍ଥାନ ଦେଇଛନ୍ତି 'ଆଜିର ମଣିଷ'ରେ । ଚରିତ୍ର ବଦଳିଯାଇଛି । ଔପନ୍ୟାସିକ ସ୍ୱର ଅଧିକ ପ୍ରଚାର ଧର୍ମୀ ହୋଇଛି । ଶିଳ୍ପମୂଲ୍ୟ କ୍ରମେ ଅସ୍ପଷ୍ଟ ହେଇ ଉଠିଛି 'ମାଟିର ମଣିଷ'ରୁ 'ଲୁହାର ମଣିଷ' ଉତ୍ତରଣରେ । 'ଆଜିର ମଣିଷ'ରେ ଏହା ଅଧିକ ନିଷ୍ପ୍ରଭ । ମନୁଷ୍ୟ ଜୀବନର ଏ ଅକ୍ଷୟ ଓ ଅନନ୍ତ ଯାତ୍ରା ତିନୋଟି ଉପନ୍ୟାସ ମଧ୍ୟରେ ଅବ୍ୟାହତ । ସ୍ୱାଧୀନତା କାଳୀନ, ତତ୍ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ସମୟର ସାମାଜିକ, ସାଂସ୍କୃତିକ ଓ ରାଜନୈତିକ ଅବସ୍ଥାର ବିବର୍ତ୍ତିତ ରୂପ ବହନ କରିଛି ଏ ତିନୋଟି ଉପନ୍ୟାସ । 'ଆଜିର ମଣିଷ'କୁ ପ୍ରକୃତ ପକ୍ଷେ ମାଟିର ମଣିଷର ତୃତୀୟ ଭାଗ କୁହାଯାଇ ପାରିବ ନାହିଁ । କିନ୍ତୁ ଭାବ ଦୃଷ୍ଟିରୁ ଏହା 'ମାଟିର ମଣିଷ'ର ଉତ୍ତର ପୁରୁଷ ।

ଉଭୟ ଉପନ୍ୟାସର ବିଷୟବସ୍ତୁ ଭିନ୍ନ । ତେଣୁ ପୃଷ୍ଠପଟ୍ଟ ପରିବର୍ତ୍ତିତ । ପ୍ରଥମ ଭାଗରେ ବରଜୁର କର୍ମକ୍ଷେତ୍ର ପଧାନପଡ଼ା, ଘର, ପରିବାର, ଗାଁ ମଧ୍ୟରେ ସୀମିତ । ଗୃହତ୍ୟାଗୀ ହୋଇ ହରିପୁରଗାଁର ଗୌରାଙ୍ଗ ଶେଣ ଘରେ ଆଶ୍ରୟ ନେବାପରେ ପଧାନପଡ଼ାକୁ ଥରେ ମାତ୍ର ଆସିଛି ସେ । ହରିପୁର ଗାଁରେ ସେ ବିଲବାଡ଼ି ଚଷିଛି, ଗୌରାଙ୍ଗକୁ ବାହା କରେଇଛି, ସେଇଠାରୁ ସେ ଯାଇଛି ଜେଲ୍ । 'ଲୁହାର ମଣିଷ' ପରିବର୍ଦ୍ଧିତ ଭାଗ ହୋଇଥିବାରୁ ଏଥିରେ ବହୁ ନୂତନ ଘଟଣା ସଂଯୋଜିତ । ଯେପରି ହାରାବୋଉର ଗୌରାଙ୍ଗ ଶେଣ ଘରକୁ ଆଦରିନେବା, ବରଜୁର ଗୌରାଙ୍ଗ ଜମିରେ କାମ କରିବା, ଗାଁର ହାନିଲାଭ ବୁଝି ଅଯଥା କଳି ତକରାଳରୁ ଗାଁକୁ ମୁକ୍ତିଦେବା, କଂଗ୍ରେସ କର୍ମୀମାନଙ୍କ ସହିତ ମିଶି ସ୍ୱରାଜ ଓ ଅସହଯୋଗ ଆନ୍ଦୋଳନର ମର୍ମ ବୁଝିବା ଆଦି । ଔପନ୍ୟାସିକ ଅତି କୁଶଳତାର ସହିତ ମାଟିର ମଣିଷ ଓ ଲୁହାର ମଣିଷ ମଧ୍ୟରେ ଯୋଗସୂତ୍ର ରକ୍ଷା କରିଛନ୍ତି । ଛକଡ଼ି ତା'ଭାଇକୁ ଫେରେଇ ନେବାକୁ ଆସି ଗୌରାଙ୍ଗ ଶେଣ ପିଣ୍ଡାରେ ବସିରହିବା ଭିତରେ 'ମାଟିର ମଣିଷ' ଉପନ୍ୟାସ ଶେଷ ହୁଏ । ଦୁଇ ଭାଇଙ୍କ ବାର୍ତ୍ତାଳାପ ମଧ୍ୟରେ ଉପନ୍ୟାସର ପରିଣତି । ଠିକ୍ ସେହି ବାର୍ତ୍ତାଳାପରୁ ହିଁ 'ଲୁହାର ମଣିଷ' ଆରମ୍ଭ । ଏ ଉପନ୍ୟାସର ଆରମ୍ଭ ଅଂଶଟି ଏତେ ସହଜ, ସ୍ୱାଭାବିକ ଯେ 'ମାଟିର ମଣିଷ'ର ଷୋଳ ବର୍ଷ ପରେ ରଚିତ ବୋଲି ମନେହୁଏନି । ଉପନ୍ୟାସର ପରବର୍ତ୍ତୀ ଅଂଶଟି ଆରମ୍ଭ ଅଂଶପରି ଏତେ ସ୍ୱଚ୍ଛନ୍ଦ ଓ ସାବଲୀଳ ନୁହେଁ । ତୃତୀୟ ପରିଚ୍ଛେଦଟି ଦୁଇ ଉପନ୍ୟାସ ମଧ୍ୟରେ ସଂପର୍କର ସେତୁକୁ ଅଧିକ ବଳିଷ୍ଠ କରେ । ହାରାର ନାତିହେବା ଘଟଣା, ଘଟଣା ଦୃଷ୍ଟିରୁ ଆଦୌ ଉଲ୍ଲେଖନୀୟ ନହେଲେ ହେଁ ଗୌରାଙ୍ଗର ଚାରିତ୍ରିକ ବୈଶିଷ୍ଟ୍ୟ ଓ ପୂର୍ବ ଉପନ୍ୟାସ ସହିତ ସଂପର୍କକୁ ଦୃଢ଼ କରିଛି । ମୁଖ୍ୟ ଚରିତ୍ର ବରଜୁ, ଗୌରାଙ୍ଗ, ହାରାବୋଉ ସହିତ ମୋତି, ଦାମ, ଛକଡ଼ି ଆଦି ଗୌଣ ଚରିତ୍ର ଯଥାଯଥ ଭାବେ ଉପସ୍ଥାପିତ । ବହୁ ନୂତନ ଚରିତ୍ର ଜୟୀବାବୁ, ନାଥ ବାବୁ, ରାଜୀବ ଲେଙ୍କା, ପଦିଆ ମାମୁଁ ଓ ଅଗଣି ମିଶ୍ର ଆଦି ସଂଯୋଜିତ । ସାମ୍ୟବାଦର ବୈପ୍ଳବିକ ମନୋବୃତ୍ତି ସହିତ ଅସହଯୋଗ ଆନ୍ଦୋଳନରେ ଭାଗନେବା ଭିତରେ ବରଜୁ ଚରିତ୍ରର ପୂର୍ଣ୍ଣ ବିକାଶ ଘଟିଛି । ହାରାବୋଉ ଚରିତ୍ରର ସଂପୂର୍ଣ୍ଣ ପରିବର୍ତ୍ତନରେ ତାହା ପରିଣତ ହୋଇଛି ଏକ ବର୍ତ୍ତୁଳ ଚରିତ୍ରରେ । ଗୌରାଙ୍ଗ ଶେଣ ଓଡ଼ିଆ ଉପନ୍ୟାସ ସାହିତ୍ୟରେ ଏକ ଅନନ୍ୟ ବନ୍ଧୁ ଚରିତ୍ର ।

'ମାଟିର ମଣିଷ'ରେ ପଧାନ ବୁଢ଼ାର ଘରକରଣା, ଦୁଇ ଯାଆଙ୍କ ମଧ୍ୟରେ କଳିକଜିଆ, ହରି ମିଶ୍ରଙ୍କ ଷଡ଼ଯନ୍ତ୍ର, ଛକଡ଼ିର ଘରଭଙ୍ଗା ବୁଦ୍ଧି ଆଦିର ବର୍ଣ୍ଣନା ମଧ୍ୟରେ ଗ୍ରାମ୍ୟ ଜୀବନ ଯେପରି ଜୀବନ୍ତ ଭାବରେ ଫୁଟି ଉଠୁଥିଲା ତାହା 'ଲୁହାର ମଣିଷ'ର ଆଦ୍ୟାଂଶରେ କିଛି ପରିମାଣରେ ପ୍ରତିଫଳିତ । ମାତ୍ର ଶେଷାଂଶକୁ ତାହା ପ୍ରଚାରମୁଖୀ ଓ ଆଦର୍ଶଧର୍ମୀ ହୋଇପଡ଼ିବାରୁ ସ୍ୱାଭାବିକତା ଅନେକ ପରିମାଣରେ ବ୍ୟାହତ । ଉପନ୍ୟାସଟିରେ ଭାଷାଶୈଳୀଗତ ପୂର୍ବ ବୈଶିଷ୍ଟ୍ୟ ଅନୁଭବ କରିହୁଏ ନାହିଁ । 'ମାଟିର ମଣିଷ'ର କଥାବସ୍ତୁ

ପାଠକ ଓ ଲେଖକର ପରିଚିତ ଜଗତକୁ କେନ୍ଦ୍ର କରିଛି; ସୁତରାଂ ଭାଷାଶୈଳୀ ମଧ୍ୟରେ କୌଣସି କୃତ୍ରିମତା ବା ଆୟାସଲବ୍ଧତା ନାହିଁ । ଫକୀରମୋହନ ଗ୍ରାମୀଣ ଭାଷାର କଥିତ ରୂପକୁ ଗୁରୁତ୍ୱ ଦେଇଥିଲେ ମଧ୍ୟ ସେଥିରେ ଥିବା ବ୍ୟଙ୍ଗ ବିଦ୍ରୂପ ଏହାକୁ 'ମାଟିର ମଣିଷ'ର ଭାଷାଠୁଁ ଭିନ୍ନ କରିଛି । ଫକୀର ମୋହନଙ୍କ ଭାଷାରେ ପାଠକ ଉପଯୋଗୀ କରିବାର କ୍ଷୀଣ ପ୍ରୟାସକୁ ଉପଲବ୍ଧ କରିହୁଏ । 'ମାଟିର ମଣିଷ' ଜଣେ ଗ୍ରାମ୍ୟ ଚାଷୀର ଦୈନନ୍ଦିନ ହୃଦୟର ଭାଷା । ଏଥିରେ ରହିଛି ସ୍ୱତଃସ୍ଫୂର୍ତ୍ତତା, ପ୍ରବହମାନତା । ଭାଷାର ବିନମ୍ରତା ଉପନ୍ୟାସକୁ କରିଛି ଶାନ୍ତ, ସ୍ନିଗ୍ଧ ତଥା ମସୃଣ । ପରବର୍ତ୍ତୀ ଉପନ୍ୟାସଟିରେ ଭାଷା ଓ ଭାବ ପ୍ରାକୃତିକ ମନେ ହୁଏନି । ପ୍ରଥମଟିରେ ଭାଷା ଆବେଗପ୍ରଧାନ, କାବ୍ୟିକ; ଦ୍ୱିତୀୟଟିରେ ସେ ସ୍ୱାଭାବିକତା ନାହିଁ ।

ମୁକ୍ତାଗଡ଼ର କ୍ଷୁଧା, ଅମର ଚିତା ଉପନ୍ୟାସ ଦୁଇଟି ଆଦର୍ଶବାଦର ଭିତ୍ତିଭୂମି ଉପରେ ଦଣ୍ଡାୟମାନ । ପ୍ରତ୍ୟକ୍ଷ ଭାବରେ ଗାନ୍ଧୀବାଦର ପ୍ରଭାବ ଏଥିରେ ପରିଲକ୍ଷିତ ହୁଏନାହିଁ ସତ କିନ୍ତୁ ତ୍ୟାଗ ଓ ଆଦର୍ଶର ବାଣୀ ଏ ଉପନ୍ୟାସରେ ମଧ୍ୟ ଗୁଞ୍ଜରିତ । ମୁକ୍ତାଗଡ଼ର ରାଜା ଚନ୍ଦ୍ରକାନ୍ତ ଜଣେ ଆଦର୍ଶ, ପ୍ରଜାବତ୍ସଳ, ନ୍ୟାୟ ପରାୟଣ ବ୍ୟକ୍ତି ଥିଲେ । ରାଜପୁରୋହିତଙ୍କ କନ୍ୟା ସୁନନ୍ଦା ରାଜା ଚନ୍ଦ୍ରକାନ୍ତଙ୍କର ପୁତ୍ରକୁ ଜନ୍ମ ଦିଅନ୍ତି । ରାଣୀ ଥିଲେ ସନ୍ତାନହୀନା ଏହି ଅବୈଧ ସନ୍ତାନ ଲଣ୍ଡାବାବୁ ନାମରେ ପରିଚିତ । ରାଜା ଶୁଭକାନ୍ତ ଭାବରେ ସିଂହାସନ ଆରୋହଣ କରିବାପରେ ସେ ପରିଣତ ହୋଇଛନ୍ତି ଜଣେ ଅତ୍ୟାଚାରୀ, ବିଳାସୀ, ନିର୍ମମ, ପ୍ରଜାପୀଡ଼କ ରାଜାରେ । ରାଜପ୍ରାସାଦ ନିର୍ମାଣରେ ରାଜକୋଷ ଶୂନ୍ୟ ହେବା, ଖଜଣା ଆଦାୟ ପାଇଁ ପ୍ରଜା ଅତ୍ୟାଚାର ବୃଦ୍ଧି ପାଇବା ସହିତ ନଅଙ୍କ ଦୁର୍ଭିକ୍ଷର କରାଳ ଛାୟାରେ ମୁକ୍ତାଗଡ଼ର ପ୍ରଜା ନିର୍ଯ୍ୟାତିତ । ଏହି ସମୟରେ ଦେଖାଦିଏ ଶୁଭକାନ୍ତଙ୍କ ଚରିତ୍ରରେ ଏକ ଆମୂଳ ପରିବର୍ତ୍ତନ । ରାଜ ଐଶ୍ୱର୍ଯ୍ୟ ଓ ରାଣୀଙ୍କ ରୂପମାଧୁରୀ ତାଙ୍କୁ ଆଉ ବିମୁଗ୍ଧ କରି ରଖିପାରିନାହିଁ । ବିଳାସ, ଐଶ୍ୱର୍ଯ୍ୟ କ୍ଳାନ୍ତ, ରାଣୀଙ୍କ ସୌନ୍ଦର୍ଯ୍ୟ-ଉଦାସୀନ ଶୁଭକାନ୍ତ, ''ଗୋଟାଏ ମୁକ୍ତି ଚାହାନ୍ତି, ଯାହା ଏଇ ଆକାଶପରି ବିସ୍ତୃତ ପବନ ପରି ସ୍ୱତନ୍ତ୍ର''(୩) । ଠିକ୍ ବୁଦ୍ଧଙ୍କ ମନରେ ରେଖାପାତ କରିଥିବା ଘଟଣାପରି ମୃତ ଜନନୀ ପାଖରେ କ୍ରନ୍ଦନରତ ଶିଶୁ ଓ ତାଙ୍କର ଦୁଗ୍ଧଦାତ୍ରୀ ମା' ସୁନାର ଶବ ଦେଖିବାପରେ ଶୁଭକାନ୍ତ ପରିଣତ ହୋଇଛନ୍ତି ଚଣ୍ଡାଶୋକରୁ ଧର୍ମାଶୋକରେ । ବିଶେଷ ଭାବରେ ସନାତନର ବ୍ୟକ୍ତିତ୍ୱ ଓ ବକ୍ତବ୍ୟ ତାଙ୍କୁ ପ୍ରଭାବିତ କରିଛି । ତାଙ୍କୁ ନିର୍ବାସନ ଦଣ୍ଡ ଦେବାପରେ ସେ ମନେ ମନେ ଅନୁତାପ କରିଛନ୍ତି । ବୁଦ୍ଧ ସମ ରାଜ୍ୟ ପରିତ୍ୟାଗ କରି ସେବକଦଳ ଗଠନ କରି ଜନସେବା କରିଛନ୍ତି । 'ଅମର ଚିତା' ଉପନ୍ୟାସରେ ଶୁଭକାନ୍ତ ଜଣେ ସାଧାରଣ ପ୍ରଜା ସଦୃଶ ଗାଁରେ ନିରଳସ ଜୀବନଯାପନ କରି ପ୍ରଜାହିତରେ ଉତ୍ସର୍ଗ କରିଛନ୍ତି ଜୀବନ । ଓଡ଼ିଶାର ଅନ୍ୟ ଏକ ରାଜ୍ୟରେ ନଅଙ୍କ ପ୍ରପୀଡ଼ିତ ଜନତାର ସେବାରେ ଲାଗିଛି ସନାତନ । ସନାତନର ପିତାମାତାଙ୍କର

ମୃତ୍ୟୁରେ ଶ୍ରାଦ୍ଧ କାର୍ଯ୍ୟ କରାନ୍ତି ଶୁଭକାନ୍ତ । ଶୁଭକାନ୍ତଙ୍କ ମନରେ ସନାତନର ଭଉଣୀ ପ୍ରତି ଦେଖାଦେଇଛି ଏକ କୋମଳ ଭାବ । ମୁକ୍ତାଗଡ଼କୁ ଫେରିଆସିବାପରେ ଶୁଭକାନ୍ତଙ୍କ ସହିତ ମିଶି ସେ ଜନସେବା କରିଛି । ଉଭୟଙ୍କର ଆଦର୍ଶ ଏକ ଥିଲେ ମଧ୍ୟ ସନାତନ ଥିଲା ଉଗ୍ର ଭାବରେ ମାନବବାଦୀ । ଶେଷରେ ଶୋଭାପ୍ରତି ହୋଇଥିବା ଅବିଚାରର ପ୍ରତିବାଦ କରିବାକୁଯାଇ ସନାତନ ହତ୍ୟା କରେ ଶ୍ୟାମ ରଥଙ୍କୁ । ବିଚାରରେ ଫାଶିଦଣ୍ଡ ପାଏ ସନାତନ ଓ ଆଜୀବନ ଦ୍ୱୀପାନ୍ତରିତ ହୁଅନ୍ତି ଶୁଭକାନ୍ତ । ଗୀତାର ମହାନ୍ ମନ୍ତ୍ର ଉଚ୍ଚାରଣରେ ଉପନ୍ୟାସର ପରିସମାପ୍ତି ।

'ମୁକ୍ତାଗଡ଼ର କ୍ଷୁଧା'ର ପରିଣତି ରହସ୍ୟମୟ । ଔପନ୍ୟାସିକ ପାଠକ ମନରେ ଉତ୍କଣ୍ଠାର ବୀଜ ବପନ କରିଛନ୍ତି ଶେଷ ପରିଚ୍ଛେଦରେ । ଉପନ୍ୟାସର ପରବର୍ତ୍ତୀ ଭାଗ ରଚନା କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ତେଣୁ ସ୍ୱେଚ୍ଛାକୃତ ଭାବେ ଶୁଭକାନ୍ତଙ୍କର ଚାରିତ୍ରିକ ପରିବର୍ତ୍ତନରେ ଉପନ୍ୟାସର ପୂର୍ଣ୍ଣଚ୍ଛେଦ ନ ଟାଣି ଔପନ୍ୟାସିକ ଶୁଭକାନ୍ତଙ୍କ ମନରେ ସ୍ୱର୍ଗୀୟ ପ୍ରେମର ଉଦୟ କରାଇଛନ୍ତି । ନଅଙ୍କ ଦୁର୍ଭିକ୍ଷଗ୍ରସ୍ତ ବାଳିକାର ବିଦ୍ୟୁତ୍‌ସମ ରୂପ ଓ ଆକାଶର ଉଲ୍‌କାସମ ଦୃଷ୍ଟି ତାଙ୍କ ଯୁବପ୍ରାଣରେ ସୃଷ୍ଟି କରିଛି ଏକ ଉନ୍ମାଦନା, ଏକ ଅନନୁଭୂତ ଚମକ । "ପ୍ରେମ ଏକ ପୃଥକ ବସ୍ତୁ – ତ୍ୟାଗ ଏବଂ ତପସ୍ୟାରେ ତା'ର ଉପଲବ୍ଧି । ଐଶ୍ୱର୍ଯ୍ୟର ବିଳାସିତାରେ ତାହାର ଆସନ ପ୍ରତିଷ୍ଠିତ ନୁହେଁ । x x x ତାଙ୍କର ମନେହେଲା ପ୍ରେମ ବୋଲି ଯେଉଁ ବସ୍ତୁ, ତାହା ମାନବ ଚରିତ୍ରକୁ ମହୀୟାନ୍ କରେ, ସେଥିରେ ଦେବତ୍ୱ ସଂଚାର କରେ । x x x ତାହା ପାଗଳ କରେ ନାହିଁ, ଉନ୍ମାଦ କରେ ନାହିଁ – ସଂଯତ କରେ, ଉନ୍ନତ କରେ – ଆତ୍ମହରା କରେ ନାହିଁ, ଆତ୍ମଲାଭ କରାଏ ।" (୪) ଶୁଭକାନ୍ତଙ୍କ ମନରେ ଉଦିତ ଏ ଭାବନା ପାଠକ ମନରେ ଜିଜ୍ଞାସା ସୃଷ୍ଟିକରେ । ବିଶେଷଭାବେ ଯେଉଁ ଶୁଭକାନ୍ତ ରାଣୀ ଚିତ୍ରାଙ୍କର ଅପରୂପ ସୌନ୍ଦର୍ଯ୍ୟରେ ମୁଗ୍ଧ ହୋଇ ମୁକ୍ତାଗଡ଼ ପାଇଁ ସୃଷ୍ଟି କରିଛନ୍ତି ବିଭୀଷିକା, ସେ ପୁନଶ୍ଚ ଭିକ୍ଷୁଣୀର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇଛନ୍ତି । ତେଣୁ ପାଠକୀୟ ଅନୁସନ୍ଧିତ୍ସା ବୃଦ୍ଧିପାଏ ଶୁଭକାନ୍ତଙ୍କ ପରବର୍ତ୍ତୀ କାର୍ଯ୍ୟ ସମ୍ପର୍କରେ । ଦୁଇ ଉପନ୍ୟାସ ମଧ୍ୟରେ ସମ୍ପର୍କକୁ 'ଅମର ଚିତା'ର ମୁଖବନ୍ଧରେ ସ୍ପଷ୍ଟ କରିଛନ୍ତି ଶ୍ରୀଯୁକ୍ତ ପାଣିଗ୍ରାହୀ । ସ୍ୱଳ୍ପରେ ହେଲେ ହେଁ ଉପନ୍ୟାସର ଗତି ଓ ବୈଶିଷ୍ଟ୍ୟ ସମ୍ପର୍କରେ ସୂଚନା ଦେଇ କହିଛନ୍ତି "ମୁକ୍ତାଗଡ଼ର କ୍ଷୁଧାରେ ଯେଉଁ ନିବିଡ଼ ତମସା ମଧ୍ୟରେ ଶୁଭକାନ୍ତର ଯାତ୍ରାରମ୍ଭ, ଅମରଚିତାରେ ଏହି ତମସାରୁ ସେ ଯାତ୍ରା କରିଛି ଆଲୋକର ସନ୍ଧାନରେ ।" (୫) 'ମୁକ୍ତାଗଡ଼ର କ୍ଷୁଧା'ର ଶେଷ ପରିଚ୍ଛେଦରେ ଯେଉଁ ଭିକ୍ଷୁଣୀର ପରିଚୟ ଜାଣିବାପାଇଁ ଶୁଭକାନ୍ତଙ୍କ ମନରେ ଥିଲା ଉତ୍ସୁକତା, ତା'ର ଉତ୍ତର 'ଅମରଚିତା'ର ପ୍ରଥମ ପରିଚ୍ଛେଦରେ ପ୍ରଦତ୍ତ । ମାଟିର ମଣିଷ ଓ ଲୁହାର ମଣିଷ ରଚନା ମଧ୍ୟରେ ଷୋଳ ବର୍ଷର ବ୍ୟବଧାନ ଯେପରି ବିଷୟବସ୍ତୁର ଅଗ୍ରଗତିରେ ଓ ଭାଷାଶୈଳୀରେ ବିରାଟ ପାର୍ଥକ୍ୟ ସୃଷ୍ଟି କରିଛି, ତାହା ଏ କ୍ଷେତ୍ରରେ ଘଟିନାହିଁ । ରାଜକୀୟ ପରିବେଶ

ଚିତ୍ରଣଯୋଗୁଁ ଏ ଦୁଇ ଉପନ୍ୟାସ ବାସ୍ତବ ପୃଷ୍ଠଭୂମିରୁ ଟିକିଏ ଦୂରତ୍ୱ ରଖି ଗଢ଼ି ଉଠିଲାପରି ମନେହୁଏ । ମାତ୍ର ଉପନ୍ୟାସ ଦୁଇଟିର କଥାବସ୍ତୁଗତ କ୍ରମିକତା ଅତ୍ୟନ୍ତ ଯତ୍ନର ସହିତ ସଂରକ୍ଷିତ । ପ୍ରଥମ ଭାଗଟିରେ ସ୍ଥାନପାଇଥିବା ଚନ୍ଦ୍ରକାନ୍ତ, ରାଣୀ, ଗୌରୀ ଆଦି ଚରିତ୍ରର ପରିଣତି ସେହି ଉପନ୍ୟାସରେ ଘଟିଯାଇଛି । ଦ୍ୱିତୀୟ ଭାଗରେ ବିଶେଷ ଭାବରେ ଶୁଭକାନ୍ତ ଓ ସନାତନ ଚରିତ୍ରରେ ପରିଲକ୍ଷିତ ହୁଏ ବିସ୍ତୃତି ଓ ବିକାଶ । ଶୁଭକାନ୍ତ ଚରିତ୍ରର ପରିବର୍ତ୍ତନ ପ୍ରଥମ ଭାଗରେ ସୂଚିତ ଓ ପରିବର୍ତ୍ତନର ସ୍ୱରୂପ ଯଥା - ଜନସେବା, ଡକାୟତି, ନିର୍ବାସନ, ତ୍ୟାଗ ମାଧ୍ୟମରେ ପ୍ରଦର୍ଶିତ । ସନାତନର ନିର୍ଭୀକତା, ସ୍ପଷ୍ଟୋକ୍ତି, ପ୍ରଥମ ଭାଗରେ ଓ ଜନହିତକର କାର୍ଯ୍ୟ, ଅନାବିଳ ମାନବପ୍ରୀତି ତଥା ଉଗ୍ରତା ଦ୍ୱିତୀୟ ଭାଗରେ ସ୍ଥାନିତ । ସ୍ୱାଧୀନତା ଆନ୍ଦୋଳନରେ ଭଗତ ସିଂ, ଖୁଦିରାମଙ୍କ ପରି ବହୁ ଉଗ୍ର ଜାତୀୟବାଦୀ ଦେଶପ୍ରେମୀ ଫାଶିଖୁଣ୍ଟରେ ଝୁଲିଥିଲେ । ସନାତନର ନିର୍ଭୀକ ଆଚରଣ, ସ୍ପଷ୍ଟବାଦିତା, ଦେଶପାଇଁ କିଛି କରିବାର ବ୍ୟାକୁଳତା ଓ ଶେଷରେ ଫାଶି ଦଣ୍ଡ ପାଇବା ମଧ୍ୟରେ ଏହା ପ୍ରତିଫଳିତ । କାଳିନ୍ଦୀ ପାଣିଗ୍ରାହୀ ଏକ ଦିଗରେ ରାମାୟଣ, ମହାଭାରତ, ବୁଦ୍ଧ-ଜୀବନୀ ଦ୍ୱାରା ପ୍ରଭାବିତ ଅନ୍ୟପକ୍ଷରେ ଗାନ୍ଧୀ, ସୁଭାଷଙ୍କ ଆଦର୍ଶ ଦ୍ୱାରା । ଏ ସମସ୍ତର ମିଳିତ ପ୍ରଭାବ ଉଭୟ ଉପନ୍ୟାସରେ ସ୍ପଷ୍ଟ । ଏତଦ୍ ବ୍ୟତୀତ ଅଳକା ଓ ସୁନନ୍ଦା ଚରିତ୍ରର ମହନୀୟତା, ବଳୀୟାର ସିଂଙ୍କ ଦେଶପ୍ରେମ ଉଲ୍ଲେଖଯୋଗ୍ୟ । ଶ୍ୟାମ ରଥ, ଦାରୋଗା, ସିପାହି ଓ ଶୋଭା ଆଦି ଚରିତ୍ର ଗୌଣ ଭାବରେ ଉପସ୍ଥାପିତ ହେଲେ ହେଁ ଉପନ୍ୟାସ ଗତିପଥରେ ଏହାର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ।

ପ୍ରଥମ ଉପନ୍ୟାସଟି ରାଜକୀୟ ପରିବେଶରୁ ଆରମ୍ଭ ହୋଇ ରାଜାତ୍ୟାଚାର, ପ୍ରଜାପୀଡ଼ନ ମଧ୍ୟଦେଇ ନଅଙ୍କ ଦୁର୍ଭିକ୍ଷର ବିଭୀଷିକାମୟ ପୃଷ୍ଠଭୂମିରେ ରଚିତ । ଦ୍ୱିତୀୟଟି ଦୁର୍ଭିକ୍ଷ ଓ ବନ୍ୟାର ପୃଷ୍ଠଭୂମିରେ ରଚିତ ହେବା ସହିତ ଊନବିଂଶ ଶତାବ୍ଦୀର ଶେଷ ତିନି ଦଶର ସମାଜିକ, ରାଜନୈତିକ ପୃଷ୍ଠଭୂମିର ଚିତ୍ର ବହନ କରିଛି । ଔପନ୍ୟାସିକ ମଝିରେ ମଝିରେ ଇତିହାସ ସମର୍ଥିତ ଘଟଣା ଓ ବିଷୟ ଉଲ୍ଲେଖ ପୂର୍ବକ ଏହାକୁ ଅଧିକ ସତ୍ୟାଶ୍ରୟୀ କରିବାକୁ ଚେଷ୍ଟା କରିଛନ୍ତି । 'ଅମର ଚିତା'ର ପଞ୍ଚଦଶ ପରିଚ୍ଛେଦରେ ବଂଗଳାର ଜମିଦାରୀ ନିଲାମ ହେବା ଯୋଗୁଁ ଓଡ଼ିଆ ଜମିଦାରଙ୍କ ସଂଖ୍ୟା ଊଣା ହେବା, ନଅଙ୍କ ଦୁର୍ଭିକ୍ଷଗ୍ରସ୍ତ ମନୁଷ୍ୟର ଚୋରି, ଡକାୟତି ଓ ଜୁଲମ ଚତୁର୍ଦ୍ଦଶ ପରିଚ୍ଛେଦରେ, ତ୍ରୟୋଦଶ ପରିଚ୍ଛେଦରେ ୧୮୬୭ ସାଲର ପ୍ରଳୟଙ୍କରୀ ବନ୍ୟାରେ ଦୀର୍ଘ ଦୁଇ ମାସ ଧରି ଓଡ଼ିଶା ଜଳମଗ୍ନ ରହିବା ଆଦି ସ୍ଥାନିତ ।

ଏହି ଉପନ୍ୟସ ଦୁଇଟିରେ ଭାଷାଗତ ପାର୍ଥକ୍ୟ ଅନୁଭୂତ ହୁଏନାହିଁ । ଭାଷା ଶୁଦ୍ଧ ଓ ସାହିତ୍ୟିକ । ଶୈଳୀରେ ସ୍ୱଚ୍ଛନ୍ଦତା ଓ ସ୍ୱାଭାବିକତା ନାହିଁ । ଭାଷାଶୈଳୀ ନିୟନ୍ତ୍ରିତ ହୁଏ କଥାବସ୍ତୁ ଓ ଚରିତ୍ର ଦ୍ୱାରା । ରାଜପରିବାର ଓ କିଛି ଇତିହାସ ସମର୍ଥିତ ଘଟଣା ସ୍ଥାନପାଇଥିବାରୁ ଔପନ୍ୟାସିକ ସାହିତ୍ୟିକ ଶୈଳୀରେ ଉପନ୍ୟାସ ଦୁଇଟି ରଚନା କରିଛନ୍ତି ।

ଏହା ସୁରେନ୍ଦ୍ର ମହାନ୍ତିଙ୍କର ଭାଷାଶୈଳୀ ସ୍ତରକୁ ଉନ୍ନୀତ ହୋଇପାରିନାହିଁ । 'ମାଟିର ମଣିଷ'ର ଭାଷାଗତ ଦକ୍ଷତା, ସାଫଲ୍ୟ ଏଥିରେ ନାହିଁ । ଗ୍ରାମ୍ୟ ଭାଷାର କଥିତ ରୂପର ଯେଉଁ ଆବେଦନ ସେଥିରେ ରହିଛି ତାହା ଏହି ଉପନ୍ୟାସରେ ନାହିଁ । ଫଳରେ ଭାଷିକ ଚମତ୍କାରିତା 'ମାଟିର ମଣିଷ'କୁ ଯେଉଁ ସାଫଲ୍ୟ ଦେଇଛି ତାହା ଏଠାରେ ଦୁର୍ଲ୍ଲଭ । ତେବେ ଉଭୟ ଉପନ୍ୟାସ ମଧ୍ୟରେ ଭାଷାଗତ ପ୍ରଭେଦ ପରିଲକ୍ଷିତ ହୁଏନାହିଁ, ଯାହା ଷୋଳବର୍ଷର ବ୍ୟବଧାନ ସୃଷ୍ଟିକରିଛି ମାଟିର ମଣିଷ ଓ ଲୁହାର ମଣିଷ ମଧ୍ୟରେ । ଏହି ଉପନ୍ୟାସର ଭାଷା ସୁଚିନ୍ତିତ, ବୁଦ୍ଧିଦୀପ୍ତ, ପରିମାର୍ଜିତ । ଜନ୍ମମୃତ୍ୟୁ ଚର୍ଚ୍ଚା, ସୃଷ୍ଟିର ଅନନ୍ତ ରହସ୍ୟ, ଗୀତାବାଣୀର ତର୍ଜମା ଯୋଗୁଁ ଭାଷା ବିଶ୍ଳେଷଣଧର୍ମୀ । ଆବେଗରହିତ ଭାଷା ଅନେକ ସ୍ଥଳରେ ବକ୍ତବ୍ୟ ପ୍ରଧାନ । ଏଥିରେ ଆଦର୍ଶ ରହିଛି ଆନ୍ତରିକତା ନାହିଁ, ସହାନୁଭୂତି ଅଛି, ଗତିଶୀଳତା ନାହିଁ । ଔପନ୍ୟାସିକ ଏଠି ଜ୍ଞାନୀ, ବିଦଗ୍ଧ । ଭାଷା ଉଦ୍‌ବୋଧନ ମୂଳକ, ତତ୍ତ୍ୱ ପ୍ରଖ୍ୟାପକ ହୋଇଛି । ଭାଷାରେ ସେହି ପ୍ରାଣୋଚ୍ଛଳତା ନାହିଁ ଯାହା ପାଠକ ମନରେ ସ୍ପନ୍ଦନ ସୃଷ୍ଟି କରିବ । ତେଣୁ ଭାଷାର କୃତ୍ରିମତା ବରଂ ଉପନ୍ୟାସକୁ ନୀରସ, ନିଷ୍ପ୍ରାଣ କରିଛି ।

ସାଧାରଣତଃ ପର୍ଯ୍ୟାୟ କ୍ରମିକ ରୀତିରେ ରଚିତ ଉପନ୍ୟାସଗୁଡ଼ିକୁ ଆଲୋଚନା କଲେ ଜଣାଯାଏ ଯେ ପ୍ରଥମ ଭାଗର ଶିଳ୍ପମୂଲ୍ୟ ଓ ପାଠକୀୟ ଆବେଦନ ଦ୍ୱିତୀୟଭାଗଠାରୁ ଅଧିକ । ଯେଉଁ ଭାବାବେଗ ଓ ଆନ୍ତରିକତାର ସହିତ ଲେଖକ ପ୍ରଥମଭାଗ ରଚନା କରିଥାନ୍ତି, ତାହା ସମ୍ଭବତଃ ଦ୍ୱିତୀୟଭାଗ ରଚନାବେଳକୁ ପ୍ରତିହତ ହୁଏ । ତେଣୁ ଦ୍ୱିତୀୟଭାଗ ପ୍ରଥମ ପରି ପ୍ରାଣୋଚ୍ଛଳ ଓ ରସୋତ୍ତୀର୍ଣ୍ଣ ହୁଏ ନାହିଁ । 'ଲୁହାର ମଣିଷ' 'ମାଟିର ମଣିଷ'କୁ ଅତିକ୍ରମ କରିପାରିନାହିଁ । ମୁକ୍ତାଗଡ଼ର କ୍ଷୁଧା ଓ ଅମରଚିତା ସମକାଳରେ ଗୋଟିଏ ଭାବର ପ୍ରବାହରେ ରଚିତ ହୋଇଥିବାରୁ ଏଥିରେ ଏହି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏନାହିଁ ।

ସହାୟକ ସୂଚୀ :


୧. କାଳିନ୍ଦୀଚରଣ ଉପନ୍ୟାସ ସମଗ୍ର, ଲୁହାର ମଣିଷ ଭୂମିକା, ପୃ - ୧୦୮- କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୧୯୮୮

୨. କାଳିନ୍ଦୀଚରଣ ଉପନ୍ୟାସ ସମଗ୍ର, ଲୁହାର ମଣିଷ ଭୂମିକା, ପୃ - ୧୯୨-୧୯୩- କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୧୯୮୮

୩. କାଳିନ୍ଦୀଚରଣ ଉପନ୍ୟାସ ସମଗ୍ର, ମୁକ୍ତାଗଡ଼ର କ୍ଷୁଧା, ପୃ - ୪୦୦- କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୧୯୮୮

୪. ତତ୍ରୈବ, ପୃ - ୪୬୩

୫. ତତୈବ, ପୃ - ୪୬୪




# ମାଟିର ଲୋକ : ଗାନ୍ଧିବାଦର ମଣିଷ

ଡକ୍ଟର ମିହିର୍‌କୁମାର ସାହୁ

ମାଟିର ମଣିଷ (ଖ୍ରୀ: ୧୯୩୧) ଉପନ୍ୟାସ, ଔପନ୍ୟାସିକ କାଳିନ୍ଦୀଚରଣ ପାଣିଗ୍ରାହୀ (ଖ୍ରୀ: ୧୯୦୧)ଙ୍କର ରଚନା । ସବୁଜ ଗୋଷ୍ଠୀ ମଧ୍ୟରେ ରହି ସେ ପ୍ରଥମ କରି ବାସନ୍ତୀ (୧୯୩୧) ଉପନ୍ୟାସ ରଚନାରେ ଅର୍ଘ୍ୟ ଢାଳିଥିଲେ । ତେବେ ସେଥିରେ ସ୍ୱକୀୟତା ପ୍ରକାଶ କରିବାର ସୁଯୋଗ ଥିଲା କମ୍ । ତେଣୁ ମୌଳିକ ରଚନା ମାଧ୍ୟମରେ ବିଶେଷକରି ଉପନ୍ୟାସ ରଚନା ମାଧ୍ୟମରେ କାଳିନ୍ଦୀ ନିଜର ଲୋକପ୍ରାଣତାର ପ୍ରକୃତ ପରିଚୟ ଦେଇପାରିଛନ୍ତି । ଓଡ଼ିଶାର ପଲ୍ଲୀଜୀବନ ସହ କାଳିନ୍ଦୀଙ୍କର ସମ୍ପର୍କ ଥିଲା ଖୁବ୍ ନିବିଡ଼ । ପଲ୍ଲୀ ଜନତାର ସୁଖ ଦୁଃଖର କାହାଣୀ, ସମସ୍ୟାବହୁଳ ଜୀବନର ଚିତ୍ରକୁ ସେ ଖୁବ୍ ନିକଟରୁ ଦେଖିଛନ୍ତି, ଅନୁଭବ କରିଛନ୍ତି ଏବଂ କଲମରେ ପ୍ରକାଶ ମଧ୍ୟ କରିଛନ୍ତି । ମାଟିର ମଣିଷ (୧୯୩୧) ଉପନ୍ୟାସଟି ଓଡ଼ିଆ ସମାଜ ଜୀବନର ଯଥାର୍ଥ ଐତିହ୍ୟକୁ ବହନ କରିପାରିଛି ।

୧.୧. ୧୯୨୧ ଖ୍ରୀଷ୍ଟାବ୍ଦରେ ଗାନ୍ଧିଜୀଙ୍କର ଓଡ଼ିଶା ଆଗମନ ଫଳରେ ଉତ୍କଳୀୟ ଜାତୀୟ ଚେତନା ଉଜ୍ଜୀବିତ ହୋଇଥିଲା । ଏହି ଜାତୀୟ ଚେତନା ଓଡ଼ିଶାର ବିଚ୍ଛିନ୍ନାଞ୍ଚଳମାନଙ୍କର ଏକତ୍ରୀକରଣ ଓ ଭାଷା ସାହିତ୍ୟ ଦୃଷ୍ଟିରୁ ଏକ ବୃହତ୍ତର ଉତ୍କଳ ପ୍ରଦେଶ ଗଠନ ପରିକଳ୍ପନାରୁ ଆରମ୍ଭ ହୋଇଥିଲେ ମଧ୍ୟ କ୍ରମେ ଭାରତୀୟ ମୁକ୍ତି ସଂଗ୍ରାମ ଆଡ଼କୁ ଗତି ପରିବର୍ତ୍ତନ କରିଛି । ଏଥିପାଇଁ ୧୯୨୧ର ଅସହଯୋଗ ଆନ୍ଦୋଳନ, ୧୯୩୦ର ଲବଣ ସତ୍ୟାଗ୍ରହ ଅଧିକ ଇନ୍ଧନ ଯୋଗାଇଛି । ''ପୁଣି ୧୯୩୦ର ସ୍ୱାଧୀନତା ପାଇଁ ସତ୍ୟାଗ୍ରହରେ ସବୁଠୁ ବେଶି ଭାଗ ଚାଷୀ ଯୋଗ ଦେଇଥିଲେ ।'' (ମହତାବ ଡଃ ହରେକୃଷ୍ଣ; ୧୯୭୭-୯୧) ଏଥିରୁ ଜଣାପଡ଼େ, ସାଧାରଣ ଲୋକ ମଧ୍ୟ ସେତେବେଳକୁ ଗାନ୍ଧିବାଦ ପ୍ରତି ସଚେତନ ହେଲେଣି । ସର୍ବଭାରତୀୟ କ୍ଷେତ୍ରରେ ମଧ୍ୟ ଦେଖିଲେ ଜଣାପଡ଼େ, ଏହି ସମୟର ସାହିତ୍ୟସୃଷ୍ଟିଗୁଡ଼ିକ ମଧ୍ୟରେ ମଧ୍ୟ ଗାନ୍ଧିବାଦ ପ୍ରତ୍ୟକ୍ଷ ବା ପରୋକ୍ଷରେ ଆସିଛି । ଏହି ଧରଣର ଚରିତ୍ରଗୁଡ଼ିକ ସାଧାରଣତଃ ସମାଜସେବୀ, ଦେଶପ୍ରେମୀ ହୋଇଥାନ୍ତି । ସେମାନେ ଦେଶପ୍ରେମର ପ୍ରଚାର ଓ ପ୍ରସାର କରି ଜେଲ ବରଣ କରିଥାଆନ୍ତି । ନିନ୍ଦା, ଅପମାନ ସହିଥାଆନ୍ତି, ନାନା କଷ୍ଟ ସହିଥାଆନ୍ତି ଏବଂ ଶେଷରେ ମୃତ୍ୟୁବରଣ କରିଥାଆନ୍ତି ମଧ୍ୟ । କିନ୍ତୁ କାଳିନ୍ଦୀ ଏହି ''ମାଟିର ମଣିଷ'' ଉପନ୍ୟାସରେ ଏକ ଭିନ୍ନ ଧାରାର ପ୍ରୟୋଗ କରିଛନ୍ତି । ତାଙ୍କ ଉପନ୍ୟାସରେ

ଗାନ୍ଧିବାଦ ବା ଗାନ୍ଧୀ ଏକବାରେ ଆସି ନାହାନ୍ତି । ଗାନ୍ଧୀ ବା ତତ୍କାଳୀନ ଦେଶପ୍ରେମ ସମ୍ପର୍କରେ କୌଣସି କଥା ମଧ୍ୟ କୁହାଯାଇନାହିଁ । ଚରିତ୍ରମାନେ ଗାଁ ଛାଡ଼ି ସହରକୁ ମଧ୍ୟ ଯାଇନାହାନ୍ତି । ସହରୀ ସଭ୍ୟତା ବା ସହରୀ ପ୍ରଚାର/ ଅପପ୍ରଚାରର ରାଜନୈତିକ ବାତାବରଣ ମଧ୍ୟ ଗାଁ ମାଟିକୁ ଛୁଇଁ ନାହିଁ । ତତ୍କାଳୀନ ସତ୍ୟାଗ୍ରହ, ଅସହଯୋଗ ଆନ୍ଦୋଳନ, ମୁକ୍ତି ସଂଗ୍ରାମର ଲେଶମାତ୍ର ସୂଚନା ମଧ୍ୟ ଔପନ୍ୟାସିକ ଦେଇନାହାନ୍ତି । କିନ୍ତୁ ଏସବୁ ସତ୍ତ୍ୱେ ତାଙ୍କର ମୁଖ୍ୟ ଚରିତ୍ର 'ବରଜୁ' ଗାନ୍ଧିବାଦର ଚରମ ପ୍ରତୀକ ତଥା ମୂର୍ତ୍ତିମନ୍ତ ଦାୟାଦ । ସାଧାରଣ ଜନଜୀବନରେ, ଲୋକ ମାନସିକତାରେ ସେ ଯେଉଁ ନୈତିକତା ପ୍ରଦର୍ଶନ କରିଛି, ତାହା ଗାନ୍ଧିବାଦ ବ୍ୟତୀତ ଆଉ କିଛି ନୁହେଁ । ଗାନ୍ଧିପ୍ରେମ, ସହନଶୀଳତା, ଅହିଂସାନୀତି, ତ୍ୟାଗ ମନୋଭାବ ଉପନ୍ୟାସର ନିର୍ଯ୍ୟାସକୁ ଅଧିକ ପ୍ରାଣବନ୍ତ କରିପାରିଛି ।

୧.୨. ଗାନ୍ଧିବାଦର ପୃଷ୍ଠଭୂମି ଉପରେ ଉପନ୍ୟାସଟି ରଚିତ ହୋଇଥିଲେ ମଧ୍ୟ କାଳିନ୍ଦୀ ଏ ମାଟିର ପାରମ୍ପରିକ ବିଶ୍ୱାସବୋଧ, ସାମାଜିକ ଆଚାର ଏବଂ ଆଦର୍ଶ ସହିତ ଠିକ୍ ଭାବରେ ପ୍ରତିଷ୍ଠିତ କରାଇପାରିଛନ୍ତି । ଏଥିରେ ଓଡ଼ିଶାର ପଲ୍ଲୀଜୀବନର ଚିତ୍ର ଅତି ନିଛକ ଏବଂ ସଫଳତାର ସହ ପ୍ରତିଫଳିତ ହୋଇଛି । ଘଟଣା ବିନ୍ୟାସ ସହ ପଲ୍ଲୀଜୀବନର ଲୋକଚରିତ୍ରଗୁଡ଼ିକୁ ସଠିକ୍ ଭାବରେ ବାଛି ଆଣିପାରିଛନ୍ତି । ଲୋକ ଚରିତ୍ରଗୁଡ଼ିକର ଚିତ୍ରଣ ଖୁବ୍ ନିଛକ ଏବଂ ସାବଲୀଳ ହୋଇପାରିଛି । ଲୋକଚରିତ୍ରଗୁଡ଼ିକର ଚରିତ୍ରାୟନ ମାଧ୍ୟମରେ ପରିବେଷିତ ହୋଇଛି ପଲ୍ଲୀର ବିଭିନ୍ନ ସମସ୍ୟା, ସଂଘର୍ଷ ତଥା ଅନ୍ଧାରୀ ଦିଗସବୁ । ନେତ୍ରମଣି, ହାରାବୋଉର ଅଭିମାନ, କଳିକଜିଆ, ମୁହଁଫୁଲା, ଛକଡ଼ିର ଫୁଲାଫାଙ୍କିଆ ପ୍ରକୃତି, ଶରଦୀବୋଉର ଘରଭଙ୍ଗା ନୀତି, କାଛବାଡ଼କୁ ଦେଖାଇ ଅନ୍ୟକୁ ସମାଲୋଚନା କରିବାର ପଦ୍ଧତି, ତୁଚ୍ଛା କଥାକୁ ଫେଣେଇ ଫେଣ୍ଟି ବଡ଼ କରିବା, ହରି ମିଶ୍ର ଭଳିଆ କୁଟୁପିଆ ଲୋକର କାର୍ଯ୍ୟକଳାପ ସବୁ ପ୍ରକାଶ ପାଇଛି ଉପନ୍ୟାସଟିରେ । ଏଥି ସହିତ ରହିଛି ବରଜୁର ସହନଶୀଳତା, ଭ୍ରାତୃପ୍ରେମ, ଅହିଂସା ନୀତି, ଅସୀମ ଧୈର୍ଯ୍ୟ, ତ୍ୟାଗ ମନୋଭାବ, ମଣିଷ ପଣିଆ, ହାରାବୋଉର ପରିବର୍ତ୍ତିତ ସ୍ୱଭାବ, ଯଦୁ ଦଳେଇ, ଗୌରାଙ୍ଗ, ଧରମା, ରୂପ ଜେନା, ନିତେଇ ମହାରଣା, ନିଧିଆ, ମାଗୁଣିଆ ପ୍ରଭୃତି ଚରିତ୍ରଗୁଡ଼ିକର ସରଳତା — ସବୁଠି କାଳିନ୍ଦୀଙ୍କର କାରିଗରୀ ହାତର ସ୍ପର୍ଶ ତଥା ଲୋକମାନସିକତାର ପ୍ରଲେପ ସ୍ପଷ୍ଟ । କାଳିନ୍ଦୀ ଗୋଟିଏ ପାଖରେ ମାଟିର ଲୋକ (folk) ଓ ଅନ୍ୟ ପାଖରେ ଗାନ୍ଧିବାଦର ମଣିଷ (humanbeing)କୁ ଛିଡ଼ା କରାଇପାରିଛନ୍ତି, ''ମାଟିର ମଣିଷ'' ଉପନ୍ୟାସରେ ।

## ମାଟିର ଲୋକ

''ମାଟିର ମଣିଷ'' ଉପନ୍ୟାସର ପ୍ରାୟ ସମସ୍ତ ଚରିତ୍ର ଲୋକଚରିତ୍ରର ଅନ୍ତର୍ଭୁକ୍ତ । ଗ୍ରାମ୍ୟ ପରିବେଶ ମଧ୍ୟରେ ଉପନ୍ୟାସଟି ଗଢ଼ି ଉଠିଛି । ତେଣୁ ''ମାଟିର ମଣିଷ'' ଉପନ୍ୟାସଟି ଯଥାର୍ଥ ଭାବରେ ମାଟିର ଲୋକଙ୍କୁ ଆଧେୟ କରିଛି । ଶାମ ପଧାନ, ବରଜୁ,

ଛକଡ଼ି, ହାରାବୋଉ, ନେତ୍ରମଣି, ହରି ମିଶ୍ର ପ୍ରଭୃତି ମୁଖ୍ୟ ଚରିତ୍ର ଏବଂ ଯଦୁ ଦଳେଇ, ଶଗଡ଼ିଆ, ମଣିବୋଉ, ଶରଦୀ' ମା, ସନିଆ, ଗୌରାଙ୍ଗ ଇତ୍ୟାଦି ଗୌଣ ଚରିତ୍ର – ସମସ୍ତଙ୍କୁ ଲୋକଚରିତ୍ରରେ ଅନ୍ତର୍ଭୁକ୍ତ କରାଯାଇପାରେ ।

୨.୧. ଚରିତ୍ରାୟନ

୨.୧.୧. ଲୋକ ଦେବତା : 'ପଧାନପଡ଼ା ମା' ମଙ୍ଗଳା ଏକ ଲୋକ ଦେବତା । ମନ୍ଦାର ଗଛ ମୂଳ ମୁଗୁନି ପଥରର ମଙ୍ଗଳା ମା'ଙ୍କଠାରେ ଗାଁର ସବୁ ଧର୍ମଯାକ ଠୁଳ ହୋଇଛି । ଗାଁର ସୁଖଦୁଃଖର ପ୍ରଥମ ଭାଗୀଦାର ସେ । କେତେକାଳ ଧରି ସେ ପୂଜା ପାଉଛନ୍ତି, ସିନ୍ଦୂର ମାଜଣା ହୋଇ ।''

୨.୧.୨. ଲୋକାଚାର : ''ଶାମ ପଧାନର ସ୍ତ୍ରୀ ଅହିଅ ହୋଇ ମରିଗଲା । ଅହିଅ ଶଙ୍ଖା ଓ ସିନ୍ଦୂର ଲଗାଇ ଶବ ଦାହ କରାଗଲା । ଶବ ପଛରେ ଶାମ ପଧାନ ଲିଆ କଉଡ଼ି ବିଞ୍ଚିଲା ।''

''ବାହାଘର ପୂର୍ବରୁ ବିଭିନ୍ନ ଆୟୋଜନ କରାଯାଇଥିଲା । ଯଥା - ଧାନ ଉଷୁଆଁ, ଧାନକୁଟା, ବିରିବଟା, ବଡ଼ିପରା ଇତ୍ୟାଦି । ସୁନା ବାହାଘର ପାଇଁ ଏସବୁ ହୋଇଛି ।''

୨.୧.୩. ଯାଚନା କରିବା : ''ଯଦୁ ଦଳେଇ ତା' ପିଲାର ଦେହ ଭଲ କରିଦେବା ପାଇଁ କେତେ ଦିଅଁ ଦେବତାଙ୍କୁ କେତେ କ'ଣ ଯାଚିଥିଲା । ମା' ମଙ୍ଗଳାଙ୍କୁ କେତେ ମାଜଣା କରିଥିଲା । କିନ୍ତୁ କର୍ମ ଯୋଗୁଁ ପିଲାଟି ମରିଗଲା ।''

''ବରଜୁ ପାଞ୍ଚଦିନ ହେବ ଘରକୁ ଫେରିନାହିଁ । ହାରାବୋଉ ଦିଅଁ ଦେବତାଙ୍କୁ କେତେ କ'ଣ ଯାଚିଲା । ଭଲରେ ଭଲରେ ଫେରି ଆସିଲେ ମା' ମଙ୍ଗଳାଙ୍କଠାରେ ମାଜଣା କରିବ, ପ୍ରଭୁ କପାଳେଶ୍ୱରଙ୍କଠାରେ ଗଇଶ ଚଢ଼େଇବ ବୋଲି ମାନସିକ କଲା ।''

୨.୧.୪. କିମିଆଁ କରିବା : ''ବରଜୁ ଘର ଛାଡ଼ି ପଳାଇବାରୁ ତା' ସ୍ତ୍ରୀ ସବୁତକ ରାଗ ସାନବୋହୂ ଓ ଛକଡ଼ି ଉପରେ ଓଜାଡ଼ି ଦେଲା । ସେ ଭାବିଲା ଏସବୁ କାଣ୍ଡ ସାନବୋହୂ କିମିଆଁ କରି ଭିଏଇଛି ।''

''ବରଜୁ ଘରଛାଡ଼ି ପାଞ୍ଚଦିନ ହେବ କୁଆଡ଼େ ପଳେଇଛି । ଶରଦୀ ବୋଉ ଏହାର କାରଣ ଦର୍ଶାଇଛି ଯେ, ସାନବୋହୂ କିଛି କିମିଆଁ କରିଛି । ତେଣୁ ତା'ର ପ୍ରତିକାର ପାଇଁ କହିଛି – 'ଆଲୋ ଚଢ଼ାକୁ ଉଉରା କ'ଣ ନାହିଁ ? କେତେ ଓଷଧିଆ ଗୁଣିଆ ମୁଁ ଦେଖିଛି – ସନିଆ ଓଝାକୁ ପୁଣି ବରିଯିବ କିଏ ? କାଟପାଣିଟାଏ କରିଦେଲା ଯେ, ଜଗୁ ସାଉ ଆଠବର୍ଷ ହେଲା ଘରକୁ ଖବର ଅନ୍ତର ଦେଇ ନଥିଲା – ଦିନ ଦି'ଟାରେ ଆସି ପହଞ୍ଚିଗଲା ।'' ବରଜୁ ସ୍ତ୍ରୀ ମଧ ତା' କଥା ମାନି ପ୍ରତିକାର ବ୍ୟବସ୍ଥା କରିଛି ।

୨.୧.୫. **ନାମକରଣ :** ସାଧୁଆ ମା' ବୁଢ଼ୀର ଶ୍ୱଶୁର ନା ମଧ୍ୟ ବରଜୁ, ତେଣୁ ସେ ବରଜୁ ନାଁ ଧରେନାହିଁ – କହେ, 'ନରଜୁଆ' ।

୨.୧.୬. **ଶଗଡ଼ିଆ ଗୀତ :** ଶଗଡ଼ିଆର ଟାକରା, ଗୋରୁ ଉପରେ ପାଞ୍ଚଣ, ଆଉ ମଝିରେ ମଝିରେ ପଦେ ଅଧେ ଗୀତ –

''ରାମ ବିଭା କାରେ ଲୋ,
ଲଖଣ ବରଯାତି-ଇ-ଟ-ଟ ।''
''ସୁବର୍ଣ୍ଣ ବେଦୀ ତରେ ଲୋ,
ଧଇଲେ ପାଟ ଛତି-ଇ-ଟ-ଟ ।''

୨.୧.୭. **ଲୋକଗଳ୍ପର ପ୍ରସ୍ତାବନା :** କାହାଣୀ କହିବା ଏବଂ କାହାଣୀ ଶୁଣିବା ଏକ ଲୋକପ୍ରବୃତ୍ତି । ବୁଢ଼ୀମାନେ ସନ୍ଧ୍ୟାରେ ନାତି ନାତୁଣୀମାନଙ୍କୁ ବସାଇ ଗପର ପସରା ମେଲାଇ ଥାଆନ୍ତି । ନୀତିଶିକ୍ଷା ତ ଦିଆଯାଏ, ପରୋକ୍ଷରେ ଛୋଟ ଛୋଟ କୋମଳମତି ପିଲାଙ୍କ ମନ ଭୁଲାଇ ଆକଟ କରାଯାଇଥାଏ । ବରଜୁର ପୁଅ ଝିଅମାନଙ୍କୁ ତା' ମା' ଗପ ଶୁଣାଇଛନ୍ତି । ଗପଟିର ପ୍ରସ୍ତାବନାଟି ଗୀତରେ କୁହାଯାଇଛି —

''ଟୁବି ଗଡ଼ିଆରେ ଟୁବି ଗଡ଼ିଆ
ଟୁବି ଗଡ଼ିଆରେ ପାଣି,
ଛ'ଅ ଦେଶୁରେ ଛ' ସାଆନ୍ତ
ଛ' ଯା' ଛ' ସାଆନ୍ତାଣୀ ।
ମୋ' ପ୍ରାହୁ ହୋଇବ କନକ ରାଜା – ।''

ବରଜୁ ଯଦୁ ଦଳେଇକୁ କଥା ବୁଝାଇବାକୁ ଯାଇ ଲୋକଗଳ୍ପର ଉଦାହରଣ ଦେଇଛି । ଏଠାରେ ତା'ର ଲୋକମାନସିକତା କାମ କରିଛି ଏବଂ ଗଳ୍ପଟିର ଉଦାହରଣ ଦେବା ଦ୍ୱାରା ବୁଝିବା ଲୋକ ସ୍ପଷ୍ଟ ହୋଇପାରିଛି । ଯଦୁ ଦଳେଇ ହରି ମିଶ୍ରଙ୍କ କାର୍ଯ୍ୟକଳାପରୁ ଧର୍ମ ନାହିଁ ବୋଲି ଉଦାହରଣ ଦେଇଛି । ବରଜୁ କିନ୍ତୁ ରାଗିଯାଇ କହିଛି – ''ଆମେ କୋଉ ଭଲ ଯେ, ଆମେ ତ ନିଜ ନିଜ ମଧ୍ୟରେ କଳିକଜିଆ କରୁଛେଁ, ହରି ମିଶ୍ର ମାଙ୍କଡ଼ ହୋଇ ଦୁଇ ବିରାଡ଼ିଙ୍କ କଳି ସମାଧାନ କରିବାକୁ ଲଡୁ ବାଣ୍ଟୁ ବାଣ୍ଟୁ ସବୁ ଖାଇଗଲା ତ ଦୋଷ କାହାର ? ଆମର ନା ତା'ରି ?'' ଏଠାରେ ''ଦୁଇଜଣଙ୍କ କଳିରେ ତୃତୀୟର ଲାଭ'' ଲୋକଗଳ୍ପର ଉଦାହରଣ ଦେଇ ଲେଖକ ଏକ ନୀତିଶିକ୍ଷା ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି ।''

ବରଜୁ ନିଜ ସ୍ତ୍ରୀକୁ ଭଲ ବାଟକୁ ଆଣିବାକୁ ଚେଷ୍ଟା କରିଛି । ତାକୁ ଭଲ ମନରେ ଦିନେ କହିଲା, ''ଆଜି ଗୋଟାଏ କଥା କହିବାକୁ ଅଛି ।'' ତା' ସ୍ତ୍ରୀ କହିଲା, ''କଥା କହିବାକୁ

ଅଛି । କିସ କଥା ନା ବେଙ୍ଗୁଲି କଥା'' – ଏହା ଲୋକ କାହାଣୀର କଥାଣୀ, ଯାହା ଲୋକମାନଙ୍କୁ ଆପ୍ଳୁତ କରି ରଖିପାରିଛି ।

୨.୧.୮. **ପୌରାଣିକ କାହାଣୀ :** କାଳିନ୍ଦୀଚରଣ ଉପନ୍ୟାସ ମଧ୍ୟରେ ବହୁ ପୌରାଣିକ କାହାଣୀର ସୂଚନା ଦେଇଛନ୍ତି, ଚରିତ୍ରଗୁଡ଼ିକ ମାଧ୍ୟମରେ ।

ବଡ଼ବୋହୂ ବରଜୁକୁ ମୋଡ଼ି ଦେଉ ଦେଉ ଛକଡ଼ି ଏବଂ ତା ସ୍ତ୍ରୀ ନାଁରେ ସତମିଛ ଲଗାଇ ନାନା କଥା କହୁଥିଲା । ବରଜୁ ହାଲିଆ ହୋଇ ପଡ଼ିଥିବାରୁ ନିଦରେ ଘୁଙ୍ଘୁଡ଼ି ମାରୁଥାଏ । ବଡ଼ବୋହୂର କୌଣସି ଫେରାଦ ସେ ଶୁଣିପାରେ ନାହିଁ । କିନ୍ତୁ ସାନବୋହୂ କାନ୍ଥ ପାଖରେ କାନପାରି ସବୁକଥା ଶୁଣିପାରେ । ଏହି ପ୍ରସଙ୍ଗରୁ ଲେଖକ କହିଛନ୍ତି, ''ଭାଗବତ ଅଧ୍ୟାୟକ ପାର୍ବତୀ ଶୁଣି ନ ପାରିଲେ କ'ଣ ହେଲା, ଶୁକଦେବ ଶୁଣନ୍ତି ।''

ବରଜୁ ଧର୍ମର ସ୍ଥିତି ସମ୍ପର୍କରେ ଜୋର୍‌ଦେଇ ରାମାୟଣରୁ ଉପନ୍ୟାସ କହିଛି – ଧର୍ମପାଇଁ ଗୁଣ୍ଡୁଚି ମୂଷାଟିଏ ବି ସେତୁବନ୍ଧରେ ମାଟି ପକାଇଲା । ମାଙ୍କଡ଼ଗୁଡ଼ାକ ବି ଯୁଦ୍ଧ କରି ମରିଗଲେ । ଆମେ ତ କିଛି କରୁନାହେଁ ।

ଗୌରାଙ୍ଗ କଥା ରଖିବାକୁ ବରଜୁ ଆଗରେ ଜିଦ୍ କଲାରୁ ବରଜୁ କହିଲା– ମୁଁ କ'ଣ ରାଜା ହରିଶ୍ଚନ୍ଦ୍ର ହୋଇଛି ଯେ, ଯାହା ସତ୍ୟ କରିବି ସବୁ ପାଳିବି । ଏଠାରେ ରାଜା ହରିଶ୍ଚନ୍ଦ୍ରଙ୍କର ସତ୍ୟାନୁରାଗ ସମ୍ପର୍କରେ ସୂଚନା ଦିଆଯାଇଛି ।

୨.୧.୯. **ଲୋକୋକ୍ତି :** ''ମାଟିର ମଣିଷ'' ଉପନ୍ୟାସରେ ପ୍ରାୟ ପ୍ରତ୍ୟେକଟି ଚରିତ୍ର ମୁହଁରେ ଔପନ୍ୟାସିକ ପ୍ରଚୁର ଲୋକୋକ୍ତିର ସଫଳ ପ୍ରୟୋଗ କରିଛନ୍ତି ଏବଂ ମାଧୁର୍ଯ୍ୟ ଫୁଟାଇ ପାରିଛନ୍ତି ।

୧. ଚକେ ଗଲେ ବାରହାତ ।
୨. ଲଙ୍କାରେ ହରି ଶବ୍ଦ ।
୩. ଯାହାର ବାପ ଚଢ଼େ ଘୋଡ଼ା, ତା'ର ପୁଅ ଚଢ଼େ ଥୋଡ଼ା ଥୋଡ଼ା ।
୪. ମୁଣ୍ଡରେ ଠେକା, ପାଦରେ ତେଲ, ବଇଦ ସଙ୍ଗତେ କରିବ ଗେଲ ।
୫. ବାଘ ଘରେ ମିରିଗର ନାଟ ।
୬. ଯାହା ନ ଦେଖିବ ଦୁଇ ନୟନେ, ପରତେ ନ ଯିବ ଗୁରୁ ବଚନେ ।
୭. ପୋଡ଼ିଗଲା ତୁଣରେ ଆଉ ସୁଆଦ ଥାଏ ?
୮. ଦୀପ ତେଜିଲେ ହାତ ଚିକ୍‌କଣ ।
୯. ଘୁଷୁରି ପ୍ରକୃତି ପଙ୍କେ ଲୋଟେ, ମଣିଷ ପ୍ରକୃତି ମଲେ ତୁଟେ ।
୧୦. ଗୋଟାଏ ହାତରେ କ'ଣ ତାଳି ବାଜେ ?

୧୧. କାଲ ଠାର କାଲ ମା' ଜାଣେ ।
୧୨. ଦିଅଁଙ୍କୁ ଖାଇ ଖଟୁଲି ଖାଇବା ।
୧୩. ଅଦା ବେପାରୀ ଜାହାଜ ମୂଲ କରିବା ।
୧୪. ଦେଖୁଛ ଚନ୍ଦନ, ପୁଛୁଛ କାଠ ।
୧୫. ବିଲେଇ କପାଳକୁ ଶିକା ଛିଡ଼ିଛି ।
୧୬. କାଉଁରିଆ କାଠି ଭାଙ୍ଗିବ ପଛେ ନଇଁବ ନାହିଁ ।
୧୭. କଣ୍ଟା ବାଡ଼ରେ ଲୁଗା ପକାଇ କଳି କରିବା ।
୧୮. ଚାଟ ଘର ପୁଅ ଚାଟ, ଭାଟ ଘର ପୁଅ ଭାଟ ।
୧୯. ଅନ୍ତରୁ ରୋଗ, ଆକାଶରୁ ମହରଗ ।
୨୦. ଏଇ କଥାକୁ – ନା' ପେଲିଦେଲି କଲିକତାକୁ ।
୨୧. ଚୋରକୁ ମାନ ମାରି ଖପରାରେ ଖାଇବା ।

### ୨.୨. ପ୍ରକାଶ ଭଙ୍ଗୀ

୨.୨.୧. **ହଲପ କରିବା :** ହରି ମିଶ୍ର ବନ୍ଦୋବସ୍ତ ଡିପୋଟି ଆଗରେ ଧଣ୍ଡା ତୁଳସୀ ଛୁଇଁ ହଲପ କରି ଜେନା ଘର ଜମି ନେଇଗଲା । ସମସ୍ତେ ବୁଝୁଥିଲେ ସେ ମିଛ କହୁଛି, କିନ୍ତୁ ଧଣ୍ଡା ଛୁଇଁ ହଲପ କରିଦେବାରୁ ସମସ୍ତଙ୍କ ମୁହଁ ଚୁପ୍ ହୋଇ ଯାଇଥିଲା ।

୨.୨.୨. **ରାଣ ପକାଇବା :** ଛକଡ଼ି ଉଛବାକୁ ଭାଇ (ବରଜୁ) ଘର ଛାଡ଼ି ଗଲାବେଳେ କ'ଣ କହିଯାଇଛନ୍ତି ବୋଲି ପଚାରିଲା । ଉଛବା କିଛି ନ କହିବାରୁ ଛକଡ଼ି ତା' ପୁଅ ରାଣ ପକାଇଲା କହିବା ପାଇଁ ।

### ୧.୩. ପରିବେଶ ସୃଷ୍ଟି

ବରଜୁ ସ୍ତ୍ରୀ (ହାରାବୋଉ) ଦାନ୍ତକାଠି ଧରି ଚୋବାଇ ଚୋବାଇ ପୋଖରୀ ତୁଠକୁ ଆସିଲା । ସେତେବେଳେ ତା' ସହିତ ଗାଁର ବିଭିନ୍ନ ଧରଣର ସ୍ତ୍ରୀମାନେ ଆସି ମିଶିଗଲେ । ମଣିବୋଉ ଗଡ଼ିଆ କୂଳରୁ ଓଦାମାଟି ନେଇ ପିତଳ ବାହିଟାକୁ ଘସରଘସର କରି ମାଜି ପକାଉଥାଏ, ଏଣେ କଥା କହୁଥାଏ ବରଜୁ ସ୍ତ୍ରୀ ସହିତ । ଶରଦୀ' ମା ମଧ୍ୟ ସେହିପରି ଦାନ୍ତକାଠିରେ ବରାଣୀଟା ମାଙ୍କୁ ମାଙ୍କୁ କଥାରେ ଯୋଗ ଦେଉଥାଏ । ନାଣ୍ଡି ପଣ୍ଡିଆଣୀ ଧର୍ମ ଦେବତାଙ୍କୁ ଆଞ୍ଜୁଳି ପାଣି ଦେଉ ଦେଉ ପରନିନ୍ଦା, ପରଚର୍ଚ୍ଚାରେ ଭାଗ ନେଉଥାଏ । କଥାର ମୁଖ୍ୟ ବିଷୟବସ୍ତୁ ହେଲା ସାନବୋହୂ (ଛକଡ଼ି - ସ୍ତ୍ରୀ)ର ନିନ୍ଦା ରଟନା କରିବା । ସେ କିପରି ଘରର କୌଣସି କାମ କରେନାହିଁ । ସବୁବେଳେ ଛକଡ଼ି ସାଙ୍ଗରେ ଫୁସୁରୁଫାସୁରୁ ହେଉଥାଏ । ଦେଢ଼ଶୁରକୁ ବେଖାତିର କରେ – ଏସବୁ ନେଇ କଥାବାର୍ତ୍ତା କରିଥାଆନ୍ତି । ଏହା ଏକ ସୁନ୍ଦର ଲୋକ-ପରିବେଶ ସୃଷ୍ଟି କରିଛି ।

# ଗାନ୍ଧିବାଦର ମଣିଷ

## ୩.୧. ମଣିଷ ପଣିଆ

ଗାନ୍ଧିବାଦର ସବୁଠୁ ବଡ଼ କଥା ହେଲା ମଣିଷପଣିଆ । ଏହି ମଣିଷପଣିଆର କଥା କାଳିନ୍ଦୀ ସିଧାସଳଖ ଭାବରେ ଉପସ୍ଥାପିତ କରିଛନ୍ତି ଉପନ୍ୟାସଟିରେ ।

୩.୧.୧. ''ଘରଟାର ବଡ଼ିମା ପାଇଁ ନୁହେଁ, ମୁରବୀର ମଣିଷପଣିଆ ଯୋଗୁଁ ଶାମ ପଧାନ ଘରଟା ପଧାନପଡ଼ାର ଆଖପାଖ ସବୁ ଲୋକଙ୍କୁ ଗୋଚର । ଗାଁ ଭିତରକୁ ଯୋଗୀ ଭିକାରୀ ଆସିଲେ ଲୋକେ ଶାମ ପଧାନ ଘରକୁ ତାଙ୍କୁ ଦେଖାଇ ଦେଉଥିଲେ । ଗାଁ ଭିତରେ କି ବାହାରେ କଜିଆଗୋଳ ହେଲେ ଶାମ ପଧାନଙ୍କୁ ଡାକ । ଶାମ ପଧାନ ଲୋକଟାର ପାଠଶାଠ ଭାଗବତ ବୋଲି ଜାଣିବା ଛଡ଼ା ଅଧିକ କିଛି ନଥିଲା । ସେ ଆଇନ କାନୁନ ଜାଣେ ନାହିଁ । ଓଷଧ, ମସ୍ତୁଧି ଜାଣେନାହିଁ, ହିସାବପତ୍ରରେ ସେମିତି କିଛି ଟାରଗ ନୁହେଁ ।''

୩.୧.୨. ବୁଢ଼ା ହସି ହସି କହିଲା, ଧନସମ୍ପତ୍ତିରେ ସବୁ କିଣା ହୁଏରେ ବାପ, ପୁଣ୍ୟ କିଣିହୁଏ ନାହିଁ । ଟଙ୍କା ଦେଇ ଟିକିଟି କିଣି କରି ବୈକୁଣ୍ଠକୁ ଯିବାର ଉପାୟ ନାହିଁ । ପୁଣ୍ୟ କିଣେ ଖାଲି ମଣିଷପଣିଆ ବାପ ! ଯେଉଁଠି ମଣିଷପଣିଆ କମତି, ସେଠି ପାପ ସେତିକି ବେଶି ।

୩.୧.୩. ଗାନ୍ଧିଜୀ ସର୍ବଭାରତୀୟ ସ୍ତରରେ ହିନ୍ଦୁ, ମୁସଲମାନ, ଶିଖ ସମସ୍ତଙ୍କୁ ଭାଇ ଭାଇ ବୋଲି ଏକାଠି କରିବାର ପ୍ରଚେଷ୍ଟା କରୁଥିବା ଭଳି ବରଜୁ ଗାଁରେ ଚଷା, ବାଉରୀ, ଗୁଡ଼ିଆ, ଭଣ୍ଡାରୀଙ୍କୁ ଭାଇ ଭାଇ ବୋଲି ଏକାଠି କରିଛି । ଯଦୁ ଦଳେଇ ବରଜୁ କଥାରେ ଅନୁପ୍ରାଣିତ ହୋଇ କହିଛି, ''ଆରେ ଏଥିରେ କ'ଣ କାହାର ପାଞ୍ଚ୍ ତିନ୍ ଖର୍ଚ୍ଚ ହୋଇଯାଉଛି କି – ଏ' ତ ନିଜ ହାତରେ କରିବା କଥା, ସହିବା କଥା – ଗାଁ ଗୋଟାକରେ ସମସ୍ତେ ଭାଇ, ଗାଁ ଗୋଟାକ ଘର – ଏଇ କଥା ଭାବି ସମସ୍ତେ ମନ ମିଳେଇ ଚଳିବା, ନା ଏଇକ୍ଷଣି ସେମିତି ଫଟାଫଟି କଳିକଜିଆ ସେମିତି ଲାଗିରହିଥିବ ?''

୩.୧.୪ ଗାନ୍ଧିଙ୍କ ''ରଘୁପତି ରାଘବ ରାଜାରାମ, ପତିତପାବନ ସୀତାରାମ''ର ଚିତ୍ର ପ୍ରତିଫଳିତ ହୋଇଛି ବରଜୁ ଚିତ୍ରରେ । ଗାଁର ଅବାଞ୍ଛିତ ମଣିଷ ସନ୍ତାନମାନଙ୍କ ପ୍ରତି ବରଜୁ ହୃଦୟ କାନ୍ଦିଉଠିଛି । ''ଗାଁ ଗାଁ କେ କଦଳୀ ବାଡ଼ି, ନଡ଼ିଆ କିଆରି, କିଆମୂଳ, ପୋଖରୀ କୂଳ – କେତେ ଥାନରେ କୁଆଁ କୁଆଁ ଶବ୍ଦ ଶୁଭେ; ମଣିଷ ପିଲା କେତେ ନାରଖାର ହୋଇ ପଡ଼େ ! ସେଥିପାଇଁ କିଏ କ'ଣ କରେ ? ହରି ମିଶ୍ରଙ୍କ ସମ୍ପତ୍ତି ବଢ଼େ; ସଦେଇ ବିଚରା ଉଚ୍ଛନ୍ନ ହୁଏ – କୁଆଁ କୁଆଁ ଶବ୍ଦ ଶୁଣି ବରଜୁ ପଧାନ ଆଖିରେ ଲୁହ ଭରିଆସେ –

''ଯାହାକୁ ରଖିବେ ଅନନ୍ତ । କିସ କରିବ ବଳବନ୍ତ ।''

## ୩.୨– ଉପବାସ

ନିଜକୁ କଷ୍ଟ ଦେଇ, ନିଜେ ଉପବାସ ରହି ଗାନ୍ଧି ଅନ୍ୟର ମନକୁ ପରିବର୍ତ୍ତନ କରି ପାରୁଥିଲେ । ଯଦ୍ଦ୍ୱାରା ସମସ୍ୟାର ସମାଧାନ ହେଉଥିଲା– ଶୃଙ୍ଖଳିତ ତଥା ଶାନ୍ତି ।

୩.୨.୧— ବରଜୁ ହାରାବୋଉକୁ ବୁଝେଇବାକୁ ଚେଷ୍ଟା କରିଛି । ହାରାବୋଉ ନ ବୁଝିବାରୁ ଭିନ୍ନେ ହେବାକୁ କହିବାରୁ ସେ ଘରଛାଡ଼ି ଉପାସ ଭୋକରେ ପଳାଇ ମଙ୍ଗଳାଙ୍କ ବେଦୀ ଉପରେ ଲମ୍ୱହୋଇ ପଡ଼ିଛି । ସେ ନ ଖାଇବାରୁ, ବଉଁଶଟାଯାକ ଉପାସ ଭୋକରେ ରହିଛନ୍ତି । ତେବେ ସେତେବେଳେ ବରଜୁ ସତ୍ୟର ଜୟ, ଭଲ କଥାର ଜୟ ପାଇଁ, ଘର ଦି'ଭାଗ ନ ହେବାପାଇଁ ନାନା କଥା ଚିନ୍ତା କରିଛି । ''ଉପାସ ଭୋକରେ ପଡ଼ିବାକୁ ବରଜୁ ଯେବେ ଡରି ବି, ତେବେ ତା'ର କାମଟି ତ ଆଉ ପୂରା ପଡ଼ିଲା ନାହିଁ । ଗୋଟାଏ ଗୋଟାଏ କାର୍ଯ୍ୟ ସିଦ୍ଧି କରିବାକୁ ତ ଏଇ ଦେଶରେ ଲୋକେ କେତେ କଠୋର ତପସ୍ୟା କରିଛନ୍ତି । ଗଛର ପତ୍ର ଆହାର କରିଛନ୍ତି ! ବରଜୁ ଏତିକିରେ ଦବିଯିବ ? ହାରାବୋଉ ଉପାସରେ ପଡ଼ି ଜିତିବ – ଚିରଦିନ ସେମିତି କଳିହୁଡ଼ୀ ହୋଇ ରହିବ ? – ଘରଟାରେ ସବୁକାଳେ ଅଶାନ୍ତି, ସବୁବେଳେ କଳିତକରାଳ । ଭିନେ ହେଲେ ବି ତ ଆଉ କେହି ଭଲ ରୂପେ ବିଚାରି ସମଝି ଭିନେ ହେବେ ନାହିଁ ? କାହାରି କାହାରି ଭିତରେ ପଡ଼େନାହିଁ ବୋଲି, ଖରାପ ସ୍ୱଭାବ, ଭଲ ମଣିଷ ହୋଇପାରିଲା ନାହିଁ ବୋଲି ଭିନେ ହେବ ସିନା ? ଏଇ ମଣିଷ ଭିତରେ ଭଲ ଅଛି, ମନ୍ଦ ଅଛି, ଦେବତା ଅଛି, ଅସୁର ଅଛି ।'' ସେହି ସମୟର ମାନସିକତାରୁ ତା'ର ଗାନ୍ଧିଭାବାପନ୍ନ ଚେତନାର ସୂଚନା ମିଳେ ।

୩.୩— ମଉନାବ୍ରତ

ଗାନ୍ଧୀ ଉପଦେଶ ଦେଇ ମାର୍ଗ ପ୍ରଦର୍ଶନ କରି ଲୋକଙ୍କ ମନରେ ପ୍ରତିଫଳିତ ନ ହେବାର ଦେଖିଲେ, ମଉନ ରହୁଥିଲେ । ଏହି ମଉନା ବ୍ରତ ମାଧ୍ୟମରେ ଲୋକଙ୍କ ହୃଦୟ ପରିବର୍ତ୍ତନ କରି ପାରିଥିଲେ । ଭଲ ପାଇଁ, ଆଦର୍ଶ ଜୀବନ ପାଇଁ ସେ କଥା କହି ଯଦି କଥାର ମୂଲ୍ୟ ନ ରହିଲା ବରଂ ଚୁପ୍ ରହିବା ଭଲ – ଏହି ନୀତି ବରଜୁ ମଧ୍ୟ ଧରିଛି ।

୩.୩.୧— ବରଜୁ ହାରାବୋଉକୁ ନେତ୍ରମଣି (ସାନବୋହୂ)ର କୌଣସି କଥାରେ ଖୁଣ୍ଟା ନ ଦେବାକୁ କହି ମଉନ ରହିବାକୁ ନିର୍ଦ୍ଦେଶ ଦେଇଛି । ''ଭଲ କଥା, ତେବେ ଗୋଟିଏ କଥା ଖାଲି କଲ, ତମଆଡ଼ୁ ତ ତମେ କିଛି ସାନବୋହୂକୁ ଖୁଣ୍ଟା ଦେବନାହିଁ, ସେ ଯେବେ ତା'ଆଡ଼ୁ କେତେବେଳେ ତମକୁ ବକେ, କି ମତେ ବକେ ଅବା ପିଲାଙ୍କୁ ବକେ, କାହିଁରେ ତମେ ପାଟି ଫିଟାଇବ ନାହିଁ । କେତେ ଓଷା ବରତ କରି ଦିନେ ଦିନେ ଉପାସ ରହିଯାଉଛି – ଏତିକି କଥା ଖାଲି ପାଳିଲ ଭଲା, ଓଷା ବରତ ପରି ମନେକରି । କ'ଣ ଏ କଥା ହବ ତ ?

୩.୩.୨— ହାରାବୋଉର ମଉନବ୍ରତ ପାଳିବା ହେଲା ନାହିଁ । ବରଜୁ ଠିକ୍ କଲା ଏଣିକି ସେ ପାଳିବ । ଘରେ କାହା ସାଙ୍ଗରେ କଥାବାର୍ତ୍ତା କିଛି କରିବ ନାହିଁ । 'ବରଜୁ ଯାହା ଠିକ୍ କରିଥିଲା ତାହା ହିଁ କଲା । ଘର ଭିତରେ ଏକାବେଳକେ କଥା ବନ୍ଦ କରିଦେଲା । ସ୍ତ୍ରୀ କଥା ପଚାରିଲେ, କି ପିଲାଏ କିଛି କହିଲେ କାହାରି ଆଡ଼କୁ ଚାହେଁ ନାହିଁ – ଖାଲି ତ ମୂକ ନୁହେଁ; ମୂକ ପାଗଳ ! ହାରାବୋଉ ଏକଥା ଦେଖି ତାଜିବ ହୋଇଗଲାଣି । ଏ ଫେରେ କି କଥା !''

୩.୪.– **ହରିଜନଙ୍କ ପ୍ରତି ଶ୍ରଦ୍ଧା** : ଗାନ୍ଧୀଜୀଙ୍କର ହରିଜନଙ୍କ ପ୍ରତି ଅସୀମ ଶ୍ରଦ୍ଧା ଥିଲା । ସେ ସବୁଠି ସେମାନଙ୍କୁ ପ୍ରାଧାନ୍ୟ ଦେଇଥିଲେ । ସେମାନଙ୍କ ସରଳତା ଗାନ୍ଧୀଙ୍କୁ ଆକର୍ଷିତ କରିଥିଲା । ବରଜୁ ଚରିତ୍ର ମଧରେ ଏହି ଚିନ୍ତାଧାରା ପ୍ରତିଫଳିତ ହୋଇଛି ।

୩.୪.୧. – ଧରମା ବାଉରୀକୁ ହରି ମିଶ୍ର କପଟ କରି ମାଡ଼ ମାରିଛନ୍ତି । ସେ ଅଛୁଆ ଜାତି । ତାକୁ ଛୁଇଁ ମାଡ଼ ମାରିଲେ ମିଶ୍ରେ ଲୁଗା ବଦଳାନ୍ତି । ହେଲେ ସେ ଜାଣନ୍ତି ବରଜୁ କଥା ନିଆରା । ସେ ଏମାନଙ୍କ ସହ ମିଶେ, ବସେ, ଗପେ, ସୁଖ ଦୁଃଖରେ ଠିଆହୁଏ । ବରଜୁର ହରିଜନଙ୍କ ପ୍ରତି ଶ୍ରଦ୍ଧା ମିଶ୍ରେଙ୍କୁ ସୁହାଏ ନାହିଁ । ତେଣୁ ସେ କହିଛନ୍ତି, 'ବରଜୁ ପଧାନ, ଏଇ ଛୋଟଲୋକଗୁଡ଼ାକ ପାଖରେ ବସିବ ଉଠିବ, ତାଙ୍କୁ ବାର କୁଶିକ୍ଷା ଦବ – ଏଥିରେ ଭଲା ତାଙ୍କର ମୁହଁ ବଢ଼ିଯିବ ନାହିଁ ?''

୩.୪.୨. – ଧରମା, ତତେ କିଏ ମାଇଲାରେ ଧରମା । ଡାକି ଡାକି ବରଜୁ ପଧାନ ବାଉରୀ ଘର ଭିତରକୁ ପଶିଗଲା ।

୩.୪.୩. – ଧରମା ମାଡ଼ ମରାଯିବା କଥା କହୁଛି, ଏଣେ ବରଜୁ ଆଖିରୁ ଲୁହ ଗଡ଼ିଯାଉଛି ।

୩.୪.୪. – ଆଜି ପୁଣି ଆଉ ଛୁଆଁ ଅଛୁଆଁ, ଜାତି ଅଜାତି କ'ଣ, ସମସ୍ତେ ଆମେ ତ ଭାଇ ।

୩.୫. – **ଅହିଂସା ନୀତି** : ଗାନ୍ଧୀଙ୍କର ସବୁଠୁ ବଡ଼ ଅସ୍ତ୍ର ଥିଲା – ଅହିଂସା । ଏହି ଅହିଂସା ଅସ୍ତ୍ର ପ୍ରୟୋଗ କରି ସେ ଇଂରେଜ ଭଳି ଏତେ ବଡ଼ ଜାତିଟାକୁ ଭାରତବର୍ଷରୁ ତଡ଼ିଦେଇ ପାରିଥିଲେ । ଏହି ଅହିଂସା ନୀତି ବରଜୁ ଚରିତ୍ର ମଧରେ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇପାରିଛି । ବରଜୁ ଶତ୍ରୁକୁ କାବୁ କରିବାକୁ, ନିଜର ଭାଇ ଛକଡ଼ିକୁ, ଭାଇବୋହୂ ନେତ୍ରମଣିକୁ, ସ୍ତ୍ରୀ ହାରାବୋଉକୁ ଭଲବାଟକୁ ଆଣିବାକୁ ଅହିଂସା ନୀତି ଧରିଛି ।

୩.୫.୧. – ରାଧି ଅଧ ସରିକି ଛକଡ଼ି ଘରକୁ ଫେରିଲା – ରାତି ଅଧଯାଏଁ ସାନଯାଆ ବଡ଼ଯାଆ କେହି ଖାଇ ନାହାନ୍ତି । ହାରାବୋଉର ଏଥିରେ କିଛି ହେଲେ କଷ୍ଟ ନାହିଁ । ସେଇ ସାନବୋହୂ ! ତା' ପିଲାଙ୍କୁ କି କଥା ସେ ନ କହିଛି – ବରଜୁର କି ଅମଙ୍ଗଳ ସେ ନ ପାଞ୍ଚିଛି – ସେହି ସାନବୋହୂ ପାଇଁ ହାରାବୋଉ ଆଜି ଉପାସ ଭୋକରେ ପଡ଼ିଛି । ଶେଷ ପର୍ଯ୍ୟନ୍ତ ମଧ ହାରାବୋଉ ବରଜୁ ଦ୍ୱାରା ଅନୁପ୍ରାଣିତ ହୋଇ ସାନବୋହୂକୁ କିଛି କହିନାହିଁ । ବରଂ ସେ ଯାହା କହିଛି ସବୁ ସହିଯାଇ, ପୁଣି ଆପଣେଇ ନେବାକୁ ଚେଷ୍ଟା କରିଛି । ଗାନ୍ଧୀଙ୍କ ''ତମକୁ ଯିଏ ଚାପୁଡ଼ାଏ ମାରିଛି, ତାକୁ ଆର ଗାଲଟିକୁ ଦେଖାଇ ଦିଅ'' ନୀତିର ସଫଳ ପ୍ରୟୋଗ ହୋଇଛି ଉପନ୍ୟାସଟିରେ ।

୩.୫.୨. – ଧରମା ମାଡ଼ ଖାଇ ହରି ମିଶ୍ରଙ୍କ ପ୍ରତି ପ୍ରତିଶୋଧ ନେବାକୁ ଚାହୁଁଛି । ଶାଣଦିଆ କଟୁରିଟା କାଢ଼ି ଦେଖାଉଛି ବରଜକୁ । ବରଜୁ କଟୁରିଟାକୁ ଦେଖି ଥରିଉଠିଛି । ଧରମାକୁ କେତେକଥା ବୁଝାଇଛି । ଏହି ବୁଝାଇବା ଭିତରେ ବରଜୁର ଅହିଂସା ନୀତି ସ୍ପଷ୍ଟ ହୋଇଛି ।

୩.୫.୩ – ଦକ୍ଷିଣ ଆଫ୍ରିକାରେ କଳାଲୋକଙ୍କ ପ୍ରତି ଇଂରେଜମାନଙ୍କର ଅତ୍ୟାଚାର ସଂପର୍କରେ ଗାନ୍ଧି ଯେପରି କଳାଲୋକଙ୍କୁ ଏକାଠି କରିବା ପାଇଁ ଆହ୍ୱାନ ଦେଇଥିଲେ, ବରଜୁ ସେହିପରି ହରି ମିଶ୍ରଙ୍କ ବିରୁଦ୍ଧରେ ଅହିଂସାର ସ୍ୱର ଉତ୍ତୋଳନ କରିବାକୁ ସମସ୍ତଙ୍କୁ ଏକାଠି କରିଛି । ''ଭଲ ହୁଅନ୍ତା, ମାଡ଼ ଖାଇଲେ ଧରମା ପାଇଁ ମାଡ଼ ଖା'ନ୍ତା – ତୁମ ଭାଇ ପାଇଁ ତୁମେ ମାଡ଼ ଖା'ନ୍ତ । ମାରା କ'ଣ ହୁଅନ୍ତା ? ହରି ମିଶ୍ରେ ଆଜି ଧରମା ବେଳକୁ ମାରନ୍ତେ, କାଲି ତୋ ବେଳକୁ ମାରନ୍ତେ, ପରଦିନ ମୋ ବେଳକୁ ମାରନ୍ତେ । ତିନିଜଣଙ୍କ ପାଇଁ ପଚିଶଜଣକୁ ମାରନ୍ତେ, କେତେ ମାରନ୍ତେ ମାରନ୍ତୁ । ଏମିତି କ'ଣ ମାରୁ ନାହାନ୍ତି କି ? ଏମିତି ଆମେ ମାଡ଼କୁ ଡରି ଚୋର ପରି ଘରେ ପଶୁଥାଇଁ – ସେମିତି ସମସ୍ତେ ମିଶି ଛାତି ପତେଇ ସମସ୍ତେ ମିଳି ଠିଆ ହୁଅନ୍ତେ, ବୀରପଣିଆ କୋଉଟା, ମଣିଷପଣିଆ କୋଉଟା ?''

୩.୫.୪. – ''ଧରମା ସବୁ କଥା ଶୁଣି କଟୁରି ଖଣ୍ଡିକ ଛାଡ଼ିବ ନାହିଁ ବୋଲି କହିଲା । ବରଜୁ ହସିଲା, କହିଲା, ତୋ କଟୁରି ଆଗ ପାଣିରେ ଫିଙ୍ଗିଲେ ମୁଁ ଆଉ ଯେଉଁ କଥା କହିବି ।''

୩.୫.୫. – ଅହିଂସା ନୀତି ଅବଲମ୍ବନ କରି, ପିତାଙ୍କର ଶେଷ ଇଛାକୁ ସମ୍ମାନ ଦେଇ, ବରଜୁ ଚରମ ତ୍ୟାଗ ପ୍ରଦର୍ଶନ କରିଛି । ଭାଇଭାଗ ଚାହିଁ ନାହିଁ କି ଭିନେ ହେବା କଥା ମନକୁ ଆଣି ନାହିଁ । କୌଣସି କଥା ଚିନ୍ତା ନ କରି ନିଜେ ସ୍ତ୍ରୀ ପିଲାପିଲି ଧରି ଘର ଛାଡ଼ି ଚାଲିଯାଉଛି ।

## (୪)

କାଳିନ୍ଦୀ – ସମକାଳୀନ ଭାରତୀୟ ସାହିତ୍ୟକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, 'ମାଟିର ମଣିଷ' ଉପନ୍ୟାସରେ କାଳିନ୍ଦୀ ଏକ ନୂତନତା ପ୍ରଦର୍ଶନ କରିଛନ୍ତି । ସେ ଗାନ୍ଧୀ ବା ଗାନ୍ଧିବାଦକୁ ସିଧାସଳଖ ଉପନ୍ୟାସ ମଧ୍ୟକୁ ଆଣି ନାହାନ୍ତି । ଗ୍ରାମୀଣ ଚରିତ୍ରଗୁଡ଼ିକ ମଧ୍ୟରେ, ଗ୍ରାମର ସାଧାରଣ ଚଳଣି ମଧ୍ୟରେ, ଉତ୍କଳୀୟ ସମାଜ ଜୀବନ ମଧ୍ୟରେ, ଲୋକ ମାନସିକତା ମଧ୍ୟରେ ଖୁବ୍ ସ୍ୱାଭାବିକ ଭାବରେ ଆସିଛି ଗାନ୍ଧିବାଦ । ଫଳରେ 'ମାଟିର ମଣିଷ'ର ସମସ୍ତ ଚରିତ୍ର ମାଟିର ଲୋକ (Flok) ହୋଇଛନ୍ତି ଏବଂ ଗାନ୍ଧିବାଦର ମଣିଷ (humanbeing) ହୋଇପାରିଛନ୍ତି ।

**ସଂକେତ**

(୧) ମହତାବ, ହରେକୃଷ୍ଣ - ୧୯୭୭, ଦଶବର୍ଷର ଓଡ଼ିଶା (ଦ୍ୱିତୀୟ ସଂସ୍କରଣ) କଟକ - ୨ କଟକ ଷ୍ଟୁଡେଣ୍ଟସ ଷ୍ଟୋର

(୨) ପାଣିଗ୍ରାହୀ, କାଳିନ୍ଦୀଚରଣ –୧୯୪୬, ମାଟିର ମଣିଷ (ସପ୍ତମ ମୁଦ୍ରଣ) କଟକ, କଟକ ଷ୍ଟୁଡ୍ରେଣ୍ଟସ ଷ୍ଟୋର



୩.୪.– **ହରିଜନଙ୍କ ପ୍ରତି ଶ୍ରଦ୍ଧା** : ଗାନ୍ଧୀଜୀଙ୍କର ହରିଜନଙ୍କ ପ୍ରତି ଅସୀମ ଶ୍ରଦ୍ଧା ଥିଲା । ସେ ସବୁଠି ସେମାନଙ୍କୁ ପ୍ରାଧାନ୍ୟ ଦେଇଥିଲେ । ସେମାନଙ୍କ ସରଳତା ଗାନ୍ଧୀଙ୍କୁ ଆକର୍ଷିତ କରିଥିଲା । ବରଜୁ ଚରିତ୍ର ମଧ୍ୟରେ ଏହି ଚିନ୍ତାଧାରା ପ୍ରତିଫଳିତ ହୋଇଛି ।

୩.୪.୧. – ଧରମା ବାଉରୀକୁ ହରି ମିଶ୍ର କପଟ କରି ମାଡ଼ ମାରିଛନ୍ତି । ସେ ଅଛୁଆ ଜାତି । ତାକୁ ଛୁଇଁ ମାଡ଼ ମାରିଲେ ମିଶ୍ରେ ଲୁଗା ବଦଳାନ୍ତି । ହେଲେ ସେ ଜାଣନ୍ତି ବରଜୁ କଥା ନିଆରା । ସେ ଏମାନଙ୍କ ସହ ମିଶେ, ବସେ, ଗପେ, ସୁଖ ଦୁଃଖରେ ଠିଆହୁଏ । ବରଜୁର ହରିଜନଙ୍କ ପ୍ରତି ଶ୍ରଦ୍ଧା ମିଶ୍ରେଙ୍କୁ ସୁହାଏ ନାହିଁ । ତେଣୁ ସେ କହିଛନ୍ତି, 'ବରଜୁ ପଧାନ, ଏଇ ଛୋଟଲୋକଗୁଡ଼ାକ ପାଖରେ ବସିବ ଉଠିବ, ତାଙ୍କୁ ବାର କୁଶିକ୍ଷା ଦବ – ଏଥିରେ ଭଲା ତାଙ୍କର ମୁହଁ ବଢ଼ିଯିବ ନାହିଁ ?''

୩.୪.୨. – ଧରମା, ତତେ କିଏ ମାଇଲାରେ ଧରମା । ଡାକି ଡାକି ବରଜୁ ପଧାନ ବାଉରୀ ଘର ଭିତରକୁ ପଶିଗଲା ।

୩.୪.୩. – ଧରମା ମାଡ଼ ମରାଯିବା କଥା କହୁଛି, ଏଣେ ବରଜୁ ଆଖିରୁ ଲୁହ ଗଡ଼ିଯାଉଛି ।

୩.୪.୪. – ଆଜି ପୁଣି ଆଉ ଛୁଆଁ ଅଛୁଆଁ, ଜାତି ଅଜାତି କ'ଣ, ସମସ୍ତେ ଆମେ ତ ଭାଇ ।

୩.୫. – **ଅହିଂସା ନୀତି** : ଗାନ୍ଧୀଙ୍କର ସବୁଠୁ ବଡ଼ ଅସ୍ତ୍ର ଥିଲା – ଅହିଂସା । ଏହି ଅହିଂସା ଅସ୍ତ୍ର ପ୍ରୟୋଗ କରି ସେ ଇଂରେଜ ଭଳି ଏତେ ବଡ଼ ଜାତିଟାକୁ ଭାରତବର୍ଷରୁ ତଡ଼ିଦେଇ ପାରିଥିଲେ । ଏହି ଅହିଂସା ନୀତି ବରଜୁ ଚରିତ୍ର ମଧ୍ୟରେ ଦୃଢ଼ଭାବରେ ପ୍ରତିଷ୍ଠିତ ହୋଇପାରିଛି । ବରଜୁ ଶତ୍ରୁକୁ କାବୁ କରିବାକୁ, ନିଜର ଭାଇ ଛକଡ଼ିକୁ, ଭାଇବୋହୂ ନେତ୍ରମଣିକୁ, ସ୍ତ୍ରୀ ହାରାବୋଉକୁ ଭଲବାଟକୁ ଆଣିବାକୁ ଅହିଂସା ନୀତି ଧରିଛି ।

୩.୫.୧. – ରାଧି ଅଧ ସରିକି ଛକଡ଼ି ଘରକୁ ଫେରିଲା – ରାତି ଅଧଯାଏଁ ସାନଯାଆ ବଡ଼ଯାଆ କେହି ଖାଇ ନାହାନ୍ତି । ହାରାବୋଉର ଏଥିରେ କିଛି ହେଲେ କଷ୍ଟ ନାହିଁ । ସେଇ ସାନବୋହୂ ! ତା' ପିଲାଙ୍କୁ କି କଥା ସେ ନ କହିଛି – ବରଜୁର କି ଅମଙ୍ଗଳ ସେ ନ ପାଞ୍ଚିଛି – ସେହି ସାନବୋହୂ ପାଇଁ ହାରାବୋଉ ଆଜି ଉପାସ ଭୋକରେ ପଡ଼ିଛି । ଶେଷ ପର୍ଯ୍ୟନ୍ତ ମଧ୍ୟ ହାରାବୋଉ ବରଜୁ ଦ୍ୱାରା ଅନୁପ୍ରାଣିତ ହୋଇ ସାନବୋହୂକୁ କିଛି କହିନାହିଁ । ବରଂ ସେ ଯାହା କହିଛି ସବୁ ସହିଯାଇ, ପୁଣି ଆପଣେଇ ନେବାକୁ ଚେଷ୍ଟା କରିଛି । ଗାନ୍ଧୀଙ୍କ ''ତମକୁ ଯିଏ ଚାପୁଡ଼ାଏ ମାରିଛି, ତାକୁ ଆର ଗାଲଟିକୁ ଦେଖାଇ ଦିଅ'' ନୀତିର ସଫଳ ପ୍ରୟୋଗ ହୋଇଛି ଉପନ୍ୟାସଟିରେ ।

୩.୫.୨. – ଧରମା ମାଡ଼ ଖାଇ ହରି ମିଶ୍ରଙ୍କ ପ୍ରତି ପ୍ରତିଶୋଧ ନେବାକୁ ଚାହୁଁଛି । ଶାଣଦିଆ କଟୁରିଟା କାଢ଼ି ଦେଖାଉଛି ବରଜକୁ । ବରଜୁ କଟୁରିଟାକୁ ଦେଖି ଥରିଉଠିଛି । ଧରମାକୁ କେତେକଥା ବୁଝାଇଛି । ଏହି ବୁଝାଇବା ଭିତରେ ବରଜୁର ଅହିଂସା ନୀତି ସ୍ପଷ୍ଟ ହୋଇଛି ।

୩.୫.୩ – ଦକ୍ଷିଣ ଆଫ୍ରିକାରେ କଳାଲୋକଙ୍କ ପ୍ରତି ଇଂରେଜମାନଙ୍କର ଅତ୍ୟାଚାର ସଂପର୍କରେ ଗାନ୍ଧି ଯେପରି କଳାଲୋକଙ୍କୁ ଏକାଠି କରିବା ପାଇଁ ଆହ୍ୱାନ ଦେଇଥିଲେ, ବରଜୁ ସେହିପରି ହରି ମିଶ୍ରଙ୍କ ବିରୁଦ୍ଧରେ ଅହିଂସାର ସ୍ୱର ଉତ୍ତୋଳନ କରିବାକୁ ସମସ୍ତଙ୍କୁ ଏକାଠି କରିଛି । ‘‘ଭଲ ହୁଅନ୍ତା, ମାଡ଼ ଖାଇଲେ ଧରମା ପାଇଁ ମାଡ଼ ଖା’ନ୍ତା – ତୁମ ଭାଇ ପାଇଁ ତୁମେ ମାଡ଼ ଖା’ନ୍ତ । ମାରା କ’ଣ ହୁଅନ୍ତା ? ହରି ମିଶ୍ରେ ଆଜି ଧରମା ବେଳକୁ ମାରନ୍ତେ, କାଲି ତୋ ବେଳକୁ ମାରନ୍ତେ, ପରଦିନ ମୋ ବେଳକୁ ମାରନ୍ତେ । ତିନିଜଣଙ୍କ ପାଇଁ ପଚିଶଜଣକୁ ମାରନ୍ତେ, କେତେ ମାରନ୍ତେ ମାରନ୍ତୁ । ଏମିତି କ’ଣ ମାରୁ ନାହାନ୍ତି କି ? ଏମିତି ଆମେ ମାଡ଼କୁ ଡରି ଚୋର ପରି ଘରେ ପଶୁଥାଇଁ – ସେମିତି ସମସ୍ତେ ମିଶି ଛାତି ପତେଇ ସମସ୍ତେ ମିଳି ଠିଆ ହୁଅନ୍ତେ, ବୀରପଣିଆ କୋଉଟା, ମଣିଷପଣିଆ କୋଉଟା ?’’

୩.୫.୪. – ‘‘ଧରମା ସବୁ କଥା ଶୁଣି କଟୁରି ଖଣ୍ଡିକ ଛାଡ଼ିବ ନାହିଁ ବୋଲି କହିଲା । ବରଜୁ ହସିଲା, କହିଲା, ତୋ କଟୁରି ଆଗ ପାଣିରେ ଫିଙ୍ଗିଲେ ମୁଁ ଆଉ ଯେଉଁ କଥା କହିବି ।’’

୩.୫.୫. – ଅହିଂସା ନୀତି ଅବଲମ୍ବନ କରି, ପିତାଙ୍କର ଶେଷ ଇଚ୍ଛାକୁ ସମ୍ମାନ ଦେଇ, ବରଜୁ ଚରମ ତ୍ୟାଗ ପ୍ରଦର୍ଶନ କରିଛି । ଭାଇଭାଗ ଚାହିଁ ନାହିଁ କି ଭିନେ ହେବା କଥା ମନକୁ ଆଣି ନାହିଁ । କୌଣସି କଥା ଚିନ୍ତା ନ କରି ନିଜେ ସ୍ତ୍ରୀ ପିଲାପିଲି ଧରି ଘର ଛାଡ଼ି ଚାଲିଯାଉଛି ।

## (୪)

କାଳିନ୍ଦୀ – ସମକାଳୀନ ଭାରତୀୟ ସାହିତ୍ୟକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ, ‘ମାଟିର ମଣିଷ’ ଉପନ୍ୟାସରେ କାଳିନ୍ଦୀ ଏକ ନୂତନତା ପ୍ରଦର୍ଶନ କରିଛନ୍ତି । ସେ ଗାନ୍ଧୀ ବା ଗାନ୍ଧିବାଦକୁ ସିଧାସଳଖ ଉପନ୍ୟାସ ମଧ୍ୟକୁ ଆଣି ନାହାନ୍ତି । ଗ୍ରାମୀଣ ଚରିତ୍ରଗୁଡ଼ିକ ମଧ୍ୟରେ, ଗ୍ରାମର ସାଧାରଣ ଚଳଣି ମଧ୍ୟରେ, ଉତ୍କଳୀୟ ସମାଜ ଜୀବନ ମଧ୍ୟରେ, ଲୋକ ମାନସିକତା ମଧ୍ୟରେ ଖୁବ୍ ସ୍ୱାଭାବିକ ଭାବରେ ଆସିଛି ଗାନ୍ଧିବାଦ । ଫଳରେ ‘ମାଟିର ମଣିଷ’ର ସମସ୍ତ ଚରିତ୍ର ମାଟିର ଲୋକ (Flok) ହୋଇଛନ୍ତି ଏବଂ ଗାନ୍ଧିବାଦର ମଣିଷ (humanbeing) ହୋଇପାରିଛନ୍ତି ।

ସଂକେତ

(୧) ମହତାବ, ହରେକୃଷ୍ଣ - ୧୯୭୭, ଦଶବର୍ଷର ଓଡ଼ିଶା (ଦ୍ୱିତୀୟ ସଂସ୍କରଣ) କଟକ - ୨ କଟକ ଷ୍ଟୁଡେଣ୍ଟ୍ସ ଷ୍ଟୋର

(୨) ପାଣିଗ୍ରାହୀ, କାଳିନ୍ଦୀଚରଣ – ୧୯୪୬, ମାଟିର ମଣିଷ (ସପ୍ତମ ମୁଦ୍ରଣ) କଟକ, କଟକ ଷ୍ଟୁଡେ଼ଣ୍ଟସ ଷ୍ଟୋର



# ଓଡ଼ିଆ କ୍ଷୁଦ୍ରଗଳ୍ପ ଓ ସ୍ରଷ୍ଟା କାଳିନ୍ଦୀଚରଣ

ଡକ୍ଟର ପ୍ରସନ୍ନ କୁମାର ସ୍ୱାଇଁ

କାଳିନ୍ଦୀଚରଣ ପାଣିଗ୍ରାହୀ ସବୁଜ ଯୁଗର ସ୍ରଷ୍ଟା । ମାତ୍ର ତାଙ୍କର ସୃଷ୍ଟି ସେହି ଯୁଗ ମଧ୍ୟରେ ସୀମିତ ନୁହେଁ । କଟକର ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କାଳରେ ଅନ୍ନଦାଶଙ୍କର ରାୟ, ବୈକୁଣ୍ଠ ନାଥ ପଟ୍ଟନାୟକ, ଶରତ୍ ଚନ୍ଦ୍ର ମୁଖର୍ଜୀ, ହରିହର ମହାପାତ୍ରଙ୍କ ସହିତ ଏକତ୍ର ହୋଇ କାଳିନ୍ଦୀଚରଣ ଯେଉଁ ସ୍ୱପ୍ନ ଦେଖିଥିଲେ, ତାହାଥିଲା ତାଙ୍କର ସମକାଳୀନ ବୟସର ପ୍ରତିଧ୍ୱନି । ସମଧର୍ମା ସତୀର୍ଥଙ୍କ ସହିତ ସେ ପ୍ରଥମେ ଯୁବ ସୁଲଭ ଉନ୍ମାଦନାରେ ବହୁ ରୋମାଣ୍ଟିକ କବିତା ରଚନାରେ ମନୋନିବେଶ କରିଥିଲେ । ମାତ୍ର ସେହି ଯୁବାବସ୍ଥାରେ ସେ ଯେତେବେଳେ ନିଜ ଚତୁର୍ଦ୍ଦିଗର ସମାଜ ବ୍ୟବସ୍ଥା, ମାନବ ଏବଂ ତା'ର ଦୁଃଖ ତଥା ଦୈନ୍ୟକୁ ଅନୁଭବ କଲେ, ସ୍ୱାଭାବିକ ଭାବରେ ତାଙ୍କ ରଚନାର ଧାରାରେ ଆସିଲା ଅସମ୍ଭାବିତ ପରିବର୍ତ୍ତନ । ତାଙ୍କର ସବୁଜ ସ୍ୱପ୍ନ କ୍ରମଶଃ ବିବର୍ଣ୍ଣ ରୂପ ଧାରଣ କରି ସମାଜର ନଗ୍ନ ବାସ୍ତବତାକୁ ସାମ୍‌ନା କଲା । ତହିଁରୁ ପ୍ରକାଶ ପାଇଲା 'ପୁରୀ ମନ୍ଦିର', 'ଯାଦୁଘର', 'କିଏ ଶଳା ଶଇତାନ', 'ଆଗାମୀ' ପ୍ରଭୃତି କବିତା ସହିତ 'ମାଟିର ମଣିଷ', 'ମୁକ୍ତାଗଡ଼ର କ୍ଷୁଧା', ଆଜିର ମଣିଷ, 'ଲୁହାର ମଣିଷ' ପ୍ରଭୃତି ଉପନ୍ୟାସ ଏବଂ 'ଦ୍ୱାଦଶୀ' 'ସାଗରିକା', 'ଶେଷରଶ୍ମି', ରାଶିଫଳ', 'ମୋ କଥାଟି ସରିନାହିଁ' ଗଳ୍ପ ସଂକଳନ । କବିତା ଓ ଉପନ୍ୟାସ ଅପେକ୍ଷା ସ୍ରଷ୍ଟା ନିଜ ଚତୁର୍ଦ୍ଦିଗର ମାନବ ଏବଂ ତା'ର ସମସ୍ୟାକୁ ଗଳ୍ପ ମଧ୍ୟରେ ହିଁ ଅଧିକ ଜୀବନ୍ତ ଭାବେ ଉପସ୍ଥାପିତ କରିଛନ୍ତି ।

କାଳିନ୍ଦୀ ଚରଣଙ୍କ ସମୟ ଥିଲା ସମଗ୍ର ଓଡ଼ିଶାରେ ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ତାଙ୍କର ଯୁବାବସ୍ଥାରେ ସେ ଦ୍ୱିତୀୟ ବିଶ୍ୱଯୁଦ୍ଧ ଜନିତ ଭୟାନକ ପରିସ୍ଥିତି, ଦେଶର ଉତ୍କଟ ଖାଦ୍ୟ ସମସ୍ୟା, ଭାରତୀୟ ସ୍ୱାଧୀନତା ସଂଗ୍ରାମ ନିମିତ୍ତ ମହାତ୍ମାଗାନ୍ଧୀଙ୍କ ଆହ୍ୱାନ ଓ ଆନ୍ଦୋଳନ, ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମିତ୍ତ ପ୍ରତିକ୍ରିୟା, ବନ୍ୟା-ବାତ୍ୟା-ମରୁଡ଼ି ପ୍ରଭୃତିର ସମ୍ମୁଖୀନ ହୋଇଥିଲେ । ଦେଶର ଏସବୁ ସମସ୍ୟା ତାଙ୍କର ଶିଳ୍ପୀ ପ୍ରାଣକୁ ଗଭୀର ଭାବରେ ଚହଲାଇ ଦେଇଥିଲା । ଫଳତଃ ପ୍ରେମ, ପ୍ରଣୟ, ପ୍ରକୃତିର ରୂପ ଅନ୍ୱେଷଣ ପରିତ୍ୟାଗ କରି ସ୍ରଷ୍ଟା କାଳିନ୍ଦୀଚରଣ ବେଦନାଦଗ୍ଧ ମଣିଷ ଜୀବନ ଓ ତା'ର ସୁଖ ଦୁଃଖ ନିକଟକୁ ହିଁ ପ୍ରତ୍ୟାବର୍ତ୍ତନ

କରିଥିଲେ । ତାଙ୍କ ରଚିତ ଜୀବନଧର୍ମୀ ପ୍ରାଣସ୍ପର୍ଶୀ ଗଳ୍ପ ମଧ୍ୟରେ ସେ ପାଲଟିଥିଲେ ଆମ ଗଳ୍ପ ଜଗତର ବିଶ୍ୱକର୍ମା, ଫକୀରମୋହନଙ୍କ ପରବର୍ତ୍ତୀ ଆମ କଥା ସାହିତ୍ୟର ଯଥାର୍ଥ ବିନ୍ଧାଣୀ ଏବଂ ମାନବବାଦୀ ଶିଳ୍ପୀ । ସେତେବେଳେ କାଳିନ୍ଦୀଚରଣ ଲକ୍ଷ୍ୟ କରିଥିଲେ ସମଗ୍ର ବିଶ୍ୱ ହେଉଛି ଗଳ୍ପମୟ । ଏହି ଗଳ୍ପର ସୃଷ୍ଟି କେଉଁ ଅନାଦି କାଳରୁ । ପୁଣି ସେ ଅନୁଭବ କରିଥିଲେ, ଓଡ଼ିଶା ମାଟି ହେଉଛି ଗଳ୍ପମୟ । ସମଗ୍ର ଉତ୍କଳ ଭୂଖଣ୍ଡରେ ଯେତେସବୁ କଳା ସ୍ଥାପତ୍ୟ ଓ ଶିଳ୍ପ ଭାସ୍କର୍ଯ୍ୟ ରହିଛି ତାହାରି ମଧ୍ୟରେ ଗଳ୍ପର ରୂପ ଭରପୂର । ଯେତେ କହିଲେ ମଧ୍ୟ ସେ ଗଳ୍ପ ସରିବ ନାହିଁ । ତା'ର ସୂତ୍ର ଅଛିଣ୍ଡା - ସୁଦୀର୍ଘ । ''କାଠରେ ଯେଉଁ କାହାଣୀର ଆରମ୍ଭ ତାହାର ପରିକଳ୍ପନା ଅପାର୍ଥିବ, ଅଦ୍ଭୁତ, ଅବର୍ଣ୍ଣନୀୟ, ଅସମ୍ଭବ – ଯାହାକୁ କେବେ କେହି ଦେଖିନି, ଶୁଣିନି, ଛୁଇଁନି, କି ବଖାଣିନି । ହଁ, ସେମିତି ଗୋଟିଏ ଅବୋଧ ଆଶ୍ଚର୍ଯ୍ୟ ରୂପ – ଯାହାକୁ ଗଢ଼ିବାକୁ ଗଲେ ଶିଳ୍ପୀର ହାତ ଥକାମାରି ଯାଏ । କବିକଣ୍ଠ ହୁଏ ମୂକ ।''(୧)

ସ୍ରଷ୍ଟା ଲକ୍ଷ୍ୟ କରିଛନ୍ତି ପରାଧୀନତା ପ୍ରପୀଡ଼ିତ ଓଡ଼ିଆ ଜାତିର ଅନ୍ତରାତ୍ମାକୁ । କିଏ ସମକାଳୀନ ସ୍ଥାଣୁ ନିର୍ବେଦ ଉତ୍କଳୀୟ ଜନତାଙ୍କୁ ଅତୀତ ଓଡ଼ିଶାର ଗୌରବମୟ ଗାଥା ଶୁଣାଇବ ? କିଏ ସଚେତନ କରାଇଦେବ ସେମାନଙ୍କୁ ତାଙ୍କର ସ୍ଥିତାବସ୍ଥା ସଂପର୍କରେ ?? ସମଗ୍ର ଓଡ଼ିଆ ଜାତିର ସ୍ଥାଣୁ ଅବସ୍ଥାକୁ ଚହଲାଇ ଦେବା ନିମିତ୍ତ ଏହି କାଳରେ ସ୍ରଷ୍ଟା କାଳିନ୍ଦୀଚରଣ ମସୀ ଧାରଣ କରିଛନ୍ତି । ସେ ବିଶ୍ୱକର୍ମାର ଭୂମିକା ନେଇ ଅଦ୍ଭୁତ କଳା କୌଶଳ ସହ ଯେଉଁ କ୍ଷୁଦ୍ରଗଳ୍ପ ରଚନାରେ ମନୋନିବେଶ କରିଛନ୍ତି, ତାହା ଅଦୃଶ୍ୟକୁ ଦୃଶ୍ୟରେ ପରିଣତ କରିଛି, ଅଜ୍ଞେୟକୁ କରିଛି ଜ୍ଞେୟ, ଅରୂପକୁ ଦେଇଛି ରୂପ । ପୁଣି ବାଙ୍ମୟକୁ କରିଛି ଅନିର୍ବଚନୀୟ । ନିଜ ହସ୍ତର କଳା କୁଶଳତାରେ ସେ ତାଙ୍କ ରଚିତ ଗଳ୍ପ ମାଧ୍ୟମରେ ଓଡ଼ିଆଜାତିର ଅତୀତ, ବର୍ତ୍ତମାନ ଓ ଭବିଷ୍ୟତକୁ ଏକୀଭୂତ କରି ତାହାରି ମଧ୍ୟରେ ଉତ୍କଳୀୟ ଜନତାର ସ୍ୱରୂପ ପ୍ରତିପାଦନ କରିଛନ୍ତି । ସ୍ରଷ୍ଟାଙ୍କର 'ପୁରୀ ମନ୍ଦିର' କବିତା ମଧ୍ୟରେ ସେ କେବଳ ଜଗନ୍ନାଥଙ୍କୁ ନୁହେଁ, ମଣିଷ ଓ ତାହାର ସ୍ୱରୂପକୁ ହିଁ ଅନ୍ୱେଷଣ କରିଛନ୍ତି, ଦେବତାଙ୍କୁ ନମସ୍କାର ନ କରି ମଣିଷକୁ ନମସ୍କାର କରିବା ପାଇଁ ଏହି କବିତା ମଧ୍ୟରେ ସେ ଆହ୍ୱାନ ଦେଇଛନ୍ତି ଏବଂ ମଣିଷର ରୁକ୍ଷ ବାସ୍ତବତା ସହିତ ଯୋଡ଼ି ହୋଇ ଯାଇ ସେହି ରୁକ୍ଷତା ସହିତ ସମାଜକୁ ପରିଚିତ କରିବା ପାଇଁ ସ୍ରଷ୍ଟା ଉପନ୍ୟାସ ସହିତ ରଚନା କରିଛନ୍ତି ଏକାଧିକ କ୍ଷୁଦ୍ରଗଳ୍ପ ।

ନିଜ ରଚିତ କ୍ଷୁଦ୍ରଗଳ୍ପ ମଧ୍ୟରେ କାଳିନ୍ଦୀଚରଣ ମଣିଷର ସୁଖ ଦୁଃଖ ଠାରୁ ଆରମ୍ଭ କରି ହସ କାନ୍ଦ ଲୁହ ଲହୁର କଥା ବ୍ୟକ୍ତ କରିବା ନିମିତ୍ତ ଏକ ବ୍ୟାପକ ପରିସର ପାଇ ନଥିଲେ ହେଁ କ୍ଷୁଦ୍ରଗଳ୍ପର ସୀମିତ ପରିସର ମଧ୍ୟରେ ପ୍ରତିଫଳିତ ସମକାଳୀନ ମାନବ ଓ ସମାଜର ଦୈନ୍ୟ ଏବଂ ସମସ୍ୟାକୁ ବିଭିନ୍ନ ଦୃଷ୍ଟିରୁ ଉପସ୍ଥାପିତ କରିଛନ୍ତି । ସ୍ରଷ୍ଟାଙ୍କର 'ଦ୍ୱାଦଶୀ',

'ସାଗରିକା', 'ରାଶିଫଳ', 'ଶେଷରଶ୍ମି', ମୋ କଥାଟି ସରିନାହିଁ' ନାମରେ ପାଞ୍ଚୋଟି କ୍ଷୁଦ୍ରଗଳ୍ପ ସଂକଳନ ରହିଛି । ପରବର୍ତ୍ତୀ କାଳରେ କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର ପକ୍ଷରୁ ତାଙ୍କର ସମଗ୍ର ଗଳ୍ପର ସଂକଳନ 'କାଳିନ୍ଦୀଚରଣ ଗଳ୍ପ ସମଗ୍ର' ପ୍ରକାଶିତ ହୋଇଛି । ଏହି ସଂକଳନଟି 'ସାଗରିକା' ଗଳ୍ପରୁ ଆରମ୍ଭ ହୋଇ ୩୬ ଟି ଗଳ୍ପ ମଧ୍ୟରେ 'ରଶ୍ମିରେଖା' ରେ ପରିସମାପ୍ତି ହୋଇଛି । ଏହା ସତ୍ତ୍ୱେ ଏହି ସଙ୍କଳନରେ 'ଅପରାଧିନୀ', 'ଉତ୍ସର୍ଗ' ପ୍ରଭୃତି କେତୋଟି ଗଳ୍ପ ସ୍ଥାନିତ ହୋଇପାରି ନାହିଁ । ଲେଖକଙ୍କର ପ୍ରଥମ ଗଳ୍ପ ହେଉଛି 'ହୃଦୟ' । ଏହା ୧୯୨୩ ମସିହାରେ ପ୍ରକାଶିତ । ୧୯୪୭ ମସିହା ମଧ୍ୟରେ ତାଙ୍କର ଅଧିକାଂଶ ଗଳ୍ପ ରଚିତ । ମାତ୍ର ତାଙ୍କର ଗଳ୍ପ ରଚନାର ସୀମା ୧୯୬୨ ମସିହା ପର୍ଯ୍ୟନ୍ତ ପରିବ୍ୟାପ୍ତ ।

୧୯୧୪ - ୧୯୧୯ ମସିହା ମଧ୍ୟରେ ସଂଘଟିତ ପ୍ରଥମ ବିଶ୍ୱଯୁଦ୍ଧର ପ୍ରଭାବ ଓଡ଼ିଶାରେ ଆଦୌ ଅନୁଭୂତ ହୋଇନଥିଲା । ମାତ୍ର ଦ୍ୱିତୀୟ ବିଶ୍ୱଯୁଦ୍ଧ (୧୯୩୯ - ୧୯୪୫) ଓଡ଼ିଶାର ଆର୍ଥନୀତିକ ଅବସ୍ଥାକୁ ସ୍ଥାଣୁ କରି ଦେଇଥିଲା । ଫଳତଃ ଓଡ଼ିଶାରେ ଏହି ଯୁଦ୍ଧକୁ କେନ୍ଦ୍ର କରି ସାଧାରଣ ମାନବର ନିତ୍ୟ ବ୍ୟବହାର୍ଯ୍ୟ ସାମଗ୍ରୀର ଦର ଆକାଶ ଛୁଆଁ ବୃଦ୍ଧି ପାଇବାକୁ ଲାଗିଲା । ନିମ୍ନ ମଧ୍ୟବିତ୍ତ ସମାଜରେ ଖାଦ୍ୟାଭାବ ଦେଖାଦେଲା । ଯୁଦ୍ଧ ଜନିତ ସଂକଟ ଓ ଖାଦ୍ୟାଭାବ ଶିଳ୍ପୀ କାଳିନ୍ଦୀ ଚରଣଙ୍କ ମନୋଭୂମିକୁ ଗଭୀର ଭାବରେ ଚହଲାଇ ଦେଲା । ସେ ଦେଖିଲେ ଯୁଦ୍ଧର ପ୍ରଭାବରେ ପ୍ରଭାବିତ ଦୁଃଖୀ ଦରିଦ୍ର ଓ ନିଃସହାୟ ମଣିଷମାନଙ୍କୁ । ସେହି ପରିପ୍ରେକ୍ଷୀରେ ସ୍ରଷ୍ଟାଙ୍କର ରଚିତ ଗଳ୍ପଗୁଡ଼ିକ ହେଉଛି 'ଜୟହିନ୍ଦ', 'ବିଜୟ ଉତ୍ସବ', 'ଓଡ଼ିଶାରେ ମହାଯୁଦ୍ଧ', 'ପୁନଶ୍ଚ' ଇତ୍ୟାଦି । 'ଜୟହିନ୍ଦ' ଗଳ୍ପର ନାୟକ ସତ୍ୟାନନ୍ଦ । ତା'ର ପତ୍ନୀ ନୂପୁରୀ । ଯୁଦ୍ଧରେ ଯୋଗଦେବାକୁ ଯାଇ ସତ୍ୟାନନ୍ଦ ତିନିବର୍ଷ ହେବ ଘର ଛାଡ଼ିଛି । ''ତିନି ବର୍ଷ ହେଲା ସଇତା ଚିଠି ପତ୍ର ଦେଇନାହିଁ । କେତେ ଲୋକ କେତେ କଥା କହନ୍ତି । ସବୁ ଶୁଣି ସେ ଛାତିକୁ ପଥର କରି ଦେଇଛି । ଯାହା ତା' କର୍ମରେ ଥିବ ।''(୨) ତା'ରି ମଧ୍ୟରେ ସ୍ତ୍ରୀ ନୂପୁରୀର ଦୁର୍ଦ୍ଦଶା ବୃଦ୍ଧି ପାଇଛି । କାନ୍‌ଗୋଇ ବାବୁ ସମାଜର ପ୍ରତିଷ୍ଠିତ ବ୍ୟକ୍ତି । ମାତ୍ର ନୂପୁରୀର ସ୍ୱାମୀ ଯୁଦ୍ଧକୁ ଯିବା ଅବସରରେ କାନ୍‌ଗୋଇଙ୍କ ପରି ପ୍ରତିଷ୍ଠିତ ବ୍ୟକ୍ତି ନୂପୁରୀ ପରି ନିରୀହା ନାରୀକୁ ଦେହଜ ଶୋଷଣ କରିଛନ୍ତି । ଅନ୍ୟ ପକ୍ଷରେ ଯୁଦ୍ଧ ନିମିତ୍ତ ଭାରତ-ଜାତୀୟ ବାହିନୀର ବୀର ଭାବରେ ଯୋଗ ଦେଇ ସତ୍ୟାନନ୍ଦ ଗ୍ରାମକୁ ପ୍ରତ୍ୟାବର୍ତ୍ତନ କରିବା ମଧ୍ୟରେ ଗ୍ରାମର ସମସ୍ତ ଜନତାଙ୍କ ମୁଖରୁ ଏକ ସ୍ୱରରେ ପ୍ରତିଧ୍ୱନିତ ହୋଇଛି 'ଜୟହିନ୍ଦ' । ଗଳ୍ପ ମଧ୍ୟରେ ସ୍ରଷ୍ଟା ଏକ ଦିଗରେ ଯୁଦ୍ଧ ସମୟରେ ସତ୍ୟାନନ୍ଦ ପରି ଯୁବ ମାନସର ଗୁରୁତ୍ୱପୂର୍ଣ୍ଣ ଭୂମିକା ସହିତ କାନ୍‌ଗୋଇମାନଙ୍କ ପରି ସମାଜପତିମାନଙ୍କର ନାରୀମାନଙ୍କ ପ୍ରତି ଥିବା ପୈଶାଚିକ ଲାଳସାକୁ ସ୍ପଷ୍ଟ କରି ଦେଇଛନ୍ତି । ଯୁଦ୍ଧ କାଳରେ ଖାଦ୍ୟାଭାବ ଜନିତ ସମସ୍ୟା ଓ ତତ୍‌ଜନିତ ମୃତ୍ୟୁକୁ କେନ୍ଦ୍ର କରି 'ବିଜୟ ଉତ୍ସବ' ଗଳ୍ପଟି ରଚିତ । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଖାଦ୍ୟାଭାବ ହେତୁ କେବଳ ଓଡ଼ିଶା

ନୁହେଁ, ସମଗ୍ର ପୃଥିବୀର ବିଭିନ୍ନ ଦେଶରେ ଅଗଣିତ ଜନତା ମୃତ୍ୟୁ ମୁଖରେ ପଡ଼ିଛନ୍ତି । ସେମାନଙ୍କ ମଧ୍ୟରେ ଗଳ୍ପ ନାୟକ ମୁକୁନ୍ଦ ଜଣେ । ମୁକୁନ୍ଦ ଅଭାବ ଅନଟନ ମଧ୍ୟରେ ମା' ଓ ଭାଇଙ୍କୁ ବଞ୍ଚାଇ ପାରିନାହିଁ । ଭଉଣୀ ମାଣିକ ଜରା ପ୍ରପୀଡ଼ିତା । ପିତା ଶଯ୍ୟାଶାୟୀ । ଚତୁର୍ଦ୍ଦିଗରେ ହାହାକାର । ''ସେତିକିବେଳେ ତାର ବଡ଼ ଝିଅ ଉମାର ବର ଦିନେଇ ସ୍ତ୍ରୀଇଁ ପିଲା ଭାରିଜାଙ୍କୁ ଛାଡ଼ି କୁଆଡ଼େ ବାହାରିଗଲା । ଆଉ ଉମା ? ତା ନାଁ ତୁଣ୍ଡରେ ଧର ନାହିଁ । ପିଲାଯୋଡ଼ିଙ୍କୁ ଛତରରେ ଛାଡ଼ି ସେ ପଶିଲା ହାଡ଼ିଘରେ । ବାପ - ଭାଇଙ୍କର ନାଁ ପକେଇଲା । କାହିଁକି ! ନ ଖାଇ ନ ପିଇ ତ କେତେ ଲୋକ ମଲେ, ଆଜି ବି ମରୁଛନ୍ତି ।'' (୩) ଦୈନ୍ୟ ଓ ଦୁଃଖ ମଧ୍ୟରେ ତା'ର ପିତା ବିଦାୟ ନେଇଗଲେ । ଆଉ ରହିଲା ତା'ର ଭଉଣୀ ମାଣିକ । ତାକୁ ବଞ୍ଚାଇବାକୁ ଯାଇ ଧାନ ଗଣ୍ଡିଏ ମୁଣ୍ଡରେ ଧରି ଫେରିବା ବାଟରେ ମୁକୁନ୍ଦ ଆଉ ପାରିଲା ନାହିଁ । ''ଧାନ ବୁଜୁଳାଟି ମୁଣ୍ଡରୁ ଖସି ବନ୍ଧ ଉପରେ ପଡ଼ିଲା । ପୁଣି ଆସିଲା ଅଇ ଉପରେ ଅଇ । ଆଉ କୁଆଡ଼େ କିଛି ଦିଶିଲା ନାହିଁ । କାହାକୁ ଦେଖିଲେ ମାଣିକ ପାଖକୁ ଖବର ଦିଅନ୍ତା । ଧାନ କିଆରିରୁ ଥଣ୍ଡା ପବନ ଆସି ତା'ର ଦିହରେ ମୁଣ୍ଡରେ ଖେଳିଲା । x x x ଧାନ ବୁଜୁଳାଟି ମୁଣ୍ଡ ଉପରେ ରଖି ପୁଣି ପଡ଼ିଗଲା । ଆଉ ପାରିଲା ନାହିଁ । ସେହିଠାରେ ତା'ର ସବୁଦିନ ପାଇଁ ବାଟ ଚଲା ସରିଗଲା ।'' (୪) ଗଭୀର ସ୍ୱାଭିମାନ ମଧ୍ୟରେ ତା'ର ପ୍ରାଣ ବାୟୁ ଉଡ଼ିଗଲା । ଭଉଣୀ ମାଣିକ ଧାନ ପାଇଲା ସତ, ମାତ୍ର ମୁକୁନ୍ଦ ପରି ସ୍ୱାଭିମାନୀ ମଣିଷଟି ସବୁଦିନ ଲାଗି ଏହି ପୃଥିବୀରୁ ବିଦାୟ ନେଇ ଚାଲିଗଲା । ତା'ର ଶବ ଗ୍ରାମବାସୀଙ୍କ କାନ୍ଧରେ ବୁହାଯିବାର ଦୃଶ୍ୟ ମଧ୍ୟରେ ଜାପାନକୁ ପରାସ୍ତ କରି ଚୀନର ବିଜୟ ଉତ୍ସବ ପାଳନ ହେଲା ।

ଓଡ଼ିଶାରେ ମହାଯୁଦ୍ଧ ଗଳ୍ପ ମଧ୍ୟରେ ଯୁଦ୍ଧର ଭୟାବହତାକୁ ହୃଦୟଙ୍ଗମ ନ କରି ଉତ୍କଳୀୟ ଗ୍ରାମ୍ୟ ଜନତା ଆହାର, ବିହାର ଓ ମୈଥୁନ ମଧ୍ୟରେ ଯେପରି ନିଜ ଜୀବନକୁ ଉପଭୋଗ କରିବା ପାଇଁ ପ୍ରୟାସୀ ହୋଇଛନ୍ତି ତାହାକୁ ସ୍ରଷ୍ଟା ଗଳ୍ପ ନାୟକ ହାଡ଼ିବନ୍ଧୁ ଚରିତ୍ର ମାଧ୍ୟମରେ ବର୍ଣ୍ଣନା କରିଛନ୍ତି । ହାଡ଼ିବନ୍ଧୁର ପତ୍ନୀ ବିମଳା । ଦ୍ୱିତୀୟ ବିଶ୍ୱଯୁଦ୍ଧ ସମୟରେ ଦୁର୍ବଳ ନାରୀ ମାନସିକତାର ସୁଯୋଗ ନେଇ ହାଡ଼ିବନ୍ଧୁଙ୍କ ପରି ପୁରୁଷମାନେ ପତ୍ନୀ ବିମଳାକୁ ଯୁଦ୍ଧକୁ ଯିବାର ଧମକ ଦିଅନ୍ତି ଓ ପତ୍ନୀଙ୍କ ଠାରୁ ଅନାଗ୍ରହ ପ୍ରେମ ଲାଭ କରନ୍ତି । ଯୁଦ୍ଧକୁ ଯିବା କଥା କହି ସେମାନେ ପଶା ଖେଳରେ ମାତନ୍ତି । ବ୍ରିଟିଶ୍ ସରକାରଙ୍କର ଜର୍ମାନ ବିରୁଦ୍ଧରେ ଯୁଦ୍ଧ ଘୋଷଣା କାଳରେ ବିମଳାଙ୍କ ଗର୍ଭରେ ଅଷ୍ଟମ ସନ୍ତାନ ଜନ୍ମ ନେବାର ବ୍ୟବସ୍ଥା କରି ଦିଅନ୍ତି । ସୁତରାଂ ସ୍ରଷ୍ଟା କାଳିନ୍ଦୀଚରଣ ହାଡ଼ିବନ୍ଧୁଙ୍କ ପରି ବିଳାସୀ ପୁରୁଷଙ୍କ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସହିତ ଉତ୍କଳୀୟ ଅଜ୍ଞ ନାରୀମାନଙ୍କର ସ୍ଥାଣୁ ମନୋଭାବ ପ୍ରତି ଏହି ଗଳ୍ପ ମଧ୍ୟରେ ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି । କଲିକତାରେ ଯୁଦ୍ଧ କାଳରେ ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସାଂପ୍ରଦାୟିକ ଦଙ୍ଗାକୁ କେନ୍ଦ୍ର କରି ସମାଜରେ ଯେପରି ଅଶାନ୍ତ ପରିବେଶ ସୃଷ୍ଟି ହୋଇଛି,

ଆତ୍ମହତ୍ୟା ଓ ଏହି ଘୃଣ୍ୟ ଶିଶୁ ହତ୍ୟା ଦ୍ୱାରା ପ୍ରତିହିଂସା ନିଏ; କିନ୍ତୁ ପୁଣି କାହିଁକି ଏ ଚିତ୍ତ ଦୁର୍ବଳ ହୋଇଆସେ । ଯାହାର ନିମକ୍ ଖାଇଲି, ତାହାର ଶିଶୁହତ୍ୟା ! ନା, ନା, ଏହା ଅନ୍ୟାୟ ! ଦାସୀର କର୍ତ୍ତବ୍ୟ ଶିଶୁ ରକ୍ଷଣ, ଶିଶୁ ମାରଣ ନୁହେଁ ।'' (୭) ଏହାରି ମଧ୍ୟରେ ସ୍ରଷ୍ଟା କାଳିନ୍ଦୀ ଚ଼ରଣ ମଣିଷର ଅନ୍ତର୍ଜଗତରେ ଥିବା ମାନବୀୟ ଚ଼େତନାଟିକୁ ସ୍ପଷ୍ଟ କରିଛନ୍ତି । 'ମାଂସର ବିଳାପ' ଗଳ୍ପ ମଧ୍ୟରେ ସେହି ମାନବୀୟ ସତ୍ୟଟିକୁ ସ୍ରଷ୍ଟା ହରିଣର ହତ୍ୟା ମଧ୍ୟରେ ଜମିଦାରଙ୍କର ପାଳିତ କୁକୁର ଡୋରା ମାଧ୍ୟମରେ ବ୍ୟକ୍ତ କରିଛନ୍ତି । ଜମିଦାର ତାଙ୍କର ପ୍ରିୟ ବନ୍ଧୁ ଡି.ଆଇ.ଜି. ସାହେବଙ୍କ ଅନୁରୋଧକୁ ଉପେକ୍ଷା କରି ନପାରି ନିଜ ଗୃହରେ ପାଳିତ ଜଲି ନାମ୍ନୀ ହରିଣକୁ ବନ୍ଧୁଙ୍କର ନୈଶ ଭୋଜି ନିମିତ୍ତ ହତ୍ୟା କରିଛନ୍ତି । ସମସ୍ତେ ଆନନ୍ଦ ଉଲ୍ଲାସ ସହିତ ମାଂସ ଭକ୍ଷଣ କରିଛନ୍ତି । ମାତ୍ର ଜଲିର ପ୍ରିୟ ବନ୍ଧୁ ଡୋରା ସେହି ମାଂସ ଖାଇପାରି ନାହିଁ । ସେ ସାଧାରଣ ପଶୁଟିଏ ହୋଇ ମଧ୍ୟ ତା ମଧ୍ୟରେ ପ୍ରକାଶ ପାଇଥିବା ବନ୍ଧୁପ୍ରୀତି ଉଭୟ ଜମିଦାର ଓ ଡି.ଆଇ.ଜି. ସାହେବଙ୍କୁ ସଚ଼େତନ କରିଦେଇଛି । ଜମିଦାରଙ୍କର ହୋଇଛି ନବଜନ୍ମ । ତାଙ୍କ ମନୋଭୂମିରେ ଆସିଛି ଅସମ୍ଭାବିତ ପରିବର୍ତ୍ତନ ।

''ସାପୁଆ' ଗଳ୍ପର ନାୟକ ମଦନ ବେହେରା । ତା'ର ମଣିଷ ସହିତ ଯେତିକି ନୁହେଁ, ସାପ ଓ ମୂଷାଙ୍କ ସହିତ ତତୋଽଧିକ ସଂପର୍କ । ଏହି ସଂପର୍କ ଅନାବିଳ ଓ ସ୍ୱାର୍ଥ ରହିତ । ସେ ଜମିଦାରଙ୍କ ବିରୁଦ୍ଧରେ ଯାଇ ତା'ର ବନ୍ଧୁ ବନା ଦଳେଇକୁ ତା'ର କବଳରୁ ମୁକୁଳାଇଛି । ମିଥ୍ୟା ଅଭିଯୋଗରେ କାରାବରଣ କରିଥିବା ନିଜର ଜାତିଭାଇଙ୍କୁ ମୁକ୍ତ କରିବା ନିମିତ୍ତ ପ୍ରୟାସୀ ହୋଇ ସେ ଗୃହତ୍ୟାଗ କରିଛି । ଏହି ଦରିଦ୍ର ନିଃସହାୟ ମଦନ ବେହେରା ହୃଦୟରେ ସ୍ରଷ୍ଟା ମାନବପ୍ରୀତିକୁ ଜାଗ୍ରତ କରାଇ ଦେଶ ଗଠନରେ ସହାୟକ ହୋଇଛନ୍ତି । 'ପଙ୍ଗୁ' ସ୍ରଷ୍ଟାଙ୍କର ସେହିପରି ଏକ କ୍ଷୁଦ୍ରଗଳ୍ପ । ନିଜ ପିତାମାତା ଓ ବନ୍ଧୁବର୍ଗଙ୍କ ଠାରୁ ଘୃଣିତ ହୋଇ ପଙ୍ଗୁ କଣାକୁତୀ ଓ ଛୋଟା ବିରାଡ଼ି ସହିତ ବନ୍ଧୁତା ସ୍ଥାପନ କରିଛି, ପୁଣି ବଣି ଚଢ଼େଇକୁ ରକ୍ଷା କରିବାକୁ ଯାଇ ସେ ସଲିଳ ସମାଧି ଲାଭ କରିଛି । ଲେଖକଙ୍କ ଭାଷାରେ ''ପଙ୍ଗୁ ଏକାଥରକେ ପକ୍ଷୀଟିକୁ ଧରି ନେବାକୁ ହାତ ବଢ଼ାଇଦେଲା । ସଙ୍ଗେ ସଙ୍ଗେ ତା'ର ପଦସ୍ଖଳିତ ହୋଇ ତା'ର ଶୋଭାହୀନ ଦେହଟାକୁ ଅତଳ ଜଳ ଗର୍ଭରେ ସମାଧି ଦେଲା । ଆଜୀବନ ସେ ମାନବ ସମାଜରେ ଘୃଣ୍ୟ, ଉପେକ୍ଷିତ ହୋଇଥିଲା, ଅନ୍ତିମ ମୁହୂର୍ତ୍ତରେ ମଧ୍ୟ ତାକୁ ଲୋକଲୋଚ଼ନର ଅଗୋଚ଼ରରରେ ବିଦାୟ ନେବାକୁ ହେଲା ।'' (୮) ତାହାରି ମଧ୍ୟରେ କାଳିନ୍ଦୀ ଚ଼ରଣ ସୃଷ୍ଟି କରିଛନ୍ତି ମାନବପ୍ରୀତି । 'ରୁଦ୍ରାକ୍ଷ' ଗଳ୍ପର ନାୟିକା ଦୁଲା । ଅଳ୍ପ ବୟସରୁ ବୈଧବ୍ୟ ଯନ୍ତ୍ରଣାରେ ସେ ଜର୍ଜ୍ଜରିତା । ବୈଧବ୍ୟ ପରେ ସେ ପାପ ଗର୍ଭ ହୋଇଛି ଓ ସେଥିପାଇଁ ସେ ତା'ର ମସ୍ତକରେ କଳଙ୍କର ଟୀକା ପିନ୍ଧିଛି । ସେଥିପାଇଁ ସେ ତା'ର ପରିବାର ସହିତ ଗାଁ'ରୁ ବାସନ୍ଦ ହୋଇଛି । ମାତ୍ର ସବୁ ପାପର ଭାରାକୁ ଦୁଲା ସହି ନେଇଛି । ଯିଏ ତାକୁ ପାପ ଗର୍ଭ କଲା ସେ ତା ଆଡ଼େ ଚାହିଁଲା ନାହିଁ । ସମାଜର

ନାଲି ଆଖି ଯୋଗୁ ପରି ବୋଉ ବି ଆଦର୍ଶର ଦ୍ୱାହି ଦେଇ ନିଜର ଝିଅକୁ ତା' ଠାରୁ ଦୂରେଇ ନେଲା । କିନ୍ତୁ ସମାଜର ଘୋର ବିରୋଧ ସତ୍ତ୍ୱେ ଦୁଲା ସମାଜ ବିରୋଧରେ ସଂଗ୍ରାମ କରି ବଂଚିରହିଲା ଓ ଶେଷରେ ବିଜୟିନୀ ହେଲା । ଦୁଃଖ ଓ କରୁଣ ପରିଣତି ମଧ୍ୟରେ କାଳିନ୍ଦୀ ଚ଼ରଣ ଦୁଲା ପ୍ରତି ଅଜସ୍ର ମାନବିକ ସ୍ନେହର ମନ୍ଦାକିନୀ ଝରାଇ ଦେଇଛନ୍ତି ।

ଭାରତବର୍ଷ ହେଉଛି ଆଦର୍ଶବାଦର ଭିତ୍ତିଭୂମି । କେଉଁ ଆବହମାନ କାଳରୁ ଏହି ଦେଶରେ ବହୁ ମୁନି ଋଷି ଜନ୍ମଗ୍ରହଣ କରି ସମଗ୍ର ଦେଶରେ ଆଦର୍ଶବାଦର ବାର୍ତ୍ତା ପ୍ରଚାର କରିଛନ୍ତି, ଏହି ଦେଶକୁ ଧନ୍ୟ କରିଛନ୍ତି । ସାଂପ୍ରତିକ ଭାରତୀୟ ମାନବ ରକ୍ତର ପ୍ରତିଟି ଅଣୁ ପରମାଣୁ ମଧ୍ୟରେ ସେହି ଚ଼େତନାଟି ଖୁବ୍ ସ୍ପଷ୍ଟ । ସୁତରାଂ କାଳିନ୍ଦୀ ଚ଼ରଣ ତାଙ୍କର କ୍ଷୁଦ୍ରଗଳ୍ପ ମଧ୍ୟରେ ଯେଉଁ ମାନବବାଦର କଥା ଉଲ୍ଲେଖ କରିଛନ୍ତି, ତାହର ପଶ୍ଚାଦ୍‌ଭାଗରେ ରହିଛି ପ୍ରାଚ଼ୀନ ଭାରତୀୟ ଆଦର୍ଶବାଦୀ ଚ଼େତନାର ଏକ ଦୃଢ଼ ଧାରା । ଗାଳ୍ପିକଙ୍କର 'ଅପରାଧିନୀ' 'ସାବିତ୍ରୀର ଦୁଃଖ', 'ମାଂସର ବିଳାପ', 'ଛିନ୍ନ ପୃଷ୍ଠା', 'ପୁନଶ୍ଚ' 'ପଙ୍ଗୁ' ପ୍ରଭୃତି ଗଳ୍ପରେ ଏହି ଚ଼େତନା ଅତ୍ୟନ୍ତ ସ୍ପଷ୍ଟ । କାଳିନ୍ଦୀଚରଣଙ୍କର 'ମାଟିର ମଣିଷ' ଉପନ୍ୟାସ ଆଦର୍ଶବାଦୀ ଚେତନା ଉପରେ ପ୍ରତିଷ୍ଠିତ । ଏହି ଉପନ୍ୟାସର ନାୟକ ବରଜୁ ମହାତ୍ମା ଗାନ୍ଧୀଙ୍କ ଆଦର୍ଶରେ ପରିଚାଳିତ ଓ ସେହି ଚେତନାର ଅଗ୍ରଦୂତ । ଉପନ୍ୟାସ ପରି ସ୍ରଷ୍ଟା ତାଙ୍କ ଅନ୍ତର୍ଜଗତରେ ଥିବା ସେହି ଧାରାକୁ ଆଲୋଚ଼୍ୟ ଗଳ୍ପ ମଧ୍ୟରେ ସ୍ପଷ୍ଟ କରିଛନ୍ତି ।

'ଅପରାଧିନୀ' ଗଳ୍ପ ମଧ୍ୟରେ ସ୍ରଷ୍ଟା ସମକାଳୀନ ସମାଜରେ ଥିବା ନାନା କୁସଂସ୍କାର ଓ ଅନ୍ଧବିଶ୍ୱାସର କଥା ଉଲ୍ଲେଖ କରିବା ସହିତ ମଣିଷ ଭିତରେ ଥିବା ଆଦର୍ଶବାଦୀ ଚ଼େତନାର ଧାରାକୁ ସ୍ପଷ୍ଟ କରିଛନ୍ତି । ଏହି ଗଳ୍ପର ନାୟିକା ସୁଷମା । ସେ ଦରିଦ୍ର । ମାତ୍ର ସାତ ବର୍ଷ ବୟସରେ ତାକୁ ବିବାହ କରିବାକୁ ହୋଇଛି । ପ୍ରଥମ ଗର୍ଭରେ ତା'ର ଦୁଇ ପୁତ୍ର ସହିତ ଗୋଟିଏ କନ୍ୟା ଜନ୍ମ ହୋଇଛି । ସନ୍ତାନ ଜନ୍ମର ମାତ୍ର ତିନି ମାସ ପରେ ସୁଷମାଙ୍କର ବୃଦ୍ଧ ସ୍ୱାମୀଙ୍କର ମୃତ୍ୟୁ ହୋଇଛି । ଏହାପରେ ସୁଷମାର ଜୀବନରେ ଆସିଛି ଭୀଷଣ ଝଡ଼ । ସ୍ୱାମୀର ମୃତ୍ୟୁ ପରେ ତାକୁ ଅଲକ୍ଷଣୀ କହି ଶାଶୁଘରୁ ତଡ଼ି ଦିଆଯାଇଛି । ସେ ଅଯଥାରେ ଅନ୍ୟମାନଙ୍କର କ୍ରୋଧ ଓ ବିଷଦୃଷ୍ଟିର ଶିକାରହୋଇଛି । ଏତିକିବେଳେ କଲେଜ ପଢୁଆ ଯୁବକ ନବୀନ ଯୁବତୀ ସୁଷମାର ଦୁଃଖ ହୃଦୟଙ୍ଗମ କରି ତାହାକୁ ବିବାହ କରିବା ପାଇଁ ନିଷ୍ପତ୍ତି ନେଇଛି । ମାତ୍ର ତା'ର ପରିବାର ତାକୁ ଏଥିରେ ସ୍ୱୀକୃତି ଦେଇନାହିଁ । ନବୀନ ସେସବୁକୁ ଖାତିର୍ କରିନାହିଁ । ବରଂ ହିନ୍ଦୁଧର୍ମ ତ୍ୟାଗ କରି ବ୍ରାହ୍ମ ହୋଇ ସୁଷମାକୁ ସେ ବିବାହ କରିଛି ଓ ସବୁ ଦିନ ପାଇଁ ଓଡ଼ିଶା ମାଟିରୁ ବିଦାୟ ନେଇ କାଶ୍ମୀରରେ ରହିଛି । ଏହି ଗଳ୍ପ ମଧ୍ୟରେ ସ୍ରଷ୍ଟା ଆମ ସମାଜରେ ଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିବା ସହିତ ବିଧବା ବିବାହ ପ୍ରଚ଼ଳନ ନିମିତ୍ତ ସମାଜକୁ ପ୍ରେରଣା ଦେଇଛନ୍ତି । ପୁନଶ୍ଚ ନବୀନଙ୍କ ପରି ଆଦର୍ଶ ଚ଼ରିତ୍ର ମାଧମରେ ଓଡ଼ିଶାରେ ନୂତନ ସମାଜ ଗଠନ ନିମିତ୍ତ ଏହି ଗଳ୍ପ ମଧ୍ୟରେ ସେ

ଶୁଣାଇଛନ୍ତି ଆଶାର ଆହ୍ୱାନ । ଭାରତବର୍ଷର ତତ୍‌କାଳୀନ ଜନନାୟକ ଓ ସଂସ୍କାରକ ଈଶ୍ୱର ଚନ୍ଦ୍ର ବିଦ୍ୟାସାଗରଙ୍କ ଆଦର୍ଶରେ ଅନୁପ୍ରାଣିତ ନବୀନ ବାସ୍ତବରେ ଆମ ଓଡ଼ିଶାରେ ଆଦର୍ଶ ସମାଜ ଗଠନ ନିମିତ୍ତ ହୋଇଛି ପ୍ରେରଣାର ଉତ୍ସ ।

'ସାବିତ୍ରୀର ଦୁଃଖ' କ୍ଷୁଦ୍ରଗଳ୍ପ ମଧ୍ୟରେ ଲେଖକ ସମାଜର ଚତୁର୍ଦ୍ଦିଗରୁ ଶୋଷିତ ହୋଇ ଗଭୀର ମାନସିକ ଯନ୍ତ୍ରଣାରେ ନିଃସ୍ୱ ଓ ବୈଧବ୍ୟ ଜୀବନ ବିତାଉଥିବା ସାବିତ୍ରୀ ନାମ୍ନୀ ନାରୀର ଦୈନ୍ୟକୁ ବ୍ୟକ୍ତ କରିବା ସହିତ ତା ପ୍ରତି ଦୟାଶୀଳ ହୋଇଛନ୍ତି । ଲେଖକଙ୍କ ଭାଷାରେ ସାବିତ୍ରୀ ''ମାଇପିଟିଏ, ଆମରି କରଣ ଘରର ଝିଅ । ବୟସ ୩୦ ଉପରେ ହେବ । ବାହାହୋଇ ୨୦ ବର୍ଷରୁ ବିଧବା । ଜମିବାଡ଼ି କିଛି ଥିଲା, ସାତ ଆଠ ମାଣ ଭିତରେ । ଶାଶୁ, ଶଶୁର, ଦିଅର ଯାଆ କେହି ନାହିଁ । ଏକାକୁ ଏକା । ତା' ଘର ବାଡ଼ି ସବୁ କୁଆଡ଼େ ସେ ଗାଁରୁ କେଉଁ ପଟ୍ଟନାୟକ ଲେଖାଇ ନେଇ ବିଚାରିକୁ ତା' ଘରୁ ବାହାର କରି ଦେଇଛନ୍ତି ।'' (୯) ଗୃହକର୍ତ୍ତା ଓ ତାଙ୍କ ପତ୍ନୀଙ୍କର ସାବିତ୍ରୀ ପ୍ରତି ଦୟାଭାବ ହେତୁ ସେମାନେ ତାକୁ ଆଣି ନିଜ ଘରେ ରଖାନ୍ତି ଓ ସେମାନେ ଯେଉଁଠିକି ଯା'ନ୍ତି ତାକୁ ସାଥୀରେ ନେଇଯା'ନ୍ତି । ମାତ୍ର ଏକଦା ସେମାନେ ସାବିତ୍ରୀକୁ ସାଥୀରେ ନେଇ ଟ୍ରେନ୍‌ରେ ଯିବାବେଳେ ସାବିତ୍ରୀର ଦେହ ହଠାତ୍ ଖରାପ ହୁଏ ଓ ସେ ସେହି ଟ୍ରେନ୍‌ରେ ହିଁ ମୃତ୍ୟୁ ବରଣ କରେ । ସେତେବେଳେ ଟ୍ରେନ୍‌ରେ ଜଣେ ଶିକ୍ଷିତ ଯୁବକଙ୍କ ସହିତ ଜଣେ ପ୍ରବୀଣ ବୃଦ୍ଧ ମଧ୍ୟ ସହଯାତ୍ରୀ ଥା'ନ୍ତି । ସେମାନଙ୍କ ସହିତ କଥୋପକଥନ କାଳରେ ଗୃହସ୍ଥ ବେଳେବେଳେ ଉତ୍ତେଜିତ ହୋଇ ପଡ଼ନ୍ତି ଓ ସେହି ଉତ୍ତେଜନାକୁ ଗାଳ୍ପିକ ନିମ୍ନଭାବେ ପ୍ରକାଶ କରନ୍ତି । ଭଦ୍ରଲୋକ ଉତ୍ତେଜିତ ହୋଇ କହିଲେ ''ଯୁଗଧର୍ମ କ'ଣ ବାବୁ, ଯୁଗଧର୍ମ କ'ଣ କହୁଛି ଜାତି ନାହିଁ, ଧର୍ମ ନାହିଁ, ଯେଉଁଠି ଇଚ୍ଛା ସେଠି ବାହା ହୁଅ । ଏସବୁ ଉଚ୍ଛୃଙ୍ଖଳତା, ସ୍ୱେଚ୍ଛାଚାର ନା, ଯୁଗଧର୍ମ କ'ଣ କହୁଛନ୍ତି ? ଆମର ବର୍ଣ୍ଣାଶ୍ରମ କୁଆଡ଼େ ଗଲା; କେବଳ ଭୋଗ ଲାଳସା, ବାସନା ତୃପ୍ତିରେ ସବୁ ଯାଇଁ ରହିଲାଣି । ଏ କ'ଣ ସଂସାର ରସାତଳଗାମୀ ହେବା ବ୍ୟତୀତ ଆଉ କ'ଣ ହୋଇପାରେ ?'' (୧୦) ଏହାରି ମଧ୍ୟରେ ଲେଖକ ଆମ ସମାଜରେ ଆଚାର ସ୍ୱେଚ୍ଛାଚାର ନାମରେ ଯେଉଁ ଅପସଂସ୍କୃତି ସୃଷ୍ଟି ହୋଇଛି ତାହାକୁ ଜଣେ ଆଦର୍ଶବାଦୀ ଗୃହକର୍ତ୍ତାର ଭୂମିକାରେ ପରିବର୍ତ୍ତନ କରିବା ପାଇଁ ପ୍ରୟାସୀ ହୋଇଛନ୍ତି ।

ଆଦର୍ଶବାଦ ଭିତ୍ତିରେ ସ୍ରଷ୍ଟାଙ୍କର ରଚିତ ଏକ ବହୁଚର୍ଚ୍ଚିତ ଗଳ୍ପ ହେଉଛି 'ମାଂସର ବିଳାପ' । ଗଳ୍ପ ବର୍ଣ୍ଣିତ ଦୁଇଟି ମାନବେତର ଚରିତ୍ର ଜଲି - ହରିଣ ଓ ଡୋରା- କୁକୁର । ଜଲି ଓ ଡୋରା ଜମିଦାରଙ୍କର ଗୃହ ପାଳିତ ପଶୁ ହୋଇଥିଲେ ହେଁ ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱର ପାଶ ଖୁବ୍ ଦୃଢ଼ ଓ ଆନ୍ତରିକତାପୂର୍ଣ୍ଣ ଥିଲା । ଏକଦା ବନ୍ଧୁ ଡ଼ି.ଆଇ.ଜି. ସାହେବଙ୍କ ଅନୁରୋଧରେ ଜମିଦାର ଏକ ନୈଶ ଭୋଜିର ଆୟୋଜନ କରନ୍ତି ଓ ସେହି ଉଦ୍ଦେଶ୍ୟରେ ତାଙ୍କର ଇଚ୍ଛା ବିରୁଦ୍ଧରେ ନିଜର ପ୍ରିୟ ହରିଣକୁ ହତ୍ୟା କରାଯାଇ ତା'ର ମାଂସ ଖାଇବାକୁ

ଦିଆଯାଏ । ସମସ୍ତେ ଆନନ୍ଦରେ ହରିଣ ମାଂସର ସ୍ୱାଦ ଆସ୍ୱାଦନ କରନ୍ତି । ମାତ୍ର ପଶୁ ଓ ମାଂସ ପ୍ରିୟ ହୋଇଥିଲେ ବି କୁକୁର ଡୋରାର ବନ୍ଧୁ ଜଲି ପ୍ରତି ଥିବା ଗଭୀର ଆତ୍ମିକ ସଂପର୍କ ତା'ର ଚକ୍ଷୁକୁ ଅଶ୍ରୁସିକ୍ତ କରିଦିଏ । ଘନିଷ୍ଠ ବନ୍ଧୁ ଜଲିର ହତ୍ୟାକୁ ସେ ସହ୍ୟ କରିପାରେ ନାହିଁ । ପ୍ରତିବାଦ ସ୍ୱରୂପ ସେଦିନ ତାକୁ ଦିଆଯାଇଥିବା ଭୋଜିର ମାଂସ ସେ ଖାଏ ନାହିଁ । ଅନ୍ୟ ପକ୍ଷରେ ଜଲି ନିମିତ୍ତ ତା'ର ଭୀଷଣ ଓ ଭୟଙ୍କର ଚିତ୍କାର ସମଗ୍ର ପରିବେଶକୁ ଅଶାନ୍ତ କରିଦିଏ । ଫଳତଃ ଜମିଦାର ଓ ତାଙ୍କର ଡ଼ି.ଆଇ.ଜି. ବନ୍ଧୁଙ୍କ ମଧ୍ୟରେ ଥିବା ହୀନ ପାଶବିକ ପ୍ରବୃତ୍ତିର ହୁଏ ଆକସ୍ମିକ ପରିବର୍ତ୍ତନ ।

କୁକୁର ପରି ପଶୁଟିର ବୁଦ୍ଧି ଓ ତା'ର ହୃଦୟରେ ଥିବା ମାନବିକ ମୂଲ୍ୟବୋଧ ମନୁଷ୍ୟ ଠାରୁ ଯେ ବହୁ ଉର୍ଦ୍ଧ୍ୱରେ, ଏ କଥା ଜଣେ ଆଦର୍ଶବାଦୀ ସ୍ରଷ୍ଟାର ଭୂମିକାରେ ଉପନୀତ ହୋଇ ଲେଖକ ପଶୁ ଓ ମାନବ ମଧ୍ୟରେ ତାହାର ସଫଳ ପରୀକ୍ଷା କରିଛନ୍ତି ଏବଂ ଗଳ୍ପଟିରେ ମାନବବାଦ ସହିତ ଆଦର୍ଶବାଦୀ ରୂପଟିକୁ ସ୍ପଷ୍ଟ କରିଛନ୍ତି ।

ସ୍ୱାଧୀନତା ପୂର୍ବକାଳରେ ଓଡ଼ିଶାର ଜନମାନସରେ ଅସଂଖ୍ୟ ସାମାଜିକ ସମସ୍ୟା ଭରି ରହିଥିଲା । ନାରୀ ଶିକ୍ଷା ନିମିତ୍ତ ନାନା ଅଭାବ ଅସୁବିଧା, ସଭ୍ୟ ଶିକ୍ଷିତ ସମାଜ ମଧ୍ୟରେ ସୁରା ସାକୀର ଅପ୍ରତିହତ ପ୍ରଭାବ, ବାଲ୍ୟ ବିବାହ, କନ୍ୟା ପଣ ପ୍ରଥା, ବିଧବା ସମସ୍ୟା, ଜମିଦାର ଓ ମହାଜନଙ୍କର ଶୋଷଣ, କୁଟୀର ଶିଳ୍ପର ବିପର୍ଯ୍ୟୟ, ଦ୍ୱିତୀୟ ବିଶ୍ୱଯୁଦ୍ଧର ପ୍ରଭାବ, ହିନ୍ଦୁ ଓ ମୁସଲମାନଙ୍କ ମଧ୍ୟରେ ସଂଘର୍ଷ, ରେଙ୍ଗୁନ ଓ କଲିକତାରେ ଓଡ଼ିଆ କୁଲି ଏବଂ ଶ୍ରମିକମାନଙ୍କର ସମସ୍ୟା, ଜାତୀୟ ଆନ୍ଦୋଳନ ନିମିତ୍ତ ଅଭିଯାନ ପ୍ରଭୃତି ଅନ୍ତର୍ଭୁକ୍ତ ଥିଲା । କାଳିନ୍ଦୀଚରଣ ଥିଲେ ଜଣେ ସମାଜ ସଚେତନ ଶିଳ୍ପୀ । ସମାଜର ପ୍ରତ୍ୟେକ ଗଳିକନ୍ଦିକୁ ତାଙ୍କର ଦୃଷ୍ଟି ନିବଦ୍ଧ ଥିଲା । ଫକୀରମୋହନଙ୍କ ପରେ ସ୍ରଷ୍ଟା କାଳିନ୍ଦୀଚରଣ ହିଁ ଓଡ଼ିଶାର ସାମାଜିକ ଜୀବନ ସହିତ ଓତପ୍ରୋତ ଜଡ଼ିତ ଥିଲେ । ନିଜର ସୃଷ୍ଟି ସର୍ଜନା କଲାବେଳେ ସେ ମଣିଷ ଓ ତା'ର ଚତୁର୍ଦ୍ଦିଗର ସମସ୍ୟାକୁ ଅଗ୍ରାଧିକାର ଦେଇଥିଲେ । ସମସ୍ୟା ନଥିଲେ ଗଳ୍ପଟିଏ ସୃଷ୍ଟି ହେବ ବା କିପରି ? ଏଥିରେ ପୁଣି ବକ୍ତବ୍ୟ ରହିବ କ'ଣ ? ତେଣୁ ସ୍ରଷ୍ଟା ସବୁଠାରେ ଖୋଜିଥିଲେ ମଣିଷ, ତା'ର ସ୍ୱରୂପ – ଯେଉଁଠି ସେ ମଣିଷ ପାଇନାହାନ୍ତି ସେଠାରେ ତାଙ୍କର ସୃଷ୍ଟି ସଫଳ ହୋଇପାରି ନାହିଁ । ସେଥିପାଇଁ ତାଙ୍କୁ 'ଆତ୍ମହତ୍ୟା' ଠାରୁ ଆରମ୍ଭ କରି 'ଛିନ୍ନପୃଷ୍ଠା' ବା 'ଅପରାଧିନୀ', 'ଦାମ୍ପତ୍ୟ ଚିତ୍ର' 'ପଙ୍ଗୁ' ପରି ଗଳ୍ପ ରଚନା କରିବାକୁ ପଡ଼ିଛି । ସ୍ରଷ୍ଟାଙ୍କର କେତୋଟି ଗଳ୍ପ ଆଲୋଚନା କଲେ ତାହା ଅଧିକ ସ୍ପଷ୍ଟ ହେବ ।

ଲେଖକଙ୍କର 'ଦାମ୍ପତ୍ୟ ଚିତ୍ର' କ୍ଷୁଦ୍ରଗଳ୍ପ ମଧ୍ୟରେ ଅଶିକ୍ଷା ଓ କୁସଂସ୍କାରର ନିଛକ ଚିତ୍ର ପ୍ରତିଫଳିତ ହୋଇଛି । ସ୍ୱାଧୀନତାର ପ୍ରାକ୍‌କାଳରେ ଆମ ଉତ୍କଳୀୟ ପୁରପଲ୍ଲୀରେ ଅଶିକ୍ଷା

ହିଁ ରାଜତ୍ୱ କରୁଥିଲା । ଅଶିକ୍ଷା ହେତୁ ଜନସାଧାରଣଙ୍କ ମଧ୍ୟରେ ସଚେତନବୋଧ ପ୍ରକାଶ ପାଇପାରୁନଥିଲା । ଏହି ଚେତନା ସ୍ୱାମୀ ସ୍ତ୍ରୀଙ୍କ ସଂପର୍କ ମଧ୍ୟରେ ମଧ ପ୍ରତିଧ୍ୱନିତ ହେଉଥିଲା । ଗଳ୍ପ ନାୟିକା ବିନ୍ଦୁ । ତାକୁ ବିବାହ କରିଛନ୍ତି ଲଳିତ । ମାତ୍ର ଉଭୟଙ୍କର ବିବାହ ବୟସ ଆସିବାର ବହୁ ପୂର୍ବରୁ ବାଲ୍ୟବିବାହ ପ୍ରଥାନୁସାରେ ପରସ୍ପରକୁ ବିବାହ କରିଛନ୍ତି । ସେତେବେଳକୁ ବିବାହ କ'ଣ ସେମାନେ ଜାଣିନାହାନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ପରିବାରର ରକ୍ଷଣଶୀଳତା ଓ ନାନା କଟକଣା ଯୋଗୁ ସେମାନେ ପରସ୍ପର ସହିତ ରାତ୍ରିର ତୃତୀୟ ପ୍ରହର ବ୍ୟତୀତ ଅନ୍ୟ କେତେବେଳେ ଏକତ୍ରିତ ହେବାର ସୁଯୋଗ ପାଇପାରି ନାହାନ୍ତି । ସମାଜର ଏପରି କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ଲଳିତ ଗଳ୍ପ ମଧ୍ୟରେ ଲିଖିତ ପତ୍ରରେ ନିଜର ପ୍ରତିକ୍ରିୟା ପ୍ରକାଶ କରିଛି - "ତୁମର ସମାଜ ଓ ବେଷ୍ଟନୀ ଏପରି ଯେ, ଆମ ସମାଜର ଅବସ୍ଥା ତୁମ ପକ୍ଷରେ ଧାରଣା କରିବା କଠିନ । କିନ୍ତୁ, ବିନ୍ଦୁ ସଙ୍ଗରେ ସାକ୍ଷାତ୍ ହେବ ନିଶି ତୃତୀୟ ପ୍ରହରରେ, ଯେତେବେଳେ ସମସ୍ତ ପୃଥିବୀ ନୀରବ ସ୍ୱପ୍ନମୁଗ୍ଧ, ବିନ୍ଦୁର ଅଭିସାର ସେତିକିବେଳେ ।" (୧୧) ସୁତରାଂ ଉଭୟ ସ୍ୱାମୀ ଓ ସ୍ତ୍ରୀ ପରସ୍ପରକୁ ଗଭୀର ଭାବେ ଭଲ ପାଉଥିଲେ ହେଁ ତାହାକୁ ସେମାନେ ଅନ୍ୟ ସମ୍ମୁଖରେ ପ୍ରକାଶ କରିପାରି ନାହାନ୍ତି । ଏହା ସେମାନଙ୍କ ଦାମ୍ପତ୍ୟ ଜୀବନକୁ ନଷ୍ଟ କରିଦେବା ସହିତ ସମକାଳୀନ ଉତ୍କଳରେ ପ୍ରଚଳିତ ଅନ୍ଧବିଶ୍ୱାସ ଓ କୁସଂସ୍କାରକୁ ପଦାରେ ପକାଇ ଦେଇଛି ।

'ଛିନ୍ନପୃଷ୍ପା' ଗଳ୍ପ ମଧ୍ୟରେ କାଳିନ୍ଦୀଚରଣ ସମକାଳୀନ ସମାଜରେ ପ୍ରଚଳିତ ନାରୀର ସ୍ୱାଧିକାରକୁ କେନ୍ଦ୍ରକରି ସୃଷ୍ଟ ସମସ୍ୟାକୁ ବ୍ୟକ୍ତ କରିଛନ୍ତି । ଏହି କାଳରେ ସମଗ୍ର ଭାରତବର୍ଷରେ ନାରୀ ସମସ୍ୟା ଓ ତା'ର ଅଧିକାରକୁ ନେଇ ରାଜା ରାମମୋହନ ରାୟ, ବାଲ ଗଙ୍ଗାଧର ତିଲକ, ରାନାଡ଼େ ପ୍ରମୁଖ ମନୀଷୀଗଣ ଯେଉଁ ସ୍ୱର ଉତ୍ତୋଳନ କରିଛନ୍ତି ସ୍ରଷ୍ଟା କାଳିନ୍ଦୀଚରଣଙ୍କ ଉପରେ ତାହାର ପ୍ରଭାବ ପଡ଼ିଛି । ନାରୀମାନଙ୍କର ଅଧିକାରକୁ ସାବ୍ୟସ୍ତ କରିବାକୁ ଯାଇ ତାକୁ କେନ୍ଦ୍ରକରି ଆମ ସମାଜରେ ଗଢ଼ି ଉଠିଥିବା ସମସ୍ୟାକୁ ସେ ତାଙ୍କର 'ଛିନ୍ନପୃଷ୍ପା' ଗଳ୍ପ ମଧ୍ୟରେ ଉପସ୍ଥାପିତ କରିଛନ୍ତି । ସମକାଳୀନ ଜମିଦାର ଓ ମହାଜନମାନେ ରୂପଶ୍ରୀ ଅଥଚ ଦାରିଦ୍ର୍ୟର ସୁଯୋଗ ନେଇ ଯୁବତୀ ନାରୀମାନଙ୍କୁ ଅଳ୍ପ କେତେଟା ଟଙ୍କାରେ କିଣି ଆଣି ତାଙ୍କୁ ଜୀବନବ୍ୟାପୀ ଯେପରି ଉପଭୋଗ କରୁଥିଲେ ଓ ଦାସୀ ପରି ବ୍ୟବହାର କରୁଥିଲେ, ତାହାର ଜ୍ୱଳନ୍ତ ଆଲେଖ୍ୟ ହେଉଛି ସ୍ରଷ୍ଟାଙ୍କର 'ଛିନ୍ନପୃଷ୍ପା' । ଗଳ୍ପ ନାୟିକା ଜମିଦାରଙ୍କର ଦାସୀ ଭାବରେ ଜୀବନ ନିର୍ବାହ କରିଛି । ପିତାମାତା କନ୍ୟାର ଇଚ୍ଛା ଅନିଚ୍ଛାକୁ ପ୍ରାଧାନ୍ୟ ନଦେଇ କେତେଟା ଟଙ୍କା ନିମିତ୍ତ ବହୁ ନାରୀ ଭୋଗ କରିଥିବା ବୃଦ୍ଧ ଜମିଦାରକୁ ନିଜର କନ୍ୟାକୁ ଟେକିଦେଇ ନିଜ କର୍ତ୍ତବ୍ୟ ସଂପାଦନ କରିଛନ୍ତି । ବିଚାରି ଯୁବତୀଟି ଏହାପରେ ନିଜର ସ୍ୱାଧୀନତାକୁ ଜଳାଞ୍ଜଳି ଦେଇ ସନ୍ତାନର

ଜନନୀ ହୋଇ ମଧ୍ୟ ସେହି ସନ୍ତାନ ଠାରୁ ଦାସୀ ଡାକ ପାଇଛି । ମାତ୍ର ଯେଉଁଦିନ ଘଟଣାର ସତ୍ୟାସତ୍ୟ ଜଣା ପଡ଼ିଯାଇଛି, ଦାସୀ ଗର୍ଭରୁ ଜନ୍ମଲାଭ କରିଥିବା ସନ୍ତାନ ପ୍ରକାଶ କରିଛି- ''ମା' ମା' ତୁମେ ତ ମୋର ମା, ଦାସୀ କାହିଁକି ।''

''ପୁଣି - ମା ! ତୁମକୁ ଜନ୍ମ ଦେଇଛି ସତ୍ୟ; କିନ୍ତୁ ସ୍ନେହରେ ଚୁମ୍ବନ କରିନାହିଁ, ଆଦରରେ କୋଳ କରିନାହିଁ । ଏତେବଡ଼ ନାମ ନେବାକୁ ଯିବି କାହିଁକି ? ମୁଁ ଯେ ଚିରଦିନ ଦାସୀ, ତୁମେ ତ କିନ୍ତୁ ଦାସୀର ପୁତ୍ର ନୁହଁ, ଧର୍ମର ସନ୍ତାନ ତୁମେ, ତୁମର ପରିଚର୍ଯ୍ୟାକାରିଣୀ ଦାସୀଟା ମା ହେବ ! ଛି, କାନ୍ଦିବି କାହିଁକି; ସେ ଯେ ଦୁର୍ବଳତାର ଚିହ୍ନ, ନାରୀତ୍ୱର ପରିଚାୟକ । ଦାସୀକୁ ଯଦି ମା'ର ଆସନକୁ ଉଠାଇବାକୁ ଚାହଁ, ସେ ଏଡ଼େ ସହଜ ନୁହେଁ - ତପସ୍ୟା, ତପସ୍ୟା !'' (୧୨)

ସ୍ରଷ୍ଟାଙ୍କର 'ରୁଦ୍ରାକ୍ଷ' ଗଳ୍ପଟି ଉତ୍କଳୀୟ ସାମାଜିକ ସମସ୍ୟା ଉପରେ ଆଧାରିତ । ଗଳ୍ପ ନାୟିକା ଦୁଲା । ସେ ବାଲ୍ୟ ବିବାହ କରିବାର ଅଳ୍ପ କେଇ ବର୍ଷ ପରେ ବିଧବା ହୋଇଛି । ଏହି ସମୟରେ ପାପଗର୍ଭର କଳଙ୍କ ନିଜ ଗର୍ଭରେ ଧାରଣ କରି ସମଗ୍ର ଗ୍ରାମ ଦ୍ୱାରା ସେ ବାସନ୍ଦ ହୋଇଛି । ମାତ୍ର ନାନା ସମସ୍ୟାର ଚତୁର୍ଦ୍ଦିଗରେ ଆବଦ୍ଧ ହୋଇଥିଲେ ହେଁ ସ୍ରଷ୍ଟା କାଳିନ୍ଦୀ ଚରଣ ତାହାରି ମାଧ୍ୟମରେ ଜୀବନ ସଂଗ୍ରାମର ଆମୋଘ ଅସ୍ତ୍ର ଧରାଇ ଦେଇଛନ୍ତି । ସମାଜରେ ଏସବୁ ସମସ୍ୟା ନିମିତ୍ତ ଯେଉଁମାନେ ଦାୟୀ ସ୍ରଷ୍ଟା ଦୁଲା ପରି ନାରୀ ଚରିତ୍ର ମାଧ୍ୟମରେ ସେହିମାନଙ୍କ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି ଓ ଦୁଲା ପରି ସହସ୍ର ନାରୀଙ୍କୁ ସଂଗ୍ରାମରେ ଅଂଶ ଗ୍ରହଣ କରି ସଂସ୍କାର ଆଣିବାରେ ପ୍ରୟାସୀ ହୋଇଛନ୍ତି । 'ନିୟତିର କ୍ରୀଡ଼ା' ଗଳ୍ପରେ ସ୍ରଷ୍ଟା ପୁନଶ୍ଚ ସେହି ବାଲ୍ୟବିବାହ ଓ ବିଧବା ସମସ୍ୟା ପ୍ରସଙ୍ଗ ଉପସ୍ଥାପନ କରିଛନ୍ତି । ଏହି ଗଳ୍ପର ନାୟିକା ସୁରମା । ବିବାହ କ'ଣ ଜାଣିବା ପୂର୍ବରୁ ମାତ୍ର ଆଠ ବର୍ଷ ବୟସରେ ତା'ର ପିତା ତାକୁ 'ଗୌରୀଦାନ' କରି ଦେଇଥିଲେ । ବିବାହର ଦୁଇବର୍ଷ ପରେ ତା'ର ସ୍ୱାମୀ ମୃତ୍ୟୁବରଣ କଲା । ''ଆଉ କାହାର ଦୁଃଖ ହେଉ ନ ହେଉ, ସୁରମାର ଲେଶ ଦୁଃଖ ହେଲା ନାହିଁ । କିପରି ହେବ ? କେବଳ ଗୋଟିଏ କଳ୍ପନାରେ କାହିଁ ଏକ ସ୍ୱାମୀ ତିଆରି ହୋଇ ପୁଣି ସେହିପରି କାଳ୍ପନିକ ମୃତ୍ୟୁ ହୋଇଅଛି ବୋଲି ତା'ର ମନେହେଲା ।'' ସୁରମାକୁ ନେଇ ଲୋକମାନେ ନାନା କଥା କହିଲେ, ଟୁପ୍ ଟାପ୍ ହେଲେ । ସୁରମାର କିଛି ଦୋଷ ନଦେଖି ଲୋକେ କହିଲେ ''ତା'ର କପାଳ ଫାଟିଲା । କିନ୍ତୁ ଏହି ଦଶମ ବର୍ଷିୟା ବାଳିକାର ଏତେ ଶୀଘ୍ର ଗୋଟିଏ କପାଳ ତିଆରି ହୋଇ ତାହା ପୁଣି ଫାଟିଗଲା କିପରି ? ମୂଳତଃ ଦେଖିବାକୁ ଗଲେ ତା'ର ସମାଜର ଦୂଷିତ ନୀତି ଏବଂ ତା'ର ସ୍ନେହଶୀଳ ପିତା ହିଁ ତା' ପାଇଁ ଗୋଟିଏ କଳ୍ପିତ କପାଳ ତିଆରି କରାଇ ମନ ଖୁସିରେ ତାହାର ଉଚ୍ଛେଦ ସାଧନ କରିଅଛନ୍ତି ।'' (୧୩)

ଏହି ଗଳ୍ପ ମଧ୍ୟରେ ସମକାଳୀନ ସମାଜରେ ବୈଧବ୍ୟ ଯନ୍ତ୍ରଣାରେ ଜର୍ଜରିତା ସୁରମା ପରି ଲକ୍ଷ ଲକ୍ଷ ନୀରିହା ନାରୀଙ୍କର ମାନସିକତାକୁ ଲକ୍ଷ୍ୟ କରି ସ୍ରଷ୍ଟା କାଳିନ୍ଦୀ ଚ଼ରଣ ଆମର ଏହି କୁସଂସ୍କାରଗ୍ରସ୍ତ ସମାଜକୁ ଦାୟୀ କରିଛନ୍ତି ଓ ଦୂଷିତ ସମାଜକୁ ପରିବର୍ତ୍ତନ କରିବା ନିମିତ୍ତ ଗଳ୍ପ ମଧ୍ୟରେ ଆହ୍ୱାନ ଦେଇଛନ୍ତି । ମାତ୍ର ସମାଜ ଦୃଷ୍ଟିରେ ସଂସ୍କୃତ ଶାସ୍ତ୍ରରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିବା ବୀର ମିଶ୍ରଙ୍କ ପରି ପଣ୍ଡିତଙ୍କ ନିର୍ଦ୍ଦେଶମତେ ସମାଜ ପରିଚାଳିତ ହେଉଥିବାରୁ ସେପରି ନିୟମକୁ ସେତେଶୀଘ୍ର ପରିବର୍ତ୍ତନ କରାଯାଇ ପାରିନାହିଁ । ସୁତରାଂ ବିନା ଦୋଷରେ ସୁରମା ପରି ଅସଂଖ୍ୟ ଲଳନାଙ୍କୁ ବିନା କାରଣରେ ବୈଧବ୍ୟ ଯନ୍ତ୍ରଣା ସହିତ ବହୁ ଦୁଃଖ ଓ ଦୁର୍ଦ୍ଦଶା ସହ୍ୟ କରିବାକୁ ପଡ଼ିଛି, ଘର ସଂସାର କରୁଥିବା ସୁକୁମାର ପରି ସଂସାରୀ ମଣିଷ ନିଜର ଦୈହିକ ସୁଖ ନିମିତ୍ତ ସୁରମା ଅବୈଧ ସନ୍ତାନର ଜନନୀ ହୋଇ ପାଗଳୀ ହୋଇଥିଲେ ହେଁ ସମାଜ ତା'ର ଦୁଃଖକୁ ଗ୍ରହଣ କରିନାହିଁ । ବରଂ ବୀର ମିଶ୍ରଙ୍କ ପରି ପଣ୍ଡିତଙ୍କ ମାଧ୍ୟମରେ ସମାଜ ସୁରମାକୁ ନାଲି ଆଖି ଦେଖାଇ କହିଛି ''ରଖ ହେ ବିଧବା ଝିଅ, ତା' କର୍ମ ସେ ଭୋଗିଲା, ସେଥିପାଇଁ ତୁମ ଦିହକଟା ଦୁଃଖରେ କଟିବ ବୋଲି କେଉଁ ଶାସ୍ତ୍ରରେ ଅଛି ? ତୁମେ ତ ପୁରୁଷ ହୋଇ ଜନ୍ମ ଲଭିଛ, ସେ ତ ସ୍ତ୍ରୀ, ତାହାରି କଥାରେ ଏତେ ଗୋଳେଇ ଘାଣ୍ଟି ହେଉଛ କାହିଁକି ?'' (୧୪)

ସମାଜ ପରିବର୍ତ୍ତନ ଓ ସଂସ୍କାର ନିମିତ୍ତ ଆବଶ୍ୟକ ପଡୁଥିବା ନୀତି ଓ ନିୟମକୁ ଭଦ୍ରତାର ମୁଖା ପିନ୍ଧା ମଣିଷ ଏତେ ଶୀଘ୍ର ଗ୍ରହଣ କରିପାରେ ନାହିଁ । ତେଣୁ ସ୍ରଷ୍ଟା କାଳିନ୍ଦୀ ଚ଼ରଣ ସେହି ଛଦ୍ମବେଶୀ ମଣିଷମାନଙ୍କୁ ଉଚ଼ିତ ଶିକ୍ଷା ଦେଇ ସଚ଼େତନ କରିବା ନିମିତ୍ତ ତାଙ୍କ କ୍ଷୁଦ୍ରଗଳ୍ପରେ ପଶୁ ଚରିତ୍ରର ଆବଶ୍ୟକତା ଅନୁଭବ କରିଛନ୍ତି । ଏ କ୍ଷେତ୍ରରେ ସ୍ରଷ୍ଟା ଭାରତୀୟ ସାହିତ୍ୟର ସୁଦୂର ଅତୀତକୁ ଅବଲୋକନ କରି ଜାତକ ଗଳ୍ପ, ପଞ୍ଚତନ୍ତ୍ର, ହିତୋପଦେଶ, ଲୋକକଥା ପ୍ରଭୃତିକୁ ଅନୁଶୀଳନ କରିଛନ୍ତି । ଅତୀତର ଏହି ଗଳ୍ପ ମାଧ୍ୟମରେ ଆମ ସମାଜ ବହୁଳ ଭାବରେ ପ୍ରଭାବିତ ହେଉଥିବାରୁ କୁସଂସ୍କାର ସହିତ ମାନବ ଚରିତ୍ରର ଚାରିତ୍ରିକ ପରିବର୍ତ୍ତନ ନିମିତ୍ତ ମାନବେତର ଚରିତ୍ରମାନଙ୍କୁ ନିଜ ଗଳ୍ପରେ ସେ ପ୍ରାଧାନ୍ୟ ଦେଇଛନ୍ତି । କାଳିନ୍ଦୀଚରଣଙ୍କ ରଚିତ ଏହିପରି ଗଳ୍ପ ମଧ୍ୟରେ ପ୍ରଧାନ ହେଉଛି 'ମାଂସର ବିଳାପ', 'ପଙ୍ଗୁ', 'ସାପୁଆ' ପ୍ରଭୃତି । ମାଂସର ବିଳାପ ଗଳ୍ପରେ ନିଜ ବନ୍ଧୁ ଡି.ଆଇ.ଜି. ସାହେବଙ୍କୁ ଆତିଥ୍ୟ ଦେବାକୁ ଯାଇ ତାଙ୍କ ଉଦ୍ଦେଶ୍ୟରେ ଜମିଦାର ନିଜ ଗୃହରେ ପାଳିତ ହରିଣକୁ ମାରି ନୈଶ ଭୋଜିର ଆୟୋଜନ କରିଛନ୍ତି । ଦୀର୍ଘ ଦିନରୁ ଅତ୍ୟନ୍ତ ଘନିଷ୍ଠ ଭାବରେ ଏକତ୍ର ରହୁଥିବା କୁକୁର ଡୋରା ଏକଥା ଜାଣି ପାରିଛି । ମାଂସାଶୀ ହୋଇଥିଲେ ମଧ୍ୟ ସେ ନିଜ ବନ୍ଧୁ ଜଲିର ମାଂସରେ ପ୍ରସ୍ତୁତ ତରକାରୀ ତ ଦୂରର କଥା, ସେଦିନ ପ୍ରସ୍ତୁତ ଅନ୍ୟାନ୍ୟ ଖାଦ୍ୟ ମଧ୍ୟ ଖାଇପାରିନାହିଁ । ବରଂ ବନ୍ଧୁ ଜଲିର ମୃତ୍ୟୁରେ ଦୁଃଖରେ ମର୍ମାହତ ହୋଇ ସେ ଚତୁର୍ଦ୍ଦିଗ କମ୍ପାଇ ଦେଇଛି । ଲେଖକଙ୍କ ଭାଷାରେ ''ଛିଃ, ଛିଃ, ସଂସାରଟାରେ କ'ଣ କେବଳ ସବଳ

ଦୁର୍ବଳକୁ ଅଧୀନ ରଖି ଆତ୍ମସାତ କରି ଉଦରସାତ୍ କରି ଜୀବନ ଧାରଣ କରିବାକୁ ଜାତ ହୋଇଛି ! ଜଣେ ବଞ୍ଚିବ ବୋଲି ଆଉ ଜଣକର ମୃତ୍ୟୁ ଏକାନ୍ତ ଆବଶ୍ୟକ । ମନୁଷ୍ୟ ଯେ ବିଶ୍ୱଗ୍ରାସ କରିବାକୁ ବସିଛି, ଏହାର ଯୁକ୍ତି କ'ଣ, ନା ସେ ସବୁ ଜୀବଠାରୁ ବୁଦ୍ଧିମାନ ଓ ବିବେକବାନ୍ !'' (୧୫) କୁକୁର ଡୋରା ନିଜର ଅତ୍ୟନ୍ତ ପ୍ରିୟ ଜଲିର ମୃତ୍ୟୁରେ ଗଭୀର ଦୁଃଖ ପାଇଛି । ଡ଼ୋରା ପରି ଏକ ପଶୁ ଚରିତ୍ର ମାଧ୍ୟମରେ ଲେଖକ ମନୁଷ୍ୟ ଅପେକ୍ଷା ମାନବେତର ଚରିତ୍ରର ମହନୀୟତା ପ୍ରତିପାଦନ କରିଛନ୍ତି । ଫଳରେ ଜମିଦାରଙ୍କର ହୋଇଛି ନବଜନ୍ମ । ସେ ନିଜ ଉଆସରେ ଆମିଷ ନିଷିଦ୍ଧ କରିବା ସହିତ ସମଗ୍ର ଜମିଦାରୀରେ ଜୀବହତ୍ୟା ନିଷିଦ୍ଧ କରିଛନ୍ତି । ତାଙ୍କର ଅତିଥିଶାଳା ହୋଇଛି ଦୁଃଖୀରଙ୍କିଙ୍କର ପାନ୍ଥଶାଳା । ମନୁଷ୍ୟଠାରୁ ପଶୁଟିଏ ଯେ କେତେ ଉର୍ଦ୍ଧ୍ୱରେ- ଏକଥା ସ୍ରଷ୍ଟା ଏହି ଗଳ୍ପ ମାଧ୍ୟମରେ ପ୍ରତିପାଦିତ କରିଛନ୍ତି ।

'ପଙ୍ଗୁ' ଗଳ୍ପ ମଧ୍ୟରେ ପଙ୍ଗୁପରି ଏକ କିମ୍ଭୂତ କିମାକାର ମଣିଷର ଅତ୍ୟନ୍ତ ପ୍ରିୟ ହୋଇଛନ୍ତି କାଣୀ କୁକୁର ଓ ଛୋଟୀ ବିରାଡ଼ି । ପଙ୍ଗୁର ପାଖେ ପାଖେ ଏହି ପଶୁଦ୍ୱୟ ସଦାସର୍ବଦା ରହିଛନ୍ତି । ସମଗ୍ର ମାନବ ସମାଜ ପଙ୍ଗୁକୁ ଦୂର୍ ଦୂର୍ କରୁଥିଲା ବେଳେ ତାହାର ସୁଖ ଦୁଃଖରେ କୁକୁର ଓ ବିରାଡ଼ି ହିଁ ସାଥୀ ହୋଇଛନ୍ତି । ଏକଦା ଗଭୀର ଜଳରେ ପଡ଼ି ଯାଇଥିବା ଏକ ବଣି ଚଢ଼େଇ ଛୁଆକୁ ପଙ୍ଗୁ ଉଦ୍ଧାର କରିବାକୁ ଯାଇ ସେହି ଜଳରେ ସଲିଳ ସମାଧି ଲାଭ କରିଥିଲା ବେଳେ ତା'ର ଦୁଃଖରେ ତା'ର ଚିର ସାଥୀ କୁକୁରଟି ହିଁ ଗଭୀର ଜଳମଧ୍ୟକୁ ପ୍ରବେଶ କରିଛି ଓ ପଙ୍ଗୁ ସହିତ ସମାଧି ଲାଭ କରିଛି । 'ପଙ୍ଗୁ' ଗଳ୍ପ ବର୍ଣ୍ଣିତ କୁକୁର ମାଧ୍ୟମରେ ସ୍ରଷ୍ଟା ଆମ ସମାଜକୁ ଉଚିତ ଶିକ୍ଷା ଦେଇଛନ୍ତି । ମଣିଷ ମଣିଷକୁ ସାହାଯ୍ୟ କରିବାକୁ କୁଣ୍ଠାବୋଧ କରୁଥିଲା ବେଳେ ମଣିଷକୁ କୁକୁରଟିଏ ତା'ର ବିପତ୍ତିବେଳେ କିପରି ସାହାଯ୍ୟ କରିପାରେ, ତାହା ଏହି ଗଳ୍ପମଧ୍ୟରେ ସ୍ରଷ୍ଟା ଦର୍ଶାଇ କୁକୁର ପରି ପଶୁ ଚରିତ୍ର ମାଧ୍ୟମରେ ଗଭୀର ମାନବୀୟ ସମ୍ବେଦନା ସୃଷ୍ଟି କରିଛନ୍ତି । ସାପୁଆ ଗଳ୍ପ ମଧ୍ୟରେ ସ୍ରଷ୍ଟା ଗଳ୍ପନାୟକ ମଦନ ବେହେରା ସହିତ ସାପ ଓ ମୂଷାମାନଙ୍କର ଯେପରି ଅନାବିଳ ସ୍ନେହ ଓ ସଂପର୍କ ରହିଛି ତାହା ବର୍ଣ୍ଣନା କରିଛନ୍ତି ।

ଉତ୍କଳୀୟ ନୌବାଣିଜ୍ୟ ପରମ୍ପରା ଉପରେ ଲେଖକଙ୍କର 'ସାଗରିକା' ଗଳ୍ପଟି ପ୍ରତିଷ୍ଠିତ । ଅତୀତ ଓଡ଼ିଶାର ଜନସାଧାରଣ ନିଜ ଦେଶକୁ ବିଭିନ୍ନ ଦୃଷ୍ଟିରୁ ସମୃଦ୍ଧ କରିବା ନିମିତ୍ତ ବାଣିଜ୍ୟ ବ୍ୟବସାୟ କରିବା ଉଦ୍ଦେଶ୍ୟରେ ବୋଇତ ମେଲି ଜାଭା, ବୋର୍ଣ୍ଣିଓ, ସୁମାତ୍ରା, ବାଲି ଏପରିକି ଶ୍ରୀଲଙ୍କା ପ୍ରଭୃତି ଦ୍ୱୀପପୁଞ୍ଜକୁ ଗମନ କରୁଥିଲେ । କୋଣାର୍କର ଅନତି ଦୂରରେ ଦନ୍ତପୁର, ଚେ଼ଲିତାଲୋ ପ୍ରଭୃତି ଓଡ଼ିଶାର ସମୃଦ୍ଧିଶାଳୀ ବନ୍ଦର ଥିଲା । ବିଦେଶର ବଣିକମାନେ ମଧ୍ୟ ଉତ୍କଳ ସହିତ ବାଣିଜ୍ୟିକ ସଂପର୍କ ରକ୍ଷା କରିଥିଲେ । ଏହି କଥା ସ୍ରଷ୍ଟା

'ସାଗରିକା' ଗଳ୍ପ ମଧ୍ୟରେ ପ୍ରକାଶ କରିଛନ୍ତି । ''କୋଣାର୍କ ସେତେବେଳେ ସମୃଦ୍ଧିଶାଳୀ ନଗର, କଳିଙ୍ଗର ବାଣିଜ୍ୟ ବ୍ୟବସାୟର ଗୋଟିଏ କେନ୍ଦ୍ରସ୍ଥଳ ।'' (୧୬) 'ମୋ କଥାଟି ସରିନାହିଁ' ଗଳ୍ପ ମଧ୍ୟରେ ସ୍ରଷ୍ଟା ଆମ ଐତିହ୍ୟ ଓ ଜାତୀୟ ଚେତନାର ପ୍ରତୀକ ପୁରୀର ଶ୍ରୀଜଗନ୍ନାଥ ଏବଂ କୋଣାର୍କର ସୂର୍ଯ୍ୟମନ୍ଦିର ପ୍ରସଙ୍ଗ ଉଲ୍ଲେଖ କରିଛନ୍ତି । ସେ ଉଲ୍ଲେଖ କରିଛନ୍ତି- ''ଗୋଟିକରେ ମୂର୍ତ୍ତି ଅଧା, ଆରଟିରେ ଦେଉଳ ଅଧା, ତେବେ ସେ ଖଣ୍ଡିଆ ମୂର୍ତ୍ତିର ନାମ ଜଗନ୍ନାଥ । ପୁଣି ଭଙ୍ଗା ଦେଉଳଟାରେ କୁଆଡ଼େ ତୁଳନା ନାହିଁ ! ଖଣ୍ଡିଆ ମୂର୍ତ୍ତି ପୂଜା ପାଇଲେ, ଷାଠିଏ ପୌଟି ଭୋଗ ସମ୍ଭାରରେ ନିତି ଶତସହସ୍ର ଯାତ୍ରୀଙ୍କୁ ଦର୍ଶନ ଦେଇ - ଭଙ୍ଗା ଦେଉଳରୁ ପଥର ଛିଡ଼ି ଅବାଟ ଅପନ୍ତରାରେ ପଡ଼ିଲେ ବି ତାହାର ଦର୍ଶନ ପାଇଁ ସୁଧୀ ପଣ୍ଡିତ ଧାଇଁ ଆସିଲେ କାହିଁ କେଉଁ ଦୂରାନ୍ତରରୁ; କିଏ ଏ ଯେ ଖାଲି ଶିଳ୍ପର ପୂଜା - ଶିଳ୍ପୀ ? ଶିଳ୍ପୀ ଗଲେ କାହିଁ ?'' (୧୭)

କାଳିନ୍ଦୀଚରଣ ଥିଲେ କାୟମନୋବାକ୍ୟରେ ଜଣେ ସଚ୍ଚା ଓଡ଼ିଆ । ସେଥିପାଇଁ ଓଡ଼ିଆ ଘର ଚାଲିଚଳଣିଠାରୁ ଆରମ୍ଭ କରି ଖାଦ୍ୟ ପେୟ, ରୀତିନୀତି ତାଙ୍କର ପ୍ରତ୍ୟେକ ଗଳ୍ପରେ ପ୍ରତିଧ୍ୱନିତ ହୋଇଥିଲା । ପାଶ୍ଚାତ୍ୟ ସଂସ୍କୃତିର ଅନୁପ୍ରବେଶ ଫଳରେ ଉତ୍କଳୀୟ ଜନତା କ୍ରମଶଃ ଭୁଲିଯାଇଥିବା ନିଜ ସଂସ୍କୃତି ପରମ୍ପରାଠାରୁ ଆରମ୍ଭ କରି ଖାଦ୍ୟପେୟ ପର୍ଯ୍ୟନ୍ତ ସମସ୍ତ ପ୍ରସଙ୍ଗ ପୁନର୍ବାର ତାଙ୍କ ଗଳ୍ପରେ ଜୀବନ୍ତ ହୋଇ ଉଠିଥିଲା । ଉଦାହରଣ ସ୍ୱରୂପ ଏଠାରେ ସ୍ରଷ୍ଟାଙ୍କର 'ରେଙ୍ଗୁନ୍-ଯାତ୍ରୀ' ଗଳ୍ପର ଗୋଟିଏ ପ୍ରସଙ୍ଗ ଗ୍ରହଣ କରାଯାଉ । ''ସୁଜନ ଦାସ ଏ ପର୍ଯ୍ୟନ୍ତ ଘରକୁ ଫେରିନାହିଁ । ବାଡ଼ିର ଶାଗ କେରିଏ ଆଣି ଖରଡ଼ି, ମାଛ ବଡ଼ି ରାଇ କରି, ନିମ ପିତାରେ ବାଇଗଣ ଦୋ'ଟି ସନ୍ତୁଳି, ଭାତ ଗଣ୍ଡିଏ ରାନ୍ଧିସାରି ଗୁଞ୍ଜର ତାରି ଅପେକ୍ଷାରେ ଚାହିଁ ବସିଛି ।'' (୧୮) ଏହି ପ୍ରସଙ୍ଗ ମଧ୍ୟରେ ଓଡ଼ିଆ ଘରର ଖାଦ୍ୟକୁ ସ୍ରଷ୍ଟା ଆମକୁ ମନେ ପକାଇ ଦେଇଛନ୍ତି । ପୁନଶ୍ଚ 'ରୁଦ୍ରାକ୍ଷ' ଗଳ୍ପରେ, ''କାର୍ତ୍ତିକ ମାସ । ବଡ଼ି ଭୋରରୁ ବାସି ଆଡ଼ତି ସାରି ଦୁଲା ଚଉରା ଲିପୁଚି । କୁଆଁ ତରାଟା ମଳିନ ପଡ଼ିଗଲାଣି, ଆକାଶ ଦୀପଗୁଡ଼ିକ କେତେବେଳୁ ନିଭିଯାଇଛି । ପାହାନ୍ତିଆକୁ ଟିକିଏ ଶୀତ ପଡ଼ିଲାଣି । ମୂଲିଆ ଜଣେ ଜଣେ ପିଙ୍କା ଲଗାଇ, ଆଉ କିଏ ନିଆଁ ଅଟା ଧରି ଦାଣ୍ଡମଝିରେ ଧୁଆଁ କରି କରି କାମକୁ ବାହାରିଛନ୍ତି ।'' ବର୍ଣ୍ଣନା ମଧ୍ୟରେ ଲେଖକ ଉତ୍କଳୀୟ ଜନମାନସର ସାଂସ୍କୃତିକ ତଥା ଧାର୍ମିକ ଦିଗର ସ୍ୱରୂପ ଉଲ୍ଲେଖ କରିଛନ୍ତି ।

ସମାଜର ବିଭିନ୍ନ ଦିଗ ପ୍ରତି ସଚେତନ ଭାବେ ଦୃଷ୍ଟି ନିକ୍ଷେପ କରିଥିଲେ ହେଁ କାଳିନ୍ଦୀ ଚରଣଙ୍କ ଅନ୍ତର୍ଲୋକରେ ଯେଉଁ ଭାବଧାରାଟି ପ୍ରଚ୍ଛନ୍ନ ଭାବରେ ନିହିତ ଥିଲା, ତାହା ହେଉଛି ରୋମାଣ୍ଟିକ୍ ଚେତନା । ସେ ତାଙ୍କ ଗଳ୍ପ ମଧ୍ୟରେ ଅନେକ ସମୟରେ ନିଛକ ବସ୍ତବ କଥା କହିଲାବେଳେ ଏହି ଚେତନାଟି ସ୍ୱତଃ ତାଙ୍କ ଗଳ୍ପ ମଧ୍ୟକୁ ଚାଲି ଆସୁଥିଲା । ସ୍ରଷ୍ଟାଙ୍କର ଗଳ୍ପ ରଚନାର ମୂଳ କେନ୍ଦ୍ରଟି ଥିଲା ମାନବ । ମାନବ ମଧ୍ୟରେ ଅନାବିଳ ସ୍ନେହ, ସମ୍ପର୍କ ଓ ପ୍ରେମବୋଧ ଚିତ୍ରଣ କରି ସେହି ସମ୍ପର୍କ ମଧ୍ୟରେ ରୋମାଣ୍ଟିକ୍ ଚେତନାର ହର୍ମ୍ୟ ନିର୍ମାଣ

କରିବା ତାଙ୍କର ଲକ୍ଷ୍ୟ ଥିଲା । ସ୍ରଷ୍ଟାଙ୍କର ଏହି ପର୍ଯ୍ୟାୟର ଗଳ୍ପ ମଧ୍ୟରେ ପ୍ରଧାନ ହେଉଛି 'ସାଗରିକା', 'ବିଟ୍ ଘର ଓ ରେଳଗାଡ଼ି', 'ନିଶୀଥିନୀ', 'ଡାହାଣୀ ବୁଢ଼ୀ', 'ରଶ୍ମିରେଖା', 'ଛିନ୍ନପୃଷ୍ଠା', 'ସାବିତ୍ରୀର ଦୁଃଖ', 'ଜୟହିନ୍ଦ', 'ପ୍ରେମିକ' ପ୍ରଭୃତି ।

କାଳିନ୍ଦୀଚରଣଙ୍କର ଅଧିକାଂଶ ଗଳ୍ପ ହେଉଛି କାହାଣୀ-ପ୍ରଧାନ ଓ ବର୍ଣ୍ଣନାଧର୍ମୀ । ପ୍ରାକ୍ ସ୍ୱାଧୀନତା ପର୍ଯ୍ୟାୟ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ କାଳରେ ଆମ ସମାଜରେ ଘଟୁଥିବା ବିଭିନ୍ନ ଘଟଣାର ବର୍ଣ୍ଣନାରେ ତାଙ୍କର ଗଳ୍ପ ପରିପୂର୍ଣ୍ଣ । ପୁନଶ୍ଚ ଜଣେ ନିଷ୍ଠାପର ସମାଜବାଦୀ ସ୍ରଷ୍ଟା ହୋଇଥିବାରୁ ସେ ସମାଜ ସଂସ୍କାର ଓ ପରିବର୍ତ୍ତନ ନିମିତ୍ତ ପାଠକକୁ ତାଙ୍କ ଗଳ୍ପ ମଧ୍ୟରେ ଅନେକ ସ୍ଥଳରେ ପରାମର୍ଶ ଦେବା ସହିତ ମାନବିକ ସମ୍ବେଦନା ସୃଷ୍ଟି କରିବା ପାଇଁ ପ୍ରୟାସୀ ହୋଇଛନ୍ତି । କେତେକ ସ୍ଥଳରେ ସ୍ରଷ୍ଟା ଗଳ୍ପକୁ ଅଧିକ ରସୋତ୍ତୀର୍ଣ୍ଣ ଓ ମନୋଜ୍ଞ କରିବା ପାଇଁ ଗଳ୍ପ ମଧ୍ୟରେ ଚରିତ୍ର ସଂଯୋଜନା କାଳରେ ସଂଳାପର ପ୍ରୟୋଗ କରିଛନ୍ତି । ଆବଶ୍ୟକ ସ୍ଥଳେ ସଂସ୍କୃତ ଶ୍ଳୋକ, ପ୍ରବାଦ, ପ୍ରବଚନ ଏବଂ ଢଗଢ଼ମାଳି ପ୍ରୟୋଗ କରି ଗଳ୍ପକଳାର ସୌଷ୍ଠବ ବୃଦ୍ଧି କରିଛନ୍ତି । ପୁନଶ୍ଚ, ପତ୍ରାତ୍ମକ ଶୈଳୀ (Epistolary form) ଓ ଆତ୍ମକଥନ ଶୈଳୀ (Autobiographical form) ତାଙ୍କ ଗଳ୍ପରେ ପରୀକ୍ଷାମୂଳକ ଭାବେ ବ୍ୟବହାର କରି ସେଥିରେ ସେ ସଫଳ ହୋଇଛନ୍ତି । ପତ୍ରଶୈଳୀରେ ଲିଖିତ ତାଙ୍କ ଗଳ୍ପ ମଧ୍ୟରେ ପ୍ରଧାନ ହେଉଛି 'ପୁନଶ୍ଚ', 'ଦାମ୍ପତ୍ୟ ଚିତ୍ର' ପ୍ରଭୃତି ।

କାଳିନ୍ଦୀଚରଣ ଥିଲେ ଦ୍ରଷ୍ଟା ଓ ସ୍ରଷ୍ଟା । ଜଣେ ଦ୍ରଷ୍ଟା ଭାବରେ ସମାଜର ପ୍ରତ୍ୟେକ ଦିଗକୁ ନିର୍ଦ୍ୱନ୍ଦ୍ୱରେ ତାଙ୍କର ସାରସ୍ୱତ ଦୃଷ୍ଟି ପ୍ରସାରିତ ହୋଇଥିଲା । ମାନବ ଓ ସମାଜ ଥିଲା ତାଙ୍କ ସୃଷ୍ଟିର ମୂଳ ଭିତ୍ତି । ତେଣୁ କାବ୍ୟ କବିତା, ଉପନ୍ୟାସ ଏବଂ ନାଟକରେ ଯେପରି ତାଙ୍କର କ୍ଷୁଦ୍ରଗଳ୍ପମଧ୍ୟରେ ଠିକ୍ ସେହିପରି ସେ ମଣିଷର ସ୍ୱରୂପ ପ୍ରତିପାଦନ କରି ପ୍ରାକ୍ ସ୍ୱାଧୀନତା କାଳରେ ଆମ ଗଳ୍ପ ସାହିତ୍ୟର ଜଣେ ପ୍ରମୁଖ ଓ ପ୍ରଥିତଯଶା କଥାକାରର ଆସନରେ ଆସୀନ ହୋଇଥିଲେ । ମଣିଷର ସୁଖ ଦୁଃଖ, ସମସ୍ୟା; ପୁଣି ମାନବ ପ୍ରୀତି ସହିତ ସେହି ମଣିଷ ପ୍ରତି ଗଭୀର ସମବେଦନା କାଳିନ୍ଦୀଙ୍କ ଗଳ୍ପକୁ କରିଛି ରସଘନ, ପରିପୂର୍ଣ୍ଣ ଏବଂ ଭାସ୍ୱର । ଏହି କାଳଜୟୀ ସାରସ୍ୱତ ସାଧକ ଆଜି ଆମ ମଧ୍ୟରେ ନାହାନ୍ତି ସତ, ତାଙ୍କ ଗଳ୍ପଗୁଡ଼ିକ ଆମ ପାଇଁ ପ୍ରେରଣାର ଉତ୍ସ ହେବା ସଙ୍ଗେ ସଙ୍ଗେ ଆଗାମୀ ପିଢ଼ି ନିମିତ୍ତ ଦିଗ୍‌ବାରେଣୀ ହୋଇପାରିଛି ।

**ପାଦଟୀକା :**

୧. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୫୨ ।

୨. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୩୪ ।

୩. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭),

ପୃ-୧୪ ।
୪. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୩ ।
୫. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୯୮ ।
୬. କାଳିନ୍ଦୀଚରଣ ପାଣିଗ୍ରାହୀ- 'ମାନବବାଦ ମୋ ସାହିତ୍ୟର ଆଭିମୁଖ୍ୟ'- 'ଅଧୁନା' - ୧୯୮୨, ଜୁନ୍ ସଂଖ୍ୟା, ପୃ-୬ ।
୭. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀ ଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୮୦ ।
୮. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୨୦ ।
୯. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୨୩ ।
୧୦. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୨୮ ।
୧୧. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୪୨ ।
୧୨. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୮୨ ।
୧୩. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୯୮ ।
୧୪. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୦୧ ।
୧୫. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୧୭୬ ।
୧୬. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨ ।
୧୭. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୨୫୪ ।
୧୮. କାଳିନ୍ଦୀଚରଣ ପାଣିଗ୍ରାହୀ- କାଳିନ୍ଦୀଚରଣ ଗଳ୍ପ ସମଗ୍ର (୧୯୮୭), ପୃ-୪୩ ।



# କଥାକାର କାଳିନ୍ଦୀଙ୍କ କଥା-କଥକତା : ଏକ ଆକଳନ

ଡକ୍ଟର ଅଜୟକୁମାର ମିଶ୍ର

କବି, କଥାକାର, ସମାଲୋଚକ, ସଂଗଠକ, ସଂପାଦକ, ଜୀବନୀକାର, ପ୍ରବନ୍ଧକାର ଓ ନାଟ୍ୟକାର ଭାବରେ ଆପଣାର ସାହିତ୍ୟିକ କଳାକର୍ମ ମାଧ୍ୟମରେ ସାରସ୍ୱତ ପ୍ରତିଷ୍ଠା ଅର୍ଜନ କରିଥିବା ଶିଳ୍ପୀ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ କଥାକାର ଓ କଥାକାରିତା ପରିମାଣାତ୍ମକ ଓ ଗୁଣାତ୍ମକ ଉଭୟ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ । ସେନାପତି ପରବର୍ତ୍ତୀ କଥାକାର ଭାବରେ ଉପନ୍ୟାସ ଓ ଗଳ୍ପ ରଚନା କରି କାଳିନ୍ଦୀ ଆପଣାର ସିଦ୍ଧିର ସ୍ୱାକ୍ଷର ଅଙ୍କନ କରିଅଛନ୍ତି । ତାଙ୍କ କଥାକାରିତା ପାଞ୍ଚଗୋଟି ଉପନ୍ୟାସ - 'ମାଟିର ମଣିଷ' 'ମୁକ୍ତାଗଡ଼ର କ୍ଷୁଧା', 'ଅମରଚିତା', 'ଲୁହାର ମଣିଷ' ଏବଂ 'ଆଜିର ମଣିଷ' ଇତ୍ୟାଦିରେ ଯେମିତି ବିଳସିତ, ପାଞ୍ଚଗୋଟି ଗଳ୍ପ ସଂକଳନ ଦ୍ୱାଦଶୀ (୧୯୩୨), ମୋ କଥାଟି ସରିନାହିଁ' (୧୯୫୭ ତୃ.ସଂ) ରାଶିଫଳ (୧୯୬୨ ଦ୍ୱି.ସଂ.) ସାଗରିକା (୧୯୫୪) ଏବଂ 'ଶେଷରଶ୍ମି' ପ୍ରଭୃତିରେ ସଂକଳିତ ଗଳ୍ପଗୁଡ଼ିକରେ ମଧ୍ୟ କଥାକଳାର ଚମତ୍କାରିତା ପ୍ରକାଶିତ । ସାମାଜିକ ଓ ସାଂସ୍କୃତିକ ଜୀବନର ସମତଳ ତଥା ଆଭ୍ୟନ୍ତରୀଣ ବାସ୍ତବତାର ପ୍ରାଧାନ୍ୟ ତାଙ୍କ ଗଳ୍ପଗୁଡ଼ିକରେ ପରିଲକ୍ଷିତ ।

କାଳିନ୍ଦୀ-କଥା- ମାନସରେ ତାଙ୍କ ସ୍ୱପ୍ନବିଳାସୀ ତାରୁଣ୍ୟର ଉଚ୍ଚାଟ ଉଚ୍ଚାରଣ ନାହିଁ, ବରଂ ବାସ୍ତବ ଜୀବନାଲେଖ୍ୟର ପ୍ରତିଲିପି ଅଙ୍କନରେ ତାଙ୍କ ଶିଳ୍ପୀତ୍ୱର ପ୍ରାବୀଣ୍ୟ ଏଠି ସହଜରେ ଉପଲବ୍ଧ । ତାଙ୍କ ଗଳ୍ପ ମନସ୍କତାର ଆଦ୍ୟ-ଅର୍ଘ୍ୟ 'ଆତ୍ମକାହାଣୀ' (୧) ରେ ତାଙ୍କର ସାମାଜିକ ବାସ୍ତବତା ଭିତ୍ତିକ ଅନୁଭବ ପ୍ରକାଶିତ । ୧୯୨୦ ମସିହା ବେଳକୁ ଓଡ଼ିଶାର ସାମାଜିକ ବ୍ୟବସ୍ଥାର ବ୍ରାହ୍ମଧର୍ମ ପ୍ରଭାବରେ ବିଧବା ବିବାହ ପ୍ରତି ସହାନୁଭୂତି ପ୍ରକାଶ ପାଇଥିଲା । ଏ ଦିଗରେ ଫକୀରମୋହନ ଓ ଚନ୍ଦ୍ରଶେଖର ନନ୍ଦ ପ୍ରମୁଖ କଥାକାରମାନଙ୍କର ସାରସ୍ୱତ ସଂସ୍କାର ମଧ୍ୟ ଉପଲବ୍ଧ ହୋଇଥିଲା, ଏଇ ଆଦର୍ଶବୋଧର ଏକ ଉଚ୍ଚାରଣ 'ଆତ୍ମକାହାଣୀ', କାଳିନ୍ଦୀଙ୍କ ସଂସ୍କାରବାଦୀ ଯୁବ ମାନସିକତାର ସ୍ୱାକ୍ଷର ବହନ କରିଥାଏ । ନବୀନ ଓ କିଶୋରଙ୍କ ବନ୍ଧୁତ୍ୱ, ପାରସ୍ପରିକ ଭାବ ବିନିମୟ, ମଧ୍ୟେ ମଧ୍ୟେ ପତ୍ରାଳାପ

---

୧ ଉତ୍କଳ ସାହିତ୍ୟ – ୨୪/୩ – ଆଷାଢ଼ – ୧୩୨୭ (୧୯୨୦)

ଦୁଇବର୍ଷର ବ୍ୟବଧାନ ପରେ ପୁନଃ ପତ୍ରପ୍ରେରଣରୁ ଆରମ୍ଭ ହୁଏ କଥା । ନବୀନ ନବ ଶିକ୍ଷିତ, ଡାକ୍ତର ସେ, ଡାକ୍ତରୀ ଉତ୍ତୀର୍ଣ୍ଣ ହେବା ପରେ ଗ୍ରାମ୍ୟାବସ୍ଥାନ କାଳରେ ଗ୍ରାମ୍ୟ ପରିବେଶରେ ଏକ ଅଘଟଣ ତା'ର ଯୁବ ମାନସକୁ ବିକ୍ଷୁବ୍ଧ କଲା । ତାଙ୍କର ଗ୍ରାମର ଗୋବର୍ଦ୍ଧନ ମହାପାତ୍ରଙ୍କ ସପ୍ତମ ବର୍ଷିଆ କନ୍ୟା ସୁଷମାକୁ ଜଣେ ପଇଁଚାଳିଶ ବର୍ଷ ବୟସ୍କ, ବାତରୋଗଗ୍ରସ୍ତ ବ୍ୟକ୍ତି ସହିତ ବିବାହ କରାଇ ଦିଆଗଲା । ସୁଷମା ଏକକାଳୀନ ତିନିଗୋଟି ସନ୍ତାନ ପ୍ରସବ କଲା ଓ ପରେ ସେମାନେ ମୃତ୍ୟୁବରଣ କଲେ । ଏତେବେଳକୁ ସ୍ୱାମୀଙ୍କର ମୃତ୍ୟୁ ହେବାରୁ ସୁଷମା ହେଲା ବିଧବା । ସତରବର୍ଷ ବୟସ୍କା ବିଧବା ସୁଷମାକୁ ଅଲକ୍ଷଣୀ ରୂପେ ସମାଜ ନାନା ଇଂଗିତ କଲା, ଯନ୍ତ୍ରଣାର ଜଉଘରେ ଜଳୁଥିଲା ନିର୍ଦ୍ଦୋଷ ସୁଷମାର ହୃଦୟ । ସୁଷମା ସ୍ୱାମୀଗୃହରୁ ପିତ୍ରାଳୟକୁ ଆସିଲା, ଅଥଚ ସାମାଜିକ ଲାଞ୍ଛନା ଏଠାରେ ହେଲା ତୀବ୍ରତର । ପାରମ୍ପରିକ ଡାଆଣୀ ଆଖ୍ୟା ପାଇଲା ସେ ଏଠି । ତା' ମୁଖାବଲୋକନ ଅଶୁଭ ସୂଚନା, ତେଣୁ ତାକୁ ବିଦାକରିବାର ନିଷ୍ଠୁର ଉଦ୍ୟମ ହେଲା । ଏତେବେଳେ ନବ୍ୟ ଶିକ୍ଷିତ ସଂସ୍କାରବାଦୀ ନବୀନ, ଏକମାତ୍ର ବ୍ରାହ୍ମଣ ସମାଜର ଏଇ କଳଙ୍କିତ ବ୍ୟବସ୍ଥାକୁ ବିରୋଧ କରି ଦୃଢ଼ତାର ସହିତ ଘୋଷଣା କଲା – "ସୁଷମାର ସଦ୍‌ଗୁଣ ଓ ସୁନ୍ଦର ରୂପ ଆପଣମାନେ ଦେଖିଛନ୍ତି, ଆଜି କି ପାପ କରିଛି ସେ, ଆପଣମାନେ ଉଚ୍ଚ ବଂଶୀୟ ବ୍ରାହ୍ମଣ କୁଳରେ ଜନ୍ମ ହୋଇ ସୁଦ୍ଧା ସପ୍ତଦଶ ବର୍ଷୀୟା ବାଳିକାକୁ ଦାଣ୍ଡରେ କାଙ୍ଗାଳୁଣୀ କରିବାକୁ ବସିଛନ୍ତି ? ଛିଃ ଛିଃ ବ୍ରାହ୍ମଣ ଜାତିର ଏ ଘୋର କଳଙ୍କ । ଏ କଳଙ୍କିତ ମୂର୍ଖତା ସମସ୍ତ ଜାତିକୁ ଭସ୍ମକରି ମହାଦେବଙ୍କ ଶ୍ମଶାନରେ ପରିଣତ କରିଦେବ ।" (୨) ନବୀନ ଶେଷରେ ନିଜ ପରିବାରର ସମସ୍ତ ବିରୋଧ ସତ୍ତ୍ୱେ, ସୁଷମାକୁ ବିବାହ କଲା, ଗ୍ରାମ୍ୟ ସମାଜ ତ୍ୟାଗ କରି ଯାଇ ବ୍ରାହ୍ମ ସମାଜରେ ମିଶିଲା ଏବଂ ସୁଦୂର କାଶ୍ମୀରରେ ରହିଲା । ଦୀର୍ଘ ବ୍ୟବଧାନ ପରେ ନବୀନ ତା'ର ବନ୍ଧୁ କିଶୋର ନିକଟକୁ ପତ୍ର ମାଧ୍ୟମରେ ସମସ୍ତ ଘଟଣା ଅବଗତ କରାଇଛି । କଳାଧର୍ମ ଦୃଷ୍ଟିରୁ ଗଳ୍ପଟି ଉନ୍ନୁକ୍ରିଷିତ ଅବସ୍ଥା ସୃଷ୍ଟିକଲେ ମଧ୍ୟ ପାଠକୀୟ ଆଦୃତି ପ୍ରାପ୍ତ । ତୀବ୍ର ସମ୍ବେଦନାବୋଧ ଓ ସଂସ୍କାରବାଦୀ ଆଭିମୁଖ୍ୟ ସଂପୃକ୍ତ ଗଳ୍ପଟିର ବୈଶିଷ୍ଟ୍ୟ, ଯହିଁରେ ରହିଛି ସାମାଜିକ ଅଙ୍ଗୀକାରବଦ୍ଧତା ।

ଗଳ୍ପକାର ଭାବରେ କାଳିନ୍ଦୀଚରଣ, ସ୍ୱାଧୀନତା ପୂର୍ବବର୍ତ୍ତୀ ଓଡ଼ିଶାର ସାମାଜିକ ଓ ସାଂସ୍କୃତିକ ଜୀବନର ଚିତ୍ରରୂପ ପ୍ରଦାନରେ ଜଣେ ସଫଳ ଶିଳ୍ପୀ । ତେଣୁ ତାଙ୍କ କଥକତାରେ ପ୍ରମୂର୍ତ୍ତ ହୋଇଛି ସାମାଜିକ ଶୋଷଣ-ପୀଡ଼ନର ଅଶ୍ରୁଲିପି, ଅସହାୟ ଜୀବନର କାରୁଣ୍ୟ ବନ୍ୟା-ବାତ୍ୟା- ଦୁର୍ଭିକ୍ଷ ପୀଡ଼ିତ ଆର୍ଥନୀତିକ ଦୁର୍ବଳ ଗୋଷ୍ଠୀର ବିଳାପ, ବିଦେଶୀ ସରକାର ଓ ଦେଶୀ ସାହୁକାରଙ୍କର ଜଘନ୍ୟ ଅତ୍ୟାଚାର, ବିଶ୍ୱଯୁଦ୍ଧ ଜନିତ କଳାବଜାରୀ ମାନଙ୍କର ମୁନାଫାଖୋର ମନୋଭାବ, ଯୁଦ୍ଧକାଳୀନ ସ୍ଥିତିରେ ଓଡ଼ିଶାର ସାଧାରଣ ବର୍ଗର ଜୀବନଯାତ୍ରା, ସାମାଜିକ ଅତ୍ୟାଚାର ପୀଡ଼ିତ ମାନବର ପ୍ରେମ ବିଫଳତା ଇତ୍ୟାଦି ।

୨ ଉ.ସା. – ୨୪/୩ – ପୃ - ୧୯୯

କାଳିନ୍ଦୀଚରଣଙ୍କ 'ବିଜୟ ଉତ୍ସବ' (୧୯୨୮) 'ଓଡ଼ିଶାରେ ଯୁଦ୍ଧ' ଏବଂ 'ଜୟହିନ୍ଦ' ପ୍ରଭୃତି ଗଳ୍ପରେ ଯୁଦ୍ଧକାଳୀନ ଓଡ଼ିଶୀ ଜନଜୀବନର ସନ୍ତୁଳନ ପ୍ରକାଶିତ । ମୁଠାଏ ଚାଉଳ ପାଇଁ ଅହରହ ସଂଗ୍ରାମ କରୁଥିବା ମଣିଷର ଏକ ପ୍ରତିନିଧି ମୁକୁନ୍ଦ, ଯାହା ଆଗରେ ଖାଦ୍ୟାଭାବରୁ ବୃଦ୍ଧ ପିତାଙ୍କର ମୃତ୍ୟୁ ଘଟିଲା, ଭଉଣୀ ପାଇଁ ସେ ଜାରି ରଖିଥିବା ସଂଗ୍ରାମର କରୁଣ ପରିଣତି ସ୍ୱରୂପ ମୁକୁନ୍ଦର ଅସହାୟ ମୃତ୍ୟୁ ହିଁ ଅତି ଦୁଃଖଦ । କ୍ରମାଗତ ତିନିଦିନ ଧରି ଉପବାସୀ ମୁକୁନ୍ଦ, ମୁଠାଏ ଧାନ ଯୋଗାଡ଼ କରି, ନଈବନ୍ଧରେ ଆସିବାବେଳେ ତା'ର ଅକାଳ ବିୟୋଗକୁ କାରୁଣ୍ୟର ସ୍ୱର ଲିପିଦେଇ ଲେଖକ ଦର୍ଶାଇଛନ୍ତି - ''+ + + ଧାନ ବୁଜୁଳାଟି ଉପରେ ମୁଣ୍ଡ ରଖି ପୁଣି ପଡ଼ିଗଲା, ଆଉ ଉଠିପାରିଲା ନାହିଁ । ସେହିଠାରେ ତା'ର ସବୁଦିନ ପାଇଁ ବାଟଚଲା ସରିଗଲା ।'' (୩)

୧୯୧୯ ମସିହାର ପୁରୀ ଜିଲ୍ଲାର ଦୁର୍ଭିକ୍ଷ ଯୋଗୁଁ ଅସହାୟ ମୃତ୍ୟୁଜନିତ ସାମାଜିକ ସତ୍ୟବୋଧର କରୁଣ କଳାତ୍ମକ ସର୍ଜନ ତାଙ୍କର 'ବିଜୟ ଉତ୍ସବ' ଗଳ୍ପରେ ବେଶ୍ ବାସ୍ତବଧର୍ମୀ ହୋଇପାରିଛି । ବିଦେଶୀ ଶାସକର ବିଶ୍ୱଯୁଦ୍ଧ ଜନିତ ବିଜୟୋତ୍ସବ ପାଳନ କାଳରେ ଓଡ଼ିଶାର ଜନତା, ଦୁର୍ଭିକ୍ଷ ଜନିତ କରାଳ ମୃତ୍ୟୁର ଶିକାର ହେବା ଘଟଣାର କଳଙ୍କମୟ ଚିତ୍ର ଓ ସଂସ୍କାରବୋଧଠାରୁ ବରଂ ଦୁଃଖୀ ଅସହାୟଙ୍କ ନିମିତ୍ତ ତୀବ୍ର ବେଦନାଦଗ୍ଧ ସଂବେଦନଶୀଳତାର ଉପଯୁକ୍ତ ପରିଚୟ ମିଳିଥାଏ । ଏତାଦୃଶ ମାନସିକତାର ଏକ ଭିନ୍ନ ଉଚ୍ଚାରଣ ହେଉଛି 'ଚକ ବୁଲୁଥାଏ', ଯେଉଁଥିରେ ସାମାଜିକ ଜୀବନରେ ଧନୀ-ଦରିଦ୍ର ମଧ୍ୟରେ ରହିଥବା ଆର୍ଥନୀତିକ ବୈଷମ୍ୟ ପ୍ରକାଶ ପାଇଛି । ଦୟାନିଧି ସମାଜପତି, ରିକ୍ସାଚାଳକ ଭେଙ୍କଟ ଦରିଦ୍ର, ଅଥଚ ଦୁର୍ଘଟଣାରେ ଉଭୟଙ୍କର ମୃତ୍ୟୁ ଘଟିଥିଲେ ବି, ଦୟାନିଧିଙ୍କ ପତ୍ନୀ କ୍ଷତିପୂରଣ ପାଆନ୍ତି, ଭେଙ୍କଟ ପତ୍ନୀଙ୍କୁ ପାଇବାର ଆଶ୍ୱାସନା ଦିଆଯାଇ ଠକେଇ ଦିଆଯାଏ । ଭେଙ୍କଟ ପତ୍ନୀ ଅନ୍ୟଜଣଙ୍କୁ ବିବାହକରେ ଓ ପୁତ୍ର ରାମେୟା ହୋଇପଡ଼େ ଅସହାୟ । ସଂପୃକ୍ତ ପରିସ୍ଥିତିରେ, ଦୟାନିଧି ପତ୍ନୀଙ୍କ ରାମେୟା ପ୍ରତି ଆଶୀର୍ବଚନରୁ ଲେଖକୀୟ ଦୃଷ୍ଟିଭଂଗୀଟି ଅତି ସ୍ପଷ୍ଟ । ଏଥିରେ ଏକ ସୁସ୍ଥ ଓ ସମତୁଲ ସମାଜ ସଂଗଠନ ନିମିତ୍ତ ରହିଛି ଆଶାନ୍ୱିତ ଆହ୍ୱାନ ।

ଆର୍ଥନୀତିକ ସଂକଟ ମଧ୍ୟରେ ଗ୍ରାମୀଣ ଦରିଦ୍ର କିପରି ଜୀବନ ଜୀଇବା ନିମିତ୍ତ ବାସ୍ତୁହରା ହୋଇ, କୁଲି ସର୍ଦ୍ଦାରମାନଙ୍କର ଶୋଷଣର ଶିକାର ହୁଏ ଏବଂ ଉଦ୍‌ବାସ୍ତୁ ହୋଇ ଗୋଟାଏ ଗୋଟାଏ ଭିଟା ଗ୍ରାମ୍ୟଭୂମିର ଉଚ୍ଛନ୍ନ ହୋଇଯାଏ, ତା'ର ବେଦନାରୁଣ ଚିତ୍ର କଥାକାର କାଳିନ୍ଦୀଚରଣଙ୍କ 'ରେଙ୍ଗୁନ୍ ଯାତ୍ରୀ' (୧୯୩୫) ଗଳ୍ପରେ ପ୍ରକାଶିତ । ଯେ ଥରେ ପେଟ ଚାଖଣ୍ଡକ ପାଇଁ ରେଙ୍ଗୁନ୍ ଭୂଇଁରେ କୁଲିଗିରି କରେ, ସେ ଆଉ ଜୀବନରେ ଜନ୍ମମାଟିରେ ପାଦଥାପି ପାରେନା । ଫଳରେ ପିତୃମାତୃ ବିୟୋଗ, ପତ୍ନୀର ପୁନର୍ବିବାହ,

୩ ସାଗରିକା (୧୯୫୪) ପୃ - ୩୪

ସନ୍ତାନର ଅରକ୍ଷ ଅବସ୍ଥା, ବାସ୍ତୁଭୂମି ହାତଛଡ଼ା ହେବାର ଦୁର୍ବାର ଯାତନାରୁ ତାଂକୁ ମୁକ୍ତି ମିଳେନାଇଁ । ମଣିଷ ଚକ୍ରାନ୍ତରେ ଗ୍ରାମ୍ୟ ଦରିଦ୍ରର ସର୍ବହରା ହେବାର ଏପରି ଦୁଃଖଦ ଇତିହାସ ଓଡ଼ିଶାଭୂମି ବ୍ୟତୀତ ଅନ୍ୟତ୍ର କେଉଁଠି ଏତେ ଉତ୍କଟ ନୁହେଁ ।

କଥାକାର କାଳିନ୍ଦୀଚରଣଙ୍କ ବିଦଗ୍ଧଚେ଼ତନା ଓ ସଂବେଦନଶୀଳତାର ଆଦ୍ୟ ପ୍ରତିଶ୍ରୁତି 'ଆମ୍ବକାହାଣୀ' ଭଳି ବିଧବା ସମସ୍ୟା ଉପରେ ଆଧାରିତ 'ରୁଦ୍ରାକ୍ଷ' (୧୯୩୨) ଏବଂ ନିୟତିର କ୍ରୀଡ଼ା (୧୯୨୪) ଦୁଇଟି ସାର୍ଥକ ଗଳ୍ପ । 'ରୁଦ୍ରାକ୍ଷ' ର ଦୁଲା ଚରିତ୍ରଟି ଗୋଟାଏ ନାରୀର ଦୈହିକ, ମାନସିକ ଓ ସାମାଜିକ ଅତ୍ୟାଚାରର ସ୍ୱଷ୍ଟ ପ୍ରତିନିଧି । ବ୍ରାହ୍ମଣ କନ୍ୟା ବାଲ୍ୟବିଧବା ଦୁଲା ଦେହରେ ଯୌବନ ଢ଼େଉ ଭାଂଗିଲାବେଳେ, କେତେକ ସଂଭ୍ରାନ୍ତ କାମୁକ ଯୁବକଙ୍କ ଲୋଲୁପ ଦୃଷ୍ଟିର ଶିକାର ହେଲା । ମାତ୍ର ସାମାଜିକ କଟକଣାବଶତଃ ତା'ର ରୌଦ୍ରରୂପ ସମସ୍ତଙ୍କୁ ଏଡ଼େଇ ଦେଲା । ଶେଷରେ ଦେହର ଦାହରେ ବଶବର୍ତ୍ତୀ ହୋଇ ବିହାରୀ ଯୁବକ ଦ୍ୱାରା ଗର୍ଭବତୀ ଦୁଲା ତା'ର ଦେହଜ ସନ୍ତାନକୁ ପୁରୀରେ ଅନାଥାଶ୍ରମରେ ଛାଡ଼ି ଦେଲା, ନିଜର ଯାବତୀୟ ମମତାକୁ ଉପେକ୍ଷାକରି । ମାତ୍ର ସମାଜ ବାଛନ୍ଦ ହୋଇଥିବା ଦୁଲା ଜୀବନରେ ଘନେଇ ଆସିଲା ଦୁଃଖଦ ପରିଣତି । ଦୁଲାପ୍ରତି କାମୁକତା, ବ୍ୟଭିଚାର ତା'ର ଦେହର ଦାହ କ'ଣ ତା'ର ଦୋଷ ? ନାରୀ ଲୁବ୍ଧମାନଙ୍କ ଲୋଲୁପତା ସାମାଜିକ କଟକଣା ପ୍ରଭୃତି ପ୍ରତି ସଂପୃକ୍ତ ଗଳ୍ପରେ, ଲେଖକୀୟ କଟାକ୍ଷ ବରଂ ତୀବ୍ର । ଦୁଲା ଭଳି ଅନ୍ୟ ଏକ ବିଧବା 'ନିୟତିର କ୍ରୀଡ଼ା' ଗଳ୍ପର ସୁରମା; ଯେ ଯୌବନର ଉଦ୍ଦାମ ଉନ୍ମାଦନାରେ ସୁକୁମାର ଦ୍ୱାରା ଗର୍ଭବତୀ ହୋଇ ଜନ୍ମିତ ସନ୍ତାନକୁ ଲୋକାପବାଦ ଭୟରେ ଜୀବନ୍ତ ସମାଧି ଦେବା ପରେ, ସୁକୁମାର ଦ୍ୱାରା ପରିତ୍ୟକ୍ତ ହୋଇ ମାନସିକ ଭାରସାମ୍ୟ ହରାଇ ପାଗଳୀ ହୋଇଯାଏ । ବିଧବା ସମସ୍ୟା ଆଧାରିତ ଗଳ୍ପତ୍ରୟ ମଧ୍ୟରୁ 'ରୁଦ୍ରାକ୍ଷ'ର 'ଦୁଲା', 'ନିୟତିର କ୍ରୀଡ଼ା'ର ସୁରମା ଚରିତ୍ର ଦ୍ୱୟ ପ୍ରତି ପାଠକୀୟ ସଂବେଦନା ସଂଚାରିତ ହୋଇଥିଲେ ମଧ୍ୟ, ସମପର୍ଯ୍ୟାୟର ଲାଞ୍ଛିତା ଚରିତ୍ର 'ଆମ୍ବକାହାଣୀ'ର ସୁରମା ପ୍ରତି ନବୀନର ମାନବିକତା ବୋଧ ଅନ୍ୟତ୍ର କେଉଁଠି ନାହିଁ । ସୁତରାଂ 'ଆମ୍ବକାହାଣୀ'ରେ ଧ୍ୱନିତ ଲେଖକୀୟ ବୈପ୍ଳବିକ ଆହ୍ୱାନ, ସଂପୃକ୍ତ ଗଳ୍ପ ଦ୍ୱୟରେ ନିଷ୍ପ୍ରଭ ହୋଇ ଉଠିଥିବା ଲକ୍ଷ୍ୟକରାଯାଏ ।

ଲେଖକୀୟ ସଂବେଦନାବୋଧ, ସମାଜର ବିଭିନ୍ନ ବର୍ଗକୁ ସଂପ୍ରସାରିତ । ସମାଜରେ ଆର୍ଥନୀତିକ ଅସମତା, ଧନୀ-ଦରିଦ୍ର, ଶାସକ ଶୋଷିତ, ମାଲିକ - ମୂଲିଆ, ଉପଭୋଗୀ ଓ ଶ୍ରମଜୀବୀ ଗୋଷ୍ଠୀ ଭିତରେ ରହିଥିବା ଅସମାନତା ତାଙ୍କର ଅନେକ ଗଳ୍ପରେ ବ୍ୟଂଜିତ । ତାଙ୍କର ଅନେକ ଗଳ୍ପ ଆର୍ଥନୀତିକ ଭିତ୍ତିଭୂମି ଉପରେ ଆଧାରିତ । ଦରିଦ୍ରର ଅସହାୟତା, ଶୋଷକର ପୈଶାଚିକ ମନୋଭାବ, ଅସହାୟର ଯନ୍ତ୍ରଣାଦଗ୍ଧ ହୃଦୟର ଅଶ୍ଳୀଳ ଅଭିଳିପି ଏବଂ ତାତ୍‌କାଳିକ ସାମାଜିକ ଅବ୍ୟବସ୍ଥାକୁ ସେ ରୂପାୟନ କରିବାରେ ସାଫଲ୍ୟ ପ୍ରଦର୍ଶନ କରିଛନ୍ତି ।

ମାନବ ସହିତ ମାନବେତରଙ୍କ ପ୍ରତି ଶ୍ରଦ୍ଧା-ସହାନୁଭୂତିର ସ୍ୱଷ୍ଟ ଆଲେଖ୍ୟ ହେଉଛି କଥାକାର କାଳିନ୍ଦୀଚରଣଙ୍କ କଥା-କାରିଗରୀର ଅନ୍ୟତମ ବୈଶିଷ୍ଟ୍ୟ । ତାଙ୍କର ଏତାଦୃଶ

ଅନୁଭବର ଶାଣିତ ଅଭିବ୍ୟକ୍ତି ହେଉଛି 'ପଙ୍ଗୁ' ଏବଂ 'ମାଂସର ବିଳାପ' (୧୯୨୬) 'ମାଂସର ବିଳାପ' ତାଙ୍କର ଏକ ବହୁଚର୍ଚ୍ଚିତ ଗଳ୍ପ । ନିଜ ଜୀବନରେ ଅନୁଭୂତ ସତ୍ୟବୋଧକୁ ସଂପୃକ୍ତ ଗଳ୍ପରେ ସେ ଜୀବନ୍ୟାସ ଦେଇଛନ୍ତି । ସଂପୃକ୍ତ ଗଳ୍ପରେ ଜମିଦାରଙ୍କ ପାଳିତା ହରିଣ ଶିଶୁ ଜଲି ଏବଂ ସାହେବଙ୍କ ପାଳିତ କୁକୁର ଡୋରା ଭିତରେ ବନ୍ଧୁତ୍ୱ ଦେଖାଦେଇଛି । ଡୋରା ମାଂସାଶୀ, ଭୋଜକ ସେ, ଜଲି ଭୋଜ୍ୟ । ଅଥଚ ଉଭୟଙ୍କର ଆତ୍ମୀୟତା କିନ୍ତୁ ଅଦ୍ଭୁତ । ପଶୁ ଜଗତର ଏ ଆତ୍ମୀୟତା ମାନବଠାରେ ଅନୁପସ୍ଥିତ । ଶିକାରପ୍ରିୟ ସାହେବ ଶିକାର ନ ପାଇ ନିରାଶ ହେବା, ଜମିଦାରଙ୍କ ଏଇ ନିରୀହ ହରିଣଶାବକ ଜଲିକୁ ବଧ କରିବାର ପ୍ରସ୍ତାବ ଦେବା, ଜମିଦାର ଭୟ ବିଜଡ଼ିତ ହୋଇ ଏ ପ୍ରସ୍ତାବକୁ ସମର୍ଥନ କରିବା, ବଧ୍ୟ ଭୂମିରେ ସାହେବଙ୍କ ହାତରେ ଶାଣିତ ଛୁରିକା ଦେଖି ଡୋରା ଜଲିବଧର ସଂଭାବନା ବୁଝି ହତ୍ୟାକାରୀକୁ ଆକ୍ରମଣ କରିବା, ଶେଷରେ ବଳ ପ୍ରୟୋଗ କରି ଡୋରାକୁ ଶକ୍ତ ବନ୍ଧନରେ ଆବଦ୍ଧ କରାଯିବା ସତ୍ତ୍ୱେ ଡୋରାର ଭୀତ ବ୍ୟାକୁଳତା ପ୍ରଭୃତି ଘଟଣାବଳୀ ହୋଇଛି ବେଶ ହୃଦୟସ୍ପର୍ଶୀ । ଡ଼ୋରା ପଶୁ ହେଲେ ବି, ତା' ଭିତରେ ରହିଛି ମାନବୀୟ ସହୃଦୟତା, ମାତ୍ର ସାହେବ ମଣିଷ ହେଲେବି, ଭିତରେ ଭରି ରହିଛି ପୈଶାଚିକ ବୀଭତ୍ସତା । ତଥାପି ଡୋରାର ବିକଳ କ୍ରନ୍ଦନ ଗଳ୍ପରେ ଭରିଦେଇଛି ମର୍ମଭେଦୀ କାରୁଣ୍ୟ । ଲେଖକଙ୍କ ଭାଷାରେ - ''ତାହାରି ମଧ୍ୟରେ ସେ ଶୁଣି ପାରିଲେ ଗୋଟାଏ ରୁଦ୍ଧ କଣ୍ଠର ବିଳାପ, ସେ କେବଳ କର୍ଣ୍ଣରେ ନୁହେଁ, ମର୍ମ ସ୍ଥଳୀରେ ପ୍ରବେଶ କଲା ।'' ଜମିଦାର ଗଭୀର ଅନୁତାପ କଲେ ଏବଂ ସେ କୁକୁର ଡୋରାଠାରୁ ତାଙ୍କ ମଣିଷପଣ କେତେ ନିମ୍ନମାନର ତାହା ସେ ହୃଦୟଙ୍ଗମ କଲେ ।

ମାନବେତର ଚରିତ୍ର ପ୍ରତି ଗଭୀର ମମତାରୁ ସୃଷ୍ଟ ସହୃଦୟତା ହିଁ ସଂପୃକ୍ତ ଗଳ୍ପର ଅନ୍ତର୍ବାଣୀ । 'ମାଂସର ବିଳାପ' ଗଳ୍ପରେ ଇଂରେଜୀ ସାହେବଙ୍କ ସହିତ ଦେଶୀୟ ଜମିଦାର ମାନଙ୍କ ବନ୍ଧୁତା, ଡୋରା ଓ ଜଲି ଚରିତ୍ର ମାଧ୍ୟମରେ ଦେଶୀ ବିଦେଶୀଙ୍କର ସହାବସ୍ଥାନ ବର୍ଣ୍ଣନା କରାଯିବା ସଙ୍ଗେ ସଙ୍ଗେ ହିଂସା ଉପରେ ଅହିଂସାର, ନିଷ୍ଠୁରତା ଉପରେ କରୁଣାର ବିଜୟ ଘୋଷଣା କରାଯାଇଛି । ପଶୁତ୍ୱ ଓ ସୟତାନୀତ୍ୱର ଆବରଣ ଭିତରୁ ମାନବତ୍ୱର ମଧୁମୟ ଭାବ ଉକୁଟି ଉଠିଛି ।'' (୪) ମାନବିକ ସଂବେଦନାର ଅନ୍ୟତମ ଭାବପ୍ରବଣ ରୂପ ହେଉଛି 'ପଙ୍ଗୁ'; ଗୋଟାଏ ନୈଷ୍ଠିକ ବ୍ରାହ୍ମଣ ପରିବାରର ଶେଷ ସନ୍ତାନ ଏଇ ପଙ୍ଗୁ ସବୁଦୃଷ୍ଟିରୁ ଅକ୍ଷମ, ସବୁରି ଘୃଣାର ପାତ୍ର, ସମଗ୍ର ପରିବାରରେ ଉପେକ୍ଷିତ ଏବଂ ଅନାକାଂକ୍ଷିତ ଅଶୁଭ ସଂକେତ ସେ । କଣାକୁତୀ ଓ ଛୋଟୀ ବିଲେଇ ସହିତ ତା'ର ବନ୍ଧୁତ୍ୱ, ଭାବଗତ ବିନିମୟ ଏବଂ ଆତ୍ମୀୟତା । ଅଥଚ ସମଗ୍ର ରକ୍ଷଣଶୀଳ ବ୍ରାହ୍ମଣ ପରିବାରଟିରେ ଏକମାତ୍ର କନିଷ୍ଠା ବଧୂଟିର ମମତାସିକ୍ତ ଅନ୍ତର, ପଙ୍ଗୁ ପ୍ରତି ଅତ୍ୟନ୍ତ ସଂବେଦନଶୀଳ । ଆବାଲ୍ୟରୁ ମାତୃହରା ଏଇ କୋମଳମତୀ ନାରୀଟି ପ୍ରତି ପରିବାରର ସବୁରି କଠୋର ଅନୁଶାସନ ଭିତରେ ସନ୍ତର୍ପଣ

୪ ଡଃ. ବୈଷ୍ଣବଚରଣ ସାମଲ – ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ – ୧୯୯୦, ପୃ - ୧୪୮

ଏବଂ ସନ୍ତୁଳନ ମଧ୍ୟରେ କାଳଯାପନ କରିବାକୁ ପଡ଼ିଛି । ପଙ୍ଗୁ ଶେଷରେ ଲାଞ୍ଛିତ ଓ ଘରୁ ବହିଷ୍କୃତ, କୁକୁର ଓ ବିଲେଇଙ୍କୁ ଧରି ସେ ପଳାୟନ କରିଛି, ଗୋଟାଏ ଗଛମୂଳେ ନେଇଛି ଆଶ୍ରା, ସାନ ବୋହୂଟି ପଙ୍ଗୁକୁ ଅନୁସରଣ କରି, ସେଇଠି ରୋଷେଇ କରିଛି । ଅନନ୍ୟୋପାୟ ହୋଇ ରକ୍ଷଣଶୀଳ ବ୍ରାହ୍ମଣ ପରିବାରଟି ଅଗତ୍ୟା ସାନବୋହୂକୁ ଫେରାଇ ଆଣିବାକୁ ଯାଇ ପଙ୍ଗୁକୁ ମଧ୍ୟ ଫେରାଇ ଆଣିଛନ୍ତି । ଗୋଟାଏ ବୁଡନ୍ତ ଚଢ଼େଇର ଜୀବନରକ୍ଷା କରିବାକୁ ଯାଇ ପଙ୍ଗୁ ବରଣ କରିଛି ଅକୁଣ୍ଠ ସଲିଳ ସମାଧି । ଗଳ୍ପର ପରିଣତି କାରୁଣ୍ୟଭରା, ସାନ ବୋହୂଟି, ଚରିତ୍ରଟି ନାରୀହୃଦୟର କୋମଳତା, ଦୟା, ତ୍ୟାଗ ଓ ମମତାସିକ୍ତ ସହୃଦୟତାର ଦିବ୍ୟ ଦୀପ୍ତି । ମାନବର ନିଷ୍ଠୁରତା, ସ୍ୱାର୍ଥ ସହିତ ରକ୍ଷଣଶୀଳ ବ୍ରାହ୍ମଣ ପରିବାରର ବୃଥା ଅହଂକାର ଏବଂ ମାନବେତର ଚରିତ୍ର ଭିତରେ ସଂଚିତ କରୁଣା ଓ ମାନବିକତାକୁ ଲେଖକ ଏଠାରେ ଦୃଢ଼ତାର ସହିତ ପ୍ରତିଷ୍ଠା ଦେଇଛନ୍ତି ।

ଅଧିକାଂଶ ଗଳ୍ପରେ ମାନବିକ ମୂଲ୍ୟବୋଧକୁ ପ୍ରତିଷ୍ଠା କରିବା ନିମିତ୍ତ କାଳିନ୍ଦୀଚରଣଙ୍କ ଦୃଷ୍ଟିଭଂଗୀଟି ଅତି ସ୍ପଷ୍ଟ । ଇତର ଶ୍ରେଣୀର ଚରିତ୍ରମାନଙ୍କ ଭିତରେ ସେ ଭରି ଦେଇଛନ୍ତି ଉଚ୍ଚ ମାନବୀୟ ଆବେଦନ । 'ସାପୁଆ' ଗଳ୍ପର ସାପୁଆକେଳା ମଦନ ବେହେରା, ମୂଷିକ ଓ ସର୍ପମାନଙ୍କ ସହିତ ସଂପୃକ୍ତ ହୋଇଥିଲେ ମଧ୍ୟ ସ୍ୱଜାତି ପ୍ରତି ମମତା ଓ ସ୍ୱାଭିମାନର ପରିଚୟ ବାଢ଼ିଛନ୍ତି । ଜମିଦାରୀ ଶୋଷଣରୁ ତା'ର ବନ୍ଧୁ ବନାକୁ ରକ୍ଷା କରିବା, ସ୍ୱଜାତିମାନଙ୍କୁ କାରାମୁକ୍ତ କରିବାର ପ୍ରୟାସଜନିତ ତା'ର ତ୍ୟାଗ ଓ ନିଷ୍ଠା ବରଂ ମହନୀୟ । ସହାନୁଭୂତିଶୀଳ ମାନବିକ ସହୃଦୟତାର ମର୍ମବାଣୀର ଦୃଢ଼ ଉଚ୍ଚାରଣ ହେଉଛି ଗଳ୍ପ 'ମଣିମା' (୧୯୨୮) ଯେଉଁଥିରେ ପରମ୍ପରାବାଦୀ ସାମନ୍ତୀୟ ମାନବିକତା ଓ ନୂତନ ସାମନ୍ତବାଦୀ ଆଭିମୁଖ୍ୟର ନୃଶଂସତା ଜନିତ ସଂଘର୍ଷ ଓ ମାନବିକତାର ବିଜୟ ହୋଇଛି ଉଦ୍‌ଘୋଷିତ । ନୂତନ ଜମିଦାର ଗୋଷ୍ଠୀର ଅମାନବିକ ଅତ୍ୟାଚାର ଏବଂ ପରମ୍ପରାବାଦୀ ସାମନ୍ତଙ୍କର ମାନବିକତାବୋଧକୁ କଥାକାର ଯଥାକ୍ରମେ ଶ୍ୟାମବନ୍ଧୁ ଓ ପ୍ରେମାନନ୍ଦ ଚରିତ୍ର ମାଧ୍ୟମରେ ପ୍ରଦର୍ଶନ କରିଛନ୍ତି । ବାଲୁତ ବିଶିକେଶନ ପ୍ରତି ପ୍ରେମାନନ୍ଦଙ୍କ ସହାନୁଭୂତି ତଥା ତାକୁ ଉତ୍ତରାଧିକାର ପ୍ରଦାନରେ ଉଦାହରଣ ଗଳ୍ପଟିର ଆଦର୍ଶ । ଅନୁରୂପ ଭାବରେ 'ହୃଦୟ' (୧୯୨୩) ଗଳ୍ପରେ ସ୍ଥାନ-କାଳ-ପାତ୍ର ଭେଦରେ ବନ୍ଧୁତ୍ୱର ଦୃଢ଼ତା କିପରି ପରିସ୍ଫୁଟ, ତାହା ହୃଦୟ ଚରିତ୍ର ମାଧ୍ୟମରେ ପ୍ରକାଶିତ । ପିତୃହରା ହୃଦୟ ବିଭିନ୍ନ ପ୍ରତିକୂଳ ପରିସ୍ଥିତି ସତ୍ତ୍ୱେ ସ୍ୱାଭିମାନ ନ ହରାଇ, ଉଚ୍ଚଶିକ୍ଷାପ୍ରାପ୍ତ ହୋଇ ଉଚ୍ଚପଦବୀରେ ଅଧିଷ୍ଠିତ ହେବା, ଆତ୍ମସଚେତନତା ଓ ଆତ୍ମନିର୍ଭରଶୀଳତାକୁ ପ୍ରୋତ୍ସାହିତ କରିଥାଏ ।

କାଳିନ୍ଦୀଙ୍କ କଥାକାରିତା ଭିତରେ କେବଳ ସାମାଜିକ ବାସ୍ତବତା ସ୍ଥାନ ପାଇନାହିଁ; ବରଂ ସାମାଜିକ ଅଙ୍ଗୀକାରବୋଧର ଦୃପ୍ତ ଇସ୍ତାହାର ପ୍ରକାଶ ପାଇଛି । ମାନବର ସହୃଦୟତା ପ୍ରତି ଯେମିତି ମର୍ଯ୍ୟାଦା ପ୍ରକଟ ହୋଇଛି, ସେମିତି ମାନବୀୟ ନିଷ୍ଠୁରତା ପ୍ରତି ରହିଛି କଟାକ୍ଷ ।

ତେବେ ମାନବୀୟ ପ୍ରେମ-ପ୍ରୀତି-ପ୍ରଣୟ, ତ୍ୟାଗ- ବାତ୍ସଲ୍ୟ, ସ୍ନେହ-ମମତାକୁ ସେ କେଉଁଠି ହେଲେ ଅସମ୍ମାନ କରିନାହାନ୍ତି । ତେଣୁ ତାଙ୍କ ଗଳ୍ପରେ ପ୍ରକାଶ ପାଇଛି ପ୍ରେମ ଓ ପ୍ରଣୟ ସଂଜାତ ତୀବ୍ର ଅନୁଭବ । 'ସାଗରିକା', 'ବିଟ୍‌ଘର ଓ ରେଳଗାଡ଼ି' ଇତ୍ୟାଦି ସୃଷ୍ଟି ଏହାର ସାର୍ଥକ ଦୃଷ୍ଟାନ୍ତ । ଏଥିରେ ପ୍ରକୃତି ପ୍ରେମ ମାନବ ପ୍ରେମଠାରୁ ଊର୍ଦ୍ଧ୍ୱରେ । ସାଗର ବେଳାରେ ଉନ୍ମୁକ୍ତ ଭାବରେ ବିଚରଣ କରୁଥିବା ପ୍ରକୃତି କନ୍ୟା ସାଗରିକା ଦେହରେ ଭରା ଯୌବନ; ଅଥଚ ତା' ଭିତରେ ଦେହ ଭୋଗର ତୃଷ୍ଣା ନାହିଁ । ତା'ର ରୂପଲାବଣ୍ୟରେ ପ୍ରଲୁବ୍ଧ ସୌଦାଗର ସନ୍ତାନ ତାକୁ ପ୍ରେମ କରେ, ଉଆସର ପ୍ରାଚୁର୍ଯ୍ୟ-ବିଳାସ ଭିତରେ ସଯତ୍ନ ରଖିବାର ପ୍ରୟାସ କରେ । ଅଥଚ ପ୍ରକୃତିର ଉନ୍ମୁକ୍ତ ଅଙ୍ଗନରେ ବିଚରଣ କରୁଥିବା ସାଗରିକା, ଏ ସମସ୍ତ ବିଳାସକୁ ତୁଚ୍ଛ କରି ପୁନର୍ବାର ପ୍ରକୃତି କୋଳକୁ କରେ ପ୍ରତ୍ୟାବର୍ତ୍ତନ । ସୌଦାଗର ସନ୍ତାନ ମଧ ତାକୁ ବାରଣ କରେନା । ସଂପୃକ୍ତ ଗଳ୍ପରେ ଉପଭୋଗଠାରୁ ଉପାସନା, ମାନବଠାରୁ ପ୍ରକୃତି ପ୍ରେମର ମହାନତା ହୋଇଛି ଉଦ୍‌ଘୋଷିତ ।

ପ୍ରେମର ଅନ୍ୟ ଏକ ସଂଯତ ପ୍ରବାହ ହେଉଛି 'ବିଟ୍‌ଘର ଓ ରେଳଗାଡ଼ି' (୧୯୩୩) ଗଦେଇ ମାଝିର ଯୌବନପୁଷ୍ଟା ଜହ୍ନପ୍ରତି ଫଳ ବ୍ୟବସାୟୀ ଦାମର ନିବିଡ଼ ଭଲପାଇବା ଏଥିରେ ଚିତ୍ରିତ । ଜହ୍ନର ରୂପଲାବଣ୍ୟରେ ପ୍ରଲୁବ୍ଧ ଦାମ ପ୍ରତିଦିନ ଫଳ ପୁଡ଼ା ପକେଇ ଦେଇଯାଏ । ଜହ୍ନ, ଦାମକୁ ଦେଖିନାଇଁ; ସେଦିନ ଶାଢ଼ୀ ଓ ଫଳଧରି ଆସୁଥିବା ଦାମ ଜହ୍ନଚିନ୍ତାରେ ଏତେ ମଗ୍ନ ଥିଲା, ତା'ର ଅନ୍ୟମନସ୍କତାରୁ ଟ୍ରେନ୍‌ରୁ ଖସିପଡ଼ି ରକ୍ତାକ୍ତ ହୋଇଛି, ଜହ୍ନର ପିତାଙ୍କ ଡାକରା ପାଇ, ଜହ୍ନ ଭିତରକୁ ଯାଇଛି । ଅନ୍ତତଃ ଦାମ ପ୍ରତି ପ୍ରେମ ପ୍ରକାଶ କରିବା ଦୂରେ ଥାଉ, ତା'ର ଶେଷ ଦର୍ଶନ କରିବା ଭଳି ସୁଯୋଗ ତା' ଜୀବନରେ ଘଟିନାହିଁ । ବିଟ୍ ଘର ପ୍ରତ୍ୟାବର୍ତ୍ତିତା ଜହ୍ନର ହୃଦୟ ଯେମିତି ଗୋଟାଏ ଯନ୍ତ୍ରଣାର ବିଟ୍‌ଘର ପାଲଟିଗଲା । ଅନାଘ୍ରାତ ଏଇ ପ୍ରେମର ପରିଣତିରେ ଭରି ରହିଛି କାରୁଣ୍ୟ । ଲେଖକଙ୍କ 'ନିଶିଥିନୀ' ଗଳ୍ପରେ ମଧ ରହିଛି ଶାଶ୍ୱତ ପ୍ରେମର ଦୀପ୍ତି । ପ୍ରେମ ପ୍ରତି ଲେଖକଙ୍କ ଆଦର୍ଶ ଦୃଷ୍ଟିଭଙ୍ଗୀଟି ସମ୍ପୃକ୍ତ ଗଳ୍ପରେ ହୋଇଛି ସାର୍ଥକ ।

ଦାମ୍ପତ୍ୟ ପ୍ରେମର ସ୍ମୃତି ତଥା ବାତ୍ସଲ୍ୟମମତା ମେଦୁରିତ ସମର୍ଥ ସୃଷ୍ଟିରୂପେ 'ଡ଼ାଆଣୀବୁଢ଼ୀ' ଗଳ୍ପଟି ହୋଇଛି ଚମତ୍କାର । ଗାଁ ମୁଣ୍ଡ ଏକଲା ଘରେ ଏକାକିନୀ ବିଧବାଟି ନୈଶ ଅନ୍ଧକାରରେ ତା'ର ସ୍ୱାମୀ ସୋହାଗର ଅଳଂକାରଗୁଡ଼ିକ ଦେଖେ, ପୁଣି ଗାତଖୋଳି ପୋତିଦିଏ । ଗ୍ରାମ୍ୟ ଚୌକିଦାର ଭାନୁମଳିକ ଦ୍ୱାରା ଏଇ ଅଳଂକାର ଅପହରଣ ପରେ ବୁଢ଼ୀର ବାଚାଳତା ବୃଦ୍ଧି, ଇତସ୍ତତଃ ଭ୍ରମଣ, ଏକ ସଦ୍ୟଜାତ ସନ୍ତାନ ପ୍ରାପ୍ତି ଓ ତା' ପ୍ରତି ବାତ୍ସଲ୍ୟ, ଅପୁତ୍ରକ ଜମିଦାର ତା'ର ସ୍ନେହର ସନ୍ତକଟିକୁ ନେଇ ପୁତ୍ର ରୂପେ ପାଳନ କରିବା, ଭାନୁ ମଳିକ ଦ୍ୱାରା ଅପହୃତ ଅଳଂକାରର ପୁନଃପ୍ରାପ୍ତି, ସେଇ ଅଳଂକାର ଦ୍ୱାରା ଆପଣାକୁ ସୁସଜ୍ଜିତା କରାଇ ସ୍ୱାମୀର ସ୍ମୃତି ଚାରଣ କରିବା ପ୍ରଭୃତି ଅନେକ ଘାଟନିକ ଚମତ୍କାରିତା

ଭିତରେ ନାରୀ ହୃଦୟର ପ୍ରେମ, ବାତ୍ସଲ୍ୟ ପ୍ରଭୃତିକୁ ଲେଖକ କଳାତ୍ମକ ରୀତିରେ ଉତ୍ତୀର୍ଣ୍ଣ କରାଇଛନ୍ତି । ସଂପୃକ୍ତ ଗଳ୍ପଟିର ପଲ୍ଲବନ ହିଁ 'ମୁକ୍ତାଗଡ଼ର କ୍ଷୁଧା' ଉପନ୍ୟାସ ବୋଲି ଆଲୋଚକ ମାନେ ମତ ପ୍ରକାଶ କରନ୍ତି । *

ଲେଖକଙ୍କ ପ୍ରେମ ଚେତନା ବ୍ୟଥା - ବ୍ୟର୍ଥତା ଅଶ୍ରୁ-କାରୁଣ୍ୟ, ଆଶା-ନୈରାଶ୍ୟର ଛାୟାବାଜି ଚିତ୍ର ଭିତରେ ହୋଇଛି ବିକଶିତ । 'ସାବିତ୍ରୀର ଦୁଃଖ' , 'ପ୍ରେମିକ', 'ରଶ୍ମିରେଖା' ପ୍ରଭୃତିରେ ପ୍ରେମର ମହନୀୟତା ଓ 'ଜୟହିନ୍ଦ୍' ରେ ଦେଶପ୍ରୀତିର ମାଦକତା ବେଶ ସଫଳ । 'ପ୍ରେମିକା'ରେ ଶିଳ୍ପପ୍ରତି ଆନ୍ତରିକତା, 'ହୃଦୟ' ରେ ବନ୍ଧୁପ୍ରୀତିର ପ୍ରଗାଢ଼ତା, 'ଉପହାର'ରେ ଭ୍ରାତୃପ୍ରେମ ଓ ବାତ୍ସଲ୍ୟ ପ୍ରେମର ମିଶ୍ରିତ ପ୍ରତିକ୍ରିୟା, 'ମାଂସର ବିଳାପ', 'ପଙ୍ଗୁ', 'ଆତ୍ମହତ୍ୟା', 'ପାଷାଣର ପ୍ରତୀକ୍ଷା' ପ୍ରଭୃତିରେ ମାନବିକ ପ୍ରେମର ବୈଚିତ୍ର୍ୟ ହୋଇଛି ରୂପାୟିତ । ଆପଣା ଜୀବନର କେତୋଟି ଅଭିବ୍ୟକ୍ତିକୁ ଯଥାସମ୍ଭବ କଳା-କାରିଗରୀ ସମନ୍ୱିତ କରିବାରେ ତାଙ୍କ ଦକ୍ଷତା ବରଂ ପ୍ରମାଣିତ । ** ପ୍ରଫୁଲ୍ଲ ବସନ୍ତଙ୍କ ଭିତରେ ରହିଥିବା ଅନାବିଳ ଭ୍ରାତୃପ୍ରେମରେ ଉଜ୍ଜ୍ୱଳ ହୋଇଥିବା ଗଳ୍ପଟି ଆଦର୍ଶ ସଂସ୍ଥାପନରେ ଅଗ୍ରଣୀ ।

ଲେଖକଙ୍କ ସାଂପ୍ରଦାୟିକ ସଂପ୍ରୀତିରେ ସମୁଜ୍ଜ୍ୱଳ ହୋଇଛି ଗଳ୍ପ 'ପୁନଶ୍ଚ' । ଭାରତରେ ହିନ୍ଦୁ ମୁସଲମାନଙ୍କ ସାଂପ୍ରଦାୟିକ ଦଙ୍ଗା ଲାଗିଥିବା ବେଳେ ପ୍ରବାସୀ ସିନ୍ଧୁଆ ପାଖକୁ ସିନ୍ଧୁଆ ମାଆର ଅବଧାନଙ୍କ ମାଧମରେ ପତ୍ର ଲିଖନ କରାଇବା, ମୁସଲମାନ ଯୁବକ କରିମ୍ ଖାଁର ପିତା କରିମ୍ ସଂପର୍କରେ ଏଇ ଚିଠିରେ କିଛି ସଂବାଦ ଦେବାକୁ ଅବଧାନଙ୍କୁ ଅନୁରୋଧ କରିବା ଭିତରେ ଗଳ୍ପର ଘାଟନିକ ଚମକ, ପରିଣତିରେ ହୋଇଛି କରୁଣ । ସିନ୍ଧୁଆକୁ ଦେଖିବାକୁ ଯାଇଥିବା କରିମ୍‌କୁ ହିନ୍ଦୁମାନଙ୍କ ଆକ୍ରମଣର ଶିକାର ହୋଇ ମୃତ୍ୟୁବରଣ କରିବାକୁ ପଡ଼ିଛି । ହିନ୍ଦୁମୁସଲମାନଙ୍କ ଭିତରେ ରହିଥିବା ସାଂପ୍ରଦାୟିକ ସଂପ୍ରୀତିକୁ ପ୍ରୋତ୍ସାହିତ କରିବାରେ ଗଳ୍ପଟିର ଭୂମିକା ଗୁରୁତ୍ୱପୂର୍ଣ୍ଣ ମନେହୁଏ ।

ମାନବିକ ଦୁଃଖ-ଦୈନ୍ୟ, କାତରତା, ଦୟନୀୟତା, ଅଶ୍ରୁ-ଆବେଗକୁ ଜୀବନ୍ୟାସ କରିବାରେ କାଳିନ୍ଦୀଚରଣ ଜଣେ ପ୍ରବୀଣ ଶିଳ୍ପୀ । ପ୍ରେମ, ପ୍ରଣୟ, ବାତ୍ସଲ୍ୟ ମମତାସିକ୍ତ ତାଙ୍କର ପ୍ରତ୍ୟେକଟି ଗଳ୍ପ ନୂତନ ଆଦର୍ଶ ପ୍ରତିଷ୍ଠାରେ ଆଶାୟୀ । 'ଶେଷ ସମ୍ବଳ' (୧୯୨୭) ପ୍ରଭୃତି କେତେକ ଗଳ୍ପରେ ଏକମାତ୍ର ନାତୁଣୀ ପ୍ରତି ପତ୍ନୀ-ପୁତ୍ର-ପୁତ୍ରବଧୂହରା ମୃତ୍ୟୁମୁଖୀ ବୃଦ୍ଧର ଆସକ୍ତି ଓ ମମତା ତାଙ୍କ ଗଳ୍ପମନସ୍କତାର ଏକ ଏକ ସଫଳ ଦୃଷ୍ଟାନ୍ତ । ତାଙ୍କ ଗଳ୍ପର ବିଭିନ୍ନ ଚରିତ୍ରବୃତ୍ତରେ 'ଶେଷସମ୍ବଳ'ର ବୃଦ୍ଧ ଗଣଦାସ ଏକ ଭିନ୍ନ ଶ୍ରେଣୀର ଚରିତ୍ର ।

* ଅଙ୍ଗେ ଯାହା ନିଭାଇଛି, ପୃ - ୯୩

** ଡଃ. ବୈଷ୍ଣବଚରଣ ସାମଲ – ଓଡ଼ିଆ କ୍ଷୁଦ୍ରଗଳ୍ପର ଇତିହାସ – ୨ୟ ଭାଗ – ୧୯୯୦ – ପୃ - ୧୫୮

ମରଣରେ ସେ ଭାଙ୍ଗିପଡ଼ିନାହିଁ, ବରଂ ଦୁଃଖ ଭିତରେ ଜୀବନ ଜୀଇବାର ସୁଦୃଢ଼ ପ୍ରୟାସଟି ସହିତ ଏଇ ଚରିତ୍ରର ମାନସିକତା ସଂଯୁକ୍ତ ।

କାଳିନ୍ଦୀ କଥକତାର ଦୃଷ୍ଟିଭଙ୍ଗୀଟି ଗାନ୍ଧୀବାଦୀ ଦୃଷ୍ଟିଦର୍ଶନ ଦ୍ୱାରା ଆଚ୍ଛନ୍ନ । ପ୍ରେମ ମଧ୍ୟ ଦେଇ ସେ ଜୀବନକୁ ଆବିଷ୍କାର କରିଛନ୍ତି, ମାନବୀୟ ସଂବେଦନା ଭିତର ଦେଇ ସେ ମଣିଷକୁ ପରଖିଛନ୍ତି, ଯେଉଁଠାରେ ଅମାନବୀୟ ଆଚରଣ ଦେଖିଛନ୍ତି, ତାକୁ ସେ ତୀବ୍ର ଭାବରେ ସମାଲୋଚନା କରିଛନ୍ତି, ରୂଢ଼ିବାଦୀ ସମାଜର କୁସଂସ୍କାର ପ୍ରତି ଅଙ୍ଗୁଳି ନିର୍ଦ୍ଦେଶ କରିଛନ୍ତି, ଅସହାୟ ଅନୁନ୍ନତବର୍ଗଙ୍କ ପ୍ରତି ସହାନୁଭୂତିଶୀଳ ହୋଇଛନ୍ତି, ସୁବିଧାବାଦୀ ସ୍ୱାର୍ଥପର ଗୋଷ୍ଠୀଙ୍କ ପ୍ରତି କଠୋରତା ଅବଲମ୍ବନ କରିଛନ୍ତି, ଅମାନବିକତା ଉପରେ ମାନବିକତାର ବିଜୟ ପ୍ରଦର୍ଶନ କରିଛନ୍ତି । ସମାଜବାଦୀ ବାସ୍ତବତା, ଶୋଷଣମୁକ୍ତ ସମତୁଲ ସମାଜ ଗଠନ ନିମିତ୍ତ ତାଙ୍କର ସଂସ୍କାରବାଦୀ ଆଭିମୁଖ୍ୟକୁ ସେ ସ୍ପଷ୍ଟ ଅଥଚ ଦୃଢ଼ ଭାବରେ ପ୍ରକାଶ କରିଛନ୍ତି ।

କାଳିନ୍ଦୀଙ୍କ କଥା-କାରିଗରୀର ଶୈଳ୍ପିକ ଦୃଷ୍ଟିଭଙ୍ଗୀଟି ଚମତ୍କାର । ତାଙ୍କର ପ୍ରତିଟି ଗଳ୍ପ କାହାଣୀଧର୍ମୀ, ବିଶେଷ ଘଟଣାଂଶ ଗୁଡ଼ିକ ଏଥିରେ ନାଟକୀୟ ଭଙ୍ଗୀରେ ପରିବେଷିତ । ବାହ୍ୟ ଓ ଆନ୍ତଃବାସ୍ତବତା ସୁରକ୍ଷାରେ ସମାନୁପାତିକତା ଓ ଉତ୍କଣ୍ଠା ସୃଜନରେ ସେ ଧୂରୀଣ । ଆଦର୍ଶ ବୋଧ ସୃଷ୍ଟି, ପରିଣତିରେ ଅନ୍ତସ୍ରାବୀ କାରୁଣ୍ୟ, ମାନବିକ ମୂଲ୍ୟବୋଧ ପ୍ରତିଷ୍ଠା, ଘାଟନିକ ଜଂଜାଳ ମୁକ୍ତି, ସରଳ ପ୍ରକାଶ ଭଂଗୀ ତାଙ୍କର କୌଣସି ସୃଷ୍ଟିକୁ ବିକଳାଙ୍ଗ କରିନାହିଁ ।

ସ୍ୱାଧୀନତା ପୂର୍ବ ତିନି ଦଶନ୍ଧିର ଓଡ଼ିଶାର ସାମାଜିକ, ସାଂସ୍କୃତିକ, ରାଜନୀତିକ ଓ ଆର୍ଥନୀତିକ ଜୀବନ ଚଳଣିର ବିଶ୍ୱସ୍ତ ଆଲେଖ୍ୟ କାଳିନ୍ଦୀ-କଥା ମାନସ । ସେ ଖଣ୍ଡିତ ଘଟଣା ଭିତରେ ଜୀବନର ଭାଷ୍ୟକାର ସାଜିଛନ୍ତି । ନବ ସାମାଜିକ ମୂଲ୍ୟବୋଧ ପ୍ରତିଷ୍ଠାରେ ପ୍ରୟାସୀ ହୋଇଛନ୍ତି, ଘାଟନିକ ବିଚ୍ଛିନ୍ନତା ପରିବର୍ତ୍ତେ ଏକତ୍ୱ ସଂସ୍ଥାପନ କରି ମାନବିକ ଆବେଗ - ସଂବେଗର ଭାବସାନ୍ଦ୍ରତା ସୃଷ୍ଟି କରିଛନ୍ତି । ଆଦର୍ଶବାଦୀ ଚେତନା, ନବ ସମାଜ ଗଠନର ସ୍ୱପ୍ନ ଓ ସଂଭାବନାର ଆଲେଖ୍ୟ ତାଙ୍କ କଥକତାକୁ ରସସିକ୍ତ କରିଛି । ତାଙ୍କ ସମକାଳର କଥା ଶିଳ୍ପ ଭିତରେ କାଳିନ୍ଦୀଙ୍କ କଥା-କଥକତା କଳ୍ପଲୋକର ଐନ୍ଦ୍ରଜାଲିକ ମାୟା ସୃଷ୍ଟି କରିବା ପରିବର୍ତ୍ତେ ବରଂ ସୃଜି ଦେଇଛି ବାସ୍ତବତାର ଛାୟା । ସେ ଛାୟା ସମୟ – ସୂର୍ଯ୍ୟର ଗତି ଅନୁଯାୟୀ ତା'ର ଲମ୍ବ ପରିବର୍ତ୍ତନ କରିପାରେ, ମାତ୍ର ଆକୃତି ନୁହେଁ । ସୁତରାଂ କଥାଶିଳ୍ପୀ କାଳିନ୍ଦୀଙ୍କ କଥା-କଳା ଭାବକଳ୍ପ ଓ କଥାକଳ୍ପ ଉଭୟ ଦୃଷ୍ଟିରୁ ବଳିଷ୍ଠ ତଥା ସ୍ୱକୀୟତା - ଭାସ୍ୱର ।



# ଗୋଟିଏ ହୃଦୟର କୋଟିଏ ଡାକ

ଡକ୍ଟର ଶରତ ଚନ୍ଦ୍ର ପ୍ରଧାନ

ଗୋଟିଏ ଗୋଟିଏ କବିତା ମଧ୍ୟରେ କବିଟିଏ କାଳଜୟୀ ହୋଇ ବଞ୍ଚେ । ଯେଉଁ କବିତାରେ ମଣିଷ ଜାତି ପାଇଁ ସାର୍ବକାଳିକ ବାର୍ତ୍ତାଥାଏ; ଜୀବନ ନିର୍ବାହର ମାର୍ଗ ପ୍ରଦର୍ଶିତ ହୋଇଥାଏ, ତାକୁ ତ କାଳଜୟୀ କବିତା ବୋଲାଯାଏ । ସବୁ କବିଙ୍କ ଭାଗ୍ୟରେ କାଳଜୟୀ କବିତା ଲେଖିବାର ସୁଯୋଗ ଆସେନା । କବି ବା ଲେଖକର ମୁଖ୍ୟ କର୍ତ୍ତବ୍ୟ ହେଲା ସେ ସମୂହ ମଣିଷର ଜୀବନବାଣୀକୁ ରୂପ ଦେବେ, ବ୍ୟକ୍ତି-ମଣିଷ ଭିତରେ ସମୂହ ମଣିଷଟି କିପରି ରୂପପାଇବ, ତାର ଉପାଦାନ ଖୋଜିବେ ।

କବି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ କାବ୍ୟ କବିତାର ସୂତ୍ରପାତ ଘଟିଥିଲା ରୋମାଣ୍ଟିକ ଭାବବୋଧରୁ; କିନ୍ତୁ ତାର ପରିଣତି ଘଟିଥିଲା କ୍ଲାସିକ୍ ଚେତନାରେ । ଏ କଥାର ଉପଲବ୍ଧି କରାଯାଇପାରେ 'ଗାନ୍ଧାରୀର ଆଶୀର୍ବାଦ ପରି କବିତା ପାଠ କଲେ ।

'ଗାନ୍ଧାରୀ' ଚରିତ୍ରଟି ବ୍ୟାସ-ମହାଭାରତରେ ଏକ ଅନନ୍ୟ ଚରିତ୍ର । ସେ ଯେପରି ଆଦର୍ଶ ପତ୍ନୀ ସେହିପରି ଆଦର୍ଶ ଜନନୀ ମଧ୍ୟ । ତାଙ୍କ ଚରିତ୍ର ଭିତରେ ନାରୀର ଶୁଭଦାୟୀ ସତ୍ତାର ଚରମ ପରିପ୍ରକାଶ ଘଟିଛି । ସେ ସ୍ୱାମୀର ସୁଖ ଦୁଃଖରେ ଭାଗୀ ହୋଇ ପାରନ୍ତି; ସ୍ୱାମୀ ମଣିଷଟି ଯେତେବେଳେ ଘଟଣା ଚକ୍ରରେ ଭୁଲ କରି ବସେ, ତାଙ୍କୁ ସୁପରାମର୍ଶ ଦେଇ ବାଟକୁ ଆଣିବାକୁ ଚେଷ୍ଟା କରନ୍ତି । ନିଜର ବିପଥଗାମୀ ପୁତ୍ରମାନଙ୍କୁ ସତ୍ ଉପଦେଶ ଦେବାକୁ ଆଗେଇ ଆସନ୍ତି; କିନ୍ତୁ ଉନ୍ମତ୍ତ ଅଭିମାନୀ ପୁତ୍ରକୁ ହୁଏତ ବାଟକୁ ଆଣିବାର ସେ ସଫଳ ହୋଇ ନାହାନ୍ତି; ତେବେ ତାଙ୍କର ଚେ଼ତାବନୀ କାଳକାଳ ପାଇଁ ମଣିଷର ବିବେକକୁ ଛୁଏଁ । ଫଳରେ ସେ ଜୀବନ ଭୂମିରେ ଭୂମାଦ୍ରଷ୍ଟା ମାତୃଶକ୍ତିଭାବେ ମଣିଷର ମନଗହନକୁ ସ୍ପର୍ଶ କରି କାଳ କାଳ ଧରି ସ୍ମରଣୀୟା ହୋଇ ଉଠନ୍ତି ।

ବ୍ୟାସ-ମହାଭାରତର ଉଦ୍‌ଯୋଗ ପର୍ବରେ କୃଷ୍ଣଦ୍ୱୈପାୟନ ବ୍ୟାସ କହିଛନ୍ତି - 'ଯେଉଁ ବ୍ୟକ୍ତି ସୁନ୍ଦର ବସ୍ତ୍ର ଅଳଙ୍କାରରେ ମଣ୍ଡିତ ହୋଇଥାନ୍ତି ସେ ସଭାକୁ ଜୟ କରନ୍ତି'। ଯାହାଙ୍କର ବହୁତ ଧେନୁ ଥାଆନ୍ତି, ସେ ମିଷ୍ଟଦ୍ରବ୍ୟ ଭୋଜନ-ଇଚ୍ଛୁକ ବ୍ୟକ୍ତିମାନଙ୍କୁ ଜୟ କରନ୍ତି ।

ବାହନଯୁକ୍ତ ବ୍ୟକ୍ତି ପଥିକମାନଙ୍କୁ ଜୟ କରନ୍ତି । କିନ୍ତୁ ଶୀଳ ସ୍ୱାଭାବ ବ୍ୟକ୍ତି ସମସ୍ତଙ୍କୁ ଜୟ କରନ୍ତି । ପୁରୁଷର ଶୀଳତା ପ୍ରଧାନ ଗୁଣ ଅଟେ । ଯେଉଁ ବ୍ୟକ୍ତିର ଶୀଳତା ଗୁଣ ନାହିଁ, ତାହାର ଜୀବନ, ଧନ ଓ ବନ୍ଧୁବର୍ଗ ସବୁ ବ୍ୟର୍ଥ ।'' କବିଗୁରୁ ବ୍ୟାସଦେବ ଏ ସମସ୍ତ ବିଷୟ ବୟାନ କଳାପରେ ମାତୃଜାତିର ପ୍ରତିଭୂ ଚରିତ୍ର ଗାନ୍ଧାରୀଙ୍କର ମହନୀୟତା ପ୍ରତିପାଦନ କରିଛନ୍ତି । ଧୃତରାଷ୍ଟ୍ର ଓ ଗାନ୍ଧାରୀଙ୍କ କଥୋପକଥନ ମଧ୍ୟରେ ଗାନ୍ଧାରୀ କହିଥିଲେ– ''ହେ ମହାରାଜ, ଆପଣ ସେହି ରାଜ୍ୟଲୋଭୀ ଆତୁର ପୁତ୍ରଙ୍କୁ ଏଠାକୁ ଅଣାଇବା ହେଉନ୍ତୁ । ଧର୍ମାର୍ଥ ବିଲୋପୀ ଅଶିଷ୍ଟ ଲୋକ କଦାପି ରାଜ୍ୟପ୍ରାପ୍ତ ହୁଅନ୍ତି ନାହିଁ, ତଥାପି ସେହି ଅବିନୟୀ, ଅଧାର୍ମିକ ଦୁର୍ଯ୍ୟୋଧନ ଏହି ସାମ୍ରାଜ୍ୟକୁ ସର୍ବପ୍ରକାରରେ ପ୍ରାପ୍ତ ହୋଇ ଅଛନ୍ତି ।–'' ହେ ଧୃତରାଷ୍ଟ୍ର । ଏ ବିଷୟରେ ଆପଣ ଅତ୍ୟନ୍ତ ନିନ୍ଦନୀୟ, କାରଣ ଦୁର୍ଯ୍ୟୋଧନଙ୍କ ପାପ ପରାୟଣାତା ଜାଣିସୁଦ୍ଧା ପୁତ୍ରସ୍ନେହରେ ବଶୀଭୂତ ହୋଇ ଆପଣ ତାହାଙ୍କ ଅନୁଗତ ହେଉଅଛନ୍ତି । ହେ ରାଜନ, ସେହି ପାପାତ୍ମା ଦୁର୍ଯ୍ୟୋଧନ, କାମ କ୍ରୋଧର ଅଧୀନ ଓ ସଂପୂର୍ଣ୍ଣ ମୋହରେ ଗ୍ରସ୍ତ ହୋଇ ଅଛନ୍ତି ।'' ଉଦ୍‌ଯୋଗପର୍ବ ୧୨୮/୯ - ୧୨ । ଏଥିରୁ ଗାନ୍ଧାରୀଙ୍କର ମାନସିକତା ସୂଚିତ । ସେ ଜାଣିଥିଲେ ଧର୍ମର ଜୟ ହିଁ ପ୍ରକୃତ ଜୟ । ବସ୍ତୁତଃ ଭୀଷ୍ମ, ଦ୍ରୋଣ, କୃପ ପ୍ରଭୃତିଙ୍କୁ ରାଜପିଣ୍ଡ ଭୟ (ରାଜ ଅନ୍ନରେ ପରିପାଳନ ଜନିତ ଭୟ) ପ୍ରୟାସୀ ମଣିଷ ଭାବରେ ଅଭିହିତ କରିଛନ୍ତି । ବ୍ୟାସଦେବ ଗାନ୍ଧାରୀ ଚରିତ୍ରକୁ ସର୍ବତ୍ର ଦୟା କରୁଣାର ଦେବୀ ରୂପେ ଦେଖି ଆସିଛନ୍ତି । କବିଗୁରୁ ଦ୍ୱୈପାୟନ ଗାନ୍ଧାରୀଙ୍କୁ କେଉଁଠି କରୁଣାବେଦିନୀ ପ୍ରଜ୍ଞାବତୀ, ମହାଭାଗା' (ଆଶ୍ରମିକ ପର୍ବ ୪/୩) ତ କେଉଁଠି 'ଧର୍ମଜ୍ଞ ମନସ୍ୱିନୀ ଗାନ୍ଧାରୀ'' (ଆଶ୍ରମିକ ପର୍ବ ୫/୫) ପରି ବିଶେଷଣରେ ବିଶେଷିତ କରିଛନ୍ତି । ଅନ୍ୟକଥାରେ କହିଲେ ଗାନ୍ଧାରୀ ହେଉଛନ୍ତି, ଉର୍ଦ୍ଧ୍ୱଗ ମାନବୀସତ୍ତା; ଯେଉଁଠି ଦେବୀ ଓ ମାନବୀ ଏକାକାର ହୋଇ ଯାଇଛନ୍ତି । ବ୍ୟାସଙ୍କ ପରି କଳ୍ପନାରେ ସେ ଚିରକାଳୀନ ଆଦର୍ଶ ମାତୃସତ୍ତା । ଏହି ଆଦର୍ଶ ମାତୃସତ୍ତା ଉତ୍ତର କାଳର ଭାରତର କବି ମଣ୍ଡଳୀଙ୍କୁ ନାନାଭାବେ ପ୍ରଲୁବ୍ଧ କରିଆସିଛି ।

ଏଇଠି କହିରଖେ ବ୍ୟାସ ଥିଲେ ତ୍ରିକାଳ ଦ୍ରଷ୍ଟା କବି । ତାଙ୍କର କାବ୍ୟ କୃତିରେ ମଣିଷର ସର୍ବତୋମୁଖୀ ପରିପ୍ରକାଶ ଘଟିଥିଲା । ସେ ଥିଲେ ସମାଜ ଶାସ୍ତ୍ରୀ, ଧର୍ମବେତ୍ତା ଏବଂ ମଙ୍ଗଳ ଦ୍ରଷ୍ଟା କବି । ତାଙ୍କ କୃତିର ଛତ୍ରେ ଛତ୍ରେ ମନୁଷ୍ୟର ଶୁଭଦ ରୂପର ଶୁକ୍ଳିମା ପ୍ରକଟିତ । 'ଭୀଷ୍ମପର୍ବ' ରେ ସଂଜୟ– କର୍ତ୍ତୃକ ଧୃତରାଷ୍ଟ୍ରଙ୍କୁ କୁହାଯାଇଛି– ''ଯେଉଁଠାରେ ଧର୍ମ, ସେହିଠାରେ ଜୟ'' ୫୬/୧୮ । ଷଟ୍‌ଷଷ୍ଟିତମ ଅଧ୍ୟାୟରେ ସେହି ବାଣୀର ପୁନରାବୃତ୍ତି ପୂର୍ବକ ଉଲ୍ଲିଖିତ– '' ଯେଉଁ ପକ୍ଷରେ କୃଷ୍ଣ, ସେହି ପକ୍ଷର ଧର୍ମ ଓ ଯେଉଁ ପକ୍ଷରେ ଧର୍ମ, ସେହିପକ୍ଷରେ ଜୟ'' । ଭୀଷ୍ମପର୍ବ - ୬୬/୩୫ । ବସ୍ତୁତଃ ମହାଭରତ ପରି କାଳଜୟୀ କୃତିରେ ଧର୍ମର ଜୟ ଓ ପାପର କ୍ଷୟ ବାଣୀର ହିଁ ପ୍ରଚାର ହୋଇଛି । ଏହି ଜୟ କାବ୍ୟଟି ମୁଖ୍ୟତଃ ଧର୍ମର ଜୟ ଉପରେ ପର୍ଯ୍ୟବସିତ ।

ମହାଭାରତର ପ୍ରାଥମିକ ନାମ ଥିଲା ଜୟ କାବ୍ୟ । ଏହା ପରବର୍ତ୍ତୀ କାଳରେ ମହାକାବ୍ୟର କୋଟୀକୁ ଉନ୍ନୀତ ହୋଇଛି । ଭାରତୀୟ ଜୀବନ ଧାରାକୁ ଗଙ୍ଗାନଦୀ ଯେପରି ନାନାଭାବେ ପ୍ରଭାବିତ କରିଛି, ମହାଭାରତ ଓ ରାମାୟଣ ସେହିପରୀ ଭାରତର ଜନଜୀବନ, ଜୀବନାଭିମୁଖ୍ୟ ଓ ଚିନ୍ତାଧାରାକୁ ଗଭୀର ରୂପେ ନିୟନ୍ତ୍ରଣ କରି ଆସିଛି । ଭାରତର ବିଭିନ୍ନ ପ୍ରାନ୍ତୀୟ ଭାଷାରେ ମହାଭରତ ରଚ଼ିତ ହୋଇଛି । ତେବେ ସବୁଠି କୃଷ୍ଣଦ୍ୱୈପାୟନ ବ୍ୟାସଙ୍କ କୃତ ମହାଭାରତର ମହକ ସଂଚରିତ ।

ଓଡ଼ିଶାର ଆଦିକବି ସାରଳା ଦାସ ବ୍ୟାସଦେବଙ୍କ କଥା ବସ୍ତୁକୁ ଗ୍ରହଣ କରି ମହାଭାରତ ରଚ଼ନା କଲେ ହେଁ ଏହା ମୂଳମହାଭାରତର ଉପଗ୍ରହ ମାତ୍ର ନୁହେଁ । ଚନ୍ଦ୍ର ଯେପରି ସୂର୍ଯ୍ୟ ଆଲୋକରେ ଆଲୋକିତ; ସାରଳା ମହାଭାରତ ଅନୁରୂପଭାବେ ବ୍ୟାସଙ୍କ ଚେତନାରେ ପ୍ରଭାବନ୍ତ ନୁହେଁ । ଏହାର ସ୍ୱକୀୟ ପ୍ରଭା ରହିଛି । ଓଡ଼ିଶା ମାଟିରେ ଏହା ଏକ ଅଦ୍ଭୁତ ସାରସ୍ୱତ ଫସଲ । ତାକୁ କଳିବା ସହଜ ନୁହେଁ, ସବୁଠି କାବ୍ୟପୁରୁଷ ସିଦ୍ଧେଶ୍ୱର ପରିଡ଼ାଙ୍କର ପ୍ରତିଭାର ଯାଦୁକାରୀ ସ୍ପର୍ଶ । ଏହା ପାଠକକୁ ମନ୍ତ୍ରିତ କରେ, ମୁଗ୍ଧକରେ । ଦୃଷ୍ଟାନ୍ତ ସ୍ୱରୂପ ସାରଳାଦାସଙ୍କ ଗାନ୍ଧାରୀ ଚରିତକୁ ନିଆଯାଇପାରେ । ସାରଳା ଦାସଙ୍କ ଗାନ୍ଧାରୀ ରକ୍ତମାଂସ ଧାରିଣୀ ମାଆଟିଏ । ସେ ଦେବୀ କୋଟୀକୁ ଉନ୍ନୀତ ହୋଇ ନାହିଁ । ତାରି ମାନବୀ ରୂପର ଚମକ ପାଠକକୁ ମୁଗ୍ଧକରେ । ସେ ପୁତ୍ର ସୋହାଗୀ । ନିଜର ବଡ଼ିପାଇଁ ଯାଆସହ ଅଣ୍ଡାଭିଡ଼ି କଳି ଲାଗିପାରେ । ପୁତ୍ର ଦୁର୍ଯ୍ୟୋଧନ ରାଜପଣ କରୁଥିବାରୁ ଗର୍ବର ସହ କହିପାରେ ''ଯାହା ମାଗିବଇଁ ମୋର ବାଞ୍ଛାସିଦ୍ଧ କରଇ/ଜାୟୋଦୀପେ ପୁତ୍ର ମୋର ଯେକାଙ୍ଗ ଚକ୍ରବ୍ରତୀ ହୋଇ'' ପୁନଶ୍ଚ ନିଜ ପୁତ୍ର-ସ୍ନେହରେ ଅନ୍ଧୀଭୂତ ଜନନୀଟି ନିର୍ବିକାରଭାବେ କହିଥାଏ –

''ତୁହି ଯେ ମୋର ପୁତ୍ର ଯେକାଙ୍କ ରାଜନ
ତୋହୋର ପ୍ରସାଦେ ବାବୁ ମୋହୋର ସର୍ବ ଶୁଭମାନ ।''
ଯେକା କାଶୀପତି ପ୍ରସନ୍ନେ ମୁଂ ମାଗିବି ସଦଗତି
ଯେ ଈଶ୍ୱର ପ୍ରସାଦେ ତୁମ୍ଭେ ଯେ ଯେକାଙ୍ଗ ଚକ୍ରବ୍ରତୀ ।''

ବସ୍ତୁତଃ ପୁତ୍ରକୁ ସୁବର୍ଣ୍ଣ ଚମ୍ପା ମାଗି ଗର୍ବରେ ଶତପୁତ୍ରର ଜନନୀ ହେତୁ ଅହଂକାରଗ୍ରସ୍ତ ହୋଇ ଉଠେ । କବିଙ୍କ ଭାଷାରେ କହିଲେ -

''ବାବୁ ଯୁଗତେ ଶତେ ପୁତ୍ର ଅଟଇ ଗାନ୍ଧାରୀ
ଦଶଦିଗେ ଦିଲେ ସୁବର୍ଣ୍ଣ ଚମ୍ପା ସହସ୍ରେକ ସରି ।''

ଏଠି ପୁତ୍ରସ୍ନେହରେ ଅନ୍ଧ ଗାନ୍ଧାରୀ ପରି ନାରୀକୁ ପାଠକ ଭେଟେ । ସାରଳାଦାସଙ୍କ ମହାଭାରତର ମଧ୍ୟପର୍ବର ''କୁନ୍ତୀ ଗାନ୍ଧାରୀଙ୍କ କଳି'' ସମ୍ପର୍କିତ କଥା ଭାଗକୁ ତା'ର ଦୃଷ୍ଟାନ୍ତ ଭାବେ ନିଆଯାଇପାରେ ।

ଏ ରୂପେ ବିଚାରକଲେ କାଳିନ୍ଦୀଚରଣଙ୍କ କବିତାର ପ୍ରାଣଭୂମି ସାରଳା ମହାଭାରତ ନୁହେଁ । ପରନ୍ତୁ ବ୍ୟାସଙ୍କ ମହାଭାରତର ଗାନ୍ଧାରୀ ଚରିତ୍ରର ପୂଣ୍ୟ ସୁରଭି ପାଣିଗ୍ରାହୀଙ୍କ କାବ୍ୟକାନନରେ ସଂଚରିତ । ତେବେ କାଳିନ୍ଦୀଚରଣଙ୍କ 'ଗାନ୍ଧାରୀର ଆଶୀର୍ବାଦ' କବିତା ଲେଖାହେଲାବେଳକୁ ରବୀନ୍ଦ୍ରନାଥ ଠାକୁରଙ୍କ 'କାହାନୀ' ସଂକଳନସ୍ଥିତ 'ଗାନ୍ଧାରୀର ଆବେଦନ' କବିତାଟି ରଚିତ ହୋଇ ସାରିଥିଲା । ଏଣୁ ରବୀନ୍ଦ୍ରଙ୍କ କବିତା ଓ କାଳିନ୍ଦୀଚରଣଙ୍କ କବିତା ଦ୍ଵୟ ଭିତରେ କି ସାମ୍ୟ ବୈଷମ୍ୟ ରହିଛି, ତାହା ବିଚାର୍ଯ୍ୟ । ରବୀନ୍ଦ୍ରନାଥଙ୍କ 'ଗାନ୍ଧାରୀର ଆବେଦନ' କବିତାଟି କାବ୍ୟନାଟିକା ଶୈଳୀରେ ରଚିତ । ଧୃତରାଷ୍ଟ୍ର, ଦୁର୍ଯ୍ୟୋଧନ ଓ ଗାନ୍ଧାରୀଙ୍କ ଉକ୍ତି ପ୍ରତ୍ୟୁକ୍ତି କବିତାକୁ ଗତିଶୀଳ କରିଛି । ପ୍ରଥମେ ଧୃତରାଷ୍ଟ୍ର ଓ ଦୁର୍ଯ୍ୟୋଧନଙ୍କ କଥୋପକଥନରେ ଦୁର୍ଯ୍ୟୋଧନର ପାହାଡ଼ ପ୍ରମାଣ ଅଭିମାନ ଓ ଅହଂକାରର ଅବତାରଣା କରାଯାଇଛି । ବୃଦ୍ଧ ଧୃତରାଷ୍ଟ୍ରଙ୍କ ଯେତେ ଧର୍ମୋପଦେଶ ଦୁର୍ଦ୍ଧାନ୍ତ ପୁତ୍ର ଦୁର୍ଯ୍ୟୋଧନଙ୍କ ଦ୍ଵାରା ପ୍ରତ୍ୟାଖ୍ୟାତ ହୋଇଛି । ଶେଷରେ ପୁତ୍ରସ୍ନେହ ବତ୍ସଳ ଧୃତରାଷ୍ଟ୍ର ଧର୍ମାଧର୍ମ ଭୁଲି ପୁତ୍ରପ୍ରତି ଦରଦ ଭରା କଣ୍ଠରେ କହି ଉଠନ୍ତି -

''ହାୟ ବତ୍ସ ଅଭିମାନୀ, ପିତୃସ୍ନେହ ମୋର
କିଛୁ ଯଦି ହ୍ରାସ ହତ ଶୁନି ସୁକଠୋର
ସୁହୃଦେର ନିନ୍ଦାବାକ୍ୟ - ହଇତ କଲ୍ୟାଣ
ଅଧର୍ମେ ଦିୟେଛି ଯୋଗ, ହାରାୟେଛି ଜ୍ଞାନ
ଏତ ସ୍ନେହ । କରିତେଛି ସର୍ବନାଶ ତୋର
ଏତ ସ୍ନେହ । ଜ୍ଵାଲାତେଛି କାଳାନଳ ଘୋର
ପୁରାତନ କୁରୁବଂଶ-ମହାରଣ୍ୟ ତଳେ-
ତବୁ,ପୁତ୍ର ଦୋଷ ଦିସ ସ୍ନେହନାଇ ବଲେ ?''

ଦୁର୍ବିନୀତ ପୁତ୍ର ଦୁର୍ଯ୍ୟୋଧନ ନିଜକୁ 'ମୂଢ଼ ଭାଗ୍ୟହୀନ ବୋଲି କହନ୍ତେ ଧୃତରାଷ୍ଟ୍ରଙ୍କ ଧର୍ମାଧର୍ମ ସଂପର୍କିତ ଯେତେ କିଛି ବିଧି ବିଧାନ ମାନସପଟରୁ ତିରୋହିତ ହୋଇଯାଇଛି, ସେ ହୋଇ ଉଠିଛନ୍ତି ପୁତ୍ର ସ୍ନେହରେ ଅନ୍ଧ ପିତାଟିଏ । ରାଜଧର୍ମ ଠାରୁ ପିତୃଧର୍ମ ହିଁ ତାଙ୍କୁ ବଡ଼ ଦିଶିଛି । କିନ୍ତୁ ରାଜମାତା ଗାନ୍ଧାରୀଙ୍କର ଜୀବନ ଅନ୍ୟ ଉପାଦନାରେ ଗଢ଼ା ଥିଲା । ସେ ଚାହିଁଥିଲେ ଅନ୍ୟାୟୀ ପାପାଚାରୀ ପୁତ୍ର ଦୁର୍ଯ୍ୟୋଧନର ନିର୍ବାସନ । ଯେତେବେଳେ ଧୃତରାଷ୍ଟ୍ରଙ୍କ ପିତୃପ୍ରାଣ 'ଧର୍ମେରେ ଯେ ଲଘଂନ ନିରେଛେ - ଆମି ପିତା' ଉକ୍ତିଯି ପ୍ରକାଶ କରେ, ସେତେବେଳେ ଉଦ୍‌ଫଣା ନାଗୁଣୀ ତୁଲ୍ୟ ଗାନ୍ଧାରୀ କହିପକାନ୍ତି –

''ମାତା ଆମି ନହି ? ଗର୍ଭଭାର ଜର୍ଜରିତା
ଜାଗ୍ରତ ହୃଦପିଣ୍ଡ ତଲେ ବହି ନାହିଁ ତା'ରେ ?

ସ୍ନେହ ବିଗଳିତ ଚିତ୍ତ ଶୁଭ୍ର ଦୁଗ୍ଧ ଧାରେ
ଉଚ୍ଛସିୟା ଉଠେ ନାଇ ଦୁଇସ୍ତନ ବାହି
ତାର ସେଇ ଅକଳଙ୍କ ଶିଶୁମୁଖ ଚାହି ?

× × × ×

ମୋର ହାସି ହତେ ହାସି, ବାଣୀ ହତେ ବାଣୀ,
ପ୍ରାଣ ହତେ ପ୍ରାଣ ? ତବୁ କହି ମହାରାଜ
ସେହି ପୁତ୍ର ଦୁର୍ଯ୍ୟୋଧନେ ତ୍ୟାଗ କର ଆଜ ।''

ଶିଶୁପୁତ୍ରର ଯାବତୀୟ ସ୍ମୃତି ମା ମନକୁ ମଥିତ କଲେହେଁ ଗାନ୍ଧାରୀ ଚାହିଁଛନ୍ତି ଧର୍ମର ଜୟ । ଅଶୁଭ ପାପାଚାରୀର ନିର୍ବାସନରେ ଧର୍ମର ପ୍ରତିଷ୍ଠା । ଏହି ଆଭିମୁଖ୍ୟଟି 'ଗାନ୍ଧାରୀର ଆବେଦନ' କାବ୍ୟ ନାଟିକାରେ ମୂର୍ତ୍ତିମନ୍ତ ହୋଇଛି । ଧୃତରାଷ୍ଟ୍ର ନିଜକୁ ଧିକ୍କାର କରି 'କୀ କରିଲି ହତଭାଗ୍ୟ ବୃଦ୍ଧ, ବୁଦ୍ଧିହତ,/ଦୁର୍ବଳ ଦ୍ୱିଧାୟ ପଡ଼ି, ଅପମାନ କ୍ଷତ/ରାଜ୍ୟ ଫିରେ ଦିତେ' ତବୁ ମିଲାବେ ନା ଆର/'' ପରି ମନୋଭାବ ପ୍ରକାଶ କଲେ ମଧ୍ୟ ଗାନ୍ଧାରୀଙ୍କର ତୀବ୍ର ବାଣୀର କଷାଘାତ ଶୁଣିବାକୁ ପଡ଼ିଛି । କବିତାର ଛତ୍ରେ ଛତ୍ରେ ଗାନ୍ଧାରୀଙ୍କ ମହାନୁଭବତାର ସ୍ନିଗ୍ଧ ଜ୍ୟୋସ୍ନାଲୋକ ପାଠକପ୍ରାଣକୁ ଆବିଷ୍ଟ କରି ଦେଇଛି । ଗାନ୍ଧାରୀଙ୍କ ସ୍ନେହ ବିଧୁରା ଜନନୀ ରୂପଟି ବିଶ୍ୱଜନନୀର 'କା' ଧରି ଉଭା ହୋଇଛି । ସେ ସହସ୍ରାଂଶୁ ଦୀଧିତି ପରି ବେଳୁବେଳ ଜ୍ୟୋତିର୍ମୟୀ ହୋଇ ଉଠିଛନ୍ତି । ସେ ନିଜର ମର୍ମବାଣୀ ପ୍ରକାଶ କରି କହନ୍ତି -

''ବିଚାରକ' ଶୁଣିୟାଛି ବିଶ୍ୱବିଧାତାୟ
ସବାଇ ସନ୍ତାନ ମୋରା, ପୁତ୍ରେର ବିଚାର
ନିୟତ କରେନ ତିନି ଆପନାର ହାତେ
ନାରାୟଣ - ବ୍ୟଥା ଦେନ, ବ୍ୟଥା ପାନ ସାଥେ
ନତୁବା ବିଚାରେ ତାଁର ନାଇ ଅଧିକାର,
ମୂଢ଼ ନାରୀ ଲଭିୟାଛି ଅନ୍ତରେ ଆମାର
ଏଇ ଶାସ୍ତ୍ର ।''

ବସ୍ତୁତଃ ଗାନ୍ଧାରୀଙ୍କ ମାତୃଚେତନା ଭିତରେ କିପରି ବିଶ୍ୱଜନନୀ ରୂପଟି ପ୍ରକଟିତ ହୋଇଛି, ତାହା ଏଠାରେ ଲକ୍ଷଣୀୟ ।

ସବୁଜ କବିମାନେ ସାରସ୍ୱତ ସାଧନା କାଳରେ ନିଜର ଜ୍ଞାନଗବାକ୍ଷକୁ ସର୍ବଦା ଖୋଲା ରଖିଥିଲେ । ସେମାନଙ୍କ କାବ୍ୟଚେତନାକୁ ଦେଶୀ ବିଦେଶୀ ସାରସ୍ୱତ ସୂରୀଙ୍କ କାବ୍ୟ ଆଭା ସ୍ୱଚ୍ଛ ବିଶେଷରେ ଛୁଇଁ ଯାଇଛି । ''ଗାନ୍ଧାରୀର ଆଶୀର୍ବାଦ' କବିତାର ବ୍ୟାସଦେବଙ୍କ ଗାନ୍ଧାରୀ ଓ ରବୀନ୍ଦ୍ରନାଥଙ୍କ ଗାନ୍ଧାରୀଙ୍କ ମୂର୍ଚ୍ଛନା ନ ବାଜିଛି, ତାହା କୁହାଯାଇ ନପାରେ ।

'ଗାନ୍ଧାରୀର ଆଶୀର୍ବାଦ' କାଳିନ୍ଦୀଚରଣଭଙ୍କ କାବ୍ୟମାନସର ଅମୃତ ଫଳଶ୍ରୁତି । ଆଲୋଚ୍ୟ କବିତାର କାନ୍‌ଭାସଟି ପୂର୍ବସୂରୀଙ୍କ ଠାରୁ ସ୍ୱତନ୍ତ୍ର । କୃଷ୍ଣଦ୍ୱୈପାୟନ ବ୍ୟାସ ଉଦ୍‌ଯୋଗପର୍ବ ଓ ଆଶ୍ରମବାସିକ ପର୍ବରେ ଗାନ୍ଧାରୀଙ୍କ ମହିମା ବୟାନ କରିଛନ୍ତି । ରବୀନ୍ଦ୍ରନାଥ ଦ୍ୟୂତକ୍ରୀଡ଼ା ପରେ ପାଣ୍ଡବମାନେ ବନବାସୀ ହେବା ପର୍ଯ୍ୟାୟରେ ନିଜର କାବ୍ୟଭୂମି ନିର୍ମାଣ କରିଛନ୍ତି । କିନ୍ତୁ କାଳିନ୍ଦୀଚରଣଙ୍କ କବିତାର ପ୍ରେକ୍ଷାପଟ କୁରୁକ୍ଷେତ୍ର ଯୁଦ୍ଧଯାତ୍ରାର ପ୍ରାକ୍‌କାଳ । ଯୁଦ୍ଧଯାତ୍ରା ପୂର୍ବରୁ କୁରୁ ଚୂଡ଼ାମଣି ଦୁର୍ଯ୍ୟୋଧନଙ୍କ ମାତୃ ଆଶୀର୍ବାଦ ଭିକ୍ଷା କବିତାର ବର୍ଣ୍ଣନୀୟ ପ୍ରସଙ୍ଗ । ଏ ପ୍ରେକ୍ଷାପଟଟି ଅଧିକ ହୃଦ୍ୟ, ଅଧିକ ବାସ୍ତବ । ଓଡ଼ିଶା କାହିଁକି ଭାରତୀୟ ଚଳଣିରେ ପୁତ୍ରଟିଏ ଯାତ୍ରାରମ୍ଭ ପୂର୍ବରୁ ପିତୃମାତୃଙ୍କର ଆଶିଷ କାମନା କରିଥାଏ । ଏଠାରେ ଯୁଦ୍ଧଯାତ୍ରା ଅବସରରେ ଦୁର୍ଯ୍ୟୋଧନଙ୍କର ଆଶିଷ କାମନା ଅମୂଳକ ନୁହେଁ । ଏଣୁ କବିତାର ପୃଷ୍ଠପଟ ପରିକଳ୍ପନାରେ ଅସ୍ୱାଭାବିକତା ନାହିଁ ବରଂ ରହିଛି ରୁଚିଶୀଳତା ।

କବିତା ଆରମ୍ଭରେ କୌଣସି ପରିବେଶର ଅବତାରଣା କରାଯାଇନାହିଁ । ଗାଥା କବିତା ସୁଲଭ ଭଙ୍ଗୀରେ କବିତାର ସୂତ୍ରପାତ । ଜନନୀ ପଦରେ ମଥା ନତି ପୂର୍ବକ ଆଶିଷ ଭିକ୍ଷା କରାଯାଇଛି । ଶତ୍ରୁ ସୈନ୍ୟକୁ ପଦେ ଦଳି ଆସିବାକୁ ଓ ଧରଣୀକୁ ଅରାତି ବିହୀନ କରି ବିଜୟ ଟୀକା ଲାଭ କରିବା ପାଇଁ ଦୁର୍ଯ୍ୟୋଧନର ପ୍ରାର୍ଥନା । ଏ ପ୍ରାର୍ଥନା ଶତପୁତ୍ରର ଜନନୀର ହୃଦୟକୁ ସ୍ପର୍ଶ କରି ପାରିନାହିଁ । ସେ ପୁତ୍ରକୁ ରଣପ୍ରାଙ୍ଗଣରେ ଅବତୀର୍ଣ୍ଣ ହେବାକୁ ମନା କରି ନାହାନ୍ତି ବରଂ ପୁତ୍ରକୁ ବରାଭୟ ଦେଇ କହିଛନ୍ତି 'ଅକ୍ଷୟ ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।' ମାତା ଗାନ୍ଧାରୀ ଜାଣନ୍ତି ଯେ ତାଙ୍କର ପୁତ୍ର ଦୁର୍ଯ୍ୟୋଧନ ପାପାଚାରୀ । ତାର ନିଧନରେ ପୃଥ୍ୱୀରୁ ପାପରାଶି କ୍ଷୟ ହେବ । ମାଆ ମନରେ ବକ୍ଷରୁ ରୁଧିର ନିଗାଡ଼ି ସ୍ତନ୍ୟଦେଇ ପରିପୁଷ୍ଟ କରିଥିବା ନିଜ ସନ୍ତାନମାନଙ୍କ ପ୍ରତି ଅହେତୁକ ଅନୁକମ୍ପା ନଥିଲା । ସେ ଚାହିଁଛନ୍ତି ଧର୍ମର ପ୍ରତିଷ୍ଠା । ଫଳରେ ନିଜ ପୁଅକୁ ଜୟୀ ହୁଅ ବୋଲି କହିବାକୁ କୁଣ୍ଠିତା । ଗାନ୍ଧାରୀଙ୍କ ଆଖିରେ କୌରବ ଓ ପାଣ୍ଡବଙ୍କ ମଧ୍ୟରେ କୌଣସି ତାରତମ୍ୟ ନାହିଁ । ଉଭୟଦଳ ତାଙ୍କର ପ୍ରିୟ ସନ୍ତାନ । ବିଶ୍ୱର ଶତଶତ ସନ୍ତାନ ପାଇଁ ସେ ବେଦନାସିକ୍ତ । ବସ୍ତୁତଃ କବିଙ୍କ ଭାଷାରେ କହିଲେ,''ଶତ ଜନନୀର ଅନ୍ତର ଜଳ ଆର୍ଦ୍ର କରିଛି ପ୍ରାଣ/ଶତ ପୁତ୍ରର ଜନନୀ ଚିତ୍ତେ ଛୁଇଁ ନାହିଁ ଅଭିମାନ ।'' ତାଙ୍କ ପାଇଁ ଦୁର୍ଯ୍ୟୋଦନ ନିଧନ ଯେତିକି ପୀଡ଼ାଦାୟକ, ଅର୍ଜୁନ ବଧ ଊଣା ଶୋକ କାରକ ହେବ ନାହିଁ । ଭୀମ ଦୁଃଶାର ଜୟ ପରାଜୟ ଗାନ୍ଧାରୀ ବୁଝନ୍ତି ନାହିଁ । ପାଣ୍ଡବ ଓ କୌରବ କୁଳ ସମସ୍ତେ ତାଙ୍କ ମମତାଭାଜନ ବସ୍ତୁତଃ ସବୁଠି ସମଦୃଷ୍ଟି, ସମଭାବନାର ବିଲୋଳ ପରିପ୍ରକାଶ । ଫଳରେ ଏ କବିତାର ଭାବାଭିବ୍ୟକ୍ତିରେ ବ୍ୟକ୍ତିନିଷ୍ଠତା ନଫୁଟି ପରିଲକ୍ଷିତ ହୁଏ ବସ୍ତୁନିଷ୍ଠତା ।

କବିତାଟିରେ ରହିଛି ଗାଥାସୁଲଭ ଅନ୍ତର୍ଦୃଷ୍ଟି । ଗାଥା କବିତାମାତ୍ରେ ଗଳ୍ପ ପଞ୍ଜର ଦେଇ ଗତିଶୀଳ । ଏଥିରେ ମଧ୍ୟ କଥାଭାଗଟିଏ ରହିଛି । ପୁଣି କବିତାର ଶେଷରେ ଏକ

ନୀତିବାଣୀର ଉପସ୍ଥିତିକୁ ପାଠକ ଲକ୍ଷ୍ୟ କରିଥାଏ । ''ଗାନ୍ଧାରୀ ଦେଲା ଜନନୀପ୍ରାଣର ସୁମହତ ପରିଚୟ/ଅକ୍ଷର ହେଉ ପୁଣ୍ୟ ଜଗତେ ଧର୍ମର ହେଉ ଜୟ ।'' ଏହାକୁ କବିତାର ବାର୍ତ୍ତା ବୋଲା ଯାଇ ପାରେ । ଏ କବିତା ଯେଉଁ ଛନ୍ଦରେ ରଚିତ, ତାହା ବାଲାଡ୍ ବା ଗାଥା କବିତା ରଚନାପାଇଁ ପ୍ରକୃଷ୍ଟ ଛନ୍ଦ । ଏ ଛନ୍ଦକୁ ଅନୁସରଣ କରି ଗୋଦାବରୀଶ ମିଶ୍ର 'କାଳୀଜାଇ' ପରି ସାହିତ୍ୟିକ ଗାଥା କବିତାମାନ ରଚନା କରିଯାଇଛନ୍ତି । ଏଣୁ 'ଗାନ୍ଧାରୀର ଆର୍ଶୀବାଦ' କବିତାକୁ ଗାଥା କବିତା ପର୍ଯ୍ୟାୟବାଚୀ କାବ୍ୟକୃତି କହିବା ଅଧିକ ଯୁକ୍ତିଯୁକ୍ତ ।

ଆଲୋଚ୍ୟ କବିତାରେ କାଳଜୟୀ ହେବାର ଯେଉଁ ଆଭିମୁଖ୍ୟ ରହିଛି, ତାହା ମହାକାବ୍ୟିକ ଭାବବୋଧର ଅନୁରୂପ । ଏଯାବତ୍ ପୃଥିବୀରେ ଯେଉଁ ଚାରୋଟି ମହାନ ମହାକାବ୍ୟ ରହିଛି, ତାହାର ଆଦିରୂପ ଥିଲା ଗାଥା । ଏଣୁ ପଣ୍ଡିତମାନେ ଗାଥାକୁ ମହାକାବ୍ୟର ଭଗିନୀବୋଲି ଚିହ୍ନଟ କରିଥାନ୍ତି । ସେ ଯାହାହେଉ 'ଗାନ୍ଧାରୀର ଆଶୀର୍ବାଦ' ଏକ କାଳଜୟୀ କବିତା । ଏଥିରେ କିଶୋର ହୃଦୟରେ ମହାନୁଭବତା ସୃଷ୍ଟି କରିବାର ଉପାଦାନ ରହିଛି ।

ବିଶ୍ୱର କାବ୍ୟ ଜଗତକୁ ଲକ୍ଷ୍ୟକଲେ ବିଷୟବସ୍ତୁଗତ ମୌଳିକତା ଅପେକ୍ଷା କାବ୍ୟକୌଶଳ ଜନିତ ଚମକ ପାଠକକୁ ଅଧିକ ଆକୃଷ୍ଟ କରିଥାଏ । 'ଗାନ୍ଧାରୀର ଆଶୀର୍ବାଦ' ମହାଭାରତର କାହାଣୀକୁ ନେଇ ରଚିତ । ଏଥବରେ ବ୍ୟାସ, ରବୀନ୍ଦ୍ରନାଥ ପ୍ରମୁଖଙ୍କ କବିତାର ପ୍ରଭାବ ରହିଛି, ତଥାପି ତାହା ପାଠକର ଆଦରର ଧନ । 'ତ୍ରୟୀ' ଶୀର୍ଷକ ସମାଲୋଚନା ଗ୍ରନ୍ଥରେ ବାଲ୍ମୀକି, ରବୀନ୍ଦ୍ରନାଥ ଓ କାଳିଦାସଙ୍କ କାବ୍ୟର ଅନୁଶୀଳନ କରାଯାଇଛି । ସମୀକ୍ଷକ ଶଶିଭୂଷଣ ଦାଶଗୁପ୍ତ ତହିଁରେ ଦର୍ଶାଇଛନ୍ତି ଯେ ବାଲ୍ମୀକି କିପରି ଋଗ ବେଦରୁ କଥାଭାଗ ନେଇ ରାମାୟଣ ରଚନା କଲେ, ରାମାୟଣର ଭାବବଳୟ କିପରି କାଳିଦାସଙ୍କୁ ପ୍ରେରଣା ଦେଲା ଏବଂ ରବୀନ୍ଦ୍ରନାଥ କିପରି କାଳିଦାସଙ୍କ ମନ୍ତ୍ରଶିଷ୍ୟ ହୋଇ ସାରସ୍ୱତ ଜଗତରେ ଅବତୀର୍ଣ୍ଣ ହୋଇଛନ୍ତି । ଏଣୁ ଆହରଣ ଦୋଷାବହ ନୁହେଁ; ପରନ୍ତୁ ଆହୃତ ଉପାଦାନକୁ ଅନ୍ତରରସ ଦେଇ ନୂଆଭାବେ ଗଢ଼ିବା ହେଉଛି ବଡ଼କଥା । କାଳନ୍ଦୀଚରଣଙ୍କ କବିତାଟି ଆହୃତ ଉପାଦାନକୁ ନେଇ ମୌଳିକ କବିତାର ଠାଣିନେଇ ଉଭା । ଏଥିରେ ଗୋଟିଏ ଜନନୀ ହୃଦୟ ଭିତର କିପରି କୋଟି କୋଟି ଜନନୀ ଆତଯାତ ହୁଅନ୍ତି । ଏଠି ଗୋଟିଏ ହୃଦୟରେ କୋଟିଏ ଡାକର ଅପୂର୍ବ ମୂର୍ଚ୍ଛନା ବାଜେ । ତାହା ମଣିଷର ମନଗହନର ଇଲାକାକୁ ଛୁଇଁଯାଏ । ଏ କବିତାର ଆବେଦନ କାଳକାଳର ପାଠକକୁ ବିହ୍ୱଳ କରେ । ଏହାହିଁ କବିର ଅଭୀପ୍ସା; ଅପର ପକ୍ଷରେ ଏହାହିଁ କବିତାର କାଳଜୟୀ ସତ୍ତା ।



# କାଳିନ୍ଦୀଚରଣଙ୍କ କବିତାରେ ଶୈଶବର ସମ୍ମୋହନ

ପ୍ରଫେସର ଆଦିକନ୍ଦ ସାହୁ

କାଳିନ୍ଦୀଚରଣ ଏପରି ଜଣେ କବି ଯାହାଙ୍କ କବିତାର ଅନେକ ସରସ ଧାଡ଼ି ଶୈଶବ ପ୍ରତି ସମ୍ମୋହିତ ହେବାରେ ହିଁ ଅଧିକ ସ୍ପନ୍ଦିତ ହୋଇଛି । ତାଙ୍କର ଗତାୟୁ ଶୈଶବ ଯେଉଁ ଗାଁ, ବିଲ, ବଣ, ଯେଉଁ ତୋଟାମାଳ, ଶିମୁଳିପାଳରେ ଉଦ୍‌ଯାପିତ ହୋଇଛି, ସେହି ମଧୁମୟ ଶୈଶବର ସ୍ମୃତିଚିତ୍ର ହିଁ ତାଙ୍କ କବିତାକୁ ଏକ ଉଷ୍ଣ ଆବେଗନିଷ୍ଠତା ଆଣି ଦେଇଛି ।

କବିର ଅତୀତ ପ୍ରୀତି ଓ ପ୍ରକୃତି ପ୍ରୀତି ସର୍ବତ୍ର ଗୋଟିଏ ମୁଦ୍ରାର ଦୁଇଟି ପାର୍ଶ୍ୱ ପରି । ଏକକ ଆବେଗରୁ ଉଭୟ ଅତୀତ ପ୍ରତି ସମ୍ମୋହନ ଓ ପ୍ରକୃତିପ୍ରାଣତା ଉତ୍ସାନ୍ତରିତ ହୋଇଥାଏ ।

ନିଜର ମଧୁର ଶୈଶବକୁ ଜୀବନରେ ଜଣେ ଝୁରି ନ ହେଲେ ଜୀବନର ଅନ୍ୟ କୌଣସି ସୂତ୍ରରୁ ସେ ମଧୁରତର ଆସ୍ୱାଦନ ଲାଭ କରି ପାରିବ ନାହିଁ । ଶୈଶବର ଦିନସବୁ ଯେତେ ନିଃସ୍ୱ ଓ ବେଦନାଭରା ହୋଇଥିଲେ ବି ଗତାୟୁ ଫଗୁଣ ପରି ତାହା ଜଣକୁ ମଧୁ ବସନ୍ତର ଅନୁଭବ ଆଣିଦିଏ । ଜୀବନର ମଧୁରତର ସମ୍ମୋହନ ହେଉଛି ସତରେ ଶୈଶବ ସ୍ମୃତିରେ ପୁଲକିତ ହେବା । ଜୀବନରେ ତାଠାରୁ ଅଧିକ ପ୍ରୀତିପଦ ବିଷୟ କିଛି ନାହିଁ ।

ପଲ୍ଲୀର ସକାଳଟିଏ ଯେଉଁଠି ନିଦରୁ ପକ୍ଷୀଟିଏ ଉଠି ଆଗ ଡାକେ, ସକାଳର ନାଲି ଖରା, ପଖାଳ ଭାତ, ଗୋବର ଲିପା ମାଟି ପିଣ୍ଡା ଆଉ ଯେତେସବୁ ମନଲୋଭା ରୂପରସ ଗନ୍ଧର ଉଚ୍ଛଳ ପାର୍ବଣୀ ସେସବୁ ଜଣକୁ ଅନନ୍ତକାଳ ପାଇଁ ବାନ୍ଧିରଖେ । କବିଟିର ବିଭୋର ଚିତ୍ତ ସେଠି ବାନ୍ଧି ହୋଇଯିବା ଏକାନ୍ତ ସ୍ୱାଭାବିକ । ସେହି ମୁଗ୍ଧ ଅନୁଭବ କବି କାଳିନ୍ଦୀଚରଣଙ୍କ ପାଇଁ ତାଙ୍କ ଉତ୍ତର ଜୀବନରେ ଯେପରି ଦୂର ସ୍ମୃତିରେ ପରିଣତ ହୋଇଛି ।

ମୋହିଲା ନୟନ କେତେ ରୂପେ କେତେ ବର୍ଣ୍ଣେ ସଦା ମୋର
କେତେ ମଧୁବାଣୀ ପରଶି ଯାଇଛି କର୍ଣ୍ଣେ ମଧୁକର,
(ମନେନାହିଁ - କାଳିନ୍ଦୀଚରଣ)

ଅତୀତର ମଧୁମୟ ଦିନସବୁ ଛାୟାଛନ୍ନ ପରିମଣ୍ଡଳର ଅସ୍ପଷ୍ଟ ମୁଦ୍ରାପରି; ଯାହା ଯେତେ ଅସ୍ପଷ୍ଟ ହେଲେ ବି କବି ହୃଦୟ କଦାପି ବିସ୍ମୋରି ଯାଇ ପାରେ ନାହିଁ । ସ୍ୱପ୍ନ, ସମ୍ପତ୍ତି ଓ ସଂସାରର ଗହଳ ଚହଳ ଭିତରେ କବି ସେହି ମଧୁମୟ ଦିନ ସବୁକୁ ହିଁ ଝୁରିମରେ । ଏ ସଂସାରରେ କବିଟିଏ ନାହିଁ ଯିଏ ଅତୀତ ମୁଖୀ ନୁହେଁ ।

ନାରୀଟିଏ ଯେମିତି ଶାଶୁଘରେ ସ୍ୱାମୀ ଓ ପ୍ରଚୁର ଐଶ୍ୱର୍ଯ୍ୟ ଭିତରେ ବି ବାସିଭାତ ମଦରଙ୍ଗା ଶାଗ ଖାଇ ଦିନ ନେଇଥିବା ବାପ ଘରର ମର୍ମିଳ ମମତାକୁ ବସି ଭାଳି ହୁଏ, କବିଟିଏ ସେମିତି ଶୈଶବର ସ୍ୱପ୍ନିଳ ସେଇ ଦିନ ସବୁକୁ ଭାବେ ।

ସନ୍ତାପିତ ଜୀବନରେ ଋତୁଟିଏ କେବେ ଦୂର ଅତୀତରେ କବି ଚିତ୍ତକୁ ବିମୋହିତ କରିଥିଲା, ଆଦ୍ୟ ଯୌବନରେ କେଉଁ ନଦୀ ଘାଟରେ କବିର ଆଖି ମୋହିନୀ କନ୍ୟାକୁ ଦେଖିଥିଲା, ଉତ୍ତର କାଳରେ ସେହି ବିମୁଗ୍ଧ ଭାଷା ହିଁ ତାର କବିତା । 'ମନେ ନାହିଁ' କବିତା ଗ୍ରନ୍ଥଟି ସେହି ବିହ୍ୱଳ ସମ୍ମୋହନର ପ୍ରତିଲିପି । ପ୍ରତିଟି କବିତା ସେହି ଶୈଶବ ପ୍ରତି ସମ୍ମୋହିତ ହେବାର ଅନୁଭବକୁ ନିଷ୍କପଟ ଭାବେ ସଞ୍ଚାଳିତ କରିଛି ନାନା ଭାବ ପ୍ରତୀକରେ ।

''ଜଳେ ଥଳେ କେତେ ନିରେଖିଲି ନୂଆ ଭାଦର ନୂଆ ଛବି
ନୂଆ ନୂଆ ରୂପ କଲି ପୂଜା, କଲି ଆଦିର ସୁଖ ଲଭି
ବାତାୟନ ପଥେ ଉଡ଼ିଥିଲା ଚାରୁ ପଣତ ଦେଖି ତାହା
ପରମ ପୁଲକେ ଏ ପରାଣ ହେଲା ଆନତ ସେ କି ମାୟା
କୁଟୀର ଦୁଆରେ ବିଲୋକି ସୁଷମା ଶାଟୀର ହେଲି ବାଇ
ସୁନା ପାଲଟିଲା ଶତେକ ସପନ ମାଟିର ମନେ ନାହିଁ ।''

ସ୍ପଷ୍ଟ ମନେ ନଥିବା ସେ ଅତୀତ ଯେଉଁ ଅତୀତରେ କବିଙ୍କ ଶୈଶବ ଉଦ୍‌ଯାପିତ ହୋଇଛି ତାହା କେବେ ଭୁଲିବାର ନୁହେଁ । ସେ କେଉଁ ଦୂର ପ୍ରାନ୍ତୀୟ ପଲ୍ଲୀର ଚାଳ ଛପର ଘର, ଛାୟା ଶୀତଳ ତୋଟାମାଳ, ନଦୀକୂଳ, ଝଡ଼ପ୍ରବଣ ଭାଦ୍ରବ ରାତି, ଘନଘୋର ବର୍ଷାକାଳ, ନିଦାଘ, ପ୍ରାବୃଟ, ପଲ୍ଲୀର ଅନୁପମ ସଞ୍ଜ ଓ ସକାଳ ସବୁକିଛିକୁ କବି କାଳିନ୍ଦୀଚରଣ ଶୈଶବ-ପ୍ରତି ସମ୍ମୋହନ ବଶତଃ ଉଷ୍ଣ ଆବେଗର ସହିତ ଲେଖିଛନ୍ତି ।

ପୃଥିବୀର ରୂପରସ ରାଗକୁ ବିମୋହିତ ଚିତ୍ତରେ ଅନୁଭବ କରିବାପାଇଁ ସେ ଯେବେ ସମର୍ଥ ହୋଇଛନ୍ତି ତା'ର ସରସ ବର୍ଣ୍ଣନା ବି ତାଙ୍କ କବିତାର ବିଷୟ ପିଣ୍ଡକୁ ସେହିପରି ଛଳ ଛଳ ଓ ଏକାନ୍ତ ଅନୁରାଗମୟ କରି ଦେଇଛି । ତାଙ୍କର 'ପାଶୋରି ଦେଲିରେ ଶିମୁଳିପାଳ' କବିତାଟି ଏହି ଶୈଶବ-ସ୍ମୃତି ଚୟନରେ ଏକାନ୍ତ ପ୍ରାଣପୂର୍ଣ୍ଣ ଓ ଅନୁରାଗମୟ ହୋଇଉଠିଛି । କବି କାଳିନ୍ଦୀଚରଣ ଲେଖିଛନ୍ତି –

''ଭୁଲିଗଲି ମୋର ଛୋଟ ଘରଟିର
ପୁରୁଣାମାଟି
ଦୂର ଦିଗନ୍ତ ଧାନବିଲେ କେତେ ଖେଳିଛି ଖେଳ
ମାନି ନାହିଁ ଖରାବରଷା ପବନ
ପିଚ୍ଛିଳ ବାଟ
ଶଇଶବ ପ୍ରିୟ ବନ୍ଧନ ସବୁ ।
ଆସିଲି କାଟି
ଦୂର ଗାଁଆ କୋଳେ ବୁଡୁଥିଲା ମୋର ।
ଗୋଧୂଳି ବେଳ
ଶିଶୁସାଥୀ ମେଳେ ବସୁଥିଲା କେତେ
ସୁଖର ହାଟ
କେତେ ପ୍ରିୟସ୍ମୃତି ଅନୁଭୂତିମୟ
ଅତୀତ କାଳ
ତୋତେ ଚାହିଁ ଆଜି ପାସୋରି ଦେଲିରେ ଶିମୁଳିପାଳ
(ମନେନାହିଁ –କାଳିନ୍ଦୀଚରଣ)

କାଳିନ୍ଦୀଚରଣ ରୂପ ଓ ସମ୍ମୋହନର କବି; ପଲ୍ଲୀଜୀବନ ଓ ନିପୀଡ଼ିତ ମାନବାତ୍ମାର କବି । ମଣିଷର ପ୍ରାଣକୁ ପୁଲକିତ କରିବା, ଉଦ୍‌ବୋଧିତ କରିବା ତାଙ୍କ କବି କର୍ମର ଉଦ୍ଦେଶ୍ୟ । ଏ ସମସ୍ତ ଅନୁଭବର ମୂଳଭୂମି ହେଉଛି ଗତାୟୁ ଅତୀତ । ଯେକୌଣସି ସମୟ ଖଣ୍ଡରେ ଛିଡ଼ା ହୋଇଥିଲେ ବି ଜୀବନର ଯେକୌଣସି ଅବସ୍ଥାରେ, ପ୍ରେମରେ, ବିପ୍ଳବରେ, ସୁଖରେ ଦୁଃଖରେ ବିରହରେ ମିଳନରେ କେବଳ ସେ ଅତୀତମୁଖୀ । ସେହି ଅତୀତକୁ ଝୁରି ହେବାରେ ହିଁ ତାଙ୍କ କବିଚିତ୍ତ ଉଦ୍‌ବେଳିତ ହୋଇଛି ।

ତାଙ୍କ କବିତାର ସ୍ୱପ୍ନ ଅଛି; ପୀଡ଼ିତ ମାନବାତ୍ମାର ମୁକ୍ତି ପାଇଁ ସଂଗ୍ରାମର କିଛି ସର୍ବିତ ଇସ୍ତାହାର ଅଛି । ଭବିଷ୍ୟ ଭାବନା ବି ଅଛି । ମାତ୍ର କବି କାଳିନ୍ଦୀଚରଣ ଏତେ ଅତୀତ ପ୍ରାଣ ଯେ ତାହା ହିଁ ବସ୍ତୁତଃ ତାଙ୍କ କବିତାର ଭାବ କେନ୍ଦ୍ର ହୋଇଛି । ତାଙ୍କ ବିହ୍ୱଳ କବିଚିତ୍ତ ସେହି ଭାବନାରେ ହିଁ ସ୍ପନ୍ଦିତ ହୋଇଛି । ସବୁଜ ଗୋଷ୍ଠୀର ଅନ୍ୟ କେହି କବି ଏତେ ଅନୁରାଗର ସହିତ ନିବିଡ଼ ପଲ୍ଲୀ ପ୍ରକୃତି ଓ ତା ମଧରେ ଉଦ୍‌ଯାପିତ ଶୈଶବକୁ ଲେଖି ନାହାନ୍ତି ।

ଛନ୍ଦ, ଶବ୍ଦାବଳୀର ସରସ ସଂସ୍ଥାପନ, ଦାର୍ଶନିକ ଗାମ୍ଭୀର୍ଯ୍ୟ, ରହସ୍ୟବାଦୀ ଅନୁଚିନ୍ତା ଆଦି କୌଣସି ସଚେତନତା ତାଙ୍କ ଶୁଦ୍ଧ ଅତୀତ ଭାବନାକୁ କ୍ଲିଷ୍ଟ କିମ୍ବା ଜଟିଳ କରିନାହିଁ । ୱାର୍ଡ଼ସୱାର୍ଥୀୟ ସରଳ ପ୍ରକୃତି ଚିତ୍ର ବରଂ ଆମେ କାଳିନ୍ଦୀଚରଣଙ୍କ ପଲ୍ଲୀକୈନ୍ଦ୍ରିକ କବିତାରେ ଦେଖୁ । ଅବଶ୍ୟ ୱାର୍ଡ଼ସୱାର୍ଥଙ୍କର ପ୍ରକୃତି ଚିତ୍ରମୂଳକ; କିମ୍ବା ଅତୀତ ପ୍ରୀତିମୂଳକ କବିତାରେ

କିଛି ଦାର୍ଶନିକ ତଥା ରହସ୍ୟବାଦୀ ଭାବନା ପ୍ରତୀକିତ ହୋଇଛି । ତାହା କିନ୍ତୁ ତାଙ୍କର ଅତୀତକୁ ଝୁରି ହେବାର ମୂଳ ଭାବପିଣ୍ଡକୁ ଗୌଣ କରି ଦେଇପାରି ନାହିଁ । ସେମିତି କିଛି ବିସ୍ମୟବୋଧ, କାଳ ସଚେତନତା ଓ ପ୍ରକୃତି ପ୍ରେମ କାଳିନ୍ଦୀଚରଣଙ୍କ କବିତାକୁ ଅବଶ୍ୟ ଅଧିକ ଭାବ ପ୍ରବୋଧକ ଓ ଗମ୍ଭୀର କରିଛି । କିନ୍ତୁ ଅତୀତକୁ ଝୁରି ହେବାର ଗୋଟେ ତୀବ୍ର ଅନୁଭବ ତାରି ଭିତରେ ତଥାପି ଏକ ମାର୍ମିକ ଓ ଆନ୍ତରିକ ଅଭିବ୍ୟକ୍ତି ଲାଭ କରିଛି ।

ବର୍ଷଣ ମୁଖର ରାତ୍ରୀ କଟିଛି ନୂଆ ନୂଆ ସ୍ୱପ୍ନରେ । କେତେ କାମନା ଓ ବାସନାର ସେ ଆଦ୍ୟ ଯୌବନର ଦିନସବୁ । ମନକୁ ଛୁଇଁଛି, ଅନ୍ତରକୁ ଆଲୋଡ଼ିତ କରିଛି, ପ୍ରାଣରେ ଭରି ଦେଇଛି ଉଷ୍ଣତା । ବରଷାର ଗୀତ ଗାଇବାରେ କବିଚିତ୍ତ ପୁଲକିତ ହୋଇଛି । ସତରେ କବିଟିଏ ଏ ମର୍ତ୍ତ୍ୟକୁ ଯେ ଅମରାବତୀ ଜ୍ଞାନ କରେ, ସେହି କବି ଏ ପୃଥିବୀର ବର୍ଷା ବସନ୍ତ ସଞ୍ଜ ସକାଳର ରୂପ ଛବିରେ ବିମୁଗ୍ଧ ହୁଏ । ସେ ହିଁ ପୃଥିବୀକୁ ଭଲ ପାଏ ।

ଶିଶୁଟିଏ, କିଶୋରଟିଏ ତା ମାଆକୁ ନିଷ୍କପଟ ଭାବେ ଯେପରି ଭଲ ପାଇ ପାରେ, ଉତ୍ତୀର୍ଣ୍ଣ ବୟସରେ ବୟସ୍କ ମଣିଷ ନିକଟରେ ଭଲ ପାଇବାର ନିଷ୍କପଟତା ବରଂ ନଥାଏ । ଜଣେ କପଟଶୂନ୍ୟ ଭାବେ କେବଳ ପ୍ରକୃତିକୁ ଭଲ ପାଇପାରେ । ପ୍ରେମରେ ମଜଗୁଲ ହୋଇପାରେ । କୈଶୋର ସେ ପାଇଁ ପ୍ରଶସ୍ତ, ଉତ୍ତୀର୍ଣ୍ଣ ବୟସ ନୁହେଁ । ଝଡ଼ ପବନ ଦିନ ସଞ୍ଜ, କଳାହାଣ୍ଡିଆ ମେଘ, ବର୍ଷା ବାଦଲ, କୋକିଳର କୁହୁଧ୍ୱନି ଶିଶୁମନକୁ ଯେପରି ଅଭିଭୂତ କରିଦିଏ, ସେ ଅନୁଭବ କୌଣସି ଭାବରେ ତେଣୁ ପ୍ରକୃତିପ୍ରାଣ ହୋଇପାରେ ନାହିଁ ।

ପଙ୍କିଳ ଅସତ ମନୋଭାବ, ଘୃଣା, ଈର୍ଷା, ଦ୍ୱେଷ, ପରଶ୍ରୀକାତରତା ବୈରତା କାହାକୁ କେବେ ଅତୀତ ପ୍ରାଣ କରିପାରେ ନାହିଁ । ଚିତ୍ତ ଉଦ୍‌ବୋଧିତ ନହେଲେ, ଜଣକର ଭାବଚେତନା ସିକ୍ତ ନହେଲେ, ଜଣେ ମରମୀ ନହେଲେ ଜୀବନର ଗତାୟୁ ଦିନସବୁ ମୁଦ୍ରିତ ବର୍ତ୍ତମାନରେ ସ୍ମୃତିଚୟନ ଭିତରେ ଫୁଲ ହୋଇ ଫୁଟିପାରେ ନାହିଁ ।

ମରମୀ ମାତ୍ରେ ହିଁ କବି । ଗଲାଦିନର କଥାକୁ ଝୁରି ହେବାରେ ଯେଉଁ ମାଧୁର୍ଯ୍ୟ ଜଣେ ଅନୁଭବ କରେ ଅନାଗତ ଜରିଝଲା ଭବିଷ୍ୟ ଭାବନାରେ ଜଣେ ସେହି ମାଧୁର୍ଯ୍ୟକୁ ଅନୁଭବ କରିପାରେ ନାହିଁ । ଗଲା ଆଷାଢ଼କୁ ଯେ ନିଦାଘରେ ତା ସ୍ମୃତିରେ ଜୀବନ୍ତ କରି ସାଇତି ରଖି ପାରିଥାଏ ସେଇ କେବଳ ବର୍ଷାକୁ ପ୍ରକୃତରେ ଭଲ ପାଇଥାଏ; ତାକୁ ସ୍ମୃତିରେ ସାଇତି ରଖି ପାରିଥାଏ । କବି ଚିତ୍ତର ମହିମା ଏଇଠି । କେଉଁ ବାଲ୍ମୀକି କାଳିଦାସ ଯୁଗରୁ କବିଚିତ୍ତ ଅତୀତ ସ୍ମୃତିରେ ହିଁ ଉଦ୍‌ବେଳିତ ହୋଇଛି ।

ଏଠାରେ ଏ ପ୍ରସଙ୍ଗରେ କାଳିନ୍ଦୀଚରଣଙ୍କ 'କଟକ' କବିତାଟିକୁ ଉଦ୍ଧାର କରାଯାଇପାରେ । କଟକର ମଣିଷମାନଙ୍କ ଭିତରେ ଅତୀତ ପାଇଁ ସତେ ଯେମିତି ଆଉ ଖୋଜା ଲୋଡ଼ା ନାହିଁ । ସମସ୍ତେ କେବଳ ରାଜନୀତିରେ ହିଁ ବ୍ୟସ୍ତ । କଟକ ଏଠାରେ ବିଷୟ

ସୁଖ ସର୍ବସ୍ୱ ଜନପୀଠର ପ୍ରତୀକ ଓ ରାଜନୀତି ଅନାବଶ୍ୟକ ଜଟିଳତାର ପ୍ରତୀକ । କାଳିନ୍ଦୀଚରଣ ଲେଖିଛନ୍ତି -

''ଏକ ଦିନକର ଭୁଲି ଯାଇଥିବା କଥା
ଆଉ ଦିନକର ହଜି ଯାଇଥିବା ଗୀତ
ଖୋଜି ଯାଇଥିବା ନିମେଷର ଆକୁଳତା
କେଉଁ ଦିନ କାହିଁ ମଜି ଯାଇଥିବା ଚିତ୍ତ
ନାହିଁ କିଛି ନାହିଁ ସବୁ ଲାଗେ ଖାଲି ଖାଲି
ନାହିଁ ସେ ବରଷା, ନାହିଁ ସେ ନିଦାଘ ଶୀତ
କଟକେ କେବଳ ରାଜନୀତି ଆଜିକାଲି ।''

('କଟକ' - ଛୁରିଟିଏ ଲୋଡ଼ା-କାଳିନ୍ଦୀଚରଣ)

ଦୂର ପ୍ରାନ୍ତୀୟ ପଲ୍ଲୀରେ ଯେଉଁ ଅଖ୍ୟାତ ଚାଳଘର ଖଣ୍ଡିକୁ କବି ତାଙ୍କ ଉତ୍ତର ଜୀବନରେ ଅତି ଶ୍ରଦ୍ଧାର ସହିତ ସ୍ମରଣ କରିଛନ୍ତି ତାଙ୍କ ଉଜ୍ଜ୍ୱଳ ଅତୀତ ପ୍ରୀତିର ନିଦର୍ଶନ ରାଜକଟକର ପ୍ରତୁଳ ଐଶ୍ୱର୍ଯ୍ୟ ଭିତରେ ବି ନିଜର ଜନ୍ମପୀଠ ଗାଁର ସେ ଚାଳଘର ଯେଉଁଠି କବି ଜୀବନର ଆଦ୍ୟପ୍ରେମ ବାଢ଼ିଛନ୍ତି ତାକୁ ବିସ୍ମୋରି ଯାଇ ପାରିନାହାନ୍ତି । କୁଟୀର ଚିରନ୍ତନ । ପ୍ରିୟ ଓ ପବିତ୍ର ସେ ଚାଳଘର ଅନେକ କୋଟି ମଣିଷଙ୍କ ନିବାସସ୍ଥଳୀ । କେହି କେବେ ଆଦ୍ୟ ଯୌବନର ସ୍ମୃତି ସ୍ନିଗ୍ଧ ପ୍ରଥମ ପ୍ରେମର ଅର୍ଘ୍ୟ, ପ୍ରଥମ ଚୁମ୍ବନ ଓ ଆଲିଙ୍ଗନର ଆଶ୍ଳେଷକୁ ଜୀବନ ସାରା ବିସ୍ମୋରି ଯାଇପାରେ ନାହିଁ ।

ମଣିଷ ବଞ୍ଚିଥିବା ସେଇ ଚାଳ ଘରସବୁକୁ କବି ତା ଚିତ୍ତଭୂମିରେ ତୀର୍ଥସ୍ଥାନ କରେ । 'ଚାଳର ଘର' କବିତାଟି ସେହି ସମ୍ମୋହନର ଏକ ଉଜ୍ଜ୍ୱଳ ପ୍ରକାଶ ।

''ଚାଳର ଘରେ ଜନ୍ମ ମୋର
ଚାଳର ଘରେ ଥାଏଁ
ଚାଳର ଘରେ ପିଅଇ ପାଣି
ଚାଳର ଘରେ ଖାଏଁ
ପରାଣ ଦିଅଁ ହୃଦୟେ ମୋର
ନୂତନ କରି ବଜାଅ ସ୍ୱର
ଜୀବନ ବ୍ୟଥା ପରାଣେଶ୍ୱର
ନୂତନ କରି ଗାଏଁ ।'
× × ×
ଚାଳର ଘରେ ଆଦ୍ୟ ପ୍ରେମ

ଦେଇଛି ମୋର ବାଡ଼ି
ଚାଳର ମୋର କୁଟୀର ଗୋଟି
ତୁଚ୍ଛ କରେ ଭୁବନ କୋଟି
ଚାଳର ଘରେ ପଡ଼ିଛି ଲୋଡ଼ି
କେତେ ନୟନ ବାରି ।'

କବି ନଗରର ବିଚିତ୍ର ଜୀବନ ଲୋଡ଼ି ନାହାନ୍ତି । ଗାଁର ସେହି ଚାଳଘର ତାଙ୍କ ଭାବନାର କେନ୍ଦ୍ର ହୋଇଛି । ତାଙ୍କ ଉପାସନା ମନ୍ଦିର ହୋଇଛି । ଆକାଶ କୋଣରେ ଆଷାଢ଼ ମେଘ ଭରି ଯାଇଥିବା ଦୂରତମ ଗାଁ ଭୂଇଁକୁ ସେ ସେପାଇଁ ଜୀବନରେ ଏତେ ମାନ୍ୟତା ଦେଇଛନ୍ତି । କବିଙ୍କ ପାଇଁ ସେହି ଚାଳଘରେ ଉଦ୍‌ଯାପିତ ହୋଇଥିବା ମଧୁର ଶୈଶବ ହିଁ ସମୋହନର ବିଷୟ; ତାହା ଯେତେ ନିଃସ୍ୱ ଓ ନିଃସମ୍ବଳ ହେଉ ପଛେ ।

ମଣିଷଣ ଜୀବନ ଯଦି ଏକ ମହାର୍ଘ ଅନୁଭବ ତା ହେଲେ ଜୀଇଁବା ଛଡ଼ା କିମ୍ବା ଅନୁଭବ କରିବା ବ୍ୟତୀତ ଜୀବନ ନାହିଁ । ଜୀବନ ତେଣୁ ସାମଗ୍ରିକ ଭାବେ କେତେ ବିଚିତ୍ର ଅନୁଭବ ଓ ଅଭିଜ୍ଞତାର ସମଷ୍ଟି । ଜୀବନର ଶୈଶବରେ ଏ ଅନୁଭବ ସବୁ ଭାରି ଛବିଳ, ସର୍ପିଳ ମନେ ହୁଏ । ୱାର୍ଡ଼ସୱାର୍ଥ ସେହି ଶୈଶବର ବର୍ଣ୍ଣନା ଦେଇ ଲେଖିଛନ୍ତି –

' There was a time when meadow, grove and stream.
The earth, and every common sight,
To me did seem
Apparelled in celestrial light,

(Wordsworth)

କେତେ ରୂପ, ଯୌବନର କେତେ ଉଦ୍ଦାମ ଗାନ ତାଙ୍କର ପ୍ରିୟତର ହୋଇଛି ତା'ର ଏକ ଚମତ୍କାର ଆଲେଖ୍ୟ ହେଉଛି– କାଳିନ୍ଦୀଚରଣଙ୍କର 'ପୌଷମଳୟ' କବିତାଟି । ରବୀନ୍ଦ୍ର ନାଥଙ୍କର କାବ୍ୟ ଭାବନାର ମୂଳ ବରଂ ଏହି ଅତୀତ ପ୍ରୀତି । ଅତୀତର ସବୁକିଛି ବର୍ତ୍ତମାନକୁ ରସମୟ ହୋଇ ଯାଇଥାଏ । ପୌଷର ଧାନବିଲ, ପୌଷ ନଦୀପଠା, ଫସଲ କଟାର ଗାନ କେତେ ଭାବରେ କବି ଚିତ୍ତକୁ ବିମୋହିତ କରିଛି । କାଳିନ୍ଦୀଚରଣ 'ଆକାଶ ଶଶିସମ ଦୂରେ/ କେତେ ରୂପ ପରଶିଲ ପ୍ରାଣେ / ଆକାଶର ଶଶିସମ ମୋର / କେତେ ରୂପ ହେଲା ପ୍ରିୟତର / ଯୌବନର ଉଦ୍ଦାମ ଗାନେ /କେତେ ରୂପ ପରଶିଲା ପ୍ରାଣେ /କେତେ ରୂପ ହେଲାଣି ଅରୂପ । ଏଜୀବନ - ପଥେ ରଖି ଜାଗ' ବୋଲି ଯେତେବେଳେ ଗାଇଛନ୍ତି ସେତେବେଳେ ତାଙ୍କର ଭାବନା ଅତ୍ୟନ୍ତ ମାର୍ମିକ ହୋଇଛି । ତାଙ୍କୁ ତାଙ୍କର ଶୈଶବ ହିଁ ବାରମ୍ବାର ସମ୍ମୋହିତ କରିଛି । ସମଗ୍ର 'ମନେନାହିଁ' କବିତା ଗ୍ରନ୍ଥ ତାଙ୍କର ଏହି ଶୈଶବ ସମ୍ମୋହନର ବାଣୀରୂପ । କାଳିନ୍ଦୀଚରଣ ତେଣୁ ଯେତେ ଅନ୍ୟମାନଙ୍କ ପରି ବିପ୍ଳବୀ,

ସଂସ୍କାରକ ବା ଦାର୍ଶନିକ ନୁହନ୍ତି ସେତେ ବେଶୀ ଅଧିକ କବି । ତାଙ୍କର ଏହି କାବ୍ୟାତ୍ମିକତା ବରଂ ଶୈଶବ ପ୍ରୀତିରେ ହିଁ ଅଧିକ ସଞ୍ଚାଳିତ ହୋଇଛି । କେତେ ଅନ୍ତର ନେଇ ଜୀବନ ମୃତ୍ୟୁର ଛବି ଆଙ୍କି ଅତୀତକୁ ଫେରିଛନ୍ତି । ତାହା ତାଙ୍କର ଏହି କେତେକ ଧାଡ଼ିରୁ ପ୍ରକଟିତ ହୁଏ ।

''ଚେତନ ହେଲାଣି କେତେ ଜଡ଼
କେତେ କୁଇ ହୁଏ କୁଆଁରବ
ଆଲୋକ ଛାୟାର କେତେ ଛବି
ପଥେ ଆସିଯାଏ ପୁଣି ଦ୍ରବି
ରଚ଼ି ସୁଖ ଦୁଃଖ ନବ ନବ
କେତେ କୁଇ ହୁଏ କୁଆଁରବ
କେତେ ଶୀତ କେତେ ମଧୁମାସ
ଜୀବନର ଜୟ ପରାଜୟ
ଦୁର୍ଦ୍ଦିନ, ଅମା କେତେ ଶତ
ଅନ୍ତରେ କାଟିଥିଲା କ୍ଷତ
ପଉଷର ଅମନ୍ଦ ମଳୟ
ପ୍ରାଣ ପୁଣି ବଜାଏ ବଳୟ ।'

(ପୌଷ ମଳୟ - କାଳିନ୍ଦୀଚରଣ)

ପ୍ରକୃତିପ୍ରାଣ କବିଟିଏ ସ୍ୱତଃ ଯେପରି ଅତୀତ ପ୍ରାଣ ଏବଂ ତା'ର ଛବିକ ଅତୀତ ହେଉଛି ତା'ର ଶୈଶବର ଦିନସବୁ; ଯାହା ସମଗ୍ର ଜୀବନ ପାଇଁ ଜଣକର ସ୍ମୃତିରେ ଏକାନ୍ତ ଅବିସ୍ମରଣୀୟ ହୋଇ ରହିଯିବ । ସାମୁଏଲ ୱାଡ଼୍‌ସସ୍ୱାର୍ଥ ମଧ୍ୟ ସେହି ଶୈଶବ ଦିନକୁ ଏକାନ୍ତ ଅପାସୋରା ବୋଲି ବର୍ଣ୍ଣନା କରି ଲେଖିଛନ୍ତି –

'How dear to this heart are the scenes of my childhood, when fond recollection recalls them to view. The orchard, the meadow, the deep - tangled wildwood, And every loved spot which my infancy knew.'

(Samuel Wordsworth)

ପୁଣି କିଶୋର ଜୀବନର ଆଦ୍ୟ ପ୍ରେମର ସ୍ମୃତିଠାରୁ ଆଉ ମହାର୍ଘ ଭାବସମ୍ପତ୍ତି ମଣିଷ ଜୀବନରେ କିଛି ନଥାଏ, ସେ ରାଜା ହେଉ କି ପ୍ରଜା ହେଉ । କାଳିନ୍ଦୀଚରଣଙ୍କ କବିତାର ଶୈଶବପ୍ରୀତି ଏହି ଆଦ୍ୟଯୌବନର ମଧୁର ସ୍ମୃତି ଚୟନରେ ଅଧିକ ସଞ୍ଚାଳିତ ହୋଇଛି । ଆଦ୍ୟ ପ୍ରଣୟକୁ ଅଧୀର ଆବେଗରେ ପ୍ରକାଶ କରିବାରେ କାଳିନ୍ଦୀଚ଼ରଣଙ୍କ କାବ୍ୟଚ଼େତନା ଅଧିକ ଗତିଶୀଳ ଓ ଉଦ୍ବେଳିତ ହୋଇଛି । ସମସାମୟିକ ଅନ୍ୟ ସବୁଜ ବନ୍ଧୁଙ୍କ ଠାରୁ ତାଙ୍କ କବିତାର ଏହି ସ୍ପନ୍ଦନ ଉଲ୍ଲେଖଯୋଗ୍ୟ ଭାବେ ଭିନ୍ନ ଓ ଅଧିକ ଗତିଶୀଳ ।

ପ୍ରକୃତି ପ୍ରାଣ କବିଚିତ୍ତ ଖାଲି ପ୍ରେମ ପ୍ରଣୟରେ ନୁହେଁ, ମଣିଷ ପ୍ରତି ନିଃସର୍ତ୍ତ ଶ୍ରଦ୍ଧା-ନିବେଦନରେ ବି ଗତିଶୀଳ । କାଳିନ୍ଦୀଚରଣଙ୍କ କବିତାରେ ମାନବପ୍ରୀତିର ସ୍ୱର ଅତ୍ୟନ୍ତ ସ୍ପଷ୍ଟ । ସେ ଅନ୍ୟ ସବୁଜଙ୍କ ଠାରୁ ଏଇଥିପାଇଁ ଅଧିକ ପ୍ରଗତିବାଦୀ ତଥା ମାନବବାଦୀ ବୋଲି ମନେ ହୁଅନ୍ତି ।

ପ୍ରକୃତି ଓ ମଣିଷ ଏକ ପାରସ୍ପର୍ଯ୍ୟାତ୍ମକ ଅନୁଭବର ଦୁଇପାର୍ଶ୍ୱ ଯେପରି । ମାନବପ୍ରେମୀ ନହୋଇ ଜଣେ କବି ଶୁଧୁ ପ୍ରକୃତି ପ୍ରାଣ ହେବା ନିରର୍ଥକ, ଜଣେ ସଚ୍ଚା ପ୍ରକୃତିପ୍ରାଣ କବି ସମଭାବରେ ମାନବ ପ୍ରାଣ । ଏଠାରେ ରବୀନ୍ଦ୍ର କାବ୍ୟ ଚେତନାର ଏହି ଦୁଇ ମୁଦ୍ରାକୁ ଅଭିନ୍ନ ଭାବରେ ଲକ୍ଷ୍ୟ କରାଯାଇପାରେ, ଯାହାର ସମାନତା ଅନେକାଂଶରେ କାଳିନ୍ଦୀଚରଣଙ୍କ କବିତାରେ ପରିଲକ୍ଷିତ ହୁଏ ।

କବି ୟୁଲିୟମ ବ୍ଲାକ ମଣିଷ ଓ ପ୍ରକୃତି ମଧରେ ଅଭେଦ୍ୟ ପରିକଳ୍ପନା କରି 'Where man is not Nature is barren' ବୋଲି ଯାହା କହିଛନ୍ତି ତାହା ଯଥାର୍ଥ । କାଳିନ୍ଦୀଚରଣଙ୍କ କବିତାଦର୍ଶରେ ମାନବପ୍ରେମ ଓ ପ୍ରକୃତିପ୍ରାଣତା ସମନ୍ୱିତ ଅଭିବ୍ୟକ୍ତି ଲାଭ କରିଛି । ମାନବପ୍ରେମର ପ୍ରଗାଢ଼ତା କାଳିନ୍ଦୀଙ୍କ କବିତାକୁ ଧର୍ମ ଓ ଈଶ୍ୱର ବିରୋଧରେ ଅଧିକ ବିପ୍ଲବଧର୍ମୀ କରିଛି । 'ଛୁରୀଟିଏ ଲୋଡ଼ା' କବିତା ଗ୍ରନ୍ଥର ଅଧିକାଂଶ କବିତା ଏହି ପର୍ଯ୍ୟାୟର । କାଳିନ୍ଦୀଙ୍କ କବିତାକୁ କେତେକ ସାହିତ୍ୟ ଛାତ୍ର ଏହି ପରିପ୍ରେକ୍ଷୀରେ ପ୍ରଗତିବାଦୀ ସ୍ଥାନ କରିବା ଏକାନ୍ତ ସ୍ୱାଭାବିକ । ପ୍ରକୃତିକୁ ପ୍ରାଣଭରି ଭଲ ପାଇବାର ସ୍ୱାଭିମାନ ଓ ସମ୍ବେଦନଶୀଳତା କାଳିନ୍ଦୀଙ୍କ ଶୈଶବ ପ୍ରୀତିରେ ପ୍ରତିବଦ୍ଧ ଅଭିବ୍ୟକ୍ତି ଲାଭ କରିଛି ।

ଶୈଶବର ଖୁଦ କଣାଟିଏ ବି କୋଟି ଇନ୍ଦ୍ର ସମ୍ପତ୍ତି ଠାରୁ କବି ଚିତ୍ତରେ ଅଧିକ ମହାର୍ଘ ହୋଇଛି । ଚାଳ ଘରର ଜୀବନ ଏକାନ୍ତ ଅବିସ୍ମରଣୀୟ ହୋଇ ରହି ଯାଇଛି ସେପାଇଁ । ଶୈଶବରେ ଉଦ୍‌ଯାପିତ ପଲ୍ଲୀଜୀବନ ପ୍ରତି କବି ଚିତ୍ତରେ ଏକ ସହଜାତ ସମ୍ମୋହନ ରହିଛି । ଗାଁ ଭୂଇଁ ସୁନ୍ଦର ଦିଶେ, ମୁଖରିତ ହୁଏ ତା'ର ପର୍ବପର୍ବାଣି ଯୋଗୁଁ । କବିଙ୍କ 'ରଜ' କବିତାଟି ସେହି ଭାବର ସଞ୍ଚାଳକ । ଭାବ ଆତ୍ମୀୟତାର ଏକ ଅନୁଷ୍ଠାନ । ସମ୍ମିଳିତ ଉତ୍ସବମୟ ତା'ର ଏକ ତିଥି । କାଳିନ୍ଦୀଙ୍କ କବିତାରେ ପର୍ବପର୍ବାଣିରେ କିଶୋର ଜୀବନ କିପରି ଉଦ୍‌ବେଳିତ ହୋଇ ଉଠିଛି ତା'ର ପ୍ରାଣପୂର୍ଣ୍ଣ ବର୍ଣ୍ଣନା ପରିଲକ୍ଷିତ ହୁଏ । କେବଳ ଖାଲି ଉଲ୍ଲେଖ କରିବା ନୁହେଁ, ଅନୁଭବର ନିବିଡ଼ତା ତାଙ୍କ କବିତାରେ ବରଂ ଉଦ୍‌ଭାସିତ ହୋଇଛି ।

ବର୍ଷାକାଳ ଆରମ୍ଭ ହୁଏ । ନିଦାଘ ପରେ ଝରା ଆଷାଢ଼ ଆସେ । ଗ୍ରାମ ସୀମନ୍ତିନୀ ଯତ୍ନରେ ରଜ ପାଳନ ପାଇଁ ସଜବାଜ ହୁଏ । ତେଲ ହଳଦୀ ଲଗାଇ ସ୍ନାନ କରେ ଓ ସୁବେଶିତ ହୁଏ । ଗାଁ ସାରା ଉତ୍ସବମୟତାରେ ଭରି ଉଠେ । ଏହା କବିଚିତ୍ତର ଅବିସ୍ମରଣୀୟ ଶୈଶବ ସ୍ମୃତି । 'ହଳଦୀ ଲଗାଇ ମୁଣ୍ଡ ବାନ୍ଧି ଯତନେ/ ଗ୍ରାମ ସୀମନ୍ତିନୀ ଆଦରେ ଚାହିଁଥିବେ ଗଗନେ ।' ରାତି ଅନ୍ଧାରରେ ବର୍ଷା ଝରି ପଡୁଥିବ । ରଜଦିନ ସରି ଯାଉଥିବ । ପର୍ବର ଗହଳ

ଚହଲ ସରି ଆସୁଥିଲେ କିଶୋରୀ ପ୍ରାଣରେ ଯେଉଁ ବ୍ୟଥା ହୁଏ ତାହା ସର୍ବଜନବିଦିତ । ଏ ଅନୁଭବ ସବୁରି ପ୍ରାଣରେ କମ ବେଶୀରେ ରହିଛି । ଏକାନ୍ତ ଭାବମୟ ଅନୁଭବବିନ୍ୟସ୍ତ ହୋଇଛି ନିମ୍ନୋକ୍ତ ଧାଡ଼ିରେ –

‘ଚକିତେ ଚାହିଁବ ଚମକି
ପ୍ରାଣ ହରଷ ଭରି
ନିଜନ ଅନ୍ଧାର ବାହାରେ
ବାରି ପଡୁଛି ଝରି
ଛଳ ଛଳ ନେତ୍ରେ ପଡ଼ିବ
ମୁହଁ ମାଡ଼ି ଶେଯରେ
ନିଜନେ ନିରାଶ ମିଶିବ
ଅନ୍ଧକାର ତେଜରେ ।’’

(‘ରଜ’ - ଛୁରୀଟିଏ ଲୋଡ଼ା)

ଶୈଶବକୁ ଭଲ ପାଇବାର ଏକ ଆତ୍ମିକ ପରିଣତି ହୋଇଛି କବିଙ୍କର ଉଚ୍ଛଳ ଜୀବନପ୍ରିୟତା । ସେଇ ମଣିଷର ହୃଦୟବତ୍ତା ଅତ୍ୟନ୍ତ ସଞ୍ଚରଣଶୀଳ ଓ ସୁପରିବାହୀ ଯେ ତା’ର ଶୈଶବର ଦିନସବୁକୁ ଝୁରି ମରେ । କାରଣ ଜୀବନର ପଦପଦବୀ, ଧନଦଉଲତ ଅବା ଯେକୌଣସି ଆକର୍ଷଣ ବିବର୍ଜିତ ସେ ଶୈଶବସ୍ମୃତି ସତରେ ଏକାନ୍ତ ମଧୁମୟ । ମଧୁର ଜୀବନ ଶୈଶବ ପ୍ରତି ଯେ ଉଦାସୀନ ସେ କେବେ କବିଟିଏ ନୁହେଁ । ସହଜାତ ଆବେଗ ବଳରେ ମଣିଷ କବିଭାବାପନ୍ନ ହୁଏ । ଅତୀତର ସ୍ମୃତି ତାକୁ ମୁଗ୍ଧ କରେ । ସେହି ଆବେଗ ବଳରେ ସେ କେତେ ପଛ ଦିନକୁ ମନେ ପକାଏ । ଏହି ଅପାଶୋରା ଅତୀତକୁ ଭଲପାଇବାର ଅନୁଭବ କମ୍ ବେଶୀରେ ସମସ୍ତଙ୍କର ରହିଛି । ପାଠକ ତା’ର ପରିଚିତ ସେହି ଅନୁଭବ ବଳରେ କବିର ଅତୀତ ସଂପ୍ରୀତିକୁ ବୁଝିପାରେ ।

‘ମନେନାହିଁ’ କବିତା ଗ୍ରନ୍ଥର ପ୍ରତ୍ୟେକ କବିତା କବିଙ୍କ ଅତିବଡ଼ ଶୈଶବ ପ୍ରୀତିକୁ ନାନା ଭାବରେ ପ୍ରତୀକିତ କରିଛି । ଜୀବନକୁ ଭଲ ପାଇବାର ଗଭୀର ନିମଜ୍ଜମାନତା ବରଂ ସେହି ଦିନମାନଙ୍କର ସ୍ମୃତିରେ ରହିଛି । ଯେ ଜୀବନର ନିଷ୍ପାପ ଶୈଶବରେ ଛବିଳ ପ୍ରକୃତିକୁ ଦେଖିଛି, ପଲ୍ଲୀର ରୂପ ବୈଚିତ୍ର୍ୟକୁ ଅତି ନିକଟରୁ ଦେଖିଛି ସେହି କବି କେବଳ ଅନ୍ତର ଦେଇ ଗାଇ ପାରେ –

‘‘ଆଜିତ ମନେପଡ଼ଇ ନାହିଁ
ସେ କେଉଁ ପଥେ ରହିଲା ଚାହିଁ
ସେ କେଉଁ ଗୀତ ଆସିଲା ଭାସି ବନୁ
ସକଳ ରୂପ ଅରୂପ ହେଲା ଅତନୁ ହେଲା ତନୁ ।

× × × × × ×

ଧରଣୀ ହେଲା କୋମଳତମ
ଆକାଶ କମନୀୟ
ମରଣ ହେଲା ମଧୁରତର ଜୀବନ ହେଲା ପ୍ରିୟ
ସେ ଗୀତେ ମୁଁ ତ ଯାଇନି ହଜି
ନିଜକୁ ତହିଁ ପାଇଲି ଖୋଜି
ସେ ଗୀତେ ମୋର ପରାଣ ଭରି ଝରିଲା କି ଅମିୟ
ମରଣ ହେଲା ମଧୁରତର ଜୀବନ ହେଲା ପ୍ରିୟ ।''

କାଳିନ୍ଦୀଚରଣଙ୍କ 'ମନେନାହିଁ', 'ମହାଦୀପ' 'କ୍ଷଣିକ ସତ୍ୟ', 'ଛୁରୀଟିଏ ଲୋଡ଼ା' 'ମୋ କବିତା' ଆଦି କବିତା ଗ୍ରନ୍ଥରେ ସନ୍ନିବେଶିତ ଅଧିକାଂଶ କବିତାରେ ବିମୁଗ୍ଧ କବିଚିତ୍ତ ଅତୀତ ଭାବନାରେ ହିଁ ଉଦ୍‌ବେଳିତ ହୋଇଛି । ଅନେକଙ୍କ ପାଇଁ ଶୈଶବ ଏକ ନିଷ୍ଫଳ ଚପଳତା, ଯାହାକୁ ନେଇ କେହି କେବେ ବଞ୍ଚେନି । ଜଟିଳ ଦିନଗୁଡ଼ିକ ହେଉଛି ଜୀବନର ବ୍ୟବସ୍ଥା ପାଇଁ ସଚେତନ ହେବାର ବୟସ । ଅତିକ୍ରାନ୍ତ ବୟସରେ ସେହି ବାଲିଘର ତୋଳିବାର, କାଗଜ ଡଙ୍ଗା ଭସାଇବା, ମିଛି ମିଛିକା ସଂସାର କରିବାର ସ୍ମୃତି ଏକା ତେଣୁ ପ୍ରୀତିପଦ ହୋଇଥାଏ, ଜଟିଳ ଯୌବନର ଦିନସବୁ ନୁହେଁ ।

ଶୈଶବ ଯେପରି ସର୍ବଦା ସବୁ ସ୍ଥାନରେ ପ୍ରେମ ଓ ବିଶ୍ୱାସ କରିବାର ବୟସ, ଅବିଶ୍ୱାସ ତାପରେ ପରିଣତ ବୟସରେ ହିଁ ଆସେ । ଶୈଶବର ସବୁ ସ୍ୱପ୍ନ, ସବୁ ବିଶ୍ୱାସ ଓ ଭଲ ପାଇବା ଯେପରି ପର ଜୀବନରେ ଉଜୁଡ଼ି ଯାଏ । କାଳିନ୍ଦୀଚରଣ ଲେଖିଛନ୍ତି –

''ଖେଳନା ଯେତେ ଲୋଡ଼ିଲି ଶୈଶବେ
ମିଳିଲା ନାହିଁ ସେତ ସକଳ ଏହି ଭବେ ।
ପିଟିଲି ମଥା ଖାଲି ଅରଜି ବ୍ୟଥାଭାର
ଅବୋଧ ଲୁହ ସିନା ଢ଼ାଳିବା ହେଲା ସାର । (କ୍ଷଣିକ ସତ୍ୟ - କାଳିନ୍ଦୀଚରଣ)

ବ୍ୟଥା ଅର୍ଜିବାର ଦିନ ହେଉଛି ମଣିଷର ଯୌବନ; କାରଣ ସେଠି ବ୍ୟବସ୍ଥା ଓ ତଦ୍‌ଜନିତ ସଂସ୍ଥାପନ ଓ ସଂଗ୍ରାମରେ ଖସଡ଼ା ଅଛି । ବ୍ୟଥାହୀନ, ବାଧାହୀନ, ଉଦ୍‌ବେଗହୀନ ଶୈଶବର ସ୍ମୃତି ସାରା ଜୀବନ ସମସ୍ତଙ୍କୁ ମୋହାଚ୍ଛନ୍ନ କରି ରଖିଥାଏ । କବିଚିତ୍ତ ଏଥିପ୍ରତି ତେଣୁ ଅଧିକ ଆକୃଷ୍ଟ ।

''ଚପଳ ଶଇଶବେ ତୋଳିଲି ଯେତେ ଘର
ନିଜର କଲି କେତେ କାହାକୁ କାଳିପର
ଜାଣିଲି ସୁଖ ଦୁଃଖ ମଣିଲି ସବୁ ସତ
ଜୀବନ ଜାଲ ମୋର ବୁଣିଲି ଅବିରତ ।' (କ୍ଷଣିକ ସତ୍ୟ - କାଳିନ୍ଦୀଚରଣ)

କବିଙ୍କପାଇଁ ମୁଦ୍ରିତ ବର୍ତ୍ତମାନର କୌଣସି ଆକର୍ଷଣ ନାହିଁ; ନାହିଁ ଜରିଝଲା ଅନାଗତ ଭବିଷ୍ୟର । ଯେତେ ସେ ନିଷ୍ଫଳ ଚପଳତା ହେଉପଛେ ସେ କେବଳ ସମ୍ମୋହିତ ସେହି ମଧୁର ଅତୀତ ପ୍ରତି । ନିଜ ମନ ଓ ଚେତନାରେ ଅତୀତକୁ ସେ ସ୍ମୃତି ସମ୍ପଦ କରି ରଖିଛନ୍ତି । କାଳିନ୍ଦୀଚରଣଙ୍କ କବିତା ଅପେକ୍ଷାକୃତ ଅଧିକ କାବ୍ୟିକ ମନେହେବାର କାରଣ ହେଉଛି ଅତୀତକୁ ଝୁରି ହେବାର ଏକ ସମ୍ବେଗାତ୍ମକ ମାର୍ମିକତା । ପଲ୍ଲୀ ଓ ପ୍ରକୃତି ଉଭୟ ସେହି ଅତୀତର ସ୍ମୃତି ଚୟନ ଉପଲକ୍ଷେ ତାଙ୍କ କବିତାରେ ବିଶେଷଭାବେ ପ୍ରତୀକିତ ହୋଇଛି । ଅତୀତ ପ୍ରାଣ କବିଙ୍କର ଏ ସ୍ୱୀକାରୋକ୍ତି–

''ଆଗାମୀ ଭାବନା ମୋର
ନିଭିଯାଏ ଅତୀତର ପୁରେ ।

ବିଷୟୀ ମଣିଷ ବର୍ତ୍ତମାନ ଓ ଭବିଷ୍ୟତକୁ ନେଇ ସର୍ବଦା ବ୍ୟସ୍ତ । ଅତୀତକୁ ଝୁରି ହେବାରେ ଲାଭ କ'ଣ ? କବି ଭାବୁକଙ୍କ ପରି ଭାବବାଦୀମାନେ ଗତାୟୁ ଫୁଲ ଫଗୁଣର ଦିନଗୁଡ଼ିକୁ କେବଳ ବାପଘର ଛାଡ଼ି ଆସିଥିବା ଝିଅ ପରି ଝୁରି ହୁଅନ୍ତି ।

କବି ୱାର୍ଡ଼ସୱାର୍ଥ ନିଜର ଶୈଶବ ସ୍ମୃତିରେ 'The Prelude' ପରି ଏକ ମହା କାବ୍ୟିକ ଜୀବନଗାଥା ଲେଖି ଯାଇଛନ୍ତି । ତାଙ୍କ ଆଦ୍ୟ ଜୀବନର ମୁଗ୍ଧ ମଧୁର ଦିନ ସବୁକୁ ସେ ଆଦୌ ଯେପରି ବିସ୍ମୋରି ଯାଇ ପାରିନାହାନ୍ତି । ସେହିପରି ଚାର୍ଲସ୍ ଲ୍ୟାମ୍ବ (Charls Lamb) ଯେ ତାଙ୍କ ପ୍ରବନ୍ଧ ଭିତରେ ନିଜ ଅତୀତକୁ ରୂପାୟିତ କରିବାରେ ବସ୍ତୁତଃ କବିତା ହିଁ ଲେଖିଛନ୍ତି ।

ସ୍ୱପ୍ନ ଦେଖିବା ଓ ସ୍ୱପ୍ନ ଉଜୁଡ଼ିଯିବା ଉଭୟ ହିଁ ସେହି ଗତ ଦିନ ଗୁଡ଼ିକର କଥା, ଯାହା ଭାବନାକୁ ଆଣିଲେ କେଉଁ ପ୍ରେମାସ୍ପଦ ପାଇଁ ପରମକୁ ଅନୁଭବ କଲାଭଳି ବିହ୍ୱଳ ହୋଇଉଠେ ଓ ସେହି ପରିବୋଧନୀୟ ମୁହୂର୍ତ୍ତର ଅନୁଭବ ଅପ୍ରାପ୍ତିରେ ବି ମଧୁର ଲାଗେ । ଅନ୍ତରକୁ କାବ୍ୟାତ୍ମକ କରି ଦେବାରେ, ଚିତ୍ତ ଭୂମିକୁ ଉଦ୍‌ବେଳିତ କରିଦେବାରେ ଅତୀତର ଏହି ମଧୁମୟ ଦିନଠାରୁ ଆଉ ଅଧିକ ଆକର୍ଷଣୀୟ ଓ ପ୍ରୀତିପଦ ବିଷୟ କ'ଣ ଅଛି ।

ମଣିଷର ଅନ୍ତର ପାଇଁ ବିଷୟ ବଡ଼ ନୁହେଁ; ବଡ଼ ହେଉଛି ଭାବ । ସମଗ୍ର ଜୀବନର ଭାବଭୂମି ହେଉଛି ସତରେ ପାଣି ପରି ବହି ଯାଉଥିବା ଦିନସବୁ । ଆଷାଢ଼ ରାତିରେ ଝୁରିହେବା ପାଇଁ ଅତୀତର ବିରଳ ପରିବୋଧନୀୟ ଘଟଣା ହିଁ ଯଥେଷ୍ଟ । ୱାର୍ଡ଼ସୱାର୍ଥ ତାଙ୍କର ପ୍ରସିଦ୍ଧ 'ଦି ପ୍ରିଲ୍ୟୁଡ଼' କାବ୍ୟରେ ଲେଖିଛନ୍ତି –

''By which the perishable hours of life
Rest on each other, and the world of thought
Exists and is sustained."

ଅତୀତର ସୁନ୍ଦର ପ୍ରେମପୂର୍ଣ୍ଣ ଦିନମାନଙ୍କ ପାଇଁ ଝୁରି ହେଉନଥିବା ମଣିଷଟି ଅନ୍ୟମାନଙ୍କ ପ୍ରତି ଅନୁଦାର ଓ ନିଷ୍କରଣ ହୁଏ । ଯେଉଁମାନେ ନିଷ୍କପଟ ଅତୀତକୁ ନିର୍ବୋଧ ଶୈଶବର ଦିନ ବୋଲି କେବଳ ଜ୍ଞାନ କରନ୍ତି ସେମାନେ ପଶୁତୁଲ୍ୟ ।

ସୁନ୍ଦର ପୃଥିବୀକୁ ପ୍ରାଣଭରି ଦେଖିବାର ପ୍ରବଣତା ସେହି ଶୈଶବରେ ହିଁ ଥାଏ । ତାହା ଜଟିଳ ଯୌବନରେ ବା ଉତ୍ତୀର୍ଣ୍ଣ ବୟସରେ ଯେପରି, ସର୍ତ୍ତାଧୀନ ହୋଇପଡ଼େ ତାହା ଶୈଶବରେ ହୋଇ ନଥାଏ । କବି ୱାଡ଼ସ୍ୱାର୍ଥଙ୍କ ପରି କାଳିନ୍ଦୀଚରଣଙ୍କ କାବ୍ୟସ୍ୱର ବହୁଭାବରେ ଅତୀତମୁଖୀ; ଯେଉଁଥିପାଇଁ ତାଙ୍କ ପଲ୍ଲୀ ଓ ପ୍ରକୃତିପ୍ରାଣତା ତାଙ୍କୁ ବହୁଭାବରେ ବିହ୍ୱଳ କରିଛି, ଯାହା ତାଙ୍କ ସମୟରେ ଅନ୍ୟ ସବୁଜ କବିଙ୍କ କବିତାରେ ରୂପାୟିତ ହୋଇ ପାରିନି ।

'ପାଶୋରି ଦେଲିରେ ଶିମୁଳିପାଳ', 'ମନେ ନାହିଁ' ଆଦି କାଳିନ୍ଦୀଚରଣଙ୍କ କବିତାର ଅନ୍ତର୍ଗତ ସ୍ୱର ଓ ତା'ର ଯଥାର୍ଥତା ଉପଲବ୍ଧି କରିବାପାଇଁ ଜଣେ ସାହିତ୍ୟ ଛାତ୍ର ବା ପାଠକ ୱାର୍ଡ଼ସୱାର୍ଥଙ୍କ 'The prelude' କାବ୍ୟର ନିମ୍ନୋକ୍ତ ପଦ ପଂକ୍ତି ପରି ଅନେକ ଧାଡ଼ିକୁ ଲକ୍ଷ୍ୟ କରିପାରେ । ୱାର୍ଡ଼ସୱାର୍ଥ ଲେଖିଛନ୍ତି –

"Our simple childhood its upon a throne
That hath more power that all the elements,
I guess not what this tells of being past,
Nor what it aughrs of the life to come
But so it is; (The Prelude - Wordsworth)

କାଳିନ୍ଦୀ ଚରଣ ଲେଖିଛନ୍ତି –

''ମନେଅଛି ଶଇଶବେ ପ୍ରଥମେ ତୋ ରୂପ ଦରଶନେ
ତୋ ନିବିଡ଼ ଚେତନାର ସୁଧା ଦରଶନେ
ଉତ୍‌ଫୁଲ୍ଲ ବାଳକ ହିୟା ନାଚୁଥିଲା
ଏଇ ସଇକତେ
ଶିଶୁର ରକତେ
ଛୁଟିଥିଲା କି ବିଦ୍ୟୁତ୍ କି ଉଦ୍ଦାମ ତେଜ
ତୋ ଶିକତା ଶେଯ
କରି ପୁଣି ଯଉବନେ ସଂଶୟ ଦୋଳାରେ
ଜୀବନ ଭେଳାରେ ।''

ଅତୀତକୁ ବାରମ୍ବାର ସ୍ମରଣକୁ ଆଣିବାରେ କବିଚିତ୍ତ ସବୁକାଳରେ କିପରି ସ୍ପନ୍ଦିତ ହୋଇଛି ଉଲ୍ଲିଖିତ ଧାଡ଼ିଗୁଡ଼ିକ ତା'ର ନିଦର୍ଶନ । ପଲ୍ଲୀ କବି ନନ୍ଦକିଶୋର ବଳଙ୍କ ଏହି ଅତୀତ ପ୍ରୀତି ସମଗ୍ର ଓଡ଼ିଆ କାବ୍ୟଧାରାରେ ଏକ ଉଲ୍ଲେଖଯୋଗ୍ୟ ବିଷୟ । ନନ୍ଦକିଶୋରଙ୍କ କବିତା ଅତୀତ ପ୍ରତି ଅତ୍ୟଧିକ ସମ୍ମୋହନର ସରସ ସ୍ୱୀକାରୋକ୍ତି ଯେପରି । ନନ୍ଦକିଶୋରଙ୍କ ଗ୍ରନ୍ଥାବଳୀର ଶହ ଶହ ଧାଡ଼ି ଶୈଶବକୁ ସ୍ମରଣକୁ ଆଣିବାରେ ଅତ୍ୟନ୍ତ ସିକ୍ତ ଓ ସାର୍ଥକ ରଚନା ।

''ମନେ ପଡ଼େ ଏତେ କିମ୍ବା ଶୈଶବ ଜୀବନ,
ଅତୀତ ଗହ୍ୱରେ ଲୀନ, ନାହିଁ ଯାର ଚିହ୍ନ ?
ମନେପଡ଼େ ମୋର ସେହି ଘରଦ୍ୱାର ବାଡ଼ି,
ଯାହାକୁ କରାଳ କାଳ ନେଇଅଛି କାଢ଼ି ।
ଖେଳୁଥିଲି ବୁଲୁଥିଲି ସଙ୍ଗ ଗହଳରେ
ଲୁଚିଛି ସେ କାଳ ଏବେ କାଳଗରଭରେ
× × × × ×
ତେବେ ଅବା ସେ ମୋହନ ସ୍ମୃତି ପ୍ରିୟତମ
ଲୁଚି ଯାଇପାରେ, ଏବେ କି ଉଜ୍ଜ୍ୱଳତମ''

(ଶୈଶବ ସ୍ମୃତି - ନନ୍ଦକିଶୋର ବଳ)

ନନ୍ଦକିଶୋର ତାଙ୍କର ପ୍ରବାସୀ ଜୀବନରେ ଯେତେବେଳେ ଲେଖିଛନ୍ତି -

''ଭାବର ଆବେଶେ ଦୂର ପରବାସେ
ମନେପଡ଼େ ପ୍ରିୟା ଯାହା
ତାହାରି ସଙ୍ଗତେ ଦରଶନ ଦିଏ ଅତୀତ ଜୀବନ ଛାୟା''

ସେତେବେଳେ କାଳିନ୍ଦୀଚରଣ ତାଙ୍କର 'ମନେ ନାହିଁ' କବିତା ଗ୍ରନ୍ଥରେ ଅତୀତକୁ ଆହୁରି ପ୍ରାଣଦେଇ ଆହୁରି ନିଷ୍କପଟଭାବେ ସ୍ମରଣ କରିଛନ୍ତି ।

ଅତୀତ ସ୍ମୃତିରେ ବିଗଳିତ ହୋଇ ଯିବା ଏକ ବଡ଼ କବିତ୍ୱର ବିଷୟ; ଯାହା ଦେହ ମନକୁ ପୁଲକିତ କରିଦିଏ । ଏହି ପରିବୋଧନୀୟ ବିରଳ କବିତ୍ୱକୁ କବି ଉପଲବ୍ଧି କରିଛନ୍ତି ଅତୀତର ସ୍ମୃତି ସ୍ନିଗ୍ଧ ଦିନମାନଙ୍କୁ ସ୍ମରଣ କରି ।

" What I saw
Appeared like something in myself, a dream
A prospect in the mind (The Prelude - Wordsworth).

ଗତ କଥାକୁ ଭାଳି ହେବାରେ ଯେଉଁ ମଧୁର ଅନୁଭବ ତାହା ହିଁ କବିତ୍ୱର ଉତ୍ସ ।

''ଗତକଥା ଭାଳି ସ୍ମୃତି ସୁଧା ଢ଼ାଳି
ପୀରତି ବଲ୍ଲୀର ମୂଳେ ।
ମେଣ୍ଟାଅ ତୃଷା ବସି ଦଣ୍ଡେ ବନ୍ଧୁ
ସ୍ମୃତି ନିର୍ଝରଣୀ କୂଳେ'' (ବସନ୍ତ ନିଦାଘ - ନନ୍ଦ କିଶୋର)

ଅନୁରୂପ ସ୍ମୃତି ଚୟନରେ ଅଭିବ୍ୟକ୍ତି କାଳିନ୍ଦୀ ଚ଼ରଣଙ୍କ ସମସାମୟିକ ଅନ୍ୟତମ ପ୍ରମୁଖ ସବୁଜ କବି ବୈକୁଣ୍ଠନାଥଙ୍କ କବିତାରେ ଦେଖିବାକୁ ମିଳେ । 'ଅମୃତ ଆଶ୍ରୟ ସ୍ମୃତି ! ଶୂନ୍ୟ ମମ ଜୀବନ ସମୃଦ୍ଧି । ସ୍ମୃତିରେ ସରଳପଥ ବସିଲେକ ଥରେ ନେତ୍ର ମୁଦି ।' (ପାନ୍ଥଶାଳା - ବୈକୁଣ୍ଠନାଥ) ଅତୀତ ଜୀବନର ସ୍ମୃତି କଥା ଅନେକ କବିଙ୍କ କବିତାରେ ଅପେକ୍ଷାକୃତ ତାତ୍ତ୍ୱିକ ତଥା ଦାର୍ଶନିକ ଅଭିବ୍ୟକ୍ତି ଲାଭ କରିଛି । ମାତ୍ର ନନ୍ଦକିଶୋରଙ୍କ ପରି କାଳିନ୍ଦୀ ଚ଼ରଣ ଉଦ୍‌ଯାପିତ ଶୈଶବକୁ ମୁଗ୍ଧ ଚିତ୍ତରେ ସ୍ମରଣ କରିଛନ୍ତି କେବଳ । ସେଥିରେ ତାଙ୍କର ଅନ୍ୟ କୌଣସି ବୁଦ୍ଧିବାଦୀ ଦାର୍ଶନିକ ଆଟୋପ ନାହିଁ ।

କାଳିନ୍ଦୀଚ଼ରଣ ଯେ କେବଳ ଅତୀତ ପ୍ରୀତିମୂଳକ କବିତା ଲେଖିଛନ୍ତି ତାହା ନୁହେଁ, ଅନ୍ୟାନ୍ୟ ଅନେକ କବିତା ଲେଖିଛନ୍ତି । ମାତ୍ର ଅତୀତ ପ୍ରତି ସମ୍ମୋହିତ ହୋଇଥିବା ଅନୁଭବର ଭାଷାଭିବ୍ୟକ୍ତି ସରସ ଓ କାବ୍ୟିକ ହୋଇଛି; ଯାହା ହୁଏତ କାଳିନ୍ଦୀଚରଣଙ୍କ କବିତାର ଏକ ବୌଦ୍ଧିକ ଦିଗ ।

କାଳିନ୍ଦୀ ଚ଼ରଣ ତାଙ୍କ କବିତାରେ ଯେଉଁ ବିପୁଳ ପଲ୍ଲୀଚିତ୍ର ଆଙ୍କିଛନ୍ତି, ଯେଉଁ ଋତୁଚିତ୍ର ଅଙ୍କନ କରିଛନ୍ତି, ସେଥିରେ ସେ ମୁଖ୍ୟତଃ ତାଙ୍କ ଶୈଶବର ମଧୁମୟ ଦିନ ଗୁଡ଼ିକ ସ୍ମରଣକୁ ଆଣିଛନ୍ତି । ଏହା ଯେକୌଣସି ଶୁଦ୍ଧ ରୋମାଣ୍ଟିକ କବିର ଏକ ସହଜାତ ଗୁଣ ତାହା ହେଉଛି ତା'ର ଅତିବଡ଼ ଅତୀତପ୍ରୀତି (ନଷ୍ଟାଲଜିକ୍) କବିତାର ମୂଳ ଆବେଗ ସେହି ଭାବରେ ବିନ୍ୟସ୍ତ ହୋଇଥାଏ । ତା'ର ହୃଦୟ ସତତ ଆନ୍ଦୋଳିତ ହୁଏ ଏକ ସମ୍ମୋହିତ ଭାବପ୍ରବଣତାରେ । ସେ ସମ୍ମୋହନ ଦୂର ନିର୍ଜନ ପୃଥିବୀ ପ୍ରତି ଓ ଗତାୟୁ ଅତୀତ ପ୍ରତି । ପ୍ରେମ ଓ ପ୍ରଣୟର ପ୍ରଶାନ୍ତ, ଉଷ୍ଣ ଭାବାବେଗ, ନୂତନ କଳ୍ପନା ଓ ପ୍ରକୃତି ପ୍ରୀତି ଭିତରେ ରୋମାଣ୍ଟିକ କବିମନ ବାରବାର ସଂଗଳିତ ହୁଏ । କିନ୍ତୁ ସବୁ ଆବେଗ ଭିତରେ ସେ ଗତାୟୁ ଅତୀତକୁ ଅଧିକ ବର୍ଣ୍ଣାଢ଼୍ୟ କରି ଦେଖେ ।

ବିଟପ ଛାୟାର ନିବିଡ଼ ତମସା, ଭାଦ୍ରବର ବର୍ଣ୍ଣିଳ ଆକାଶ ଓ ଦିଗନ୍ତ, ମଧୁବସନ୍ତର ମୁଗ୍ଧ ମଧୁର ଚାହାଣୀ, କେତେ ତୃଷିତ ଆଖି, ଉଚ୍ଛଳ ପାଣି ପବନର ଦିନ ସବୁକୁ ଚିତ୍ରଣ କରିବାରେ କାଳିନ୍ଦୀଚରଣଙ୍କ କବିମନ ଅଧିକ ଅତୀତମୁଖୀ ହୋଇପଡ଼ିଛି; ସେଥିପାଇଁ ତାଙ୍କ କବିତା ଏତେ ନିବିଡ଼ଭାବେ କାବ୍ୟିକ ମନେହୁଏ । ରହସ୍ୟବାଦୀ ଅନୁଚିନ୍ତା, ଦାର୍ଶନିକ ଆଟୋପ କିମ୍ବା ଆଧାତ୍ମିକ ପରମାର୍ଥ ବ୍ୟାଖ୍ୟାର ଅଳଂକରଣ ଭିତରେ ଯେଉଁ କବି ତା'ର ସହଜାତ ଇନ୍ଦ୍ରିୟ ପରାୟଣତା (Sensuality)କୁ ଢ଼ାଙ୍କିଦିଏ ସେ କବିର କବିତା ସେହି ଭାବରେ ପାଠକର

ପରିଚ଼ିତ ଅନୁଭୂତିକୁ ଛୁଇଁପାରେ ନାହିଁ । ସେ ଦୃଷ୍ଟିରୁ ବିଚାର କଲେ କାଳିନ୍ଦୀଚରଣଙ୍କ କବିତା ଉଲ୍ଲିଖିତ କୌଣସି ଅଳଙ୍କାରଯୁକ୍ତା ନହୋଇ ପାଠକର ପରିଚ଼ିତ ଅନୁଭୂତିକୁ ନାନା ଭାବରେ ଆର୍ଦ୍ର କରେ ।

''ଦେଖିଲି ଗୋଧୂଳି କେତେ ନବ ନବ ଲେଖିଲି ଛବି
ମରମ ପୁଟରେ ଲିଭିଲାଣି କେତେ ନିମିଷେ ଜଳି
ପଥଘାଟେ ଯେତେ ଦେଖିଲି ସୁଷମା ବଖାଣି ନୁହେଁ
କେତେ ରୂପେ ପ୍ରାଣ ପୂରିଲା ରସର ପରାସ ଲଭି
ନାହିଁତ କଳନା କେତେ ଶତପଥେ ଆସିଲି ଚଳି
ଯାପିଥିଲି କେତେ ଯାମିନୀ ନିବିଡ଼ ସୁଖର ମୋହେ ।''

ଉଲ୍ଲିଖିତ ପଦପଂକ୍ତିରେ କବି କେତେ ନିରଳସ ଭାବେ ଅତୀତର ଦିନଗୁଡ଼ିକୁ ଝୁରି ହୋଇଛନ୍ତି ତାହା ତାଙ୍କ କବିତାର ବରଂ ଏକ ଉଲ୍ଲେଖଯୋଗ୍ୟ ଗୁଣ ବା ବିଶେଷତ୍ୱ । ତାଙ୍କ ସମୟରେ ଅନ୍ୟ କୌଣସି ସମଧର୍ମୀ ସବୁଜ କବି ଅତୀତକୁ ଅନୁରାଗର ସହିତ ସ୍ମରଣକୁ ଆଣି ସେଥିପ୍ରତି ସମ୍ମୋହିତ ହେବାର ବିପୁଳ ନିମଜ୍ଜମାନତା ସେମାନଙ୍କ କବିତାରେ ପ୍ରକଟନ କରି ପାରିନାହାନ୍ତି ।

ପରିଶେଷରେ ଏତିକି କୁହାଯାଇପାରେ ଯେ, ସବୁକାଳର ପରିବର୍ତ୍ତନଶୀଳ କାବ୍ୟାଦର୍ଶ ଊର୍ଦ୍ଧ୍ୱରେ କବିର ଅତୀତ ପ୍ରୀତି ପାଠକର ପରିଚ଼ିତ ଅନୁଭୂତିକୁ ସେହି ଭାବରେ ସିକ୍ତ କରେ । ବୁଦ୍ଧିବାଦୀ ଆଧୁନିକ କବିତାରେ ମଧ୍ୟ ଏହି ଅତୀତ ପ୍ରତି କବିଚ଼ିତ୍ତର ସମ୍ମୋହିତ ଭାବ ଯେଉଁଠି ବିନ୍ୟସ୍ତ ହୋଇଥାଏ, ସେଠି ପାଠକ ଆଧୁନିକ କବିତାର ଜଟିଳ ପ୍ରତୀକ ଧର୍ମ ଓ ତା'ର ଭାବକାଠିନ୍ୟ ଊର୍ଦ୍ଧ୍ୱରେ ଅଧିକ ତନ୍ମୟତା ଅନୁଭବ କରେ । ଏଇଥିପାଇଁ ପ୍ରତ୍ୟେକ ପ୍ରକାର କବିତାରେ କମ୍ ବେଶୀରେ ରୋମାଣ୍ଟିକ ଧର୍ମ ହିଁ ଥାଏ । ପୃଥିବୀରେ ଏପରି କୌଣସି କବି ନାହାନ୍ତି ଯେଉଁମାନେ ଆଦୌ ରୋମାଣ୍ଟିକ ନୁହନ୍ତି । ଆଧୁନିକ କବିତା ରେମାଣ୍ଟିକ ଅନର୍ଗଳତା (Romantic Verbosity)କୁ ବର୍ଜନ କରିବା ପାଇଁ ଇସ୍ତାହାର ଦେଇଥିଲେ ହେଁ ରୋମାଣ୍ଟିକ ଅନର୍ଗଳତା ପୁନଃ ଆଧୁନିକ କବିତାରେ ପ୍ରବେଶ ଲାଭ କରିଛି । ଆଧୁନିକ କବିତାର ଯେ କୌଣସି ଅନୁରକ୍ତ ପାଠକ କାଳିନ୍ଦୀଚରଣଙ୍କ 'ପାଶୋରି ଦେଲିରେ ଶିମୁଳିପାଳ', 'ମନେନାହିଁ' କିମ୍ବା 'ଚାଳର ଘର' ଆଦି କବିତା ପାଠକରି ଆଜି ମଧ୍ୟ ବିଶେଷ ଭାବେ ଆନନ୍ଦ ଲାଭ କରି ପାରିବ ଓ ଆଗାମୀ ଦିନରେ ମଧ୍ୟ ସେ ଆନନ୍ଦ କେବେ ଊଣା ହୋଇଯିବ ନାହିଁ । କାଳିନ୍ଦୀଚରଣଙ୍କ ଏହି କବିତାଗୁଡ଼ିକ ପ୍ରତି ଯେ ସମୟ ଖଣ୍ଡରେ ପାଠକର ଅନୁରାଗ ସୃଷ୍ଟି ହେବ ଏବଂ ସେହି ଅନୁରାଗର କାରଣ ହେଉଛି କବିଙ୍କ ଶୈଶବ ପ୍ରୀତି ଓ ସମ୍ମୋହନ ।



# କାଳିନ୍ଦୀଚରଣଙ୍କ କାବ୍ୟ କବିତାରେ ସାମ୍ୟବାଦୀ ଚିନ୍ତାଧାରା

ଡକ୍ଟର ସଂଘମିତ୍ରା ମିଶ୍ର

'ସାମ୍ୟବାଦ'ର ନାମଟି ନୂତନ ମାତ୍ର ଏହାର ଧାରଣା ବହୁ ପ୍ରାଚୀନ, ଯେମିତି ''ମାତା ଭୂମି ପୁତ୍ରୋଽହଂ ପୃଥିବ୍ୟାଃ'' ବା ''ତେନ ତ୍ୟକ୍ତେନ ଭୁଞ୍ଜୀଥା'' ଭଳି ଚିରନ୍ତନ ଉଦ୍ଧୃତିମାନଙ୍କ ମଧ୍ୟରେ ସାମ୍ୟବାଦର ସ୍ୱର ବେଶ୍ ସ୍ପଷ୍ଟ, କିନ୍ତୁ ସାମ୍ୟବାଦର ଇଂରାଜୀ ଅର୍ଥ 'Communism' ଯାହା ଏକ ଶାସନ ପଦ୍ଧତି ମାତ୍ର ।

ପ୍ରାଚୀନ ଗ୍ରୀସ୍ ଦାର୍ଶନିକ ପ୍ଲାଟୋ ତାଙ୍କର 'Republic' ଗ୍ରନ୍ଥ ଓ ସାର୍ ଥୋମାସ୍ ମୁର ତାଙ୍କର 'Utopia' ଗ୍ରନ୍ଥରେ ସାମ୍ୟବାଦ ସପକ୍ଷରେ ଯୁକ୍ତି ବାଢ଼ିଛନ୍ତି । 'Communism' ଶବ୍ଦର ଅର୍ଥ ''A system in which property used for the production of goods or services is owned by a community or group rather than by individuals." (Standard Encyclopaedia - c- 502) ଯେଉଁ ଅର୍ଥରେ ଆଜି Communism ଶବ୍ଦଟି ବ୍ୟବହୃତ ତାହା ୧୮୩୦ ପୂର୍ବରୁ ସୃଷ୍ଟି ହୋଇ ନଥିଲା । ମାର୍କସ, ଏଙ୍ଗେଲସ, ଲେଲିନ୍‌ଙ୍କ ଭଳି ଚିନ୍ତାନାୟକଗଣ ସାମ୍ୟବାଦର ତତ୍ତ୍ୱ ଉଦ୍ଭାବନ କରିଥିଲେ । ୧୮୪୮ରେ ମାର୍କସ ଓ ଏଙ୍ଗେଲସ୍ "Communist manifesto" ଗ୍ରନ୍ଥ ପ୍ରଣୟନ କରିଥିଲେ । ପରେ ଏହି ଗ୍ରନ୍ଥ ଏଭଳି ପ୍ରଭାବଶାଳୀ ହୋଇଥିଲା ଯେ ଏହାକୁ କେନ୍ଦ୍ର କରି ସାମ୍ୟବାଦୀ ରାଷ୍ଟ୍ରମାନେ ଗଢ଼ିଉଠିଲେ ଓ ସାମ୍ୟବାଦୀ ପାର୍ଟି ମଧ୍ୟ ଗଠିତ ହେଲା । ଏମାନେ ସାମ୍ରାଜ୍ୟବାଦର ବିରୁଦ୍ଧାଚରଣ କରି ଶ୍ରମିକମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସାମ୍ୟବାଦୀ ଚିନ୍ତାର ପ୍ରୟୋଗ କରିଥିଲେ ।

ସାମ୍ୟବାଦୀ ଚିନ୍ତା ମଧ୍ୟରେ ଶ୍ରମିକମାନଙ୍କର ଦାବୀପୂରଣ, ମାଲିକମାନଙ୍କର କ୍ରୁରତାରୁ ସେମାନଙ୍କୁ ସଂଗଠିତ ଭାବରେ ସୁରକ୍ଷା ଦେବା ହିଁ ଶୂନ୍ୟସ୍ଥାନ ଗ୍ରହଣ କରିଥିଲା । ତେଣୁ ସାମ୍ୟବାଦର ବିଚାର ଥିଲା ଯେ ଆବଶ୍ୟକତାଠାରୁ ଅଧିକ ସଂଚୟ ଦେଶର ସର୍ବାଙ୍ଗୀଣ ବିକାଶର ବିରୋଧୀ । ତେଣୁ ସାମ୍ୟବାଦର ମୂଳକଥା ହେଲା ' According to one's Capacity and according to one's need" ସମାଜବାଦ ଏହି ସାମ୍ୟବାଦର ଧାରାଠାରୁ କିଞ୍ଚିତ ଭିନ୍ନ, ସାମ୍ୟବାଦ ଯଦି ମାର୍ଗ ହୁଏ ସମାଜବାଦ ଏହାର ଅନ୍ତିମ ଲକ୍ଷ୍ୟସ୍ଥଳ । ଏଥିରେ ମାନବବାଦୀ ପ୍ରେରଣା ନିହିତ ଓ ସମତୁଲ ସମାଜ ଗଠନ ଏହାର ଲକ୍ଷ୍ୟ । ସାମାଜିକ

ପ୍ରଗତି ପାଇଁ ସୁରକ୍ଷା ଓ ଶାନ୍ତିପୂର୍ଣ୍ଣ ସହାବସ୍ଥାନ ପାଇଁ ସମାଜବାଦ ଜନସାଧାରଣଙ୍କର ଜୀବନ ଧାରଣର ସ୍ତରକୁ ଉନ୍ନତ କରାଇଥାଏ ।

ରୁଷିଆର ବିଶିଷ୍ଟ ସାମ୍ୟବାଦୀ ପ୍ରବକ୍ତା ରୁଷବିପ୍ଳବର ଅନ୍ୟତମ କର୍ଣ୍ଣଧାର ଲିଓନେଦ ବ୍ରେଜନେଭ କମ୍ୟୁନିଷ୍ଟ ପାର୍ଟିର ୨୫ ତମ କଂଗ୍ରେସରେ କହନ୍ତି – ''ଆଜ ସମାଜବାଦ ସଂସାର ଭର ମେଁ ଲାଖୋଁ – ଲାଖ ଲୋଗୋଁ କେ ମନ ଔର ଭାବନାଓଁ କୋ ବହୁତ ଜ୍ୟାଦା ପ୍ରଭାବିତ କର ରହା ହୈ । ସମାଜବାଦ ମେହେନତକଶ ଲୋଗୋଁ କୋ ସ୍ୱତନ୍ତ୍ରତା, ସଚ୍ଚେ ଜନବାଦୀ ଅଧିକାରୋଁ, ମଂଗଳ-କଲ୍ୟାଣ, ଅଧିକତମ ସମ୍ଭବ ସ୍ନାତକ ପହୁଁଚନେ ଔର ସୁରକ୍ଷାକୀ ସୁଦୃଢ଼ ଭାବନା କା ଆଶ୍ୱାସନ କରତା ହୈ । × × × ନିକଟ ଭବିଷ୍ୟ ନିଶ୍ଚୟ ହୀ ସମାଜବାଦ କୀ ଅସୀମ ସମ୍ଭାବନାଓଁ ପୁଞ୍ଜିବାଦ କେ ମୁକାବଲ ଇସ୍‌କୀ ଐତିହାସିକ ଶ୍ରେଷ୍ଠତା କା ନୟା ପ୍ରମାଣ ପ୍ରସ୍ତୁତ କରେଗା,'' (ସମାଜବାଦ ସମ୍ବନ୍ଧୀ ମାର୍କସବାଦୀ – ଲେଲିନ୍‌ବାଦୀ ଶିକ୍ଷା ଔର ଆଜକୀ ଦୁନିଆଁ - ପୃଷ୍ଠା - ୩)

ସାମ୍ୟବାଦୀ ଚିନ୍ତନର ପ୍ରମୁଖ ସ୍ତରଗୁଡ଼ିକ ହେଉଛି (କ) ଧର୍ମ ଏକ ଅଫିମ ନିଶା ଓ ପ୍ରାରବ୍ଧ ଏକ ପ୍ରବଞ୍ଚନା ମାତ୍ର, (ଖ) ଆତ୍ମା, ପରଲୋକ, ସ୍ୱର୍ଗ ନରକ ଓ ଭାଗ୍ୟବାଦର ବିରୁଦ୍ଧାଚରଣ, (ଗ) ତଥାକଥିତ ଈଶ୍ୱରଙ୍କ ଦ୍ୱାରା ନିର୍ଦ୍ଦିଷ୍ଟ ବା ବହୁ ପ୍ରଚଳିତ ନୀତିନିୟମ ଅମାନ୍ୟ କରିବା,(ଘ) ସମାଜର ଯଥାର୍ଥ ଚିତ୍ରଣ, (ଙ) ଦେଶପ୍ରୀତି, (ଚ) ସାମନ୍ତ ପ୍ରତି ବ୍ୟଙ୍ଗ ବିଦ୍ରୁପ, (ଛ) ନାରୀ ପ୍ରତି ସମ୍ମାନଜନକ ଦୃଷ୍ଟିଭଙ୍ଗୀ । ଯେଉଁ ପର୍ଯ୍ୟନ୍ତ ଖଟିଖିଆ ଜନସାଧାରଣ ଭାଗ୍ୟ ଓ ଭଗବାନଙ୍କୁ ବିଶ୍ୱାସ କରୁଥିବେ ସେ ପର୍ଯ୍ୟନ୍ତ ସେମାନଙ୍କୁ ମାଲିକର ଦାଉ ନିର୍ବିକାରରେ ସହିବାକୁ ପଡ଼ିବ ।

ସାମ୍ୟବାଦୀ ସାହିତ୍ୟର ଦୁର୍ବଳ ଦିଗ ଦୁଇଟି ହେଉଛି (କ) ଏହା ବେଳେବେଳେ ସାମୟିକ ଆଗ୍ରହ ସୃଷ୍ଟି; ତେଣୁ ଏହାର ଆବେଦନ ଚିରନ୍ତନ ନୁହେଁ । (ଖ) ରସସୃଷ୍ଟିର କ୍ଷମତା ବେଳେବେଳେ ବ୍ୟାହତ ହୋଇଥାଏ । କିନ୍ତୁ ଓଡ଼ିଶାରେ ସାମ୍ୟବାଦୀ ଚେତନାର ସାହିତ୍ୟସୃଷ୍ଟି ବିଶେଷ ନୁହେଁ, ଏଭଳି ବିଚାରର କାରଣ ହେଉଛି ଓଡ଼ିଶାର ସାମ୍ୟବାଦୀ ସାହିତ୍ୟରେ ସାମନ୍ତବାଦ ଓ ସମାଜବାଦଠାରୁ ମାନବବାଦର ଉଦାର ଚିନ୍ତା ଗୁରୁତ୍ୱପୂର୍ଣ୍ଣ । ଏଠାରେ କେବଳ ବିଶ୍ୱର ମେହେନତି ଜନସାଧାରଣ ପ୍ରତି ବ୍ୟଥା ଓ ବେଦନା ଯେ କେବଳ ପ୍ରକଟିତ ତାହା ନୁହେଁ ଉଦାର ମାନବିକତାରେ ସିକ୍ତ ଏହି ସାହିତ୍ୟର ଆବେଦନ ଚିରନ୍ତନ । ଏହାକୁ ଆମେ ପ୍ରଗତିବାଦୀ ସାହିତ୍ୟର ଧାରା କହିବା ଅଧିକ ଯୁକ୍ତିସଂଗତ । 'ପ୍ରଗତି' ଶବ୍ଦର ଅର୍ଥ ଆଗକୁ ଯିବା, ଉନ୍ନତି କରିବା । କିନ୍ତୁ ସାହିତ୍ୟରେ ଏହି ଶବ୍ଦ 'ମାର୍କସବାଦୀ' ଚିନ୍ତାରେ ଅଗ୍ରଗତି କରିବାକୁ ବୁଝାଇଥାଏ । ସମାଜକୁ ମାର୍କସ ଦୁଇଟି ସ୍ଥୂଳଶ୍ରେଣୀରେ ବିଭକ୍ତ କରିଛନ୍ତି । ଶୋଷକ ଓ ଶୋଷିତ । ତେଣୁ ସେ ଶୋଷିତ ଅର୍ଥାତ୍ ଶ୍ରମିକମାନଙ୍କର ପ୍ରତିନିଧି ସରକାରଙ୍କର

ପରିକଳ୍ପନା କରିଛନ୍ତି ଯେଉଁମାନଙ୍କର ଉତ୍ପାଦନର ସଂପୂର୍ଣ୍ଣ ସାଧନମାନଙ୍କ ଉପରେ ନିୟନ୍ତ୍ରଣ ରହିବ । ସେମାନଙ୍କୁ ଶ୍ରମର ଉପଯୁକ୍ତ ମୂଲ୍ୟମିଳିବ ଓ ବର୍ଗହୀନ ବା ଶ୍ରେଣୀହୀନ ସମାଜ ସୃଷ୍ଟି ହୋଇପାରିବ ।

ଫରାସୀ ରାଷ୍ଟ୍ରବିପ୍ଳବ ପରେ ସମଗ୍ର ବିଶ୍ୱ ସାମ୍ୟବାଦୀ ଚିନ୍ତାଧାରାର ଗୁରୁତ୍ୱ ଉପଲବ୍ଧି କରିଥିଲା । ରୁଷ ବିପ୍ଳବ ପରେ ଏହି ସାମ୍ୟବାଦୀ ଚିନ୍ତାର ଲୋକପ୍ରିୟତା ବୃଦ୍ଧି ପାଇଛି । ପୁଞ୍ଜିବାଦ କର୍ତ୍ତୃକ ବୃଦ୍ଧି ପାଉଥିବା ଆର୍ଥିକ ବୈଷମ୍ୟକୁ ଦୂରକରି ଶ୍ରମିକମାନଙ୍କୁ ଜୀବନର ଗୁରୁତ୍ୱ ସଂପର୍କରେ ସଚେତନ କରିବା ଏହି ଧାରାର ଉଦ୍ଦେଶ୍ୟ । କାର୍ଲ ମାର୍କସ ଓ ଫ୍ରେଡେରିକ ଆଞ୍ଜେଲସଙ୍କ ପ୍ରବର୍ତ୍ତିତ ସାମ୍ୟବାଦୀ ଚେତନା ସେହି ସମୟରେ ପ୍ରାୟ ଭାରତର ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟକୁ ପ୍ରଭାବିତ କରିଥିଲା । ରୁଷିଆର କବି ମାୟାକୋଭସ୍କିଙ୍କର କବିତାର ଏହି ପଙ୍କ୍ତି 'On every single drop of tear that is shed. I myself am crucified" ଟି ସାମ୍ୟବାଦୀ ଚେତନାର ବିଶିଷ୍ଟ ଉଚ୍ଚାରଣ ଭାବରେ ଆମେ ବାରମ୍ବାର ବ୍ୟବହାର କରିଥାଉ । ସେହିପରି ଆମେରିକାର କବି Walt Whitman ଙ୍କ ବିଚାରଧାରା "Comrade, this in no book who touches it touches a man" ମଧ୍ୟରେ ସାଧାରଣ ଜନତା ପାଇଁ ସାହିତ୍ୟ ସୃଷ୍ଟିର ଗୁରୁତ୍ୱ ଉପଲବ୍ଧ ହୋଇଥାଏ । ସର୍ବହରାର ଅଧିନାୟକତ୍ୱରେ ଗଠିତ ହେବ ଯେଉଁ ସମାଜ, ସେଠାର ସମସ୍ତେ ନିଜ ନିଜ ସାମର୍ଥ୍ୟ ଓ ଆବଶ୍ୟକତା ସଂପର୍କରେ ଅଧିକ ସଚେତନ ଥିବେ ।

ସାହିତ୍ୟରେ କିନ୍ତୁ ସାମ୍ୟବାଦୀ ଚିନ୍ତାଧାରା ମଧ୍ୟରେ ସମାଜବାଦୀ ତଥା ପ୍ରଗତିବାଦୀ ଧାରାର ଏକତ୍ର ସମାବେଶ ଦେଖାଯାଏ । ବିଶେଷକରି ରୁଷିଆର ସାମ୍ୟବାଦ ଭିତରେ ଧନିକଠାରୁ ଧନ ବା ସାମର୍ଥ୍ୟ ନେଇ ଆସିବାପାଇଁ ଯେଉଁ ମାର୍ଗଟି ନିର୍ଦ୍ଦେଶ କରାଯାଇଛି ଭାରତ ପରିପ୍ରେକ୍ଷୀରେ ତାହାର ଯଥାର୍ଥତା କିଞ୍ଚିତ ଊଣା ହୋଇଛି, କାରଣ ଗାନ୍ଧିବାଦ ଭାରତୀୟ ଜନମାନସକୁ ସଂପୂର୍ଣ୍ଣ ଭାବେ ପ୍ରଭାବିତ କରିରଖିଛି । ଗାନ୍ଧିଜୀଙ୍କ ଚିନ୍ତାଧାରା ସର୍ବଦା ଗଠନମୂଳକ । ତେଣୁ ସେ ଧନିକର ମନ ପରିବର୍ତ୍ତନ ଉପରେ ହିଁ ଗୁରୁତ୍ୱ ଆରୋପ କରିଛନ୍ତି । ଯଦି ଧନିକ ତଳ ପାହାଚରେ ଥିବା ଅଭାବୀ ମଣିଷଟିର ହାତଧରି ଉପରକୁ ଉଠାଇ ନେବ ବା ତା ସହିତ ଗୋଟିଏ ପାହାଚରେ ଠିଆ ହେବାର ମାନସିକତା ଆଣି ପାରିବ ତେବେ ଆଉ ସଂଗ୍ରାମର ଆବଶ୍ୟକତା ରହିବ ନାହିଁ । ରକ୍ତାକ୍ତ ବିପ୍ଳବଠାରୁ ମାନସିକତାର ପରିବର୍ତ୍ତନ ଅଧିକ ପ୍ରଭାବଶାଳୀ ମଧ୍ୟ ହୋଇପାରିବ । ତେଣୁ ସମଗ୍ର ଭାରତବର୍ଷର ମାର୍କସବାଦୀ ସାହିତ୍ୟ ମାନବତାବାଦୀ ସାହିତ୍ୟରେ ରୂପାନ୍ତରିତ ହୋଇଯାଇଛି । ଶ୍ରେଣୀ ସଂଘର୍ଷର କଥା କହୁ କହୁ ସ୍ରଷ୍ଟା ପୁରୁଷ ସମୟର କଥା କହିଛି ଓ ସୁସ୍ଥ ସମାଜ ଗଠନ ପାଇଁ ପ୍ରଗତିର ପନ୍ଥା ଆପଣାର କରିଛି ।

ଓଡ଼ିଶାରେ ମଧ୍ୟ ଅନୁରୂପ ଚିନ୍ତାଧାରା ପରିଦୃଷ୍ଟ ହୋଇଛି । ତେଣୁ କାଳିନ୍ଦୀଚରଣଙ୍କର 'କିଏ ଶଳା ଶଇତାନ', 'ଯାଦୁଘର' ସଚ୍ଚି ରାଉତରାୟଙ୍କର 'ସର୍ବନାଶର ପଥେ', ମନମୋହନ ମିଶ୍ରଙ୍କର ମୁକ୍ତିତାକରା କୋଟି କଣ୍ଠର କବିତା ସମୂହ ବା ଗୋଦାବରୀଶ ମହାପାତ୍ରଙ୍କର 'ଉଠକଙ୍କାଳ' ଭଳି କବିତାର ସଂଖ୍ୟା ଓଡ଼ିଆ ସାହିତ୍ୟରେ ଅଧିକ ନୁହେଁ । ଗାନ୍ଧିବାଦୀ ଚେତନାରେ ଉଦ୍‌ବୁଦ୍ଧ ଓଡ଼ିଶାର କବିଗଣ ଧ୍ୱଂସ ଭିତରେ ବି ଶାନ୍ତି ସଂହତିର ଆହ୍ୱାନ ଦେଇଛନ୍ତି । ଭାଙ୍ଗିଦେବା ବା ଝିଙ୍କିନେବା ଭଳି ଚିନ୍ତାଧାରାରୁ ବହୁ ଦୂରରେ ରହି ସେମାନେ ସାମ୍ୟବାଦକୁ ସାମଜବାଦ ଦିଗକୁ ଉତ୍ତରିତ କରି ପ୍ରଗତିବାଦୀ ପୁଣି ମାନବବାଦୀ ଚିନ୍ତାଚେତନାର ବାହକ ହୋଇଛନ୍ତି ।

କାଳିନ୍ଦୀଚରଣ କବିତା ରଚନା କରିଛନ୍ତି । ଉପନ୍ୟାସ, ନାଟକ, ଗଳ୍ପ, ପ୍ରବନ୍ଧ ରଚନା କରିଛନ୍ତି । ଲେଖିଛନ୍ତି ରାଶି ରାଶି ପାଠ୍ୟପୁସ୍ତକ ଧର୍ମୀ ମୂଲ୍ୟବୋଧଭିତ୍ତିକ ସାହିତ୍ୟ । ସେ ବିଶ୍ୱବିଖ୍ୟାତ ଗ୍ରନ୍ଥମାନଙ୍କର ଅନୁବାଦ କରିଛନ୍ତି । ଏକାଧିକ ପତ୍ରିକା ସମ୍ପାଦନାରେ ସେ ଯଶସ୍ୱୀ । ତାର ଆତ୍ମଜୀବନୀ ଓ ଭ୍ରମଣ କାହାଣୀ ସୁଖପାଠ୍ୟ ତଥା ତଥ୍ୟଭିତ୍ତିକ । 'ଆଗବୋଲା' ଓ 'ଅରୂପ' ଛଦ୍ମନାମରେ ସେ ବହୁ ସାହିତ୍ୟ ସୃଷ୍ଟି କରିଛନ୍ତି । କିନ୍ତୁ ତାଙ୍କର ସାହିତ୍ୟରେ ସାମ୍ୟବାଦୀ ଚିନ୍ତାଧାରା ସମ୍ପର୍କରେ ସବିଶେଷ ଆଲୋଚନା କରିବା ଏହି ପ୍ରବନ୍ଧର ଉଦ୍ଦେଶ୍ୟ ।

ଓଡ଼ିଶାରେ ସତ୍ୟବାଦୀର ବିଶିଷ୍ଟ ଚିନ୍ତାନାୟକ ଗୋପବନ୍ଧୁଙ୍କ ରଚନାରେ ହିଁ ସାମ୍ୟବାଦୀ ଚେତନାର ଆଦ୍ୟ ଉଚ୍ଚାରଣ ପରିଦୃଷ୍ଟ ହୁଏ । ୧୯୨୪ ମସିହାରେ ସେ ରୁଷିଆର ବଲ୍‌ସେଭିକ ଶାସନ ବ୍ୟବସ୍ଥାର ସୁଫଳ ସମ୍ପର୍କରେ ''ସମାଜ'' ରେ ସଂପାଦକୀୟ ରଚନା କରିଥିଲେ । ପରବର୍ତ୍ତୀ କାଳରେ ସବୁଜ ଯୁଗର କବିମାନେ ସାହିତ୍ୟ ସାଧନାର ଉତ୍ତର ପର୍ଯ୍ୟାୟରେ ଏହି ସାମ୍ୟବାଦୀ ଚେତନାକୁ ଗ୍ରହଣ କରିନେଇ ଥିଲେ ଓ କ୍ରମେ ସବୁଜ ଚେତନା ପ୍ରଗତି ଚେତନାରେ ରୂପାନ୍ତରିତ ହୋଇଯାଇଥିଲା ।

କାଳିନ୍ଦୀଚରଣ ସବୁଜ ଯୁଗର ବିଶିଷ୍ଟ ସ୍ରଷ୍ଟା ପୁରୁଷ ଯେ କି ଗୁଣ ଓ ପରିମାଣ ଉଭୟ ଦୃଷ୍ଟିରୁ ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରିଛନ୍ତି । ପ୍ରାଥମିକ ପର୍ଯ୍ୟାୟରେ ତାଙ୍କର ସୃଷ୍ଟି ସମ୍ଭାର ଗୁଡ଼ିକ ରୋମାଣ୍ଟିକ ଭାବ ପ୍ରବଣତାକୁ ଆଧାର କରିଛି ମାତ୍ର ପରବର୍ତ୍ତୀ କାଳରେ ସେ ରବୀନ୍ଦ୍ର କାବ୍ୟମାନସର ଅତୀନ୍ଦ୍ରିୟ ଚେତନା ଦ୍ୱାରା ପ୍ରଭାବିତ ହୋଇଛନ୍ତି । ତାପରେ 'ଜୟ ଭଗବାନ' (୧୯୩୬), 'ଭକ୍ତି ଓ ଚାବୁକ' (୧୯୩୮) 'ବାଜିରାଉତ' (୧୯୩୮), 'ଯାଦୁଘର' (୧୯୩୮), 'ଛୁରୀଟିଏ ଲୋଡ଼ା' (୧୯୩୯), 'ମୋ ବାଣୀ', 'ଆଗାମୀ' (୧୯୪୨), 'ମନେନାହିଁ' (୧୯୪୭), 'ମୋ କବିତା' (୧୯୫୯) ପ୍ରଭୃତି କବିତାରେ ସେ ସାମ୍ୟବାଦୀ ଭାବନାର ମାର୍ମିକ ଆଲେଖ୍ୟ ଅଙ୍କନ କରିଛନ୍ତି ।

୧୯୨୭ ରେ ରଚିତ 'ପୁରୀମନ୍ଦିର' କବିତା ଏହି ସାମ୍ୟବାଦୀ ଚେତନାର ଆଦ୍ୟ ଉଚ୍ଚାରଣ ।

''ଲୁକ୍କାୟିତ ବିଶ୍ୱମଧ୍ୟେ ମାନବ ପ୍ରାଣର ଆଶା ଆଦି
ଏ ପାଷାଣ ନିମ୍ନେ ହୋଇ ସ୍ତୂପୀକୃତ ଲଭିଛି ସମାଧି
ବିରହ ବିଧୂରା କେତେ ଯୁବତୀ ଗୁହାରି
ସନ୍ତାନହୀନାର କେତେ ଶୋକ - ଅଶ୍ରୁବାରି
ହୋଇଅଛି ଏଥି ଘନୀଭୂତ
ଅନ୍ତରର ବାସନା ଅୟୁତ
କେତେ ନିରାଶ୍ରୟ
ଲୋଡ଼ିଛି ଅଭୟ
ସଂଗୋପନେ
ଆଶାମନେ''

ବାଜିରାଉତକୁ କବି ସାଧାରଣ ଜନତାର ପ୍ରତିନିଧି ସଜାଇଛନ୍ତି । 'ଯାଦୁଘର' କବିତାରେ ଧର୍ମର ସାଂପ୍ରତିକ ଆବଶ୍ୟକତା ଶେଷ ହୋଇଛି ବୋଲି ସ୍ପର୍ଦ୍ଧାର ସହିତ ବିଚାର ବ୍ୟକ୍ତ କରିଛନ୍ତି । ଧର୍ମ ଯେ ଯାଦୁଘରେ ରହିବାର ଉପଯୁକ୍ତ ଏହାକୁ ସେ ଯୁକ୍ତି ସହିତ ପ୍ରମାଣ କରିଛନ୍ତି । କିଛି ଆଚାର ଓ ନିୟମର ସଂହିତା ବ୍ୟତୀତ ଧର୍ମ ଆଉ କିଛି, ନୁହେଁ କାରଣ ଧର୍ମକୁ ନେଇ ହିଁ ଯୁଗ ଯୁଗ ଧରି ହିଂସା ଓ ରକ୍ତପାତ ଲାଗିରହିଛି । ଦେଉଳ, ଗୀର୍ଜା, ମସ୍‌ଜିଦ୍ ସବୁଠାରେ ଧର୍ମର ଯେଉଁ ନୀତିମାନ ପ୍ରଚଳିତ ସେମାନେ ଧରି ରଖିବା ଅପେକ୍ଷା ଭାଙ୍ଗିଦେବାରେ ଅଧିକ ବିଶ୍ୱାସ କରନ୍ତି । ଏହି ଭାଙ୍ଗି ଯାଉଥିବା କ୍ଷୁଦ୍ର ଗୋଷ୍ଠୀମାନ ନିଜ ନିଜ ଭିତରେ କନ୍ଦଳ ସୃଷ୍ଟି କରିବା ମଧ୍ୟ ସ୍ୱାଭାବିକ ଓ ଏଥିରୁ ମୁଷ୍ଟିମେୟ ବ୍ୟକ୍ତି ଲାଭବାନ ହୋଇଥାନ୍ତି, ଯେତେବେଳେ ମଣିଷ ଈଶ୍ୱରଙ୍କୁ ଡାକି ଡାକି ଥକିଯାଏ ବା ଈଶ୍ୱର ତା ଦୁଃଖ ମୋଚନ କରିବାକୁ ଆଗେଇ ଆସନ୍ତି ନାହିଁ, ସେ ଉତ୍ତେଜିତ ହୁଏ । ଈଶ୍ୱରଙ୍କ ପ୍ରତି ତା ମନରେ ଥିବା ଯୁଗ ଯୁଗର ବିଶ୍ୱାସର ମୂଳ ଦୋହଲି ଯାଏ । ଧର୍ମ ଜଗତରେ ଏହି ବୈଷମ୍ୟ ଓ ପ୍ରତିମାପୂଜାର ନିରର୍ଥକତା ସଂପର୍କରେ ସେ 'ପ୍ରତିମା' କବିତାରେ କହନ୍ତି –

''ନ ଶୁଣଇ କେହି କାହିଁ ନ ମିଳେ ଉତ୍ତର
ଅଚଞ୍ଚଳ ସେ ମୂକ ପ୍ରସ୍ତର
ନ ମିଳେ ମୁକତି
ଡାକି ଡାକି ଶୁଖେ କଣ୍ଠ
କାହିଁ ଶାନ୍ତି କାହିଁରେ ମୁକତି''

ଦିନେ ମାର୍କସ କହିଥିଲେ ଯେ ଧର୍ମ ହେଉଛି ଅଫିମ ସଦୃଶ । ଅର୍ଥାତ ଧର୍ମ ମଣିଷକୁ ସ୍ୱାଧୀନ ଭାବରେ ଚିନ୍ତା କରିବାକୁ ଦିଏ ନାହିଁ, ତାର ଦୃଷ୍ଟି ଏକଦେଶଦର୍ଶୀ ତଥା ସଂକୁଚିତ

ହୋଇଯାଏ । ତେଣୁ କାଳିନ୍ଦୀଚରଣ ମଣିଷକୁ ଈଶ୍ୱରଠାରୁ ମହତ୍ତର ଭାବରେ ଚିତ୍ରଣ କରିଛନ୍ତି । ସେ ଦେବତ୍ୱଠାରୁ ମାନବିକତାକୁ ଉଚ୍ଚସ୍ଥାନ ଦେଇଛନ୍ତି । ଆଉ ପାଦେ ଆଗକୁ ଯାଇ ''କିଏ ଶଳା ଶଇତାନ'' କବିତାରେ ସେ ତଥାକଥିତ ଧର୍ମଧ୍ୱଜୀ ସମାଜପତିମାନଙ୍କୁ ତୀବ୍ର କଟାକ୍ଷରେ ଜର୍ଜର କରିଛନ୍ତି ।

''ଜନମ ଆମର ମଣିଷ କୁଳରେ ନାହିଁ ଇଜ୍ଜତ ମାନ
ଆମ ଝିଅ ବୋହୂ ସବୁରି ଶାଳୀ, ଆମେ ଶଳା ଶଇତାନ''

ଏହି କବିତାରେ ଦାରିଦ୍ର୍ୟ ପାଇଁ କ୍ଷୋଭ ଯେତିକି ତୀବ୍ର ତା ପ୍ରତି ସହାନୁଭୂତି ତା'ଠାରୁ ଅଧିକ ଜୀବନ୍ତ । ଯଦି ବିଲେଇ କୁକୁର ମାନ ଅପମାନ ବୁଝିପାରିବେ ତେବେ ମଣିଷ କେତେକାଳ ଆଉ ଅପମାନିତ ହୋଇ ରହିପାରିବ । ସେ ନିଶ୍ଚୟ ତା' ପ୍ରତି ହେଉଥିବା ଅପମାନର ପ୍ରତିଶୋଧ ନେବ । ସ୍ୱାଭାବିକ ଭାବରେ ଜୀବନ ବଂଚିବା ପାଇଁ ସେ ତଥାକଥିତ ଧନିକ ପୁଞ୍ଜିପତିଙ୍କ ଜଗତରୁ ନିଜକୁ ମୁକ୍ତ କରିନେବ । ଯେଉଁ ରାସ୍ତା ତାର ଝାଳରେ ଗଢ଼ା ହୋଇଛି ସେ ରାସ୍ତାରେ ତାକୁ ଚାଲିବାକୁ ଦିଆଯାଏନି । ଯେଉଁ ବିଲରେ ତାର ଶ୍ରମ ଶସ୍ୟ ଉତ୍ପାଦନ କରେ ସେ ଶସ୍ୟ ଭୋଗ କରିବା ପାଇଁ ତାର କ୍ଷମତା ନଥାଏ । ତେଣୁ କବି ତାଙ୍କର କାଳଜୟୀ ସୃଷ୍ଟି 'ମାଟିର ମଣିଷ' ରେ କୁହନ୍ତି – ''ଏଇ ଧାନଗଛ ମୂଳେ ନଇଁ ପଡ଼ିଥିବା କଳା କଳା ଜନ୍ତୁଗୁଡ଼ିକଙ୍କର କୁଆଡ଼କୁ ନଜର ନାହିଁ × × ଖରା ନାହିଁ, ବର୍ଷା ନାହିଁ, ଶୀତ ନାହିଁ, କାକର ନାହିଁ – ବାରମାସ ଛଅ ଋତୁ ତିନିଶ ପଁଷଠି ଦିନ ଏଇ ଏକା ଭାବରେ ସେ ଚାଲିଛନ୍ତି । କାଳ କାଳ ବିତି ଗଲାଣି । × × × ସେଥିପାଇଁ ସେ ମଣିଷ ନୁହନ୍ତି ଜନ୍ତୁ × × –'' (ମାଟିର ମଣିଷ)

କାଳିନ୍ଦୀଚଣଙ୍କର ସାହିତ୍ୟ ସାଧନା ଯୁଗୀୟ ଚେତନାକୁ ଆମୃଷ୍ଟ କରି ବାରମ୍ବାର ନିଜକୁ ସମୟ ଉପଯୋଗୀ କରିଛି । ସମାଜମୁଖୀ କବି କାବ୍ୟର ସ୍ୱରୂପ ଓ କାବ୍ୟଭାଷାର ବୈଶିଷ୍ଟ୍ୟ ସଂପର୍କରେ 'ମୋ ବାଣୀ' କବିତାରେ ସ୍ପଷ୍ଟ ଉଲ୍ଲେଖ କରିଛନ୍ତି ।

''ଯେ ବାଣୀ ଛୁଇଁନି, ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର, ନ ହେଉ ଗୋଚର ନ ଆସୁ ମୁଖେ ।
ଯେ ବାଣୀ ନ କହେ, ମଣିଷ ଜାତିର ଶୋଣିତ ବ୍ୟଥା
ସେ ନୋହୁ ମୋ ଭାଷା, ସେ ବାଣୀ ମୋହର ନ ହେଉ କଥା ।''

ଏହି ସ୍ପଷ୍ଟତା କ୍ରମେ ଆହୁରି ଉଦାର ହୋଇଛି । କବି ସାମୂହିକ ଜୀବନପାଇଁ ଆଗାମୀର ସ୍ୱପ୍ନ ଦେଖିଛନ୍ତି । ଆଗାମୀ କବିତା ସତେ ଯେପରି ସାମ୍ୟବାଦର ସମ୍ବିଧାନ ପାଲଟିଯାଇଛି । କବି କିଭଳି ସମୟ ତଥା ସମାଜର ଅସ୍ୱୀକୃତ ବିଧାୟକ ତାହା 'ଆଗାମୀ' କବିତାରୁ ବୁଝିହୁଏ ।

''କବିତା ଗଢ଼େ ଏକ ବିରାଟ ସମାଜର,
ସବୁରି ପାଇଁ ଯହିଁ ବଖୁରେ ହେଲେ ଘର
ସଭିଏ ଲଭିବାକୁ ମୁଠାଏ ଦୁଧଭାତ,
ଯୋଗ୍ୟ ଯେତେ ତହିଁ ବାଳକ ବାଳିକାତ
ଦୁଇଟା ଲୁଗା ଜାମା ସବୁରିପାଇଁ ମିଳେ,
ପଢ଼ିବା ପାଇଁ ବାଧା ନାହିଁ କାହାରି ତିଳେ
ବେକାର ରହିବାକୁ ନାହିଁଟି ଅଧିକାର,
ସବୁରି ପାଇଁ କାମ ଯୋଗାଏ ସରକାର,
କହିବା ପାଇଁ କଥା ସବୁରି ଦାବୀ ଅଛି,
ମୁଁ ସେଇ ସମାଜର କବିତା ରଚେବସି''          (ଆଗାମୀ)

କବି କାଳିନ୍ଦୀଚରଣ କେବଳ କବିତା ରଚନାରେ ନିଜର ଏଭଳି ଗଠନମୂଳକ ଚିନ୍ତା ବ୍ୟକ୍ତ କରିନାହାନ୍ତି । ତାଙ୍କର ପ୍ରତ୍ୟେକ କୃତିରେ ଗୋଟିଏ ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ପରିଦୃଷ୍ଟ ହୋଇଥାଏ । ତାଙ୍କର ଚରିତ୍ରମାନେ ସମାଜ ଉଦ୍ଦେଶ୍ୟରେ ନିବେଦିତ ଓ ସେମାନଙ୍କର ଚିନ୍ତା ଚେତନା ଉଦାର ତଥା ପ୍ରଶସ୍ତ । ତାଙ୍କର 'ଚାଷୀର ଭାଗ୍ୟ' କବିତାରେ ବିଦ୍ରୋହର ଡାକରା –

''ଆପଣା ବରାଦ ଆପେ କରିବାକୁ ହେବ ଆଜି
ଗଲାଣି ସେ ବେଳ କାଳ କରିବାକୁ ହାଁଜୀ ହାଁଜୀ
କରିବାକୁ ହେବ ରଡ଼ି, ନାହିଁ ନାହିଁ ନାହିଁ ଯାହା
କରାମତି ଦେଖାଇବ, କେତେ ଘାସକଟା ଦାଆ''

'ଘାସକଟା ଦାଆ' ର ପ୍ରୟୋଗ ଭିତରେ ସାମ୍ୟବାଦର ଦାଆ ହାତୁଡ଼ି ପ୍ରତୀକ ହିଁ ସ୍ପଷ୍ଟ ହୁଏ । ନିଜେ ନିଜର ଦାବୀ ନ ଜଣାଇଲେ କେହି ଆହା ବୋଲି କହିବେ ନାହିଁ । କେବଳ ସ୍ତୁତିବାକ୍ୟ କହି ଜୀବନ କାଟିବା ଆଜି ଆଉ ଚଳିବ ନାହିଁ । ନିଜକୁ ଜାହିର କରିବା ପାଇଁ ତୁଣ୍ଡ ଅବଶ୍ୟ ଖୋଲିବାକୁ ହେବ ।

ସାମ୍ୟବାଦର ଚିନ୍ତନରେ ଓଡ଼ିଆ ଜାତି ଅଭିମନ୍ତ୍ରିତ ହେଉବୋଲି ସେ 'ଆମେ ଦୁର୍ମଦ ଜାତି' କବିତାରେ ଆହ୍ୱାନ ଦେଇଛନ୍ତି । ଏକଥା ମଧ୍ୟ ସେ ବୁଝିଛନ୍ତି ଯେ ରକ୍ତାକ୍ତ ସଂଗ୍ରାମ ଶେଷ କଥା ନୁହେଁ । ସକଳ ଅସମତା ଦୂର ହୋଇଯିବାପରେ ଏକ ନୂତନ ଅଧ୍ୟାୟ ଆରମ୍ଭ ହେବ ଯେଉଁଠି ଶାନ୍ତି, ସମତା ଓ ସହାନୁଭୂତି ଅତୁଟ ରହିବ । ଯେଉଁଠି ଯେକୌଣସି ସାଧାରଣ ମଣିଷ ଭାଗ୍ୟ ଓ ଭଗବାନ ନାମରେ ସକଳ ଦୁଃସ୍ଥିତି ସହ୍ୟ କରିବନାହିଁ । ଯେଉଁଠି ସମସ୍ତେ କଥା କହିବାର ଅଧିକାର ପାଇବେ ଓ ନିଜ ନିଜର ଦାବୀ ଜଣାଇବାର ଅବକାଶ ପାଇବେ ।

ଏଥିପାଇଁ ସେ ଗାନ୍ଧିନୀତି ଉପରେ ବିଶ୍ୱାସ ସ୍ଥାପନ କରିଛନ୍ତି । ଅହିଂସା ଅସ୍ତ୍ର ଧରି ଗାନ୍ଧିଜୀ ଯେଉଁଭଳି ଭାରତବର୍ଷ ଭଳି ବିରାଟ ଉପମହାଦେଶକୁ ସ୍ୱାଧୀନ କରିଥିଲେ, ତାହା ସମଗ୍ର ବିଶ୍ୱର ଦୃଷ୍ଟି ଆକର୍ଷଣ କରିଛି । ତେଣୁ ଯଦି ବିନା ରକ୍ତପାତରେ ଏତେ ସମସ୍ୟାର ସୂକ୍ଷ୍ମ ସମାଧାନ ସମ୍ଭବ ହୋଇପାରେ ତେବେ ରକ୍ତପାତକୁ ଏଡ଼ାଇ ଦିଆଯିବା ଯୁକ୍ତିସଙ୍ଗତ । 'ଜାଗ ଜାଗ ଗାନ୍ଧି' କବିତାରେ —

''ମାଲିକ ଶ୍ରମିକ ପ୍ରଜା ନିଷ୍ପେଷିତ ଦୀନ ଧନବାନ
ବିନାରକ୍ତେ ସମ୍ଭବଇ ସକଳ ଭେଦର ଅବସାନ''

କ୍ଷୁଧିତକୁ ଜଣାଇଦେବାକୁ ହେବ ଯେ ତାର ଭାଗ୍ୟରେ ଅନାହାର ଲେଖା ହୋଇନାହିଁ ବରଂ ତାର ଅନ୍ନକୁ କେହି ଅପହରଣ କରି ନେଇଛି । ତେଣୁ ସେ ନିଜର ଅଧିକାର ଫେରି ପାଇବାକୁ ଜାଗ୍ରତ ରହିବ ଓ ସେଥିପାଇଁ ନିଜକୁ ଦୃଢ କରିବ । ମଣିଷ ଜାତିର ଟେକ ରହିପାରିଲେ ହିଁ ସବୁ ଜାତି, ଧର୍ମ ଓ ଭାଷାର ମର୍ଯ୍ୟାଦା ଅତୁଟ ରହିପାରିବ । ତେଣୁ ଧର୍ମ ଓ ଜାତିର ଭେଦ ପରିହାର କରି ମଣିଷର ସାମୂହିକ ଉନ୍ନତି କାମନା ଭିତରେ ସେ ଉଦାର ମାନବବାଦୀ ଚେତନାର ଉଦ୍‌ଘୋଷଣା କରିଛନ୍ତି ।

କାଳିନ୍ଦୀ ଚରଣଙ୍କ କବିତାର ବିଚିତ୍ର ବର୍ଣ୍ଣବିଭା ଦ୍ୱାରା ପାଠକ ମାତ୍ରେ ହିଁ ସହଜ ଭାବରେ ପ୍ରଭାବିତ ହୋଇଯାଏ । ଗଳ୍ପ ଉପନ୍ୟାସ ଭ୍ରମଣ କାହାଣୀ ବା ନାଟକ ରଚନାରେ ସେ ଯଥେଷ୍ଟ ସିଦ୍ଧି ଅର୍ଜନ କରିଥିଲେ ହେଁ ସ୍ୱଭାବରେ ସେ କବି । ତାଙ୍କର କାବ୍ୟଜଗତରେ ଅନେକ ମୋଡ଼ ପରିବର୍ତ୍ତନ ଆସିଛି । ରୋମାଣ୍ଟିକ୍ ଭାବପ୍ରବଣତାରେ ରଚିତ ପ୍ରାଥମିକ ପର୍ଯ୍ୟାୟର କବିତାକୁ ଅତିକ୍ରମ କରି ସେ ରବୀନ୍ଦ୍ର ପ୍ରଭାବିତ ଅତୀନ୍ଦ୍ରିୟ ଜଗତର ଭାବକୁ ଆତ୍ମସ୍ଥ କରିଛନ୍ତି । ପୁନଶ୍ଚ ତାଙ୍କ କବିତାରେ ସାମ୍ୟବାଦର ସ୍ୱର ଶୁଭିଛି ଯାହା କ୍ରମେ ସମାଜବାଦ, ଗାନ୍ଧିବାଦ ତଥା ପ୍ରଗତିବାଦ ଆଡ଼କୁ ଉତ୍ତରିତ ହୋଇ ମାନବବାଦରେ ସଂପୂର୍ଣ୍ଣ ଅଭିବ୍ୟକ୍ତିକୁ ପ୍ରକାଶ କରିଛି । ତାଙ୍କର ଅତୀତ ଉନ୍ମୁଖୀ ମନ ବିଶ୍ୱ ମାନବର ଆର୍ତ୍ତ ଓ ଅଶ୍ରୁରେ ବ୍ୟଥିତ ହୋଇଛି । କିନ୍ତୁ ବ୍ୟଥା ବେଦନା ତାଙ୍କ କବିତାର ଶେଷକଥା ନୁହେଁ । ଉଦାର ମାନବିକତା ନେଇ ବିଶ୍ୱକୁ ଆଲିଙ୍ଗନ କରିବା ଭିତରେ ତାଙ୍କର ମାନବବାଦୀ ଚେତନାର ସ୍ୱର ସ୍ପଷ୍ଟ ହୋଇଛି । ସବୁଜ ସାହିତ୍ୟ ସାଧକମାନଙ୍କ ମଧ୍ୟରୁ କାଳିନ୍ଦୀ ଚରଣଙ୍କର ସାହିତ୍ୟ ସାଧନାର ଅବଧି ଦୀର୍ଘତର ତଥା ବହୁମୁଖୀ । ତାଙ୍କର ସାହିତ୍ୟ ସୃଷ୍ଟିରେ ସାମ୍ୟବାଦୀ ଚିନ୍ତାର ପରିପ୍ରକାଶ ବେଶ୍ ଦୃଢ଼, ମାର୍ଜିତ ତଥା ଶାଣିତ, ଯାହା ଅଧିକ ଆଲୋଚନାର ଅପେକ୍ଷା ରଖେ ।



# ବୈପ୍ଳବିକ ଦର୍ଶନ ଓ କାଳିନ୍ଦୀ ରଚ଼ନାଚ଼ୟ

ଡକ୍ଟର ଇନ୍ଦୁ ମିଶ୍ର

କାଳିନ୍ଦୀଚରଣ ପାଣିଗ୍ରାହୀ ସବୁଜ ସାଧନାର ଜଣେ ସିଦ୍ଧିପ୍ରାପ୍ତ ସ୍ରଷ୍ଟା । ତାଙ୍କ କାବ୍ୟ - ସାଧନାର ସ୍ୱରୂପ ବହୁଭିନ୍ନ ତଥା ବୈଚିତ୍ର୍ୟ ବିମଣ୍ଡିତ । ପ୍ରଣୟ, ପ୍ରକୃତି, ଜୀବନ, ମୃତ୍ୟୁ, ସୃଷ୍ଟି, ସ୍ରଷ୍ଟା ଆଦି ବହୁବିଧ ଚେତନା ମଧ୍ୟରେ ସ୍ପଷ୍ଟ ବାରି ହୋଇ ପଡ଼େ ତାଙ୍କର ମାନବତାବାଦୀ ଦର୍ଶନ । ସାମାଜିକ ସାମ୍ୟ ଆନୟନ ପାଇଁ ସେ ଦର୍ଶନର ଏକ ବଳିଷ୍ଠ ଭୂମିକା ରହିଛି । ''ତୁମେ ମୁକୁଳି ପଡ଼ ଗୋ ଦକ୍ଷିଣ ବାୟୁ ଅଙ୍ଗେ/ ମୁଁ ଗୋ ମୁକୁଳିତ ହେବି/ ସେଇ ସଉରଭ ସଙ୍ଗେ'' ଉଚ୍ଚାରଣ କରୁଥିବା ସ୍ରଷ୍ଟା - ବ୍ୟକ୍ତିତ୍ୱ କେବଳ ପ୍ରଣୟ-ପିପାସାରେ ଆବଦ୍ଧ ନ ହୋଇ ମାନବ ଦେବତାର ଆବାହନ କରିଛି । ସେଥିପାଇଁ ତାଙ୍କର ବାଣୀ ଯେ କୋଟି ଜନତାର ଚେତନା ଉପରେ ଆଧାରିତ, ତାହା ସେ ସ୍ପଷ୍ଟ ଭାବେ ପ୍ରକାଶ କରିଛନ୍ତି । ଧର୍ମଧ୍ୱଜୀ ବଡ଼ପଣ୍ଡାମାନଙ୍କ ଛଦ୍ମାବରଣ ସେ ଖୋଲାଖୋଲି ଭାବେ ଉନ୍ମୋଚନ କରିବା ସହ ଜୀବନର ସ୍ଥିତି ଓ ପରିଣତି ସଂପର୍କରେ ବାଢ଼ିଛନ୍ତି ତାଙ୍କର କାବ୍ୟାୟନ ।

କବି ରାଉତରାୟ :

''ଧରଣୀର ରାଜପଥେ
ଚାଲୁ ଚାଲୁ ପଥଚାରୀ ମୁହିଁ
ଯେ ବ୍ୟଥା ବାଜିଛି କାନେ ମଣିଷର ଅପମାନ ଛୁଇଁ
ଦେଇଛି ତାହାକୁ ବାଣୀ
କହିଛି ସେ ସାଧାରଣ କଥା
ଭାଷାର କପଟ ଜାଲେ
ରଚି ନାହିଁ ଇନ୍ଦ୍ରଜାଲ ତଥା''

ଉଚ୍ଚାରଣ କରିବା ଭଳି କବି କାଳିନ୍ଦୀଚରଣ ରୂପାୟିତ କରିଛନ୍ତି ସାଧାରଣ ଜନତା ପାଇଁ ନିଜର ସହଜ, ସାଧାରଣ ଅଥଚ ଦୃଢ଼ତା ପରିପୂର୍ଣ୍ଣ ଜୀବନ- ବାଣୀ -

''ଯେ ବାଣୀ ଛୁଇଁନି
ଗୋଟିଏ ଜାତିର  କୋଟିଏ ବୁକେ

ସେ ବାଣୀ ମୋହର
ନ ହେଉ ଗୋଚର
ନ ଆସୁ ମୁଖେ
ଯେ ବାଣୀ ନ କହେ
ମଣିଷ-ଜାତିର
ଶୋଣିତ-ବ୍ୟଥା
ସେ ନୋହୁ ମୋ ଭାଷା
ସେଇ ବାଣୀ ମୋର
ନ ହେଉ କଥା ।''

ମୋ ବାଣୀ - କାଳିନ୍ଦୀ ରଚ୍‌ନାଚୟ - ପୃ-୨୮୬ ୧ମ ଖଣ୍ଡ)

ମଣିଷ ହିଁ ତାଙ୍କ କବିତାର ଶ୍ରେଷ୍ଠ ଆଧାର । ଏକ ସତ୍ୟନିଷ୍ଠ ପୀଠିକାରେ ସେ ବାଢ଼ି ଦେବାକୁ ଚାହାନ୍ତି ନିଜର ଜୀବନ-ଦର୍ଶନ । ସାମ୍ୟ ତାଙ୍କର ଧର୍ମ । ମସୀ ମାଧ୍ୟମରେ ସେ ତୁଲାଇଛନ୍ତି ଅସିର କାର୍ଯ୍ୟ । ତେଣୁ ସେ ଉଚ୍ଚାରଣ କରିଛନ୍ତି –

''ସେ ବାଣୀ ମୋହର
ଲେଖନୀ ଧରମ ସେ ମୋର ତୂରୀ
ଦୁନିଆ ଗୋଟାର ଅରାତି ଉପରେ
ବସାଉ ଛୁରୀ ।'' (ତତ୍ରୈବ)

ସତ୍ୟ ଓ ଧର୍ମ ବିବର୍ଜିତ ମାନବ ସଭ୍ୟତା ବସ୍ତୁତଃ ପିଶାଚର ରାଜ୍ୟ । ସେଇ ପିଶାଚ ବୁକୁରେ ଛୁରିକାଘାତ କରି ସେ ମାନବିକତାର ସ୍ୱରାଜ୍ୟ ପ୍ରତିଷ୍ଠିତ କରିବା ପାଇଁ କାମନା କରିଛନ୍ତି ।

ସେ ମୃତ୍ୟୁବ୍ୟାକୁଳତା ଅଥବା ଜୀବନ-ଭୀରୁତା ପ୍ରକଟିତ କରିବାରେ ବିଶ୍ୱାସ ରଖନ୍ତି ନାହିଁ । ତେଣୁ ଏ ବାର୍ତ୍ତା ତାଙ୍କୁ ସଂଦୀପ୍ତ ଜୀବନର ବାର୍ତ୍ତା ପ୍ରଦାନ କରେ -

''ମୋର ସର୍ବ ଅଂଗ ବେଢ଼ି ଲାଗେ ଏ ବାରତା
ଶୁଭେ ଖାଲି ଜୀବନ ! ଜୀବନ ।'' (ଚେତନା ସ୍ପର୍ଶ - ପୃ. ୨୮୫ ତତ୍ରୈବ)

କାଳିନ୍ଦୀ କବିତାଚୟରେ ଏକାଧାରରେ ଗୁମ୍ଫିତ ହୋଇଛି ବୈରାଗ୍ୟ ଓ ବିପ୍ଳବର ବାଣୀ । କବି ସ୍ରଷ୍ଟା । ପାର୍ଥିବ ଧାରାରୁ ଉର୍ଦ୍ଧ୍ୱରେ ସୀମାହୀନ ଶାନ୍ତିର ଜଗତ ତା'ର ଧ୍ୟେୟ । ସେହି ସୀମାହୀନ ଶାନ୍ତିର ଜଗତକୁ ଯାତ୍ରା କରିବା ପାଇଁ ସେ ଅଙ୍ଗୀକାରବଦ୍ଧ । ଅନ୍ଧକାର ଜୀବନର ଧ୍ୟେୟ ନୁହେଁ । ଅସତ୍‌ରୁ ସେ ସତ୍‌କୁ ଯିବା ପାଇଁ, ତମସାରୁ ଜ୍ୟୋତିକୁ ଯାତ୍ରା କରିବା ପାଇଁ ତଥା ମୃତ୍ୟୁରୁ ମୃତ୍ୟୋତ୍ତର ଚେତନାକୁ ଯାତ୍ରା କରିବା ପାଇଁ ତା'ର ଭବ୍ୟ ଇଚ୍ଛା ସଦାସ୍ୱାଗତଯୋଗ୍ୟ –

''ତୃପ୍ତି ତା'ର କାହିଁ ଏ ଧରାରେ
ଯେହୁ ସୀମାହୀନ ଦେଶେ ଉଡ଼ିବାକୁ ଲୋଡ଼େ,
ତା'କୁ ସଜାଇ ରତନ ମଣି ବେଶେ
ସୁବର୍ଣ୍ଣ ପିଞ୍ଜରେ କଲେ ରୁଦ୍ଧ
ସେ କି ଲଭଇ ଆନନ୍ଦ
ଅସୀମ ଆଲୋକ ଛାଡ଼ି ରହିବାକୁ
ଅନ୍ଧକାରେ ବଦ୍ଧ ।'' (ସୃଷ୍ଟି ଓ ସ୍ରଷ୍ଟା - ତତ୍ରୈବ, ପୃ - ୪୦୨)

କାଳିନ୍ଦୀ ଚରଣଙ୍କ ସୀମାହୀନ ଦେଶକୁ ଯାତ୍ରାର ପ୍ରୟାସ ମର୍ତ୍ତ୍ୟ ବିରୋଧୀ ଭାବନା ଉପରେ ପର୍ଯ୍ୟବସିତ ନୁହେଁ । ବରଂ ଅସତ୍, ଅନ୍ଧକାର ଓ ମୃତ୍ୟୁର ପରିସରରେ ଆବଦ୍ଧ ପଲ୍ବଳ ତା'ର ତ୍ୟାଜ୍ୟ । ସେ ବିପ୍ଳବୀ । ଧରାର ଦୁଃଖ ଦୂର କରିବା ପାଇଁ ପ୍ରତିଶ୍ରୁତିବଦ୍ଧ । ପିପାସା ତା'ର ଅହରହ ପ୍ରଜ୍ୱଳିତ । ପ୍ରଭାତୀ କିରଣ ନୀରକୁ ରଂଜିତ କରିବା ଭଳି ହୃଦୟକୁ ତାହା ରଂଜିତ କରେ –

''ଜଳଇ ପିପାସା ଯା'ର ଉଷାର କିରଣ ଯଥା
ନୀରେ
କ୍ଷୟହୀନ ଯଶ ତା'ର
ପ୍ରସବଇ ବିଶ୍ୱ ବାରିଧିରେ ।'' (ପୃ - ୪୦୨, ତତ୍ରୈବ)

ସ୍ରଷ୍ଟାର ଜ୍ୱାଳାମୟ ବାଣୀରେ ବିଶ୍ୱ ପ୍ରଜ୍ୱଳିତ ହୁଏ । ଧନିକର ଲୋଚନରେ ଭୟ, ଆତଙ୍କ ଖେଳେ –

''ବାଣୀ ତା'ର ଜ୍ୱାଳାମୟୀ
ଆଣେ ଭୟ ଧନିକ ଲୋଚନେ
ସାନ୍ତ୍ୱନା ଲଭଇ ଦୀନ
ଜାଗେ ଆଶା ରୁଗ୍‌ଣର ବଚନେ ।'' (ତତ୍ରୈବ)

ସଷ୍ଟାର ବକ୍ତବ୍ୟ କାଳ ବକ୍ଷରେ ଅମର ହୁଏ । ଦୀନ ସାନ୍ତ୍ୱନା ଲଭେ । ରୁଗଣ ହୁଏ ଆଶାନ୍ୱିତ । ଆଶାନ୍ୱିତ ଏ ବାଣୀରେ ବୃଦ୍ଧ ଅଙ୍ଗରେ ସୃଷ୍ଟ ହୁଏ ଯୌବନର ତେଜ । ଯୁବକ ଅନ୍ତରରେ ଜନ୍ମେ ପ୍ରାଣର ପ୍ରାଚୁର୍ଯ୍ୟ ଉର୍ମି । କବି ନୂତନ ଯୁଗର ସ୍ରଷ୍ଟା । ସକଳ ଧର୍ମର ଉର୍ଦ୍ଧ୍ୱରେ ପ୍ରତିଷ୍ଠିତ ଯେଉଁ ଜୀବଧର୍ମ, ତାହାରି ସନ୍ଧାନରେ ବ୍ରତୀ ହୁଏ ନବୀନ ଯୁଗର ମାନବ । ପ୍ରାଚୀନ - ନବୀନର ତାରତମ୍ୟ ଦର୍ଶାଇ କବି ନବୀନର ବୈପ୍ଳବିକ କାର୍ଯ୍ୟଧାରାକୁ ସ୍ୱାଗତ କରିଛନ୍ତି–

''ସବୁ ଧର୍ମ ପରେ
ଯେଉଁ ଜୀବ - ଧର୍ମ
ଚିର ପ୍ରତିଷ୍ଠିତ

ତାହାରି ସନ୍ଧାନେ ଧାଏଁ
ଅବିରାମ ନବୀନର ଚିତ୍ତ
ଦିଅ ତା'କୁ ଆଶୀର୍ବାଦ
ହେଉ ଧନ୍ୟ । ହେଉ ସତ୍ୟବ୍ରତ । ''

(ପ୍ରାଚୀନ ନବୀନ - କ୍ଷଣିକ ସତ୍ୟ , ପୃ ୩୯୩, କାଳିନ୍ଦୀ ରଚନାଚୟ)

ଶୁଭପ୍ରଦ ଜୀବନର ବହ୍ନି ସେ ପ୍ରଜ୍ଜ୍ୱଳିତ କରେ । ଜରା, ମରଣକୁ ଉପହାସ କରି ବିଜୟୀ ହୁଏ ନବୀନ ଜୀବନଧାରା । ଜୀବନ ହତାଶା ବା ନୈରାଶ୍ୟର ନୁହେଁ – ବରଂ ତାହା ଦୟା, ପ୍ରେମ, ଜ୍ଞାନ, ଧ୍ୟାନ, ସୁଖ, ଦୁଃଖର ସମ୍ମିଶ୍ରଣ । ଜୀବନ ହିଁ ଜୀବନ ପାଇଁ ସର୍ବୋତ୍ତମ ସତ୍ୟ –

''ତାହାରି ଉଦ୍ଦେଶ୍ୟେ ଜାତ
ସବୁ ଧର୍ମ
ନୀତି ଆଲୋଚନା
ସକଳ ସମସ୍ୟା ଦ୍ୱନ୍ଦ୍ୱ
ଦିବାନିଶି ପ୍ରାଣାନ୍ତ ସାଧନା'' (ପ୍ରାଚୀନ ଓ ନବୀନ – ପୃ- ୩୯୪, ତତ୍ରୈବ)

ଏହି ଦ୍ୱନ୍ଦ୍ୱ, ସଂଘର୍ଷ, ସମସ୍ୟା, ସଙ୍କଟର ସାମାଧାନ ମଧ୍ୟରେ ଭବିଷ୍ୟତର ପଥ ସୁଗମ ହେବ । ମାତ୍ର ଆମ ସମାଜ ଏଭଳି ଭାବଧାରାରେ ଗଠିତ ଯେ ଦୁର୍ବଳ ଉପରେ ଏଠାରେ ସବଳର ଅତ୍ୟାଚାର ନିତ୍ୟ ସଂଘଟିତ । ଏଥିପାଇଁ ଇଟାଲିର ଶାସକ ମୁସୋଲିନିଙ୍କର ଆବିସିନିଆ ଉପରେ ଅତ୍ୟାଚାର, ଅବଳା ନାରୀ ଉପରେ ପୁରୁଷର ନିର୍ଯ୍ୟାତନା, ଭଗବାନଙ୍କ ନାମରେ ସବଳର ଦୁର୍ବଳ ହୃଦୟର ରକ୍ତ ଶୋଷଣ । ଇତିହାସର ଦୃଷ୍ଟାନ୍ତ ଦେଇ ଏହି ଶୋଷଣ ପ୍ରକ୍ରିୟାକୁ ସୁସ୍ପଷ୍ଟ କରିଛନ୍ତି କବି କାଳିନ୍ଦୀଚରଣ –

''ଧଳା ମଣିଷର ଭଗବାନ୍ ଯେହୁ
କଳାର ସେ ସଏତାନ
ଇଟାଲି ଦେଶର ଭଗବାନ ଖାଏ
ଆବିସିନିଆର ପ୍ରାଣ
ଅବଳା କୁଳର ଦେବତା ରୂପରେ
ପୁରୁଷ ବୋଲାଏ ରାଜା
ଭଗବାନ ନାମେ ସବଳ ପିଉଛି
ଦୁର୍ବଳ - ଲହୁ ତାଜା''

(ଜୟ ଭଗବାନ - କ୍ଷଣିକ ସତ୍ୟ - ପୃ ୩୬୫ - ୬୬ ତତ୍ରୈବ)

ଦିନ ରାତି ପ୍ରାଣାନ୍ତ ପ୍ରୟାସ କରି ଶୋଷିତ ଶ୍ରମିକର ପେଟ ଅପୂରା ରହେ । ଅଭାବ ଯୋଗୁ ଅନ୍ଧ, ବଧିର ଭଳି ସେ ସକଳ କଷଣ ସହ୍ୟ କରେ –

''ଦିନ ରାତି ଖଟି ଲହୁ ପାଣି କରି
ପେଟ ନପୂରଇ ତା'ର
ଚିରକାଳ ସିନା ମୁଣ୍ଡର ଝାଳ
ତୁଣ୍ଡେ ମାରିବା ସାର
ଯୁଗେ ଯୁଗେ ସେ ଯେ ପତିତ ପିଷ୍ଟ
ଧରାର ପାତାଳେ ପଡ଼ି
ଅଭାବ କରିଛି ଅନ୍ଧ ବଧିର
ମୁଖେ ତେଣୁ ହରି ହରି ।''  (ତତ୍ରୈବ, ପୃ. ୩୬୭)

ଧର୍ମ ନାମରେ ମଣିଷ ଉପରେ ମଣିଷର ଅତ୍ୟାଚାର ଶୋଷକର ଏକ ସ୍ୱାଭାବିକ କର୍ମ ରୂପେ ସ୍ୱୀକୃତ । କବି ରାଉତରାୟ ତେଣୁ ସିନା ଉଲ୍ଲେଖ କରିଥିଲେ –

''ଧର୍ମର ମଦ ଖୁଆଇ କରିଛ ଭାଇ
ମଣିଷ ଜାତିକୁ ଚିରଦିନ ମସଗୁଲ
ଅଫିମ ନିଶାରେ ଖୋଲି ସେ ନପାରେ ଆଖି
ତୁମେ ଶୋଷ ତା'ର ବୁକୁର ଜୀବନ ଫୁଲ ।''
(ସର୍ବନାଶର ପଥେ - ଅଭିଯାନ - ସ.ରା. ଗ୍ରନ୍ଥାବଳୀ, ପୃ. ୭୭୦)

କବି କାଳିନ୍ଦୀଚରଣ ତେଣୁ ଭକ୍ତି ଓ ଚାବୁକ ମଧ୍ୟରୁ ଚାବୁକକୁ ମହତ୍ତର ଭୂମିକା ପ୍ରଦାନ କରିଛନ୍ତି । ମାର୍କସ୍ ଏକଦା ମନ୍ତବ୍ୟ ଦେଇଥିଲେ -"Religion is the Opium for the people." – ଧର୍ମ ହେଉଛି ମାନବ ସଭ୍ୟତା ପାଇଁ ଅଫିମ ସଦୃଶ ।'' ଏହି ଅଫିମ ନିଶାରୁ ମୁକ୍ତ ହେବା ପାଇଁ କବିକୁଳ ଶୋଷିତ ସଂପ୍ରଦାୟଙ୍କୁ ନିବେଦନ କରିଛନ୍ତି । ଚାବୁକ ମାଧମରେ ଶୋଷକ ବର୍ଗଙ୍କୁ ଶାସନ କରିବା ପାଇଁ ଆହ୍ୱାନ ଦେଇଛନ୍ତି କବି କାଳିନ୍ଦୀଚରଣ –

''ଗାଁ ଗହଳରୁ ସହର ବଜାର
ସବୁଠି ତାହାର ଜୟ
କେଉଁ ପୁରୁଷର ନାହିଁ କହ ଦେଖି
ଚାବୁକ କମାଣ ଭୟ ।''
(ଭକ୍ତି ଓ ଚାବୁକ - କ୍ଷଣିକ ସତ୍ୟ - ପୃ. ୩୭୦, ତତ୍ରୈବ)

ସତ୍ୟ, ଧର୍ମରେ ଗଢ଼ା ଭାରତ ବର୍ଷର ପ୍ରାଚୀନ ଆତ୍ମା । ମାତ୍ର ସମୟର ଧାରାରେ ସେ ସତ୍ୟ, ଧର୍ମ ଆଜି ଅସ୍ତମିତ । ସମଗ୍ର ବିଶ୍ୱ ଆଜି ପାପ ପଙ୍କରେ ବିଗଳିତ । କବି ସେଇ ପାପପଙ୍କିଳ ବିଶ୍ୱର ସ୍ୱରୂପ ଅଙ୍କନ କରନ୍ତି –

''ସକଳ ମିଥ୍ୟା ସକଳ ଅନ୍ଧକାର
ସତ୍ୟ କାହିଁରେ କାହିଁଛି ଆଲୋକ ଦ୍ୱାର ?
ଧର୍ମ ପୁଣ୍ୟ ଭୁଲିଛି ମାନବ
ବିଶ୍ୱ ଶାସଇ ପାପର ଦାନବ × ×
କାହିଁଛି ଧର୍ମ ? କାହିଁଛି ସତ୍ୟ ? କାହିଁ ? କାହିଁ ? ଭଗବାନ ?''
(ବ୍ୟର୍ଥଗୀତି - ଛୁରୀଟିଏ ଲୋଡ଼ା - ପୃ. ୩୭୦, ତତ୍ରୈବ)

ସଂସାର ଏକ ଅଳୀକ ସୁଖର ସନ୍ଧାନରେ ପୀଡ଼ିତ । ଶତ ବଞ୍ଚନା, ଶତ କଷାଘାତରେ ପୀଡ଼ିତ ବିଶ୍ୱବାସୀ । ଭାରତୀୟ ପରଂପରା ଅନୁଯାୟୀ ସୃଷ୍ଟି ଯେତେବେଳେ ଜରାଜୀର୍ଣ୍ଣ ହୁଏ, ତାହାକୁ ଧ୍ୱଂସ କରି ସ୍ରଷ୍ଟା ପୁନଃ ସୃଷ୍ଟିର ସର୍ଜନା କରନ୍ତି । ସେଇ ଜୀବନର ଯଜ୍ଞରେ ଜରାଜୀର୍ଣ୍ଣ ସୃଷ୍ଟିକୁ ଧ୍ୱସ୍ତ ବିଧ୍ୱସ୍ତ କରିବା ପାଇଁ କବି ଆହ୍ୱାନ ଦିଅନ୍ତି । ତଥାକଥିତ ଧର୍ମ, ସାମାଜିକ ବ୍ୟଭିଚାରର ଉର୍ଦ୍ଧ୍ୱରେ ଏକ ନୂତନ ସୃଷ୍ଟି ପାଇଁ ତାହା ହିଁ ପ୍ରସ୍ତୁତି ପର୍ବ –

''ଜୀବନର ଯାଗ ବିଶ୍ୱେ ଦିଅରେ ଜାଳି
ସକଳ ଦୈନ୍ୟେ ଅଶ୍ରୁ ଆହୁତି ଢ଼ାଳି,
ଜୀର୍ଣ୍ଣ ମଳିନ ହୋଇଛି ଯେ ରୂପ
ଜାଳି ଦିଅ ତା'ରେ କରି ପୂଜା ଧୂପ,
ଉଠାରେ ରୁଦ୍ର ଜୀବନ ଯଜ୍ଞେ
ରଚିବାକୁ ଶମଶାନ × × ।'' (ବ୍ୟର୍ଥ ଗୀତି – ପୃ. ୩୦୮, ତତ୍ରୈବ)

ଜୀବନ ଫୁଲର ଫସଲ ନୁହେଁ । କଣ୍ଟକିତ ସମସ୍ୟାର କଷାଘାତରେ ତାହା ନିପୀଡ଼ିତ । କବି ସେଇ କଷାଘାତକୁ ମର୍ମେ ମର୍ମେ ଅନୁଭବ କରନ୍ତି । ତା'ର କାରଣ ଅନୁସନ୍ଧାନ କରନ୍ତି । ସେଇ ସମସ୍ୟାର ମୂଳୀଭୂତ ସ୍ୱରୂପକୁ ପ୍ରକାଶ କରନ୍ତି ସ୍ୱକୀୟ ସୃଷ୍ଟିରେ । ଅମୃତସ୍ୟ ପୁତ୍ରାଃ ମାନବର କଷଣ ତାଙ୍କୁ ବ୍ୟଥାହତ କରେ । ଏହା ହିଁ ପ୍ରତ୍ୟେକ ମାନବତାବାଦୀ କାବ୍ୟ ଚେତନାର ଅନ୍ତଃସ୍ୱର । 'ପୁରୀ ମନ୍ଦିର' କବିତାରେ କବି କାଳିନ୍ଦୀଚରଣ ସେଇ ଦଳିତ ଜନସଂଘର ମୁକ୍ତି ପାଇଁ ବ୍ୟାକୁଳତା ପ୍ରଦର୍ଶନ କରିଥିଲେ । କବି ରାଉତରାୟଙ୍କ 'କୋଣାର୍କେ' କବିତାରେ ପରବର୍ତ୍ତୀ କାଳରେ ପ୍ରାୟ ଏହି ଅନ୍ତଃସ୍ୱର ପ୍ରକଟିତ ହୋଇଥିଲା । ପ୍ରଗତିବାଦୀ କବିତାର ଏହା ହିଁ ଥିଲା ସାମାଜିକ ଅନ୍ତଃସ୍ୱର । ମାନବାତ୍ମାର ଉଦ୍ଧରଣ ଓ ଶୋଷିତ ଶ୍ରେଣୀର ସମୁଦ୍ଧାର ପାଇଁ ତହିଁରେ ଆକୁଳତାର ଅନ୍ତ ନଥିଲା । ସବୁଜ କବି କାଳିନ୍ଦୀଚରଣ ବିଂଶ ଶତାବ୍ଦୀର ଚତୁର୍ଥ ଦଶନ୍ଧି ବେଳକୁ ନିଜର ସ୍ୱର ପରିବର୍ତ୍ତନ କରିଥିଲେ । ଏହି ସମୟରେ ସେ ରୂପାୟିତ କରିଥିଲେ – କେତେକ ଉଚ୍ଚକୋଟୀର ପ୍ରଗତିବାଦୀ କବିତା । 'ଛୁରୀଟିଏ ଲୋଡ଼ା' ଏହିଭଳି ଏକ ପ୍ରଗତିବାଦୀ କବିତା – ଯାହାର ଗୁଣାତ୍ମକ ମାନ ଅତ୍ୟନ୍ତ ଉଚ୍ଚକୋଟୀର ।

ଜୀବନ ଧାରଣ ପାଇଁ ଏଠାରେ ଦେବତାଙ୍କ ଅପେକ୍ଷା ମାନବର ଭୂମିକା ମହତ୍ତର । ପାରଂପରିକ ଈଶ୍ୱର ବିଶ୍ୱାସବୋଧ ଏହି କବିତାରେ କ୍ରମଶଃ ଶ୍ଳଥ ଓ ବିବର୍ଣ୍ଣ ହୋଇ ପଡ଼ିଥିବା ଲକ୍ଷ୍ୟ କରାଯାଏ । ଦେବତାଙ୍କ ନିକଟରେ ହାତ ପତାଇ କବିଙ୍କୁ ଶୂନ୍ୟ ହସ୍ତରେ ଫେରିବାକୁ ପଡ଼ିଛି –

''× × × ଦେବତା ଲାଗି ମୁଁ
ବଢ଼ାଇଲି ଯେବେ ହାତ
ମୁଠାଇଲି ଯାହା ପୁଲକିତ ମନେ ଭାଳି
ଫିଟାଇ ଚାହିଁଲି ଶୂନ୍ୟ ଆକାଶ ଖାଲି ।''

(ଛୁରୀଟିଏ ଲୋଡ଼ା, ପୃ-୨୭୫, ତତ୍ରୈବ)

କାଷ୍ଠ, ପାଷାଣର ବିଗ୍ରହ ପୂଜା ପରିବର୍ତ୍ତେ ସେ ଆହ୍ୱାନ ଦେଇଛନ୍ତି ନିରାଜନା କରିବାକୁ ମାନବ ଦେବତାର । ତାଙ୍କର ବନ୍ଧୁ ହେଉଛନ୍ତି – ସେହି ମାନବ ଦେବତା । ଦୁନିଆର ବନ୍ଧୁର ପଥରେ ମାନବ ପୂଜା ପାଇଁ ସେ ପ୍ରକାରାନ୍ତରେ ଆହ୍ୱାନ ଦେଇଛନ୍ତି –

''ସେହି ସେ ଦେବତା ସେହି ମୋର ଆରାଧନା
ସକଳ ପୁଲକ ପରାସର ସରଜନା        × × × "

(ତ୍ରତ୍ରୈବ, ପୃ. ୨୭୬)

ଧୂଳିର ଧରାରେ ଜୀବନଯାପନ କରିବା ପାଇଁ ସେହି ମାନବ - ଦେବତା ହିଁ ତାଙ୍କର ବନ୍ଧୁ –

''ମଣିଷ'',''ମଣିଷ'' ଶୁଭିଲା ଦୂରରୁ ଡାକ
ଦୁନିଆର ଯେତେ ଦଳିତ ପୀଡ଼ିତଯାକ
ସ୍ପନ୍ଦନ ସେଇ ପୁଲକ ପରାସ ରେଖା
ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା''  (ତତ୍ରୈବ, ପୃ - ୨୭୫)

ସେହି ବନ୍ଧୁ ମାନବର ଉତ୍ତରଣ ପାଇଁ କବି ବଦ୍ଧପରିକର । ଅନ୍ନ ବସ୍ତ୍ରର ଅଭାବରୁ କେତେ ଦୀନ ଦୁଃଖୀ ଝରା ଫୁଲ ପରି ଅକାଳରେ ଝରି ପଡ଼ିଛନ୍ତି । ତାହା ମ୍ରିୟମାଣ କରିଛି କବି ସତ୍ତାକୁ –

''କେତେ ପ୍ରିୟତମ ମୁଖ
ଆଜି ଏ ଭୁବନେ ଗୋ
ଶୁଖିଯାଏ ଝରା ଫୁଲ ସମାନ
ନାହିଁ ବାସ

ନାହିଁ ଅନ୍ନ
ବେଦନା ବିରହ ଦୈନ୍ୟ
କରିଅଛି ମ୍ରିୟମାଣ ପରାଣ ।''

(ବ୍ୟଥାର ସାଧନ / ଛୁରୀଟିଏ ଲୋଡ଼ା, ପୃ. ୩୨୩, ତତ୍ରୈବ)

କବି ବ୍ୟଥିତ ପ୍ରାଣର ଅଶ୍ରୁ ଧାରା ଓ ଲାଞ୍ଛନାକୁ ମର୍ମେ ମର୍ମେ ଅନୁଭବ କରିବାକୁ ଚାହାନ୍ତି । କେତେ ଦୀନ, ହୀନ ପ୍ରାଣ, ଦୁଃଖ, ନିର୍ଯ୍ୟାତନାରେ କାଳାତିପାତ କରନ୍ତି – କବି ଉପଲବ୍ଧି କରିବାକୁ ଚାହାନ୍ତି ସେ ପ୍ରାଣର ବେଦନା । ସେଇ ଅନୁଭୂତି ଓ ଉପଲବ୍ଧି ମାଧମରେ କବି ବ୍ୟଥାର ନିରାକରଣ କରିବା ପାଇଁ କାମନା କରନ୍ତି ।

କବି ଯେଉଁ ସମୃଦ୍ଧ ଜୀବନ-ଧାରାର ସ୍ୱପ୍ନ ଦେଖନ୍ତି ତାହା ମାର୍କସଙ୍କ ଦ୍ୱାରା ଯେପରି ଅନୁପ୍ରାଣିତ, ଗାନ୍ଧିବାଦୀ ଆଦର୍ଶ ଦ୍ୱାରା ସେହିପରି ଅଭିମନ୍ତ୍ରିତ । ତାଙ୍କ କବିତା ଏକ ବ୍ୟାପକ ସାମାଜିକ ଜୀବନର କର୍ଣ୍ଣଧାର ହେଉ ବୋଲି ସେ ଆଶା ପୋଷଣ କରନ୍ତି - ଯେଉଁ ସମାଜରେ ପ୍ରତ୍ୟେକ ବ୍ୟକ୍ତିବିଶେଷ ପାଇଁ ଥିବ ବଖୁରେ ହେଲେ ମଧ ଏକ ଘର । ଖାଇବା ପାଇଁ ଥିବ ଖାଦ୍ୟ – ମୁଠାଏ ହେଉ ପଛେ ଦୁଧଭାତରେ କ୍ଷୁଧା ନିବାରଣ କରିପାରୁଥିବ ମନୁଷ୍ୟ । ନିଜର ବକ୍ତବ୍ୟ ଉପସ୍ଥାପନ ପାଇଁ ସବୁରି ଥିବ ସ୍ୱାଧିକାର –

''କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖୁରେ ହେଲେ ଘର
ସକଳେ ଖାଇବାକୁ ମୁଠାଏ ଦୁଧ ଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକାତ
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେଇ ସମାଜର କବିତା ରଚେ ବସି ।''

(ଆଗାମୀ - କାଳିନ୍ଦୀ ରଚନାଚୟ, ପୃ. - ୩୫୫)

କବିଙ୍କ ଆଗାମୀ ସମାଜର ଏ ରୂପକ ଗାନ୍ଧିବାଦୀ ଆଦର୍ଶରେ ପରିକଳ୍ପିତ । ଗାନ୍ଧିଜୀଙ୍କ ବ୍ୟକ୍ତିତ୍ୱକୁ ବନ୍ଦନା କରି 'କସ୍ତୁରବା' କବିତାରେ ତେଣୁ ସେ ଉଲ୍ଲେଖ କରିଛନ୍ତି –

''ଡାକୁଚି ଆରତେ କୋଟି ପରାଣର ପ୍ରିୟ
ହୁଅ ଚିରଜୀବୀ ହେ ମୋହନ ମହନୀୟ
ଆଘାତ ଯାହାର ପାଷାଣୁ ବୁହାଏ ପାଣି
ପରଶ ଯାହାର ପଶୁମୁଖେ ଆଣେ ହାସ
ଦେଶ ବିଦେଶରୁ ଭାସି ଆସେ କେତେ ବାଣୀ
ପୁରୁଷ ଶ୍ରେଷ୍ଠ ଜୟ ହେ ମୋହନ ଦାସ ।''

(କସ୍ତୁରବା – ଛୁରୀଟିଏ ଲୋଡ଼ା – ପୃ. ୩୧୭, ତତ୍ରୈବ)

କୋଟି ପ୍ରାଣର ପ୍ରିୟ ମହାନାୟକ ମହାତ୍ମା ଗାନ୍ଧୀ ହିଁ କବିଙ୍କର ଆଦର୍ଶବାଦୀ ବ୍ୟକ୍ତିତ୍ୱ - ସାରା ବିଶ୍ୱର ସେ ପ୍ରିୟ । ତାଙ୍କର ଆଘାତ - ଏକ ଅହିଂସା ଆଘାତ - ମନୋଜଗତକୁ ତାହା ସ୍ପର୍ଶ କରେ । ପାଷାଣ ପ୍ରାଣରୁ ନିର୍ଗତ ହୁଏ ଜଳଧାରା, ପଶୁର ମୁଖମଣ୍ଡଳରୁ ମଧ ଝରିପଡ଼େ ପରିତୃପ୍ତିର ହସ - ସେଇ ପ୍ରିୟତମ ବ୍ୟକ୍ତିସତ୍ତା ହେଉଛନ୍ତି ମହନୀୟ ମୋହନ ଦାସ । ଅଭିମାନୀ କସ୍ତୁରବାଙ୍କୁ ତେଣୁ ସେ ଆହ୍ୱାନ ଦିଅନ୍ତି –

''ଜଡ଼ ଦେହେ ଯେହୁ ଖେଳାଇ ଦେଇଛି ପ୍ରାଣ
ତା' ପାଇଁ ତୁମର ବଡ଼େ ନାହିଁ ଅଭିମାନ'' ?     (ତତ୍ରୈବ, ପୃ. ୩୧୬)

କାଳିନ୍ଦୀଚରଣଙ୍କ ସାମାଜିକ ଚେତନାଧର୍ମୀ କବିତାର ଗୋଟିଏ ପାର୍ଶ୍ୱରେ ମାର୍କସ୍ ଅଛନ୍ତି ତ ଅନ୍ୟ ପାର୍ଶ୍ୱରେ ଗାନ୍ଧୀ – ଉଭୟତ୍ର ସଫଳତାର ସହ ସେ ବାଢ଼ିଛନ୍ତି ତାଙ୍କର କାବ୍ୟ ଦର୍ଶନ । ସ୍ୱାଭାବିକ ଭାବରେ ତାଙ୍କ ଲେଖନୀରୁ ଝରିପଡ଼ିଛି କବିତାର ନିର୍ଝର । କେଉଁଠାରେ ସେ ଆଗାମୀ ସମାଜର ସ୍ୱରୂପ ଗଠନରେ ବ୍ରତୀ ହୋଇଛନ୍ତି ତ କେଉଁଠାରେ ତାତ୍କାଳିକ ସମାଜର ବୈଷମ୍ୟକୁ କଠୋର କଣ୍ଠରେ ସମୀକ୍ଷା କରିଛନ୍ତି - ସର୍ବତ୍ର ନିଜର ବକ୍ତବ୍ୟ ପ୍ରତି ସେ ପ୍ରକଟନ କରିଛନ୍ତି ନିଷ୍ଠା ଓ ବାସ୍ତବତା । 'ଯାଦୁଘର' ଓ 'କିଏ ଶଳା ସଇତାନ' ଏଇ ପରିପ୍ରେକ୍ଷୀରେ ଦୁଇଟି ସଫଳ ମାର୍କସ୍‌ବାଦୀ କବିତା । ଧର୍ମ ଓ ସମାଜର ତଥାକଥିତ ସ୍ୱରୂପକୁ କବିତା ଦୁଇଟିରେ ସେ ବିଦ୍ରୂପ କରିଛନ୍ତି - ଖୋଲି ଦେଇଛନ୍ତି ତା'ର ଘଟାଟୋପ । ଧର୍ମର ପାରଂପରିକ ବ୍ୟାଖ୍ୟାକୁ ଉପସ୍ଥାପିତ କରି, ତାହା ସାଂପ୍ରତିକ ସମାଜରେ କିଭଳି ନିରର୍ଥକ ହୋଇ ପଡ଼ିଛି କବି ଶାଣିତ କଣ୍ଠରେ 'ଯାଦୁଘର' କବିତାରେ ତାହାକୁ ଉଦ୍‌ଘାଟନ କରିଛନ୍ତି –

''ଧର୍ମ ରଖିଛି ଧରି ଜଗତକୁ
ଶୁଣିଲି ବ୍ୟାଖ୍ୟା ବହୁ
ଖୋଜିଲି ଶାସ୍ତ୍ର ଧରିବାକୁ ଧର୍ମ - ମଧୁର ମହୁ ।''
(ଯାଦୁଘର - କ୍ଷଣିକ ସତ୍ୟ - ପୃ. ୪୧୬, ତତ୍ରୈବ)

'ଧର୍ମ' ଶବ୍ଦ ଧୃ ଧାତୁରୁ ଉତ୍ପନ୍ନ - ଏହାର ଅର୍ଥ 'ଧାରଣ' - ସମଗ୍ର ବିଶ୍ୱକୁ ଏହା ଧାରଣ କରେ । କିନ୍ତୁ ଧର୍ମ ତା'ର ବ୍ୟାପକ ଅର୍ଥରୁ ଏବେ ବିଚ୍ୟୁତ ହୋଇପଡ଼ିଛି । 'ଧର୍ମ' ହୋଇଛି ଏକ 'ଜଡ଼' ଅକ୍ଷର - ବିଶେଷ । ବିଭିନ୍ନ ଧାରାରେ 'ଧର୍ମ' ର ବିଡ଼ମ୍ବନାକୁ କବି ବିଶ୍ଳେଷଣ କରି ତା'ର ଅବକ୍ଷୟକୁ ସୂଚାଇ ଦେଇଛନ୍ତି । ନଗର, ଜନପଦରେ ଧର୍ମର ସ୍ୱରୂପ ଅନୁସନ୍ଧାନ କରି କବି ହତାଶ ହୋଇଛନ୍ତି । 'ଦେଉଳ' ରେ ଯେଉଁ ଧର୍ମଧ୍ୱଜୀ ବଡ଼ପଣ୍ଡାମାନେ ଅଛନ୍ତି, ଗୀର୍ଜାର ଧର୍ମଯାଜକମାନଙ୍କଠାରୁ ସେମାନଙ୍କ ମତ ଭିନ୍ନ । ପୁଣି ମସଜିଦ୍‌ର ମୁଲ୍ଲା, ପୟଗମ୍ବର ମାନେ ସେଇ ଧର୍ମଠାରୁ ବିଚ୍ଛିନ୍ନତାବାଦୀ ଚିନ୍ତାରେ ମଗ୍ନ । କବି ତେଣୁ ପ୍ରକାଶ କରିଛନ୍ତି ଏହି ଧର୍ମଧ୍ୱଜୀମାନଙ୍କ ସ୍ୱରୂପ –

''କିଏ ଅବା ଛେଳି
କିଏ ପୁଣି ଗୋରୁ କାଟିବା ପାଇଁକି ଥାନ ।'' (ପୃ. ୪୧୭, ତତ୍ରୈବ)

ଯେଉଁଠାରେ ପଶୁବଳିକୁ ଏହି ବଡ଼ପଣ୍ଡାମାନେ ବିରୋଧ କରୁଛନ୍ତି, ସେଠାରେ ମଣିଷ ହେଉଛି ବଳିର ଆଧାର –

''କିଛି ନ କାଟିବା ପାଇଁ ଯେଉଁଠାରେ କହିଲେ ଧର୍ମଗୁରୁ
ଲକ୍ଷ୍ୟ ସେଠାରେ ମଣିଷର ବେକ ମଣିଷର ପାଦ ଉରୁ !''
(ପୃ. ୪୧୭ - ତତ୍ରୈବ)

ଯୁଦ୍ଧ ଏକ ପକ୍ଷରେ କ୍ଷୟ କରିଛି ମାନବିକ ବିଶ୍ୱାସବୋଧ । ବୁଦ୍ଧ, ଯୀଶୁ, ମହମ୍ମଦ ହୋଇଗଲେଣି ଇତିହାସର ପ୍ରମାଣ । ଧର୍ମ ଓ ସତ୍ୟ ରସାତଳକୁ ଯାତ୍ରା କଲାଣି । ସତ୍‌ରୁ ଅସତ୍‌କୁ, ଜ୍ୟୋତିରୁ ଅନ୍ଧକାରକୁ ଓ ଅମୃତରୁ ମୃତ୍ୟୁର ଜଗତକୁ ଚେତନାର ବୈରାଜ୍ୟରେ ଗତି କରୁଛି ମାନବ ସଭ୍ୟତା । ଏକଦା 'Animal Firm' (ସଲ୍‌ବେଲୋ) ରେ ଉଲ୍ଲେଖ କରାଯାଇଥିଲା "All men are equal but some are more equal" – ମାନବିକ ଏକତ୍ୱ ପ୍ରତି ଏହା ବାସ୍ତବତଃ ଏକ ପ୍ରଚଣ୍ଡ ଧକ୍‌କା । କାଳିନ୍ଦୀଚରଣ ଏହି ମର୍ମରେ ଉଲ୍ଲେଖ କରିଛନ୍ତି –

''ଦୁନିଆ ଯାକର ମଣିଷ ପାଇଁ ତ ଧର୍ମ ନ ମିଳେ ଏକ
ସବୁ ପୂଜା ସବୁ ଧିଆନ ଭଜନ ନୁହେଁ କି ଭୋଜନ ଭେକ ?''
(ଯାଦୁଘର – ତତ୍ରୈବ ପୃ. ୪୧୭)

ଧର୍ମଧ୍ୱଜୀ ବଡ଼ପଣ୍ଡାମାନଙ୍କର ଅନ୍ତଃରୂପ ଏହା ମାଧମରେ ଉଦ୍‌ଘାଟିତ । ବିଭିନ୍ନ ଦେଶର ପୋଷାକ, ଆହାର, ଜଳବାୟୁ ଏକ ପ୍ରକାର ହୋଇ ନପାରେ, ମାତ୍ର ଧର୍ମ ଏକ - ତାହା ହେଉଛି ବିଶ୍ୱ ମାନବିକତା । ଦେଶ, ଜାତି, ଧର୍ମ ବର୍ଣ୍ଣ ନିର୍ବିଶେଷରେ ଏହା ହିଁ ମାନବିକ ବିଶ୍ୱାସ ଓ ବଶ୍ୱଭ୍ରାତୃତ୍ୱବୋଧ ସୃଷ୍ଟି କରେ । ସଂପ୍ରତି ଏହି ବିଶ୍ୱଭ୍ରାତୃତ୍ୱ କିତାବୀ ଭାଷାରେ ପରିଣତ । କବି ତାହାକୁ ବ୍ୟଙ୍ଗ କରି ଉଲ୍ଲେଖ କରନ୍ତି –

''ସବୁ ଦେଶେ ଅବା ସମାନ ଧର୍ମ ସତ୍ୟ ଆସିବ କାହୁଁ
ସମାନ ନୁହେଁ ତ ପୋଷାକ ଆହାର ସବୁ ଦେଶ ଜଳବାୟୁ !''
(ପୃ.୪୧୭, ତତ୍ରୈବ)

ଧର୍ମର ଛଦ୍ମାବରଣ ତଳେ ସବୁ ଦୋଷକୁ ମାଫ୍ କରାଯାଏ । ଯେହେତୁ ଧର୍ମଧ୍ୱଜୀ, ଧନିକ, ଶୋଷକ ଗୋଷ୍ଠୀର ଶହ ଶହ ପାପ କରିବା ଆବଶ୍ୟକ । ଧନୀର ଧନ ଶୋଷିତକୁ ଶୋଷଣ କରି ଦ୍ୱିଗୁଣିତ ହେଉଥାଏ । ଶହ ଶହ ନାରୀଙ୍କୁ ଭୋଗ କରି ସେ ବୋଲାଏ ନୈଷ୍ଠିକ, ସନାତନ ସଂସ୍କୃତି ସଂପନ୍ନ । ସେଇ ଧାର୍ମିକର ଅନ୍ତଃରୂପ ଦେଖିବାକୁ ଯାଇ କବି ଉତ୍‌କ୍ଷିପ୍ତ ହୋଇ ପଡ଼ିଛନ୍ତି । ଚାବୁକୁଟିଏ ଆଣିବାକୁ ଭୁଲି ଯାଇଛନ୍ତି ବୋଲି କ୍ଷୋଭ ପ୍ରକାଶ କରିଛନ୍ତି –

''ଦେଖିବା ପାଇଁ ତା' ରୀତି ଆଚରଣ ଖୋଲି ତା ଧରମ ଝୁଲି
ଦୁଃଖ ଆସିଲା ଚାବୁକ ଖଣ୍ଡେ ଆଣିବାକୁ ଗଲି ଭୁଲି ।'' (ପୃ. ୪୧୮, ତତ୍ରୈବ)

ପରିଶେଷରେ ଏହି ତଥାକଥିତ ଧର୍ମ ଧାରଣାର ରୂପ ଅଂକନ ସେ କରିଛନ୍ତି –

''ଜୀବର ରାଇଜେ ଧର୍ମ ସେ ଖାଲି ଜୀବହୀନ ଯାଦୁଘର
ନୁହେ ଆଉ କିଛି ସଞ୍ଚିତ ତହିଁ କଙ୍କାଳ ଜଗତର ।'' (ତତ୍ରୈବ)

'ଯାଦୁଘର ବସ୍ତୁତଃ, ଏକ ସଂଗ୍ରହାଳୟ - ଧର୍ମ ଏକ ନିର୍ଜୀବ ସତ୍ତା ରୂପରେ ସେଠାରେ ସଂଗୃହୀତ । ସେଇ ନିର୍ଜୀବ ସତ୍ତାଟି ବସ୍ତୁତଃ ମଣିଷର କଂକାଳ ।

ଯାଦୁଘର ପରବର୍ତ୍ତୀ ତାଙ୍କର ବୈପ୍ଳବିକ କବିତାଟି ହେଉଛି 'କିଏ ଶଳା ସଇତାନ୍' । ମଣିଷ କୁଳରେ ଜନ୍ମ ହୋଇ ମଧ୍ୟ ଶୋଷିତର ମାନ ଇଜତ ନାହିଁ ବୋଲି ସେ କ୍ଷୋଭ ପ୍ରକାଶ କରିଛି –

''ଜନ୍ମ ଆମର ମଣିଷ କୁଳରେ
ନାହିଁ ଇଜତ ମାନ
ଆମ ଝିଅ ବୋହୂ ସବୁରି ଶାଳୀ ହେ
ଆମେ ଶଳା ସଇତାନ୍ ।''
(କିଏ ଶଳା ସଇତାନ - ପୃ. ୪୨୧ - ତତ୍ରୈବ)

ଖରା ବର୍ଷାରେ ନିଜେ କଷ୍ଟ ସ୍ୱୀକାର କରି ଧନିକ ଗୋଷ୍ଠୀ ମଥାରେ ଶୋଷିତ ଛତି ଟେକିଥାଏ । ନିଜ ଘର ଅନ୍ଧାର କରି ବତୀ ଜାଳିଥାଏ ଧନିକ ଘରେ । ଧନିକର ସନ୍ତାନ ପାଇଁ ଭୋଜନ ସଜାଡ଼େ । ଅଥଚ ନିଜ ପିଲେ ସଢ଼ନ୍ତି ଭୋକ ଉପାସରେ । ଶୋଷକ - ଶୋଷିତ, ଧନୀ - ଦରିଦ୍ର ମଧ୍ୟରେ ପ୍ରଭେଦ ତଥା ସ୍ଥିତିର ତାରତମ୍ୟ କବିତାଟିରେ ମୁଖ୍ୟତଃ ପ୍ରକଟିତ । ଖାଦ୍ୟ, ବସ୍ତ୍ର, ବାସଗୃହ, ଆଚାର, ବ୍ୟବହାର - ପ୍ରତ୍ୟେକ ପରିଧିରେ ଧନୀ - ଦରିଦ୍ର ଭିତରେ ରହିଛି ଏକ ଦୂରନ୍ତ ବ୍ୟବଧାନ । ସେଇ ବ୍ୟବଧାନର ଚିତ୍ର ପ୍ରଦର୍ଶନ କରିଛନ୍ତି କବି କାଳିନ୍ଦୀଚରଣ ପାଣିଗ୍ରାହୀ ।

ଆଧୁନିକ ଓଡ଼ିଆ କବିତାରେ ସାମାଜିକ ବିପ୍ଳବର ଅନ୍ୟତମ ପଥୀକୃତ୍ ସ୍ରଷ୍ଟା ହେଉଛନ୍ତି କାଳିନ୍ଦୀଚରଣ ପାଣିଗ୍ରାହୀ । ସବୁଜ - ଶିଳ୍ପୀର ଆକାଶପାୟୀ କଳ୍ପନା ପ୍ରବଣ ମାନସ କ୍ରମଶଃ ସାମାଜିକ ଚେତନାରେ ବ୍ରତୀ ହେବାରୁ କବିଙ୍କର ବୈପ୍ଳବିକ ଜୀବନାଦର୍ଶ ସମ୍ବଳିତ କବିତାର ଜନ୍ମ । 'ପୁରୀ ମନ୍ଦିର' ରେ ଦଳିତ ଜନସଂଘ ପାଇଁ ସେ ଯେଉଁ ବ୍ୟାକୁଳତା ପ୍ରକାଶ କରିଥିଲେ 'ଯାଦୁଘର', 'କିଏ ଶଳା ସଇତାନ', 'ପ୍ରାଚୀନ ନବୀନ', 'ସ୍ରଷ୍ଟା ଓ ସୃଷ୍ଟି' ତା'ର ଏକ ଏକ ପରିଣତି । କବିତାରେ ଆଂଗିକର ଅଳଂକାର ହେବା ପରିବର୍ତ୍ତେ ଭାବଗତ ଉଷ୍ଣତାରେ ଏହା ପ୍ରାଣୀନ ।



# କବି କାଳିନ୍ଦୀଚରଣ

ଡକ୍ଟର ତୀର୍ଥାନନ୍ଦ ମିଶ୍ର

॥ ଏକ ॥

କବି କାଳିନ୍ଦୀଚରଣ ପାଣିଗ୍ରାହୀ ବିଂଶ ଶତକର ପ୍ରାରମ୍ଭରୁ ଦୀର୍ଘ ନବେବର୍ଷର ଏକ ଉତ୍କଳୀୟ ସାରସ୍ୱତ ଉଚ୍ଚାରଣ । ତାଙ୍କ ସୃଷ୍ଟି ସମ୍ଭାର ଉଭୟ ଗୁଣାତ୍ମକ ଓ ପରିମାଣାତ୍ମକ ଦୃଷ୍ଟିରୁ ବିପୁଳ । ସେ ଏକାଧାରରେ ଜଣେ କବି, ଔପନ୍ୟାସିକ, ଗାଳ୍ପିକ, ପ୍ରାବନ୍ଧିକ ଓ ନାଟ୍ୟକାର । ତାଙ୍କ ସାରସ୍ୱତ ଜୀବନର ଆରମ୍ଭ ଯେଉଁ କବିତାରୁ ହୋଇଥିଲା, କ୍ଷୁଦ୍ରଗଳ୍ପ, ଉପନ୍ୟାସ ଓ ପ୍ରବନ୍ଧଭଳି ବହୁ ବିଭାଗରେ ଘୂରି ବୁଲିଥିଲେ ମଧ୍ୟ ଶେଷପର୍ଯ୍ୟନ୍ତ ସେ କବିତାର ସେହି ଲୀଳା ଚପଳ ଧାରାକୁ ପରିହାର କରିନଥିଲେ । ମହାବିଦ୍ୟାଳୟରେ ଅଧ୍ୟୟନ କରିବାବେଳକୁ କାଳିନ୍ଦୀଙ୍କ ଭିତରେ ଏକ ଉଜ୍ଜ୍ୱଳ ସାରସ୍ୱତ ଶ୍ରଦ୍ଧା ମଥା ଟେକୁଥିଲା, ଯାହା କାଳକ୍ରମେ ଅନୁକୂଳ ସମୟ ଓ ସୁଯୋଗ ପାଇ ବିକଶିତ ହୋଇଉଠିଲା, ଯାହାର ପରିଣତି ହେଲା ସବୁଜ କବିତା, ଛୁରୀଟିଏ ଲୋଡ଼ା, କ୍ଷଣିକ ସତ୍ୟ, ମନେ ନାହିଁ, ମହାଦୀପ ଓ ଶେଷରଶ୍ମି ଭଳି କବିତା ସଂକଳନ, ମୋ କଥା ସରିନାହିଁ ଓ ସାଗରିକାଭଳି କ୍ଷୁଦ୍ରଗଳ୍ପ ସଂକଳନ, ମାଟିର ମଣିଷ, ଲୁହାର ମଣିଷ, ଆଜିର ମଣିଷ, ମୁକ୍ତାଗଡ଼ର କ୍ଷୁଧା, ଅମରଚିତା ଓ ବାସନ୍ତୀର ଅଂଶ ବିଶେଷ ପରି ଉପନ୍ୟାସ, ପ୍ରିୟଦର୍ଶୀ ପରି ନାଟକ ଏବଂ ଶତାଧିକ ପ୍ରବନ୍ଧାବଳି । ପୁରୀ ଜିଲ୍ଲାର ବିଶ୍ୱନାଥପୁର ଗ୍ରାମରେ ଜନ୍ମ ଲାଭ କରିଥିବା କାଳିନ୍ଦୀ ଚରଣ ତାରୁଣ୍ୟରେ ବିଶେଷକରି ୧୯୨୦ ମସିହା ବେଳକୁ ଓଡ଼ିଆ ସାହିତ୍ୟର ସେବା କରିବାକୁ ଜୀବନର ବ୍ରତରୂପେ ଗ୍ରହଣ କରିନେଇଥିଲେ । ବିଦ୍ୟାଳୟର ପାଠପଢ଼ାରେ ଅବହେଳା କରି ସେ ଅଧିକାଂଶ ସମୟ ବଂଗଳା ତଥା ଇଂରେଜୀ ଉପନ୍ୟାସ ଓ କବିତା ଆଦି ପଢୁଥିଲେ । ଏହା କେବଳ 'ପଢ଼ିବା' ମଧ୍ୟରେ ସୀମିତ ନଥିଲା, ତାର ମୂଲ୍ୟାୟନ ମଧ୍ୟ ସେ କରୁଥିଲେ ବୋଲି ତାଙ୍କ 'ଦିନଲିପି'ରୁ ଜଣାପଡ଼େ । କବିତା ଏବଂ ଗଳ୍ପ ଉପନ୍ୟାସ ଏ ଉଭୟ ଦିଗପ୍ରତି ତାଙ୍କର ସମଧିକ ଶ୍ରଦ୍ଧା ଥିଲା । ଏହି ଅଧ୍ୟୟନ ଧାରା କିପରି ତାଙ୍କର ସ୍ରଷ୍ଟାମାନସକୁ ପ୍ରଭାବିତ କରିଥିଲା, ତାହା କବିଙ୍କ ୨୩।୧୦।୧୯୨୦ ଶନିବାରର ଦିନଲିପିରୁ ଜଣାପଡ଼େ – 'ପୂଜ୍ୟପାଦ ରବୀନ୍ଦ୍ରନାଥ ଠାକୁରଙ୍କ 'ଝରଣାତଳା' କବିତା ପଢ଼ି ଦୁଇ ଚାରିମାସ ତଳର ମୋର 'ଯୌବନ ସ୍ୱପ୍ନ' ପଦ୍ୟଟି ମନେପଡୁଛି । କାରଣ ଦୁଇଗଦ୍ୟ ମଧ୍ୟରେ ତୁଳନା କରିଦେଖିଲେ ଜଣାଯାଏ ମୁଁ ପ୍ରାୟ ତାଙ୍କୁ ଅନେକଟା ଅନୁକରଣ କରିଛି । ଏଇପରି ଅନ୍ୟ ଲେଖକଙ୍କ ସହିତ କେତେକ ଜଗାରେ ମୋ

ଭାବ ମିଳିଯାଏ ।'' (କା.ର.ଚ. ୨ୟ, ୧୯୭୪, ପୃ. ୭୨୪) । କେବଳ ଅଧ୍ୟୟନ ନୁହେଁ, ସୃଷ୍ଟି ସହିତ ତାର ତୁଳନା ତରୁଣ ବୟସରୁ କାଳିନ୍ଦୀ ଚ଼ରଣଙ୍କୁ ନୂତନତାର ଆବାହନ ଏବଂ ଏହି ନୂତନତାର ପ୍ରେକ୍ଷାପଟ ମନୋନୟନ ଏହି ଦୁଇଟି କବି କର୍ମପାଇଁ ଅନୁପ୍ରେରିତ କରିଛି ।

୧୯୨୦ ରୁ ୧୯୪୫ ଏହି ପଚ଼ିଶ ବର୍ଷ ହିଁ କବି କାଳିନ୍ଦୀଚ଼ରଣଙ୍କ କାବ୍ୟ ସାଧନାର ସମୟ । ଏହାପରେ ଗଦ୍ୟର ଆକର୍ଷଣରେ ସେ କବିତାକୁ ପ୍ରାୟଶଃ ଭୁଲି ବସିଛି । ୧୯୨୦ରେ ସେ ରବୀନ୍ଦ୍ର କବିତାର ସଂସ୍ପର୍ଶରେ ଆସି ଓଡ଼ିଆ କବିତାରେ ଏକ ନୂତନ ସ୍ପନ୍ଦନ ସୃଷ୍ଟିକରିବାର ପ୍ରୟାସ କରିଛନ୍ତି ଏବଂ ଅନ୍ୟ ତରୁଣ ବନ୍ଧୁମାନଙ୍କ ସହିତ ସେ ଏକତ୍ର ହୋଇ ୧୯୨୧ ମସିହାବେଳକୁ ଓଡ଼ିଆ ସାହିତ୍ୟରେ 'ସବୁଜ' ଚେତନାର ଅଭ୍ୟୁଦୟ କରିଛନ୍ତି । ଏହା ପୂର୍ବରୁ ୧୯୧୯ ରେ ପୁରୀ ଜିଲ୍ଲା ସ୍କୁଲରେ କାଳିନ୍ଦୀ ସେକ୍ସନ 'ବି'ରେ 'ସେକେଣ୍ଡ କ୍ଲାସ୍'ରେ ଅଧ୍ୟୟନ କରୁଥିବା ବେଳେ ଅନ୍ନଦା ଶଙ୍କର ରାୟ ସେହିବର୍ଷ ଏହି ସ୍କୁଲର ସେକେଣ୍ଡ କ୍ଲାସ୍‌ରେ 'ଏ' ସେକ୍ସନରେ ଅଧ୍ୟୟନ କରିବାକୁ ଯୋଗଦିଅନ୍ତି । ଏହି ବନ୍ଧୁତା କାଳିନ୍ଦୀଚରଣଙ୍କ ଜୀବନରେ ଗଭୀର ପ୍ରଭାବ ପକାଇଥିଲା । ସମୁଦ୍ର କୂଳରେ ଅନ୍ନଦା ଶଙ୍କରଙ୍କୁ ଭିକାରୀ ଚରଣଙ୍କ 'ଡେଙ୍ଗ ଉପରେ ଫୁଲ' ଗୀତ ସମୁମଧୁର ସ୍ୱରରେ ଗାଇବା ମୂଳରେ ଏହି କବିତା ପ୍ରଣୟ ଚେତନାଟି ହିଁ କାର୍ଯ୍ୟକାରୀ ହୋଇଥିଲା (ରାୟ, କୋଣାର୍କ ୮୬, ୧୯୯୨, ପୃ. ୮) । ପରେ ୧୯୨୧ରେ ରେଭେନ୍ସା ମହାବିଦ୍ୟାଳୟରେ ଅଧ୍ୟୟନ କରିବା ସମୟରେ କାଳିନ୍ଦୀଚରଣ ଅନ୍ନଦା ଶଙ୍କର, ବୈକୁଣ୍ଠନାଥ, ଶରତଚନ୍ଦ୍ର ମୁଖାର୍ଜୀ ଏବଂ ହରିହର ମହାପାତ୍ର ଏକତ୍ରିତ ହୋଇଥିଲେ ଏବଂ ବୈକୁଣ୍ଠନାଥଙ୍କ ପ୍ରସ୍ତାବରେ 'ନନ୍‌ସେନ୍‌ସ କ୍ଲବ' ସ୍ଥାପନ କରି 'ଅବକାଶ' ନାମକ ଏକ ହାତଲେଖା ପତ୍ରିକା ପ୍ରକାଶ କରୁଥିଲେ । ରେଭେନ୍‌ସାରେ ଦୁଇବର୍ଷ ଅଧ୍ୟୟନ ପରେ ଅନ୍ନଦାଶଙ୍କର ଏବଂ ଶରତ ଚନ୍ଦ୍ର ପାଟନା ମହାବିଦ୍ୟାଳୟକୁ ଚାଲିଗଲେ । ୧୯୨୫ରେ ବି.ଏ. ପରୀକ୍ଷାରେ କାଳିନ୍ଦୀଚରଣ, ବୈକୁଣ୍ଠ ଓ ଶରତ ଚାକିରି ଦାୟରେ ଏକତ୍ର ରହିପାରିଲେ ନାହିଁ । ୧୯୨୬ ରୁ ଅନ୍ନଦାଶଙ୍କରଙ୍କର ଓଡ଼ିଆ ଲେଖାରେ ଯବନିକା ପଡ଼ିଲା । ସେ ବଙ୍ଗ ପ୍ରଦେଶରେ ୧୯୨୯ ରୁ ନିଯୁକ୍ତ ହେଲେ । ଏହାର କିଛି କାଳ ପରେ ଶରତଚନ୍ଦ୍ର କଟକକୁ ସ୍ଥାନାନ୍ତରିତ ହୋଇ ଆସିବାପରେ କାଳିନ୍ଦୀ ଓ ହରିହରଙ୍କ ସହ ମିଳିତ ହୋଇ 'ସବୁଜ ସାହିତ୍ୟ ସମିତି' ପ୍ରତିଷ୍ଠାକଲେ ଓ ୧୯୩୩ ରୁ ଏହି ସମିତିର ମୁଖପତ୍ର 'ଯୁଗବୀଣା' କାଳିନ୍ଦୀଙ୍କ ସମ୍ପାଦନରେ ପ୍ରକାଶିତ ହେଲା । ପାଞ୍ଚଜଣଙ୍କ ସାହିତ୍ୟିକୃତି ଏକତ୍ର 'ସବୁଜ କବିତା' ନାମରେ କାଳିନ୍ଦୀଙ୍କ ସମ୍ପାଦନାରେ ପ୍ରକାଶିତ ହେଲା ।

କାଳିନ୍ଦୀଚରଣ ଓ ତାଙ୍କ ବନ୍ଧୁମାନେ ଓଡ଼ିଆ ସାହିତ୍ୟରେ ଯେଉଁ ନୂତନ ଚେତନାର ଅନୁବର୍ତ୍ତନ କଲେ ତା'ର ନାମ ଦେଲେ 'ସବୁଜ' । ବଙ୍ଗଳାର କଲ୍ଲୋଳଯୁଗ, ହିନ୍ଦୀର ଛାୟାବାଦୀ ଯୁଗ ଏବଂ ମରାଠୀ ସାହିତ୍ୟର ରବିକିରଣ ମଣ୍ଡଳ ପରି ଏମାନେ ସେମାନଙ୍କ ସୃଷ୍ଟିର କାଳକୁ 'ସବୁଜ ଯୁଗ' ନାମରେ ନିଜେ ନାମିତ କରି ନଥିଲେ ମଧ୍ୟ ଆପଣାକୁ ସବୁଜ

କବି ଓ ସବୁଜ ଦଳ ନାମରେ ନାମିତ କଲେ । ପରବର୍ତ୍ତୀ କାଳର କେତେକ ଆଲୋଚ଼କ ଏହି ସମୟକୁ 'ସବୁଜ ଯୁଗ' ବୋଲି କହିବାବେଳେ ଆଉ କେତେକ ଏହା ଯୁଗ ନୁହେଁ ଯୁଗାଭାସ ମାତ୍ର ବୋଲି କହିଛନ୍ତି । ଏହାକୁ ଯୁଗ ନ କହିବାର ପ୍ରଥମ କାରଣ ହେଉଛି ଏହି ଯୁଗର କୌଣସି ନିର୍ଦ୍ଦିଷ୍ଟ ଆଭିମୁଖ୍ୟ ନାହିଁ । ଏକ ସୈରବାଦୀ, ପ୍ରେମସର୍ବସ୍ୱ, ପଳାୟନ ପ୍ରବଣତା ଓ ରୋମାଣ୍ଟିକ୍ ବିଷାଦବାଦିତା ହିଁ ଏହି କାବ୍ୟଚେ଼ତନାର ମୁଖ୍ୟ ସ୍ୱର । ଯଦିଓ ଅନ୍ନଦାଶଙ୍କର ଏହି ଯୁଗର ଆଭିମୁଖ୍ୟ ଭାବରେ 'ପ୍ରାଚ୍ୟ ପାଶ୍ଚାତ୍ୟ ସମନ୍ୱୟ' ବୋଲି କହିଛନ୍ତି ଏବଂ ଏହାକୁ ସେ ୧୯୧୬ରେ ପ୍ରଥମ କରି ପଢ଼ିଥିବା (ପ୍ରମଥ ଚୌଧୁରୀଙ୍କ ସମ୍ପାଦିତ 'ସବୁଜପତ୍ର'ରୁ ଗ୍ରହଣ କରିଛି ବୋଲି ସ୍ପଷ୍ଟ ସ୍ୱୀକାର କରିଛନ୍ତି (ରାୟ, କୋଣାର୍କ, ପୃ ୧୨) ତଥାପି ସବୁଜ କବିତାମାନଙ୍କରେ ଏହି ଆଦର୍ଶ କେବଳ ଶୈଳୀ ବ୍ୟତୀତ ଆଉ କୌଣସି ଚିରାଚରିତ ବିଭାଗକୁ ସ୍ପର୍ଶ କରିନାହିଁ । ଏକଥା ସତ୍ୟ ଯେ ଏହି କବିମାନେ ରବୀନ୍ଦ୍ରଙ୍କ ଆଦର୍ଶ ଦ୍ୱାରା ବହୁପରିମାଣରେ ପ୍ରଭାବିତ ହୋଇଥିଲେ ଏବଂ ରବୀନ୍ଦ୍ରନାଥଙ୍କ 'ସବୁଜେର ଅଭିଯାନ' କବିତା ସେମାନଙ୍କୁ ଆପଣାକୁ 'ସବୁଜ' ନାମରେ ପରିଚିତ କରାଇବାକୁ ବହୁ ପରିମାଣରେ ଅନୁପ୍ରେରିତ କରିଥିଲା –

''ଓରେ ନବୀନ ଓରେ ଆମାର କାଁଚା
ଓରେ ସବୁଜ୍, ଓରେ ଅବୁଝ,
ଆଧ-ମାରାଦେର ଘାମେର ତୁଇ ବାଁଚା
+++ ତୋରେ ହେଥାୟକରବେ ସବାଇ ମାନା ।
ହଠାତ୍ ଆଲୋ ଦେଖିବେ ଯଖନ
ଭାବ୍‌ବେ, ଏ କି ବିଷମ କାଣ୍ଡଖାନା !
ସଂଘାତେ ତୋର ଉଠ୍‌ବେ ଓରା ରେଗେ
ଶୟନ ଛେଡ଼େ ଆସ୍‌ବେ ଛୁଟେ ବେଗେ ।
ସେଇ ସୁଯୋଗେ ଘୁମେର୍ ଥେକେ ଜେଗେ
ଲାଗ୍‌ବେ ଲଡାଇ ମିଥ୍ୟା ଏବଂ ସାଂଚାୟ
ଆୟ ପ୍ରଚଣ୍ଡ, ଆୟରେ ଆମାର କାଁଚା ।''

॥ ଦୁଇ ॥

୧୯୨୦ ମସିହାବେଳକୁ କାଳିନ୍ଦୀଚ଼ରଣ ଓଡ଼ିଆ ସାହିତ୍ୟ ଜଗତର ତତ୍କାଳୀନ ପ୍ରତିଷ୍ଠିତ ପତ୍ରିକା 'ଉତ୍କଳ ସାହିତ୍ୟ'ରେ ପ୍ରକାଶିତ ହୋଇ ସାରିଥିଲେ (ଦିନଲିପି -ତା୨୧।୭।୧୯୨୦ କା.ର.ଚ. ପୃ. ୬୭୨ ) କାଳିନ୍ଦୀଙ୍କର କାବ୍ୟେ ରଚ଼ନାର ପୃଷ୍ଠଭୂମିରେ ସେତେବେଳେ ମୁଖ୍ୟତଃ ଥିଲା କବିବର ରାଧାନାଥଙ୍କ କଳ୍ପନା ବିଳାସ, ରବୀନ୍ଦ୍ରନାଥଙ୍କ ଛନ୍ଦମୟ ଆଧିଭୌତିକ ଚେତନା

ଏବଂ ପ୍ରମୁଖ ଚୌଧୁରୀଙ୍କ ସଂପାଦିତ ସବୁଜପତ୍ରର ନୂତନଧର୍ମୀ କବିତା । 'ଛୁରୀଟିଏ ଲୋଡ଼ା' ସଂକଳନର ଅନେକ କବିତା ତାଙ୍କର ପ୍ରାଥମିକ କାବ୍ୟସ୍ୱର ସମ୍ପର୍କରେ ପରିଚୟ ଦିଏ । ଆଦ୍ୟ ତାରୁଣ୍ୟର ମୋହାଚ୍ଛନ୍ନ ପ୍ରଣୟାସକ୍ତି, ନୂତନ ଛନ୍ଦର ନବୀନ ସ୍ୱର ଏସବୁକୁ କବି ଏକାନ୍ତ ଆତ୍ମୀୟତାର ସହ ଆପଣେଇ ନେଇଥିଲେ । ୧୯୨୦ ମସିହାରେ ରଚିତ କାଳିନ୍ଦୀଙ୍କ କବିତାମାନଙ୍କରେ ପୂର୍ବସୂରୀମାନଙ୍କ ପ୍ରତି ଏକ ଆଚ୍ଛନ୍ନଭାବ ସ୍ପଷ୍ଟ ହୋଇ ପଡ଼େ । 'ବିରହୀ ଯକ୍ଷ' ଏବଂ 'ରଜ' ର କେତେକ ପଂକ୍ତିରୁ ଏହାର ସତ୍ୟାସତ୍ୟ ଉପଲବ୍ଧ କରି ହୁଏ । ବିରହୀ ଯକ୍ଷର 'ଫିଟି ଲୋଟୁଥିବ କେଶ ଧରଣୀ ଛୁଇଁ' ରାଧାନାଥଙ୍କ 'ଅସମ୍ଭାଳେ ଫିଟି କୁନ୍ତଳ ଭୂମି ଯାଏ ପରଶି'ର ଚିତ୍ର ଆଣୁଥିବାବେଳେ 'ରଜ'ର 'ହଳଦୀ ଅଳପ ଲଗାଇ ମୁଣ୍ଡ ବାନ୍ଧି ଯତନେ' ନୀଳକଣ୍ଠଙ୍କ 'ରାମଚଣ୍ଡୀରେ ସନ୍ଧ୍ୟା ଓ ସକାଳ' ର ଆଜି ଯେ କୁଆଁର ପୂନିଅଁ..' ର ସ୍ମୃତି ଘେନିଆସେ । ଏହି ପର୍ଯ୍ୟାୟର କବିତାମାନଙ୍କ ସ୍ୱର ବେଶ୍ ରୋମାଣ୍ଟିକ୍ । 'ବିରହୀ ଯକ୍ଷ' ରେ ମେଘଦୂତର ସେହି ବିଷାଦିତ କାବ୍ୟନାୟକର ଉଚ୍ଚାରଣ ଅତ୍ୟନ୍ତ ସ୍ପଷ୍ଟ । 'ଆଷାଢ଼ର ପ୍ରଥମ ଦିନ'ର ବ୍ୟଞ୍ଜନ ଭିତରେ କବି ଚିରନ୍ତନ ପ୍ରଣୟ ମଧ୍ୟରେ ଅନିଚ୍ଛାକୃତ ବିପ୍ରଲମ୍ଭତାକୁ ଅତ୍ୟନ୍ତ କଳାତ୍ମକ ଭାବେ ପ୍ରସ୍ଫୁଟନ କରିଛନ୍ତି । ଝର ଝର ବାରିଧାରା ଓ ଗୁରୁଗୁରୁ ମେଘର ଧ୍ୱନି ଭିତରେ ଏକ ସ୍ୱୈରାଚାରୀ ସ୍ୱପ୍ନପ୍ରବଣ ଭାବ ସ୍ପଷ୍ଟ ଯାହାର ପରିପୂର୍ଣ୍ଣ ପ୍ରକାଶ ଏହି ପଂକ୍ତି କେତୋଟିରୁ ବାରି ହୋଇଯାଏ -

''କାହା ମୁଖ ଦେଖେ ମୋର ନୟନ ତାରା,  
କି ବାରତା ଆଣିଚ ହେ ବରଷା ଧାରା ।  
କାହା ପାଇଁ ସ୍ନେହ ନଦୀ ଛୁଟିବ ବେଗେ ।  
ବିଜୁଳି ଚମକେ ଯେବେ କଜଳ ମେଘେ ।'

(ବିରହୀଯକ୍ଷ : ଛୁରିଟିଏ ଲୋଡ଼ା)

'ବ୍ୟର୍ଥସ୍ୱପ୍ନ' (୧୯୨୦) ରେ ଏହି ଭାବ ଆହୁରି ଅଧିକ ଶାଣିତ । ବିଦେହୀ ପ୍ରିୟତମାର ଶୂନ୍ୟ ଉପସ୍ଥିତିରେ କବି ପ୍ରାଣର ଉଚ୍ଚାଟ ଭାବ, ବିଶେଷକରି ଆଦୌ ନଦେଖି ମଧ୍ୟ 'ଆସିଚି' ଏଇ ଅନୁମାନ ଭିତରେ ପରବର୍ତ୍ତୀ ସାନ୍ତ୍ୱନାଦାୟୀ କଳ୍ପନାର ସ୍ଥିତି ଏକାନ୍ତ କାବ୍ୟମୟ । ଏଠାରେ ପ୍ରତ୍ୟକ୍ଷୀକୃତ ଉପଭୋଗରେ ନୁହେଁ କଳ୍ପନାରେ ହିଁ ସୁଖକୁ ଅଧିକ ଉପଲବ୍ଧ କରିବା ଏବଂ ଏହାର ବର୍ଣ୍ଣନା ପାଇଁ 'କବିଭାଷା' ନିଅଣ୍ଟ ହେବା କହିବାଭିତରେ ସେହି ସ୍ୱୈରାଚାରୀ ସ୍ୱପ୍ନପ୍ରବଣ ଭାବକୁ ସହଜରେ ଲକ୍ଷ୍ୟ କରିହୁଏ (ଖୋଜିନାଇଁ ହୃଦଦେଇ ଆସିଚି ଆସିଚି ଏଇ ସାନ୍ତ୍ୱନାରେ ଗଢ଼ିନେଲି ମୋର ସୁଖ ଆଶା/ କିହେଲା କି କଲିପରେ ଅଛି ସ୍ମୃତି ପରପାରେ ଯାଇ ନାଇଁ ଆଜିଯାଏ ଯହିଁ କବିଭାଷା : 'ବ୍ୟର୍ଥସ୍ୱପ୍ନ' ଛୁରିଟିଏ ଲୋଡ଼ା) ।

ନିଃସଙ୍ଗ ଅନୁଭବ ସ୍ୱୈରବାଦୀ କାବ୍ୟ ଚେତନାର ଅନ୍ୟଏକ ବିଭାବ । ପରିପୂର୍ଣ୍ଣ ପୃଥିବୀରେ ଆପଣାକୁ ଏକାକୀ ବୋଲି ଅନୁଭବ କରିବା, ସୁଖମୟ ସଂସାର ମଧ୍ୟରେ ଆପଣାକୁ ଦୁଃଖୀ ଭଳି ଅନୁଭବ କରିବା ଏବଂ ତାରୁଣ୍ୟର ଏ ବ୍ୟଥାହତ ହୃଦୟକୁ କାହା

ପାଖରେ ପ୍ରକାଶ ନ କରି ପାରିବାର ଯନ୍ତ୍ରଣାରେ କାବ୍ୟନାୟକ ଅହରହ ସନ୍ତୁଳିତ ହେଉଥାଏ । 'ଏକାକୀ ପଥରେ' (୧୯୨୨) ରେ ଏହି ସ୍ୱର ଅତ୍ୟନ୍ତ ସ୍ପଷ୍ଟ । ସୁଖର ଶରତ ଋତୁରେ ଦୁଃଖର ଏ ଶୀତ ଅନୁଭବରେ ବିଚଳିତ ହୋଇ ଉଠେ କାବ୍ୟନାୟକ । ମାତ୍ର ଏଇ ଶୂନ୍ୟ ବିକଳ ଏକାକୀପଣର ଆପୋଷ ପରିସମାପ୍ତି ଘଟେ ସେଇଠି ଯେଉଁଠି କାବ୍ୟନାୟକ ପ୍ରକୃତି ମଧ୍ୟରୁ ତାର ଉପଯୁକ୍ତ ଉପମାନଟିଏ ଖୋଜିବସେ । ସେହି ଉପମାନଟି ହେଉଛି ଲୋଟଣି ପାରା । ଲୋଟଣିପାରାର ଅନନ୍ତଶୂନ୍ୟ ଉଡ଼ାଣ, ଅନନ୍ତ ଆକାଶରେ ଘୂରିବୁଲି ପୁଣି ତଳକୁ ଖସି ଆସିବା ଭିତରେ କାରଣ ଖୋଜି ବସିବ ଏବଂ ସଂସାରର ମୋହ ଆବରଣକୁ ଅସ୍ୱୀକାର କରି ଉପରକୁ ଉଠୁଥିବା ଏହି ପ୍ରାଣୀଟି ପୁଣି କାହା ଅଭିଶାପରେ ମର୍ତ୍ତ୍ୟକୁ ଫେରିଆସିବାର ଭାବନା କାବ୍ୟପୁରୁଷକୁ ଲୋଟଣିପାରା ସହ ଆପଣାକୁ ଏକାଠି କରି ଭାବିବସିବାର ପ୍ରଚୋଦନା ଦେଇଛି ଏବଂ ଶେଷରେ ସେ ଆପଣାର ଭବିଷ୍ୟତ ସଂପର୍କରେ ଏ ସିଦ୍ଧାନ୍ତ ନେଇବସିଛି –

''ମୋ ଆଶା ମୋ ଅନନ୍ତ ପିପାସା ଖସେ ଉଠେ ସିନା ଏହିପରି
ଶୂନ୍ୟେ ଆହା ପ୍ରାଣର ସର୍ବସ୍ୱ କିମ୍ପା ଲୋଟେ କେଉଁ ଦମ୍ଭ ଧରି !

ଲୋଟଣି ପାରା' (୧୯୨୨) କ୍ଷଣିକସତ୍ୟ

ଏହି ନିଃସଙ୍ଗ ଅନୁଭବ କବିଙ୍କ 'ଅଭିମାନ' (୧୯୨୩) 'ଫଗୁଣ ଜ୍ୟୋସ୍ନା' (୧୯୨୪)' ଲୋହିତ ବ୍ୟଥା' (୧୯୨୪) ଓ 'କବିର ବ୍ୟଥା' (୧୯୨୪) କବିତାରେ ଅଧିକ ସ୍ପଷ୍ଟ ଚୈତ୍ରର ପ୍ରଭାତୀ ପବନ ସମଗ୍ର ବିଶ୍ୱରେ ଆନନ୍ଦର ପୁଲକ ସଞ୍ଚାର କରିଥିଲେ ମଧ କବିଚିତ୍ତ ସେହି ପବନ ସ୍ପର୍ଶରେ କିନ୍ତୁ ଆନନ୍ଦିତ ହୋଇପାରିନାହିଁ । ତେଣୁ ଯେତେ ଜଗତ ପ୍ରତି ନୁହେଁ ସେତେ ନିଜ ପ୍ରତି ସେ ଅଭିମାନ ପୋଷଣ କରିଛି 'ଅଭିମାନ' କବିତାରେ । ନିଜ କଥା ନିଜ ଭାବକୁ ନିଜ ଭିତରେ ରଖି ଭାଳିବସିବାରେ କାଳ ବିତାଇବାକୁ ଶ୍ରେୟସ୍କର ମଣିଛି କାବ୍ୟନାୟକ । ଆନନ୍ଦ ନୁହେଁ ବିଷାଦର ପ୍ରଚକ୍ଷୁରେ ଜଗତକୁ ଦେଖି ବସିଛି ସେ । ସକଳ ସ୍ୱପ୍ନିଳ ଅନୁଷଙ୍ଗ ମଧ୍ୟରେ ଏକ ଦୂରନ୍ତ ବିଷାଦବୋଧ ହିଁ କାବ୍ୟନାୟକକୁ ପୂର୍ଣ୍ଣ ଆଚ୍ଛନ୍ନ କରି ବସିଛି । 'ଲୋହିତ ବ୍ୟଥା' (୧୯୨୪) ରେ ଏହାର ସ୍ୱର ବେଶ୍ ସ୍ପଷ୍ଟ -

''ଦୂର ଅତୀତର ଶୁଭୁଥିଲା ଭାଷା
କି ଗହନ ବ୍ୟଥା ଦୂରନ୍ତ ଦୁରାଶା
ସନ୍ଧ୍ୟା ସୁନ୍ଦରୀ ସ୍ୱର୍ଣ୍ଣମେଘର ରଥେ
ସଜଳ ନୟନେ ଚାହିଁଥିଲା ବନପଥେ ।''

ଏହି ବ୍ୟଥା ଓ ବିଷାଦବୋଧକୁ ଆଉ ନିଜ ଭିତରେ ଅଧିକ କାଳ ଲୁଚାଇ ରଖିପାରିନି କାବ୍ୟନାୟକ, ଆକାଶ, ଆକାଶର ତାରା, ବନ, ପର୍ବତ, ବସନ୍ତ ପବନ, ଗୋଲାପ ଏବଂ ଯୂଇ ଆଦି ସକଳ ସୁଖପ୍ରଦ ଉପାଦାନମାନଙ୍କୁ ନିଜ ଦୁଃଖର କଥା ଶୁଣାଇଛନ୍ତି ସେ । ନିଜର

ଏହି ବେଦନାବିଧୁର ସ୍ଥିତିକୁ ପ୍ରତୀକିତ କରିବା ପାଇଁ ନିରାଶରେ ପଥଧାରରେ ବସିରହିଥିବା 'କଜ୍ଜଳ ଘନ'ର ବ୍ୟଞ୍ଜକ ଅବତାରଣା କରିଛି କାବ୍ୟନାୟକ ଅତ୍ୟନ୍ତ କଳାତ୍ମକ ଭଙ୍ଗୀରେ (କବିର ବ୍ୟଥା) । ଏହି ସ୍ୱୈରବାଦୀ ବିଷାଦବୋଧ କବିଙ୍କ 'ହତାଶାର ଗାନ' (୧୯୨୬) କବିତାରେ ମଧ ପରିଲକ୍ଷିତ ହୁଏ । ଉଷାର କ୍ରମବିକଶିତ ଅରୁଣାଲୋକରେ କାବ୍ୟ ପୁରୁଷ ଆପଣାର ବିଷାଦିତ ସ୍ଥିତିର କାରଣ ଖୋଜି ପାଇନାହିଁ । ଜ୍ୟୋତ୍ସ୍ନାର ହସ, ବକୁଳର ମନମତାଣିଆ ଗନ୍ଧ, ତଟିନୀର ସଙ୍ଗୀତ, ପକ୍ଷୀର କଳକାକଳି, ଦକ୍ଷିଣା ପବନର ମୃଦୁ ଶିହରଣ ଏ ସବୁ ଭିତରେ ଆନନ୍ଦର ଯେଉଁ ଅନୁପମ ଉସ ଖେଳିବୁଲିଛି ତାକୁ କେଜାଣି କାହିଁକି ଆପଣାର କରିପାରିନି କାବ୍ୟନାୟକ । ମାତ୍ର ଆପଣାର ଏହି ବିକଳ ଅବସାଦଗ୍ରସ୍ତ ଚେତନାର ହେତୁ ମଧ ନିରୂପଣ କରି ପାରିନାହିଁ ସେ । ଏହି ଦ୍ୱିଧାବିଭକ୍ତ ବିଷଣ୍ଣ ମାନସିକତାକୁ ସ୍ୱୀକାର କରିନେଇ ଗାଇ ବସିଛି,

''କିଗୋ ଚେତନା ଖେଳେ ଆକାଶେ କିବା ବାସନା ଧରା ତଳେ ଗୋ
ଆଜି ଲହରୀ କହେ କି କଥା ସେ ଯେ ବଚନଭାବ ବଳେଗୋ !
ଏହି ଆକାଶ ଧରା ସାଗର କିବା ଜୀବନେ ଉଠେ ମାତି ଗୋ
ଆହା ମରଣ ମୋର ସଉଦା ଚିର ହତାଶା ମୋର ସାଥିଗୋ ।''

(ହତାଶର ଗାନ : ଛୁରୀଟିଏ ଲୋଡ଼ା)

ମାତ୍ର କାବ୍ୟ ନାୟକର ଏ ସ୍ୱୈରବାଦୀ ବିଷାଦବାଦ ଦୀର୍ଘସ୍ଥାୟୀ ନୁହେଁ । ଛିନ୍ନ ପକ୍ଷ ପାତଳମେଘ ପରି ଏହା ଚଳଚଞ୍ଚଳ । ଏହାର ବିଲୋପ ପାଇଁ କାବ୍ୟ ନାୟକର ହୃଦୟରେ ଏକ ପ୍ରତିଜ୍ଞାପିହିତ ଆଶାବାଦର ସ୍ୱର ସ୍ପଷ୍ଟ । କଳ୍ପନାରେ ସଞ୍ଚରଣ କରୁଥିବା କାବ୍ୟନାୟିକା ଯାହାର ବିରହରେ କାବ୍ୟପୁରୁଷର ଏ ବିଷାଦବୋଧ ତାହା ସହିତ ମିଳନ ହେବାର ସେଇ ଅନାଗତ ମହିମ୍ନ ଲଗ୍ନରେ ଯେ ଜୀବନର ସବୁ ଅବସାଦ ଦୂରେଇଯିବ ଏ ଦୃଢ଼ପ୍ରତ୍ୟୟ ସୃଷ୍ଟି ହୋଇଛି ତା ମନରେ (ବ୍ୟବଧାନ : ୧୯୨୫; କ୍ଷଣିକ ସତ୍ୟ) । ସେତେବେଳେ ଆପଣାର ପ୍ରିୟ ମଣିଷଟି ଆଉ ଅଦୃଶ୍ୟ ସତ୍ତାଟିଏ ହୋଇ ରହିନାହିଁ । ତାର ଅଲୌକିକ ଅଦୃଶ୍ୟ ଶୂନ୍ୟସତ୍ତା ସର୍ବକାଳୀନ ଓ ସର୍ବସ୍ଥାନମୟ ହୋଇଯାଇଛି । ତା'ର ଅଦର୍ଶନ ଜନିତଦୋଷ ତାର ନୁହେଁ କେବଳ ନିଜର ଏ ବିଶ୍ୱାସ କ୍ରମେ ତା ମଧରେ ଦୃଢ଼ ହୋଇଯାଇଛି । 'ଚିତ୍ରୋତ୍ପଳା' (୧୯୨୭) କବିତାରେ ଚିତ୍ରୋତ୍ପଳାର ଅନବଚ୍ଛିନ୍ନ ପ୍ରବହମାନତା ଏବଂ ତାର ବ୍ୟାକୁଳିତ ପ୍ରତୀକ୍ଷାକୁ ନିଜ ସହ ତୁଳନା କରି ଶେଷରେ କାବ୍ୟନାୟକ ଏହି ଆଶାବାଦୀ ସିଦ୍ଧାନ୍ତରେ ଉପନୀତ ହୋଇଛି -

''ମୋର ପ୍ରିୟ ସବୁଦେଶେ ଅଛି ସବୁକାଳେ
ଅଛି ସମ୍ମୁଖେ ଅଛି ଦୂର ଚକ୍ରବାଳେ
ଥିଲେ ହେଁ ମୁଁ ଅନ୍ଧରୂପେ ଚିରଦିନ ଅନ୍ଧକୂପେ
ତହିଁ ତୋ ଅଧର ହାସ କି ଆଲୋକ ଢ଼ାଳେ ।'

ଏହାପରେ କେବଳ ଆନନ୍ଦ ହିଁ ଆନନ୍ଦ ଏହି ସ୍ଥିତିକୁ ସ୍ୱୀକାରି ନେଇଛି କାବ୍ୟନାୟକ । ଏଣୁ ଫଗୁଣଜ୍ୟୋସ୍ନା (୧୯୨୬)ରେ ସେ ଆପଣାର ଏହି ଆନନ୍ଦମୟ ସ୍ଥିତିକୁ ଉତ୍ସାହର ସହ ଦୀର୍ଘସ୍ଥାୟୀ କରିବା ପାଇଁ ଆପଣାକୁ ହିଁ ଆହ୍ୱାନ ଦେଇଛି ଏଇଭଳି–

''ଆଜି ଖାଲି ହସିବାର ଭୁଲିବାର
ଜୋଛନାରେ ନାଚ ଆଜି ବାରବାର
ପୋଛି ଆସ ନୟନରୁ ଲୁହଧାର' ।

ଏହି ଆହ୍ୱାନର କ୍ରମମୁକୁଳିତ ରୂପ କବିଙ୍କ 'ମଧୁବିବାହ' (୧୯୨୫) 'କୁହୁପ୍ରାସ', (୧୯୨୯) 'ମୁକୁଳି ପଡ଼ଗୋ' (୧୯୨୯), 'ପୁଷ୍ପଶୋଭା' (୧୯୨୬) ଏବଂ 'ରୂପର ସ୍ତବ' (୧୯୩୨) କବିତାରେ ସ୍ପଷ୍ଟ ଅନୁଭବ କରିହୁଏ । 'ମଧୁ ବିବାହ'ରେ ସକଳ ବିଷାଦିତ ଚିତ୍ତବୃତ୍ତିର ଅବସାନ ଘଟାଇ କାବ୍ୟନାୟକର ପ୍ରେମାସ୍ପଦା ଧୀର ସୁଲଳିତ ଭଙ୍ଗୀରେ 'ତୃତୀୟା ଜୋଛନା' ଭଳି ଚାଲିଆସେ । ଏ କ୍ଷେତ୍ରରେ କାଳିନ୍ଦୀଙ୍କ ଲେଖନୀ ଅତ୍ୟନ୍ତ ରସମୟୀ ହୋଇ ଉଠେ —

''ବଧୂଆସେ ମୋର ଧୀର ସୁଲଳିତ ତୃତୀୟା ଜୋଛନା ସମ
ବଢାଏ ମୋ କରେ କମ୍ପିତ କର ସୁକୁମାର ଅନୁପମ !
ଲାଜ ଲାଜ ଗଣ୍ଡେ ନ କହଇ କଥା
ଭାଦର ବଉବେ ଲୁଚାଏ ତା ମଥା
କି ନିବିଡ଼ ବ୍ୟଥା ଲାଗେ ଏ ପୀରତି ପୀଡ଼ିତ ମରମେ ମମ
ବଧୁଆସେ ମୋର ଧୀର ସୁଲଳିତ ତୃତୀୟା ଜୋଛନା ସମ ।''

'କୁହୁପ୍ରାସ' (୧୯୨୯) କବିତାରେ ଏହି ମିଳନାନନ୍ଦର ଅଦୃଶ୍ୟ ତତ୍ତ୍ୱଟି ନିହିତ । ଏହି ତତ୍ତ୍ୱଟି କାବ୍ୟନାୟକର ଭାବନାରେ ବନରୁ ଭାସି ଆସିଥିବା କୌଣସି ବିଶେଷ ଗୀତ, ଯାହାର ମନୋରମ ସ୍ୱର ଝଙ୍କାରର ଅଶ୍ରୁତ ଅନୁରଣନ ବ୍ୟତୀତ ଆଉ ତା' ନିକଟରେ କିଛି ଅବଶେଷ ନାହିଁ । ମାତ୍ର ସେହି ସ୍ୱର ଝଙ୍କାରର ପ୍ରଭାବରେ ଅନେକ କିଛି ପରିବର୍ତ୍ତନର ଉପଲବ୍ଧି କରିଛି ସେ । ଏହି ଧ୍ୱନିରେ 'ଅତନୁ', 'ତନୁ' ହୋଇଯାଇଛି, ବିଶ୍ୱ ଆଉ ସୁଦୂରର ନରହି ନିକଟତମ ହୋଇ ଆସିଛି, ସକଳ ଦୁଃଖ, ବେଦନା ପ୍ରିୟ ହୋଇଯାଇଛି ଏବଂ ସବୁ କ୍ଷତ ଗୋଟିଏ ମୁହୂର୍ତ୍ତରେ ପୂର୍ଣ୍ଣ ହୋଇଯାଇଛି । ଆଦୌ ପ୍ରିୟ ଉପଲବ୍ଧ ହେଉ ନଥିବା ଜୀବନ କାବ୍ୟ ନାୟକଙ୍କୁ ଅତ୍ୟନ୍ତ ପ୍ରିୟଭଳି ପ୍ରତୀତ ହୋଇଛି -

''ଧରଣୀ ହେଲା କୋମଳତମ ଆକାଶ କମନୀୟ
ମରଣ ହେଲା ମଧୁରତର ଜୀବନ ହେଲା ପ୍ରିୟ ।''

'ମୁକୁଳି ପଡ଼ଗୋ' (୧୯୨୬) କବିତାରେ କାଳିନ୍ଦୀଙ୍କ ସ୍ୱର ଅଧିକ ସ୍ୱୈରବାଦୀ । ଅନାମିକା ନାୟିକା ପ୍ରତି କବିପ୍ରାଣର ଆବେଗମୟ ସମ୍ବର୍ଦ୍ଧନା ଏ କବିତାରେ ଏକାନ୍ତ ଉପଭୋଗ୍ୟ । ଅନେକ ସ୍ୱପ୍ନପ୍ରବଣ ଅନୁଷଙ୍ଗ ଏଠି ଏକତ୍ରିତ ହୋଇଯାଇଛନ୍ତି ପ୍ରଣୟିନୀର ନିରାଞ୍ଜନାରେ । କାବ୍ୟନାୟକ ଆପଣା ଦେହ ଓ ପ୍ରାଣ ଦେହରେ ନାୟିକାକୁ 'ଲତାଇ' ଯିବାକୁ ଅନୁରୋଧ ବାଢ଼ିଛି, ବିଭିନ୍ନ ବର୍ଣ୍ଣବିଭାମଧ୍ୟରେ ବିକଶିତ ହେବାକୁ ଅଳି ବାଢ଼ିଛି, 'ସଜ ଶତଦଳ'ର ପାଦ ପ୍ରଣୟର ଏହି ପ୍ରଥମ ଭାଷାରେ ଥାପିବାକୁ ନିବେଦନ କରିଛି । କୋକିଳର କୁହୁ ଭଳି କାବ୍ୟନାୟକର ହୃଦଦେଶରେ ପରିପୂର୍ଣ୍ଣଭାବେ ସଂଚରିଯିବାକୁ ପ୍ରଣୟିନୀକୁ ଅନୁରୋଧ ବାଢ଼ି ବସିଛି ସେ । ଏହି ଅନୁରୋଧ ବେଶ୍ କାବ୍ୟିକ ହୋଇଛି ସେଇ ପଂକ୍ତି ମାନଙ୍କରେ ଯେଉଁଠି କାବ୍ୟନାୟକ କହିଛି –

''ତୁମେ ମଳୟ ନ ଛୁଉଁ ତୋଳ ଗୋ ସୁମନ ଧୀର ଅଙ୍ଗୁଳି ବଢ଼ାଇ
ପିକ ନ ରାବୁଣୁ ଗୀତ ତାର ନିଅ ଛଡ଼ାଇ
ରବି ଉଦେ ନୋହୁ ଅଞ୍ଚଳ ତବ ଶିଶିରେ ଆଣ ଗୋ ବୁଡ଼ାଇ ।''

ଏହି ଆବେଗ କେବଳ ମାତ୍ର ଅଳୀକ ଭାବପ୍ରାଣତା ବ୍ୟତୀତ ଅନ୍ୟ କିଛି ନୁହେଁ । ଏଠାରେ କାବ୍ୟନାୟକ କୌଣସି ଏକ ନିର୍ଦ୍ଦିଷ୍ଟ ପ୍ରେମାସ୍ପଦା ପ୍ରତି ବିଶ୍ୱସ୍ତ ନୁହେଁ । ରୂପର ହାଟରେ ସେ ବିମୁଗ୍ଧ ବଣିକଟିଏ । କେବଳ ସୌନ୍ଦର୍ଯ୍ୟର ବିମୁଗ୍ଧ ଦର୍ଶକଟିଏ । ଦୂରରୁ କେଉଁ ସୁଶ୍ରୀ ତରୁଣୀର ପୃଷ୍ଠଶୋଭାକୁ ଦେଖିଦେବା ସଙ୍ଗେ ସଙ୍ଗେ ଭାବପ୍ରବଣ କବିସତ୍ତା ଲଘୁପକ୍ଷ ମେଲାଇ ତାଧି ପ୍ରୀତି ଉଦ୍ଦେଶ୍ୟରେ ଉଡ଼ିଯାଇଛି । ତାର ସେହି ଲୀଳାୟିତ ଗମନଭଙ୍ଗୀକୁ ଅନୁସରି ସେ କଳ୍ପନା ରାଜ୍ୟରେ କେତେ କ'ଣ ଆଙ୍କି ବସିଛି । 'ପୃଷ୍ଠଶୋଭା' (୧୯୨୬)ର ଅନ୍ତିମ ପଂକ୍ତିରେ ଏହି ଲୀଳା ଚପଳ ଭାବ ପ୍ରବଣ ମନୋସ୍ଥିତି ଏହିପରି –

''କପୋଳେ ତାର ଉଠଇ ଫୁଟି ଲାଜ ଗୋ
ହରିଣୀ ସମ ଫେରାଏ ଗ୍ରୀବା ଆଖିରେ ପ୍ରୀତି ବ୍ୟାଜ ଗୋ,
ପବନ ଯେବେ ପଣତ ଧରି
ବାଳକ ସମ କରଇ ଅଳି
କଟୀରେ ତାର ଉଠଇ ନାଚି ନବୀନ ନଟରାଜ ଗୋ
କପୋଳେ ତାର ଉଠଇ ଫୁଟି ଲାଜ ଗୋ ।''

'ରୂପର ସ୍ତବ' (୧୯୩୨) କବିତାରେ ଏହି ରୂପ ନିରାଜନା ବେଶ୍ ପରିସ୍ଫୁଟ । ଏଠାରେ କାବ୍ୟନାୟକର ନାୟିକାର ବିମୁଗ୍ଧ ରୂପ-ଶୋଭାକୁ ଆପଣେଇ ନେବାର ଆଗ୍ରହ ନାହିଁ । କେବଳ ମାତ୍ର ଦେଖି ଆନନ୍ଦ ପାଇବା ହିଁ ତାର ଅଭିଳାଷ । (କାଟିଦେବି ବେଳ ଦୂରୁ ଚାହିଁ ରହି । ସେ ରୂପ ସୁଷମା ମୁଁ ଚିର ବିରହୀ) । ଏଠାରେ କେବଳ ମାତ୍ର ରୂପଶୋଭାର ଦର୍ଶନରେ କାବ୍ୟନାୟକର ସକଳ କାର୍ଯ୍ୟକ୍ରମ ସୀମିତ ।

'ବର୍ଷାବଧୂ' (୧୯୩୧), 'ବର୍ଷାରାତି' (୧୯୩୨) ଏବଂ 'ପୌଷମଳୟ' (୧୯୩୨) ଏହି ପର୍ଯ୍ୟାୟର ତିନୋଟି ଭିନ୍ନ ଭିନ୍ନ ଚେତନାର ସୃଷ୍ଟି । 'ବର୍ଷାବଧୂ'ରେ ବର୍ଷାର ସଜଳ ଚିତ୍ର ଅଙ୍କିତ । ଏକ ଅଶ୍ରୁମତୀ ନାୟିକା ରୂପେ ବର୍ଷା ଏଠି କବିଲେଖନୀରୁ ଓହ୍ଲାଇ ଆସିଛି । ମେଘର ଗୁରୁଗୁରୁ ଧ୍ୱନିଭିତରେ ନୂପୁରର ରୁଣୁଝୁଣୁ ଗୀତିକୁ ଶୁଣିଛନ୍ତି କବି । ଏହି ଅଶ୍ରୁମୟୀ ପାଇଁ ସମ୍ବେଦନା ଅରଣ୍ୟ ଓ ପର୍ବତ ଚାରିଆଡ଼େ ଖେଳିଯାଇଛି । ଶେଷରେ ନୟନରୁ ଏହି ନାୟିକାର ଝରିଯାଇଛି ଲୁହଧାର ଯାହା କବିଙ୍କ ପ୍ରାଣରେ 'ବିପୁଳ ବ୍ୟଥା' ଢ଼ାଳିଦେଇଛି । ବର୍ଷା ରାତି କବିତାରେ ବର୍ଷାର ପୁଲକିତ ପଦପାତରେ ଜୀବନର ଏକ ଦାର୍ଶନିକ ଦୃଷ୍ଟିକୋଣକୁ ଅନୁଭବ କରିଛି କବିସତ୍ତା । ବିଗତ ଦିନମାନଙ୍କରେ ଆସିଥିବା ବର୍ଷା ଏବେ ପୁଣି ଆସିଲାଭଳି କବି ଅତୀତରେ କହିଥିବା କଥାକୁ ନୂତନ ରୀତି ଓ ନୂତନ ଅନୁଭବରେ କହିବାର ଅଭିଳାଷ ପୋଷଣ କରିଛି । ଅନୁଭୂତି କଦାପି ପ୍ରାଚୀନ ହୁଏନାହିଁ । ରଚନାର ବିପୁଳ ନବୀନତାରେ ଚିର ପରିଚିତ ଅନୁଭୂତି ଏକ ନୂତନ ରୂପରେଖାରେ ପୁଣି ଆସି ପହଂଚିଯାଏ । କାଳିନ୍ଦୀଙ୍କ ଭାଷାରେ -

''ପୁରୁଣା ମେଘ ସହି ଆସଇ ନୂଆହୋଇ କରିବ ନୂଆ କଥା ରଚ଼ନା
କହିବି ଜୀବନର ଗୋପନ କଥା ମୋର ଲୁଚିଲା ଯେତେ କ୍ଷତ ଶୋଚ଼ନା ।''

'ପୌଷ ମଳୟ' କବିତାରେ ଆମେ ଏପରି ଚରିତ୍ରମାନଙ୍କୁ ଭେଟୁ, ଯାହା ପୂର୍ବରୁ ଆମ କାବ୍ୟ କବିତାର ଦାଣ୍ଡ ଦରଜାର ଭିତରପାଖକୁ କେବେ ବି ପାଦ ରଖି ନଥିଲେ । କାନ୍ଧରେ ଧାନ ବୋଝ ବହନ କରି ଝୁଲି ଝୁଲି ଆସୁଥିବା ରାଧୁଭୋଇ ଏହାର ଏକ ସଫଳ ଉଦାହରଣ । କାବ୍ୟକବିତାର ସାମ୍ରାଜ୍ୟର ଅପାଂକ୍ତେୟ ଓ ଅନାଗତ ଥିବା ଏହି ଚରିତ୍ରମାନଙ୍କୁ କାଳିନ୍ଦୀଚରଣ ଏକ ସ୍ୱତନ୍ତ୍ର ସ୍ଥାନ ଦେଇଛନ୍ତି ଏହି କବିତାରେ ।

॥ ତିନି ॥

୧୯୩୫ ମସିହାରେ ଅନୁଜ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ 'ନବଯୁଗ ସାହିତ୍ୟ ସଂସଦ'ର ପ୍ରତିଷ୍ଠା ପରେ ସମସ୍ତ ଓଡ଼ିଶାର ସାରସ୍ୱତ ପରିମଣ୍ଡଳରେ ଏକ ନୂତନ ଚେ଼ତନା ସ୍ଫୁରିତ ହେଲା । ସବୁଜମାନଙ୍କ ସ୍ୱପ୍ନପ୍ରବଣ ତଥା କଳ୍ପନାବିଳାସୀ ଖେୟାଲି ମିନାରର ପତନ ହେବାର ସକଳ କ୍ଷେତ୍ର ପ୍ରସ୍ତୁତ ହୋଇଗଲା । ବାସ୍ତବବାଦର ତୀବ୍ର ଝଟିକାଘାତରେ ଏମାନେ ଛିନ୍ନ ଛତ୍ର ହୋଇଗଲେ । ଏହାପରେ କାଳିନ୍ଦୀଚରଣଙ୍କ ସ୍ୱୈରବାଦୀ ସ୍ୱରରେ ମଧ୍ୟ ପରିବର୍ତ୍ତନ ଆସିଲା । 'ଜୟ ଭଗବାନ' (୧୯୩୬), ଭକ୍ତି ଓ ଚାବୁକ୍ (୧୯୩୮), ଯାଦୁଘର (୧୯୩୮), ଆଗାମୀ (୧୯୪୨) ଓ କିଏ ଶଳା ସଇତାନ (୧୯୪୪)କୁ ଏହାର ଉଦାହରଣ ଭାବେ ଗ୍ରହଣ କରାଯାଇ ପାରେ । ୧୯୩୩ ଓ ୧୯୩୪ ମସିହା ଏହି ଦୁଇଟି ବର୍ଷ କାଳିନ୍ଦୀଙ୍କ କାବ୍ୟ ଚେତନାର ଏକ ମଧ୍ୟବର୍ତ୍ତୀ କାଳ ଭାବେ ଚିହ୍ନିତ କରାଯାଇପାରେ ।

ସେତେବେଳକୁ ଅନ୍ନଦାଶଙ୍କର ତାଙ୍କ ନିକଟରେ ଆଉ ନାହାନ୍ତି । ସବୁଜ ଗୋଷ୍ଠୀ କ୍ରମେ ଶିଥିଳ ହୋଇଗଲେଣି । 'ମାଟିର ମଣିଷ' ଭଳି କାଳଜୟୀ ଉପନ୍ୟାସରେ ସ୍ୱପ୍ନ ତଥା କଳ୍ପନା ନୁହେଁ ମହାତ୍ମାଗାନ୍ଧୀଙ୍କ ଉଦାର ଆଦର୍ଶବାଦୀ ଭାବନା ହିଁ ରୂପ ପରିଗ୍ରହଣ କରିବାକୁ ଲାଗିଲାଣି । ସେ ପରିବେଶରେ କାଳିନ୍ଦୀଚରଣଙ୍କ କବିତା କିନ୍ତୁ ସେତେ ପରିମାଣରେ ମାନବବାଦୀ ଚେତନାକୁ ଉଦ୍ଦାତ୍ତ କଣ୍ଠରେ ଘୋଷଣା କରିପାରି ନାହିଁ । ୧୯୩୩ ମସିହାରେ ରଚିତ 'କସ୍ତୁରବା', 'ସୁଦୂରର ଗାନ', 'ମାନସୀ', 'ରୂପର ଶୋଭା' 'ପ୍ରଭାତ' ଓ ଶେଷଦାନ' ତଥା ୧୯୩୪ ମସିହାରେ ରଚ଼ିତ 'କ୍ଷଣିକ ସତ୍ୟ' ଓ 'ପ୍ରାଚୀନା' ଆଦି କବିତାରେ କାଳିନ୍ଦୀଙ୍କ ଦ୍ୱିଧା ବିଭକ୍ତ ମାନସିକ ସ୍ଥିତି ସ୍ପଷ୍ଟ ହୋଇଯାଏ ।

କେବଳ 'କସ୍ତୁରବା' କବିତା ଟାକୁ ଛାଡ଼ିଦେଲେ ୧୯୩୩ ମସିହାରେ ରଚିତ ଏହି ସମସ୍ତ କବିତାର ସ୍ୱର ଏକ ଏବଂ କାଳିନ୍ଦୀଙ୍କ ବିଗତ କବିତାମାନଙ୍କ ସ୍ୱରର ଅନୁଗାମୀ । କୌଣସି ରୂପସୀର ଦର୍ଶନରେ କାବ୍ୟପୁରୁଷର ହୃଦୟରେ ସୃଷ୍ଟି ହୋଇଥିବା ସ୍ୱୈରବାଦୀ ବିଷାଦବୋଧ ଏବଂ ଏହାର ପ୍ରଭାବୋତ୍ପାଦକତା ପାଇଁ ପାରମ୍ପରିକ ରୀତିରେ ମେଘକୁ ଦୂତ କରି ପଠାଇବାର କଳାତ୍ମକତା 'ସୁଦୂରର ଗାନ' କବିତାରେ ସ୍ପଷ୍ଟ (ଦୂରର ପ୍ରିୟା ପାଶେ ଧରାର ଦୟିତ/ପେଷଇ ଦୂତ କରି ଆଷାଢ଼ ବୋଇତ/ ଢ଼ାଳଇ ପରାଣର ବେଦନା ପରମ / ଦୂରରେ ଦେଖି ଯାହା ଝୁରଇ ମରମ ।) କବିତାର ଅନ୍ତିମ ପର୍ଯ୍ୟାୟର ଏହି ସମ୍ପର୍କହୀନତା ଯାହା 'ଦୂରରେ ଦେଖି' ଏହି ଶବ୍ଦ ଦ୍ୱୟ ଦ୍ୱାରା ବ୍ୟଞ୍ଜିତ କିନ୍ତୁ କବିତାର ଆଦ୍ୟ ପଂକ୍ତିମାନଙ୍କରେ ନାହିଁ । ଆରମ୍ଭରେ କାବ୍ୟନାୟକ ସେହି 'ରୂପସୀ' ସହିତ ପ୍ରତ୍ୟକ୍ଷ ଆଳାପରତ । ଏଣୁ ଏହି ଆପାତବିରୋଧ ମାନସିକତା କାଳିନ୍ଦୀଚରଣଙ୍କର ଏହି କବିତାକୁ ଏକ ଖେୟାଲି ମୋହଗ୍ରସ୍ତତା ମଧ୍ୟରେ ସୀମିତ କରି ରଖିଦେଇଛି । 'ମାନସୀ' କବିତାରେ ମଧ୍ୟ ପ୍ରେୟସୀକୁ ନେଇ ସ୍ୱୈରବାଦୀ ଭାବବିଳାସ କିଛି କମ୍ ନାହିଁ । ପ୍ରେୟସୀ ନିକଟକୁ ପତ୍ର ଲେଖି ବସିବା, ତା'ର ବିରହରେ ଅଙ୍ଗରେ ଜଟା ବହିବା, ଜୀବନର ଅନ୍ୟ ସକଳ ସୁଖକର ଉପାଦାନ ଅପେକ୍ଷା ପ୍ରେୟସୀକୁ ଅଧିକ ଗୁରୁତ୍ୱ ଦେବା ଏବଂ ପ୍ରକୃତିର ବିମଳ ପ୍ରତିକୃତି ଯଥା ପର୍ବତ ଚୂଳରେ ବଉଦର ଧୀର ଗତି ଏବଂ କଦମ୍ବ ମୂଳରେ କପୋତର କରୁଣ କାକୁତି ଆଦି ମଧ୍ୟରେ ପ୍ରେୟସୀର ଅଙ୍ଗ ଏବଂ ଭାବ ବିଭବକୁ ଅଧିକ ବିଭବାନ୍ୱିତ କରିବା ଆଦି କାଳିନ୍ଦୀଙ୍କ କଳ୍ପନା ବିଳାସୀ ମୋହଗ୍ରସ୍ତ ଦୃଷ୍ଟିକୋଣର ପରିଚୟ ପ୍ରଦାନ କରିଥାଏ । କବିତାର ଅନ୍ତିମ ପଦରେ କାଳିନ୍ଦୀ ପ୍ରେୟସୀ ପାଇଁ ଉପଯୁକ୍ତ ଉପମାନ ଚୟନର କ୍ଷେତ୍ର ସମ୍ପର୍କରେ ସୂଚନା ଦିଅନ୍ତି । ତାଙ୍କର ସକଳ କବି କର୍ମ ଯେ କେବଳ 'ଅରୂପ ରୂପର ଉପାସନା' ଏହା ସେ ଏଥିରେ ସ୍ପଷ୍ଟ କରିଦେଇଛନ୍ତି –

''ଏହି ଛୋଟ ଛୋଟ ବସ୍ତୁ ଘେନି ମୁଁ ଖେଳଇ ଖେଳ
ରଞ୍ଜି ଦେବାକୁ ମାନସୀ ପ୍ରିୟାର ସ୍ୱର୍ଣ୍ଣ ଚେଳ

ତାହାରି ଭୂଷଣ ଖୋଜି ମୁଁ ବାଚାଳ ଚାଲଇ ବାଟେ
ଅରୂପ ରୂପର ଉପାସନା କରି କାଟଇ କାଳ ।'

ପ୍ରେୟସୀ ପାଇଁ ଏହି ଉପମାନ ଅନ୍ୱେଷଣ ପ୍ରକ୍ରିୟା 'ରୂପର ମୋହ' କବିତାରେ ଅଧିକ ଗତିଶୀଳ । ନେତ୍ର ଓ ଚିକୁରର ନୀଳିମା ପାଇଁ ଖୋଜି ଖୋଜି ସେ ପବନ ମୁଖା ବର୍ଷାକୁ ଆଣିଛନ୍ତି । ମାତ୍ର ଏ ଖଞ୍ଜିବା ପଦ୍ଧତି ଅତ୍ୟନ୍ତ ଅଭିନବ, ହୃଦୟସ୍ପର୍ଶୀ । ଆକାଶରୁ ଲୋତକ ଝରି ପଡ଼ିବାର ଉପମାନଟି ବର୍ଷା ସୂଚକ ହେଲେ ମଧ୍ୟ ଏଠାରେ ଚକ୍ଷୁ ଓ କେଶର ନୀଳିମା ତୁଳନାରେ ଆକାଶର ନୀଳିମା ଯେ ନ୍ୟୂନ ଏହି ବ୍ୟଞ୍ଜକ ଚିତ୍ରଟି ଏଥିରେ ପ୍ରକଟିତ ହୋଇଛି (କଜଳ ନୟନା ସଜଳ ଚିକୁରେ ତୋର / ଲୁଚି ଲୁଚି ଖେଳେ ବରଷା ପବନ ଚୋର / ଦେଖି ସେ ସୁଷମା ନାଚି ଉଠେ ତରୁଲତା / ଆକାଶୁ ଲୋତକ ଝରିପଡ଼େ ଝର ଝର) । 'ପ୍ରଭାତ' (କ୍ଷଣିକ ସତ୍ୟ) କବିତାରେ ପ୍ରଭାତର କବିତ୍ୱମୟୀ ରୂପ ଓ ଜାଗରଣର ବାର୍ତ୍ତା ବିମ୍ବିତ । ସକାଳର ସ୍ପର୍ଶରେ ସମଗ୍ର ବିଶ୍ୱ ଉଦ୍ଦୀପିତ ହୋଇ ଉଠିଲେ ମଧ୍ୟ କାବ୍ୟନାୟକର ଜଡ଼ତା ସୂଚକ ନୀରବତା କବିତାର ଶେଷ ପାଦରେ ପ୍ରଶ୍ନବାଚୀଟିଏ ସୃଷ୍ଟି କରିଛି । ଏହି ଚେତନା ମୂଳରେ ସ୍ୱୈରବାଦୀ ବିଷାଦବୋଧର ଭାବ ସ୍ପଷ୍ଟ ।

ବୈୟକ୍ତିକ ପ୍ରୀତିବିଳାସକୁ ବିଶ୍ୱଜନୀନ କରିବା ପାଇଁ କାଳିନ୍ଦୀଙ୍କ ପ୍ରୟାସ 'ଶେଷଦାନ' କବିତାରେ ଲକ୍ଷ୍ୟ କରାଯାଇପାରେ । ପ୍ରିୟତମାର ଦ୍ୱାରକୁ ଥାଳ ଧରି ପ୍ରୀତି ଭିକ୍ଷା ମାଗି ଆସିଥିବା କାବ୍ୟନାୟକ ଶେଷରେ ନିଜ ପାଇଁ ନୁହେଁ ବିଶ୍ୱ ପାଇଁ ଭିକ୍ଷା ମାଗି ବସିଛି । (ବିଶ୍ୱଥାଳ ପଡ଼ିଛି ଖାଲି/ଜୀବନ ଧୂପେ ପ୍ରଦୀପ ଜାଳି / ପୂର୍ଣ୍ଣ କରି ଦିଅଲୋ ଢ଼ାଳି / ଦିବସ ନିଶି ଜାଗର ଜାଳି) । 'କସ୍ତୁରବା' ଏହି ଭାବଭୂମିର ଏକ ପ୍ରସାରିତ ଅନୁଭବ । ଗାନ୍ଧୀଙ୍କ ଆମରଣ ଅନଶନ ଘୋଷଣାରେ ତାଙ୍କ ପତ୍ନୀ କସ୍ତୁରବାଙ୍କ ମନୋଭୂମିର ଚିତ୍ର ଦେଲାବେଳେ କାଳିନ୍ଦୀଚରଣ ଜାତି ତଥା ଦେଶ ଉଦ୍ଦେଶ୍ୟରେ ଜୀବନଦାନ କରିବାକୁ ପ୍ରତିଜ୍ଞା କରିଥିବା ଏହି ମହାମାନବଙ୍କ ପାଇଁ ଭକ୍ତି ଓ ପ୍ରଣତିର ଅର୍ଘ୍ୟ ନିବେଦନ କରିଛନ୍ତି ଏ କବିତାରେ –

''ଆଘାତ ଯାହାର ପାଷାଣୁ ବୁହାଏ ପାଣି
ପରଶ ଯାହାର ପଶୁମୁଖେ ଆଣେ ହାସ
ଦେଶ ବିଦେଶରୁ ଭାସି ଆସେ କେତେ ବାଣୀ
ପୁରୁଷ ଶ୍ରେଷ୍ଠ ଜୟହେ ମୋହନ ଦାସ ।''

କାଳିନ୍ଦୀ କାବ୍ୟଚେତନାରେ ଭିନ୍ନ ଭିନ୍ନ ସ୍ୱର ଗ୍ରହଣ କରିଥିବା ଦୁଇଟି ଉଲ୍ଲେଖଯୋଗ୍ୟ କବିତା ହେଉଛି 'ପ୍ରାଚୀନା' (୧୯୩୪) । 'କ୍ଷଣିକ ସତ୍ୟ' (୧୯୩୪) । ପ୍ରଥମ କବିତାରେ ନାରିତ୍ୱର ମର୍ଯ୍ୟାଦାରକ୍ଷା ପାଇଁ ଆହ୍ୱାନ ଥିଲାବେଳେ ଦ୍ୱିତୀୟ କବିତାରେ ଜୀବନର ପ୍ରତିନିୟତ ଘଟିଯାଇଥିବା ଘଟଣାମାନଙ୍କ ସତ୍ୟତା ସମ୍ପର୍କିତ ବିଚାର ପ୍ରକଟିତ ହୋଇଛି । 'ପ୍ରାଚୀନା'

କବିତାରେ ଜୀବନର ବ୍ୟାପକ ତଥା ସାମଗ୍ରିକ ମୂଲ୍ୟବୋଧକୁ ରୂପଜୀବା ନାୟିକା ପାଖରେ ପ୍ରକାଶ କଲାବେଳେ କବି ଆଦୌ ଘୃଣା ଅଥବା ସଂକୋଚ ନ କରି ତାର ନୀଚବୃତ୍ତି ସମ୍ପର୍କରେ ତାକୁ ଅବଗତ କରାଇଛନ୍ତି ଓ ନାରୀର ଶାଶ୍ୱତ ତଥା ନିତ୍ୟ ପରିଚୟକୁ ପୁରୁଷ ପାଖରେ ପ୍ରକାଶ କରିବା ପାଇଁ ଉପଦେଶ ଦେଇଛନ୍ତି –

''ଜଗତେ ଲାଗିଛି ଜୀବନ ଖେଳ ଦେଖଲୋ ନାରୀ
କେତେ କାଳ ହୀନ ବେପାରେ ଥିବୁ ନୟନଠାରି
ପୁରୁଷର ମନ ଘୃଣାରେ ଭରେ ଦେଖି ସେ ଆଖି
ଛଳନା ତିଆଗି ଦେଖାଅ ତୋର କି ଅଛି ବାକି ।''

'କ୍ଷଣିକ ସତ୍ୟ' କବିତାର ଭାବବୃତ୍ତ ଜୀବନ ପ୍ରତି ଏକ ଦାର୍ଶନିକ ଅବବୋଧ ଉପରେ ନିର୍ଭରଶୀଳ । ଜୀବନର ଏକ ଶୈଶବ, କୈଶୋର, ଯୌବନ ଏବଂ ବୃଦ୍ଧାବସ୍ଥା ଆଦିରେ ଭିନ୍ନ ଭିନ୍ନ ସମୟରେ ଅନୁଭୂତ ହେଉଥିବା ସତ୍ୟ ପରବର୍ତ୍ତୀ ମୁହୂର୍ତ୍ତରେ ମିଥ୍ୟାରେ ପରିଣତ ହୋଇଯାଏ । ସେହି ନିର୍ଦ୍ଦିଷ୍ଟ ସମୟରେ ଆପଣାର ବୋଲି ମନେ ହେଉଥିବା ମଣିଷଟି ପରବର୍ତ୍ତୀ ମୁହୂର୍ତ୍ତରେ ଦୂରକୁ ଚାଲିଯାଏ ଏବଂ ଆନନ୍ଦମୟ ଉପାଦାନଟି ପରବର୍ତ୍ତୀ ମୁହୂର୍ତ୍ତରେ ଦୁଃଖର କାରଣ ହୁଏ । ଏହି ମୁହୂର୍ତ୍ତକର ସତ୍ୟକୁ ଚିରନ୍ତନ ସତ୍ୟବୋଲି କହିବାକୁ କବି ଆଗ୍ରହୀ ନଥିଲେ ମଧ ତାହାକୁ ମିଥ୍ୟା କହି ଅସ୍ୱୀକାର କରିପାରି ନାହାନ୍ତି । ସେହି କ୍ଷଣିକ ସତ୍ୟକୁ କ୍ଷଣକାଳ ପାଇଁ ସତ୍ୟ ବୋଲି ସ୍ୱୀକାର କରି ନେବାରେ କବି କବିତାରେ ଆଦୌ କୁଣ୍ଠା ପ୍ରକାଶ କରିନାହାନ୍ତି –

''ଜୀବନେ ଛୋଟଛୋଟ ଲଭିଲି ଯେତେ ସେତ
ଅଳ୍ପଦିନେ ହେଲା ମିଛେ ସେ ପରିଣତ + +
ପଲକେ ଆନ ଛବି ସତ୍ୟ ହୁଏ ଫୁଟି
ପଲକେ ଉଦେହୋଇ ପଲକେ ଯାଏ ତୁଟି + + ।
ତଥାପି ସତ୍ୟ ସେ ନିମେଷ ପାଇଁ ମମ
ଥିଲା ତ ଆଦରର ଥିଲା ତ ପ୍ରିୟତମ ।''

## ।। ଚାରି ।।

୧୯୩୫ ମସିହାରେ କାଳିନ୍ଦୀ କାବ୍ୟଚେତନାର ଏକ ପରିବର୍ତ୍ତନ ପର୍ବ ଆରମ୍ଭ ହୋଇଯାଏ । ଅନୁଜ ଭଗବତୀ ଚରଣଙ୍କ ପ୍ରେରଣାରେ ଗଠିତ 'ନବଯୁଗ ସାହିତ୍ୟ ସଂସଦ'ର ସାମବାଦୀ ଝଡ଼ର ଆଘାତରେ କାଳିନ୍ଦୀଚରଣଙ୍କ ସ୍ୱପ୍ନ ସଞ୍ଚାରୀ ମନ କ୍ରମେ ଜୀବନର ଏକ ବୃହତ୍ତର ସତ୍ୟ ପ୍ରତି ଉନ୍ମୁଖ ହୋଇଯାଏ । ମାତ୍ର ତାଙ୍କ ସାମଗ୍ରିକ କବି କର୍ମ ଏହି ବୃହତ୍ତର

ସତ୍ୟର ବିଶ୍ୱସ୍ତ ଅନୁକାରୀ ହୋଇ ପାରି ନାହିଁ । ତାଙ୍କ କାବ୍ୟଚେତନାର ବିଭିନ୍ନ କୋଠରୀରେ ବିଭିନ୍ନ ଭାବନା ଭିନ୍ନ ଭିନ୍ନ ଭାବେ ସଜ୍ଜୀକୃତ ହୋଇଛି । ଆବଶ୍ୟକ ମତେ କାଳିନ୍ଦୀ ସେହି ସେହି କୋଠରୀରୁ ସେହି ନିର୍ଦ୍ଦିଷ୍ଟ ଉପାଦାନ ଆଣି କବିତାଟିଏ ରଚ଼ନା କରନ୍ତି ଯାହା ପରବର୍ତ୍ତୀ କାଳରେ ଅନ୍ୟ ଏକ କୋଠରୀର ଉପାଦାନରୁ ରଚିତ କବିତା ପାଖରେ ଖାପଛଡ଼ା ଜଣାପଡ଼େ । ଭଗବତୀ ଚରଣ ଓଡ଼ିଶାର ସାରସ୍ୱତ ପରିମଣ୍ଡଳରେ ଯେଉଁ ସାମ୍ୟବାଦରବୀଜ ବପନ କଲେ ତାହା ପ୍ରଭାବରେ କାଳିନ୍ଦୀଙ୍କ ସବୁଜ ଦୁର୍ଗ ଭାଙ୍ଗି ପଡ଼ିଲା । ସେହି ହୃଦୟ ପରିବର୍ତ୍ତନର ସୂଚ଼ନା ୧୯୩୫ ଏବଂ ୧୯୩୬ ରେ ରଚିତ କବିତାମାନଙ୍କରୁ ସହଜରେ ଅନୁଭବ କରିହୁଏ । ଉଦାହରଣ ଭାବେ ୧୯୩୫ ରେ ରଚିତ କେତେକ କବିତା 'ପ୍ରତିମା', 'ଜୀବନ ମରଣ', 'ଅତିମାନବ', 'ପ୍ରାଚୀନ ଓ ନବୀନ', 'ଜୀବନର ସ୍ପର୍ଶ' ଓ 'ବିଶ୍ୱଗ୍ରନ୍ଥ' ଏବଂ ୧୯୩୬ ରେ ରଚିତ 'ଜୟ ଭଗବାନ', ବିଦାୟ ଭଗବାନ' ଓ 'ସୁନା' ଆଦି କବିତାକୁ ଗ୍ରହଣ କରାଯାଇପାରେ । ସାମ୍ୟବାଦୀ ଚେତନା ଯୁଗ ଯୁଗ ଧରି ମଣିଷର ଭିତରେ ସଞ୍ଚିତ ସାମନ୍ତବାଦୀ ଦାସତ୍ୱକୁ ହାତୁଡ଼ି ପ୍ରହାରରେ ଧରାଶାୟୀ କରି ତାକୁ ସାମନ୍ତବାଦ ବିରୁଦ୍ଧରେ ସଂଗ୍ରାମ ମୁଖର କରେ । ଧର୍ମର ଅଫିମ ନିଶାରେ ମସ୍‌ଗୁଲ ଏହି ପଥହରାମାନଙ୍କୁ ଧର୍ମର ମୂଲ୍ୟହୀନ ବନ୍ଧନରୁ ମୁକୁଳାଇ ବାସ୍ତବ ଜୀବନର ସ୍ୱାଦ ଚଖାଏ । ଦେଉଳରେ ପୂଜା ପାଉଥିବା ପ୍ରତିମା କେବେହେଲେ ଯେ ମଣିଷର ଦୁଃଖ ଦୂର କରିବା ପାଇଁ ସମର୍ଥ ହୋଇ ପାରନ୍ତି ନାହିଁ, ସେଗୁଡ଼ିକ ଯେ କେବଳ ମଣିଷର ହାତଗଢ଼ା ଖେଳଣା ମାତ୍ର ଏହା ଅତ୍ୟନ୍ତ ଦୃଢ଼ତାର ସହ ଘୋଷିତ ହୋଇଛି 'ପ୍ରତିମା' କବିତାରେ –

''ନଶୁଣଇ କେହି କାହିଁ ନ ମିଳେ ଉତ୍ତର
ଅଚଞ୍ଚଳ ସେ ମୂକପ୍ରସ୍ତର !
ନମିଲେ ତୃପତି
ଡାକି ଡାକି ଶୁଖେ କଣ୍ଠ କାହିଁ ଶାନ୍ତି କାହିଁରେ ମୁକତି ।'

ଏହି ଶାନ୍ତି ଓ ମୁକ୍ତି ଚିରଦିନ କେବଳ ଖୋଜିବା ଭିତରେ ହିଁ ସୀମିତ ରହିଛି । କେତେବେଳେ ଏହା ଲାଭ ହୋଇପାରିନି । ଦେବ ବାଦର ପ୍ରତିରୋଧ କରି ଏକ ବୈପ୍ଳବିକ ସଂଗ୍ରାମର ସ୍ୱର 'ଅତିମାନବ' କବିତାରେ ବେଶ୍ ହୃଦୟସ୍ପର୍ଶୀ ଭାଷା ବିଭବରେ ଉତ୍କୀର୍ଣ୍ଣ ହୋଇଛି । ଧର୍ମ ତଥା ଅନ୍ଧବିଶ୍ୱାସ ବିରୁଦ୍ଧରେ ସଂଗ୍ରାମ କରି ଏକ ନୂତନ ଯୁଗର ସୂତ୍ରପାତ କରିବା ପାଇଁ କବି ଏକାନ୍ତଭାବେ ଆଗ୍ରହୀ ହୋଇ ଉଠିଛନ୍ତି ଏ କବିତାରେ । ନାରନାରୀମାନେ ଆଜି ଆପଣାର ବ୍ୟକ୍ତିଗତ ସୁଖ ଦୁଃଖକୁ ଉପେକ୍ଷାକରି ଯୁଗର ଦାବୀ ନେଇ ଆଗକୁ ପାଦ ବଢ଼ାଇବାବେଳେ କବି ସେମାନଙ୍କ ଭିତରେ ଜାଗରଣ ବାର୍ତ୍ତା ପ୍ରଚାର କରିଦେଇଛନ୍ତି । ଏ ପର୍ଯ୍ୟନ୍ତ ଜଗତର ଯେଉଁମାନେ 'ଅଶ୍ରୁତ' ଓ 'ଅଖ୍ୟାତ' ହୋଇଥିଲେ ସେମାନଙ୍କୁ ଏହି ନୂତନ ଚେତନା ଅନ୍ତର୍ଭୁକ୍ତ କରିବାକୁ କବିଙ୍କ ପ୍ରୟାସର ଅନ୍ତନାହିଁ । ଯୁଗ ଯୁଗ ଧରି ମଣିଷର ଭାଗ୍ୟ

ଉପରେ ସବାର ହୋଇଥିବା ଦେବତ୍ୱର ମିଛ ଅହମିକାକୁ ଖସାଇ ଦେବା ପାଇଁ କାଳିନ୍ଦୀଙ୍କ ଲେଖନୀ ଅତ୍ୟନ୍ତ କଠୋର ହୋଇ ଉଠିଛି –

''ଉଠ ଜାଗ ଜାଗ !
ଦେବତାର ଆକ୍ରମଣେ ମାନବ ମରଇ ହତଭାଗ୍ୟ
ପରାହତ ବୁଦ୍ଧିପରେ ତାର
ଚିରଦିନ ପ୍ରତିଷ୍ଠିତ ଖ୍ୟାତି ଦେବତାର । + +
ନିର୍ବାପିତ କରି ଆଜି ଦେବତାର ଦୁର୍ଜୟ ଆକ୍ରୋଶ
ଜାଗ ଉଗ୍ର ଜାଗ ବ୍ୟଗ୍ର ଏ ବିଶ୍ୱର ତୀବ୍ର ଅସନ୍ତୋଷ !
ଜାଗରେ ପ୍ରଳୟ !
ଦେବତାର କରି ପରାଜୟ,
ମାନବର ଅଗୌରବେ ରଚିବା ସମାଧି
ଦୂରକରି ଧରାବକ୍ଷୁ ଦେବତାର ଅକଲ୍ୟାଣ ବ୍ୟାଧି ।''

'ପ୍ରାଚୀନ ଓ ନବୀନ' କବିତାରେ ଏଇ ସ୍ୱର ଅଧିକ ଯୁକ୍ତିଶାଣିତ । ଅତୀତର ଧର୍ମବ୍ୟବସ୍ଥା ମୁଖ୍ୟତଃ ତତ୍କାଳୀକ ମଣିଷର ସାମାଜିକ ଓ ଆର୍ଥନୀତିକ ଜୀବନ ପରିପ୍ରେକ୍ଷୀରେ ସୃଷ୍ଟି ହୋଇଥିଲା । ବର୍ତ୍ତମାନର ପରିବର୍ତ୍ତିତ ସାମାଜିକ ମୂଲ୍ୟବୋଧ ଏବଂ ସମସ୍ୟାମୁଖର ଜୀବନଯାତ୍ରାରେ ତାହା ଆଦୌ ଖାପ୍ ଖୁଆଇ ପାରିବ ନାହିଁ; ତେଣୁ ଏହାକୁ ବର୍ଜନ କଲେ କୌଣସି ଦୋଷ ହୋଇଯିବ ନାହିଁ ବୋଲି କବି ସ୍ପଷ୍ଟ କହିଛନ୍ତି । ବରଂ ସକଳ ଧର୍ମ ଉପରେ ଯେଉଁ 'ଜୀବଧର୍ମ' ପ୍ରତିଷ୍ଠିତ ତାହାକୁ 'ନବୀନ' ଗ୍ରହଣ କରିନେଲେ ତାର ମଙ୍ଗଳ ହେବ ବୋଲି ସେ ଦୃଢ଼ କଣ୍ଠରେ ଘୋଷଣା କରିଛନ୍ତି ।

''ସବୁଧର୍ମପରେ ଯେଉଁ ଜୀବ ଧର୍ମ ଚିର ପ୍ରତିଷ୍ଠିତ
ତାହାରି ସନ୍ଧାନେ ଧାଏଁ ଅବିରାମ ନବୀନର ଚିତ୍ତ ।'

'ଜୀବନ ମରଣ', 'ପଥର ପ୍ରେମିକ', 'ଜୀବନର ସ୍ପର୍ଶ' ଓ 'ବିଶ୍ୱଗ୍ରନ୍ଥ'ରେ ଜୀବନ ପ୍ରତି ଦାର୍ଶନିକ ଦୃଷ୍ଟିକୋଣ ସ୍ପଷ୍ଟ । 'ଜୀବନମରଣ'ରେ ଜୀବନର ନଶ୍ୱରତା ତଥା ସ୍ନେହ ପ୍ରୀତିର ଅନ୍ତଃସାର ଶୂନ୍ୟତା ପ୍ରତିଫଳିତ । ଜୀବନର ସ୍ଥିତି ଯେ ଏକ ବୁଦ୍‌ବୁଦ ପରି କ୍ଷଣସ୍ଥାୟୀ ଏହା ଏହି କବିତାର ମର୍ମବାଣୀ । 'ଜୀବନର ସ୍ପର୍ଶ' କବିତାରେ ଜୀବନରେ ବାର୍ଦ୍ଧକ୍ୟର ନିଶ୍ଚିତ ସ୍ଥିତିକୁ ପ୍ରଦର୍ଶନ କରାଯାଇଛି । ବାର୍ଦ୍ଧକ୍ୟ ହିଁ ଜୀବନପାଇଁ 'ସତ୍ୟ ଓ ମହାବାସ୍ତବ' । ତାହାକୁ ଅସ୍ୱୀକାର କରି ଆଦୌ ରହିହୁଏ ନାହିଁ । କେବଳ ଭୀରୁ ଓ ପଳାତକମାନେ ତାହାକୁ ଅସ୍ୱୀକାର କରି ଜୀବନର ଅର୍ଦ୍ଧପଥରୁ ବିଦାୟ ନିଅନ୍ତି । ବିଶ୍ୱର ସକଳ ଜନତାର ଜୀବନ ପଞ୍ଜିକା ଧରି ରଖିବାର ଚିତ୍ର 'ବିଶ୍ୱଗ୍ରନ୍ଥ' କବିତାରେ ବ୍ୟଞ୍ଜିତ । ଏହି ଗ୍ରନ୍ଥରେ ବିଶ୍ୱର ସମସ୍ତ ପ୍ରାଣୀଙ୍କ ଭାଗ୍ୟଲିପି

ଚିତ୍ରିତ । ସେମାନଙ୍କ କ୍ରିୟାକର୍ମ, ସାଧନା ଆଦିର ଯାବତୀୟ ତଥ୍ୟ ଏହା ଦେହରେ ସଂଚିତ ଥାଏ । ମାନବର ସ୍ୱାର୍ଥପରତାର ଗାଥା ପୃଷ୍ଠା ପରେ ପୃଷ୍ଠା ଏହି ଗ୍ରନ୍ଥରେ ଲେଖା ହୋଇଥାଏ । କବିତାର ଏହି ପଂକ୍ତିରେ କାଳିନ୍ଦୀ ଏହି ଚିନ୍ତାଧାରାକୁ ଅତ୍ୟନ୍ତ ସଫଳଭାବେ ଉତ୍କୀର୍ଣ୍ଣ କରିଛନ୍ତି ।

''ଆପଣାର କୀର୍ତ୍ତିଲାଗି ଅତୀତର ଲୋଡ଼େ ଅପକୀର୍ତ୍ତି
ଲେଖିବାକୁ ନିଜ ନାମ ଅପରର ନାମ ଦିଏ ପୋଛି
ଆନର ଆଣଇ ମୃତ୍ୟୁ ନିଜେ ଲୋଡ଼ି ଅମର ପଦବୀ
ସ୍ୱୀୟ ସୁଖ ଆଶେ ପୁଣି ପରପ୍ରାଣେ ଦୁଃଖ ଦିଏ ରଚି ।'

୧୯୩୬ ମସିହାରୁ ସ୍ୱାଧୀନତା ଲାଭପର୍ଯ୍ୟନ୍ତ କାଳିନ୍ଦୀଙ୍କ କାବ୍ୟସ୍ୱର ମୁଖ୍ୟତଃ ସାମ୍ୟବାଦୀ ଭାବବୋଧଦ୍ୱାରା ଅନୁବନ୍ଧିତ ହୋଇଯାଇଛି । ତାଙ୍କ 'ଜୟ ଭଗବାନ' (୧୯୩୬); 'ଭକ୍ତି ଓ ଚାବୁକ' (୧୯୩୮), 'ଯାଦୁଘର' (୧୯୩୮), 'ବାଜିରାଉତ' (୧୯୩୮), 'ଛୁରିଟିଏ ଲୋଡ଼ା' (୧୯୩୯), 'ଆଗାମୀ' (୧୯୪୨) ଓ 'କିଏ ଶଳା ଶଇତାନ' (୧୯୪୪) ରେ ଏହାର ସ୍ୱର ଅତ୍ୟନ୍ତ ତୀବ୍ର ଓ ଶାଣିତ । 'ଜୟ ଭଗବାନ' କବିତାରେ ଈଶ୍ୱରଙ୍କର ଅସ୍ତିତ୍ୱକୁ ତାଙ୍କର ବିଶ୍ଳେଷକପ୍ରାଣତାର ଅଭାବହେତୁ କବି ସ୍ୱୀକାର କରି ପାରି ନାହାନ୍ତି । ଧର୍ମ ଏବଂ ଭଗବାନଙ୍କ ନାମରେ ଦେଶ ଦେଶ ଓ ସଂପ୍ରଦାୟ ସଂପ୍ରଦାୟ ମଧ୍ୟରେ ଯେଉଁ ଦ୍ୱନ୍ଦ୍ୱ ଓ ସଂଗ୍ରାମ ସୃଷ୍ଟି ହେଉଛି ତାହାକୁ ସ୍ୱୀକାର କରିପାରି ନାହାନ୍ତି ସେ । ତାଙ୍କ ବିଚାରରେ ଭଗବାନ କେବଳ ଗୁଳି ବାରୁଦ ମଧ୍ୟରେ ହିଁ ଅଛନ୍ତି । ଯେଉଁ ରାଷ୍ଟ୍ର ଯେତେ ଶକ୍ତିଶାଳୀ ସେ ରାଷ୍ଟ୍ର ଅନ୍ୟମାନଙ୍କ ପାଇଁ ଭଗବାନରେ ପରିଣତ ହୋଇଯାଏ । ତାର କଥାକୁ ଭଗବାନଙ୍କ କଥାଭଳି ଅକ୍ଷରେ ଅକ୍ଷରେ ପାଳନ କରନ୍ତି ଅନ୍ୟମାନେ । ଦୁର୍ବଳର ଲହୁ ସବୁବେଳେ ଭଗବାନଙ୍କ ଦ୍ୱାହିଦେଇ ସବଳ ପାନ କରିବା ଏବଂ ନିରୀହା ଦୁର୍ବଳା ଅବଳାମାନଙ୍କ ଉପରେ ପୁରୁଷ ପ୍ରଭୁତ୍ୱପଣ ଜାହିର କରିବା ଭିତରେ ଏହି ତତ୍ତ୍ୱକୁ ଲକ୍ଷ୍ୟ କରିଛନ୍ତି ସେ -

''ଗୁଳି ବାରୁଦରେ ଦେବତା ରହିଛି ସେହି ଏକା ବରାଭୟ ।
ସେହି ଈଶ୍ୱର ଶାସଇ ଭୁବନ ଜୟ ଭଗବାନ ଜୟ ।
ଅବଳା କୁଳର ଦେବତା ରୂପରେ ପୁରୁଷ ବୋଲାଏ ରାଜା
ଭଗବାନ ନାମେ ସବଳ ପିଉଛି ଦୁର୍ବଳ ଲହୁ ତାଜା ।''

'ଭକ୍ତି ଓ ଚାବୁକ୍' କବିତାରେ ଠିକ୍ ସେହି ସ୍ୱର ସ୍ପଷ୍ଟ ଶୁଣାଯାଏ । ଯୁକ୍ତିତର୍କ ତଥା ପରିଚ୍ଛନ୍ନ ବିଚାର ବୋଧକୁ ଅସ୍ୱୀକାର କରୁଥିବା ଭକ୍ତିକବିଙ୍କ ଦୃଷ୍ଟିରେ ଜୀବନ ପାଇଁ ଆଦୌ ପ୍ରୟୋଜନ ନୁହେଁ । କେବଳ ଅନ୍ଧଭାବରେ ବିଶ୍ୱାସ ପଛରେ ଗୋଡ଼ାଇଲେ କୌଣସି ମୂଲ୍ୟ ନଥାଏ । ଏଭଳି ଭକ୍ତିକୁ ଚାବୁକ୍ ସହିତ ସମାନ କରିଛନ୍ତି କବି । ଏହି ଚାବୁକ୍ ହିଁ ସବୁ ବିଚାରବୋଧ ଏପରିକି ଭକ୍ତିକୁ ମଧ୍ୟ ନିୟନ୍ତ୍ରଣ କରେ । କେବଳ ଭାରତ ବର୍ଷ ନୁହେଁ ଜେନେଭା, ବର୍ଲିନ୍, ରୋମ୍ ଓ

ଚୋକିଓ ଆଦି ବିଶ୍ୱର ସକଳ କୋଣ ଅନୁକୋଣରେ ଏହି ଚାବୁକ୍‌ର ଶାସନ ହିଁ ଲାଗିରହିଛି । ଏହା ବିରୁଦ୍ଧରେ ସ୍ୱର ଉତ୍ତୋଳିତ ହୋଇଛି ଅତ୍ୟନ୍ତ ବ୍ୟଙ୍ଗାତ୍ମକଭାବେ ଏହି ପଦଟିରେ –

''ସବୁଠାରେ ଖାଲି ବିଶ୍ୱାସ ରଖ ତର୍କେ ନମିଳେ ହରି
ଭବ ପାରାବାରୁ ଭକ୍ତି ବିନୟ କଲେ ହେଲେ ଯିବ ତରି ।''

ତଥାକଥିତ ଧର୍ମ ବିରୁଦ୍ଧରେ ଏହି ବୈପ୍ଳବିକ ସ୍ୱର 'ଯାଦୁଘର' କବିତାରେ ଅତ୍ୟନ୍ତ ସ୍ପଷ୍ଟ । ଜଗତକୁ ଧାରଣ କରି ରଖିଥିବା ଉପାଦାନଟି ଯେ ଧର୍ମ ଏହାର ପରୀକ୍ଷାପାଇଁ କାବ୍ୟ ନାୟକ ପ୍ରତି ଧର୍ମାନୁଷ୍ଠାନରେ ଅନୁସନ୍ଧିତ୍ସୁ ମନନେଇ ଘୂରି ବୁଲିଛି । ମାତ୍ର କେଉଁଠାରେ ମନଲାଖି ଉତ୍ତରଟିଏ ସେ ଖୋଜି ପାଇଁ ନାହିଁ । ଦେଉଳର ଧର୍ମ ଗୀର୍ଜାରେ ଅନ୍ୟପ୍ରକାର ଏବଂ ଗୀର୍ଜାର ଧର୍ମ ମସ୍‌ଜିଦ୍‌ର ଧର୍ମ ସହିତ ସମାନ ନୁହେଁ । ଧର୍ମନାମରେ ପଶୁବଧକୁ ମଧ୍ୟ ସେ ସମର୍ଥନ କରିପାରିନାହିଁ । ବୁଦ୍ଧ, ଯୀଶୁ ଓ ମହମ୍ମଦଙ୍କ ଦ୍ୱାରା ପ୍ରଚାରିତ ମୁକ୍ତିର ମନ୍ତ୍ର ଖୋଜି ଖୋଜି ସେ ଦେବତାମାନଙ୍କର ପ୍ରକୃତ ପରିଚୟ ପାଇଯାଇଛି । କେବଳ ଦେବତାଙ୍କ ନାମରେ ମଣିଷର ହିଂସ୍ର ପାଶବିକ ଲାଳସାକୁ ଚରିତାର୍ଥ କରିବାପାଇଁ ଯେ ଏ ସକଳ ଧର୍ମାନୁଷ୍ଠାନର ସୃଷ୍ଟି ଏହାକୁ ପ୍ରତ୍ୟକ୍ଷ ପ୍ରମାଣ ବଳରେ ଗ୍ରହଣ କରିନେଇଛି ସେ । ଶେଷରେ ଧର୍ମର ଏହି ମିଥ୍ୟା ଆଟୋପକୁ ଘୃଣାକରି ତା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବାପାଇଁ ପଛାଇ ଯାଇ ନାହିଁ ସେ –

''ଧର୍ମଘୋଡ଼ଣୀ ଭିତରେ ପଶିଲେ ସାତଖୁଣୀ ହେବ ମାଫ
ଦରକାର ଯେଣୁ କରିବା ଆମର ସଦ୍ୟ ଶହେଟା ପାପ ।
ଦରକାର ଯେଣୁ ଶହେ ତୋଟି ଚିପି ବୋଲାଇବା ଆମେ ଧନୀ
ଶହେଟା ନାରୀର ଦେହ ଭୋଗ କରି ନୈଷ୍ଠିକ ସନାତନୀ ।''

'ବାଜି ରାଉତ' କବିତାରେ ଏହି ଧର୍ମକୁ ପ୍ରୋତ୍ସାହନ ଦେଇ ଆସୁଥିବା ଅଭିଜାତ ତଥା ସାମନ୍ତବର୍ଗଙ୍କୁ ହାତବାରିସି କରି ସେମାନଙ୍କ ମାଧ୍ୟମରେ ଦେଶକୁ ଲୁଣ୍ଠନ କରିବାରେ ବ୍ରତୀ ଥିବା ଅତ୍ୟାଚାରୀ ବିଦେଶୀ ଶ୍ୱେତାଙ୍ଗମାନଙ୍କ ବିରୁଦ୍ଧରେ କାବ୍ୟନାୟକ ଦୃଢ଼ ସ୍ୱର ଘୋଷଣା କରିଛି । ନିଜର ଶ୍ରମ ଓ ସ୍ୱେଦର ବିନିମୟରେ ଯାହାକୁ ସେ ନିଜ ରାଜ୍ୟର ଅଧିପତି ଭାବେ ଗଠନ କରିଛି, ସେ ଯେ ଶେଷରେ ତାର ସକଳ ପ୍ରଗତିର ଅନ୍ତରାୟ ହେବ ଏହାକୁ ସହ୍ୟକରିପାରି ନାହିଁ ସେ । ତାରି ବିରୁଦ୍ଧରେ ସଂଗ୍ରାମ କରିବା ପାଇଁ ସେ ଦୃଢ଼ ନିଶ୍ଚିତ ହୋଇଛି ଏବଂ ଦୃପ୍ତ କଣ୍ଠରେ ଅଗଣିତ ଦଳିତ ତଥା ନିଷ୍ପେଷିତମାନଙ୍କୁ ସେ ମୁକ୍ତିର ମନ୍ତ୍ର ଏହିପରି ଶୁଣାଇଛି –

''ଝାଳଦେଇ ଯେତେ ଗଢ଼ିଲୁ ରାଇଜ ରଜା
ଲୁହଦେଇ ତୋର ହତିଆର ତହିଁ ପଜା
ବେଳ ଏହି ବେଳ ଏହି
ତୋଳିଥିଲୁ ଯାକୁ ତାଡ଼ିବୁ ତାହାକୁ ନ ଶୁଅରେ ଆଉ ଚେଇଁ ।''

'ଛୁରୀଟିଏ ଲୋଡ଼ା' କବିତାରେ ଏହି ସ୍ୱର ଅଧିକ ଶାଣିତ । ପ୍ରଥମ ପର୍ଯ୍ୟାୟରେ ଭଗବାନ ଏବଂ ଦ୍ୱିତୀୟ ପର୍ଯ୍ୟାୟରେ ମଣିଷ ଏହି ଦୁହିଁଙ୍କୁ ଗଭୀର ବିଶ୍ଳେଷଣ କରି ଏମାନଙ୍କ ପ୍ରତି କାବ୍ୟପୁରୁଷ ଆପଣାର ସେବା ଓ ଭକ୍ତିକୁ ନିବେଦନ କରିପାରିନାହିଁ । ପ୍ରଥମ ପର୍ଯ୍ୟାୟରେ ଦେବତାଙ୍କୁ ଆରାଧନା କରିବା ପାଇଁ ଯିବାବେଳେ ଏକ ଅତଳତଳ ଶୂନ୍ୟତାର ସାମ୍ନା କରିଛି ସେ । କେବଳ ଦେବତାଙ୍କ 'ଟେକ' ରଖିବାକୁ ମଣିଷ ଯେ ଆପଣାର ଉପେକ୍ଷା କରି ପ୍ରଭୂତ କ୍ଷତି ସାଧନ କରୁଛି ସେ ଏକଥାରେ ଦୃଢ଼ନିଶ୍ଚିତ ହୋଇଯାଇଛି । ଦେବତା ପାଖରୁ ଫେରି କାବ୍ୟପୁରୁଷର ଦୃଷ୍ଟି ପହଞ୍ଚିଚି ମଣିଷ ପାଖରେ । ମାତ୍ର ମଣିଷ ଭିତରେ ଚରମ ସ୍ୱାର୍ଥପରତା ତଥା ଅନ୍ୟପ୍ରତି ଈର୍ଷା ମନୋଭାବ ଦେଖି ପୁନର୍ବାର କ୍ଷତାକ୍ତ ହୋଇ ପଡ଼ିଛି ସେ । ଏହି ଭାବଧାରାକୁ ବହନ କରିଥିବା କବିଙ୍କ ସାର୍ଥକ ପଂକ୍ତି କେତୋଟି ହେଉଛି –

''ପତନେ ମୋର ତ ସୁଖୀନୁହେ ଯେହୁ ମନେ
ତେସନ ବନ୍ଧୁ ନପାଇଲି କାହିଁ ଜଣେ !
ସଖା ହୋଇ ଜଣେ ନମିଳିଲା କାହିଁକି ତ
ସୁଖ ଦେଖି ମୋର ନଜଳଇ ଯାର ଚିତ୍ତ ।

ଶେଷରେ କାବ୍ୟ ପୁରୁଷ ସକଳ ପ୍ରେମ ଓ ସ୍ନେହକୁ ନିଜ ପାଶରେ ଅଜାଡ଼ି ଦେଇଛି । ମାତ୍ର ପର ମୁହୂର୍ତ୍ତରେ ଅଦ୍ୟାବିଧି କେହି ତାର କ୍ଷତି କରି ନଥିବା କୋଟି କୋଟି ବନ୍ଧୁଙ୍କୁ ଆପଣାର ପ୍ରୀତିପାତ୍ର ବୋଲି ସ୍ୱୀକାର କରିନେଇଛି ସେ ।

ପାରମ୍ପରିକ ଧର୍ମ ଓ ସମାଜ ବ୍ୟବସ୍ଥାରେ ବ୍ୟଥିତ କବିଚିତ୍ତ ଅତ୍ୟନ୍ତ ସନ୍ତପ୍ତ ସ୍ଥିତିରେ ଏହି ପ୍ରତିକୂଳ ପରିସ୍ଥିତିର ବିରୁଦ୍ଧରେ ବେଳେବେଳେ ବିଷୋଦ୍‌ଗାର କରିଉଠିଛି । 'କିଏ ଶଳା ସଇତାନ' ଏହାର ଏକ ସାର୍ଥକ ଉଦାହରଣ । ଧନିକ ଓ ଅଭିଜାତମାନଙ୍କର ଜୀବନାବଧି ସେବା କରି କରି ଶେଷକୁ ଯାତନା ଓ ତିରସ୍କାର ଲାଭ କରିଥିବା ନିରୀହ ମଣଷମାନଙ୍କ ପ୍ରତି ଏହି କବିତାରେ କାବ୍ୟ ପୁରୁଷର ଦରଦର ଅନ୍ତ ନାହିଁ । ଅଭିଜାତ ଗୋଷ୍ଠୀଙ୍କ ସେବା ପାଇଁ ଆପଣାକୁ ଅଶିକ୍ଷିତ, ଅଭୁକ୍ତ ତଥା ଅତୃପ୍ତ ରଖିଥିବା ଶ୍ରମିକ ବର୍ଗର ବ୍ୟାକୁଳ ଆତ୍ମଦହନ ଏ କବିତାରେ ଅତ୍ୟନ୍ତ କଳାତ୍ମକଭାବେ ଉତ୍କୀର୍ଣ୍ଣ । ଏକ ସ୍ପର୍ଶକାତର ଶବ୍ଦ 'ଶଳା' ବା 'ଶାଳୀ' ଯାହା ସାଧାରଣତଃ ସାହିତ୍ୟିକ ପରମ୍ପରାରୁ ଦୂରରେ ରହି ଏକ ଗାଳି ମଧ୍ୟରେ ସୀମିତ ଥିଲା, ତାହାକୁ ଅତ୍ୟନ୍ତ କଳାତ୍ମକ ଭାବରେ ସାହିତ୍ୟର ଦରବାରକୁ ଆମନ୍ତ୍ରଣ କରି ଆଣିଛନ୍ତି କବି । ଦିନେ ନା ଦିନେ ଏ ଅଭିଜାତବର୍ଗଙ୍କ ସକଳ ସ୍ୱାର୍ଥଲିପ୍ସାର ଯେ ପରିସମାପ୍ତି ଘଟିବ ଏବଂ ଦଳିତ ଶ୍ରମଜୀବୀମାନେ ତାଙ୍କର ଯେ ନ୍ୟାଯ୍ୟ ଦାବୀ ଲାଭ କରିବେ ଏ ଆଶା କାବ୍ୟପୁରୁଷ ଅତ୍ୟନ୍ତ ଦୃଢ଼ଭାବେ ପୋଷଣ କରିଛି । ଏହାକୁ ପ୍ରକାଶ କରିବା ପାଇଁ ପାରମ୍ପରିକ ଲୋକକଥାରୁ ଉପାଦାନ ସଂଗ୍ରହ ସେ ଏହି ପ୍ରକାର କରିଛି –

''ମନେ ହେଜ ଥରେ ଗାଡ଼ି ପରେ ନାଆ କେବେ ନାଆପରେ ଗାଡ଼ି
ସିଂହର ନାଡ଼ି ଖାଇପାରେ ଦିନେ ଶୃଗାଳ ମୁଖରେ ତାଡ଼ି
ଶାଶୁ ପାଳି ଗଲେ ଆସେ ବୋହୂପାଳି
ଶଳା ବି ଭିଣୋଇ ହୁଏ
ଯେତେ ଯାହା ପୁଣି ଘଟିଯାଏ ସବୁ ନ ଆଣିବା ଆଉ ମୁହେଁ,
ବିଲେଇ କୁକୁର ଶୁଣାଅଛି ଦିନେ ବୁଝେ ମାନ ଅପମାନ
ମଣିଷ କି ଦିନେ ନ ପାରିବ ବୁଝି କିଏ ଶଳା ସଇତାନ ।''

ଏହି ଚେତନାର ଏକ ସାର୍ଥକ ପ୍ରକାଶ 'ଆଗାମୀ' କବିତାରେ ଦୃଶ୍ୟମାନ ହୁଏ । ଏହି କବିତା କାବ୍ୟପୁରୁଷର ଏକ ସାରସ୍ୱତ ଇସ୍ତାହାର । କବିତା ଯେ ଜୀବନ ପାଇଁ ଏହା ଏଥିରେ ମୁଖ୍ୟତଃ ବ୍ୟଞ୍ଜିତ । ସ୍ୱପ୍ନପ୍ରବଣ ସ୍ୱୈରବାଦୀ କବିତା ରଚନା ନକରି ଜୀବନବାଦୀ ସମାଜ କଲ୍ୟାଣକର କବିତା ସୃଷ୍ଟି କରିବା ଯେ ପ୍ରତ୍ୟେକ ସତ୍ କବିର ଏକାନ୍ତ କରଣୀୟ ଏହା ପ୍ରକାରାନ୍ତରେ ଏହି କବିତାରେ ଯେପରି ବ୍ୟଞ୍ଜିତ ହୋଇଛି । ଜୀବନର ସ୍ୱତଃ ବିକାଶର ପଥରୁଦ୍ଧ କରୁଥିବା ଏକ ପ୍ରତିକୂଳ ପରିବେଶରେ ପରାଧୀନ ମାନସିକତା ମଧ୍ୟରେ କାବ୍ୟପରୁଷ ଏକ ବିପୁଳ ଜୀବନର ସମ୍ଭାବନାକୁ ଆପଣାର କବିତାର କଳେବରରେ ସ୍ୱାଗତ କରିଛି । ବୟକ୍ତିକ ସକଳ ସ୍ୱାର୍ଥପ୍ରଣୋଦିତ ଅନୁଭୂତିକୁ ବିଶ୍ୱାର୍ପିତ କରି ସେ ଏକ ସନାତନ ମୃତ୍ୟୁଞ୍ଜୟୀ ଜୀବନବୋଧର ମନ୍ତ୍ରୋଚ୍ଚାରଣ କରିଛି, ଯାହା ଜୀବନର ସକଳ ବିଷାଦକୁ ଦୂରକୁ ଫିଙ୍ଗି ଆନନ୍ଦବୋଧକୁ ଆପଣାର କରିଛି । କାଳିନ୍ଦୀ ଏଠି ବର୍ତ୍ତମାନର କବି ନୁହନ୍ତି ବରଂ 'ଆଗାମୀ କାଳ'ର କବି । ରୂପର ସକଳ ଅଳିକ ମୋହକୁ ଅସ୍ୱୀକାର କରି ତାଙ୍କ କାବ୍ୟସ୍ୱର ମୁଖ୍ୟତଃ ଏକ ବୃହତ୍ତର ଜୀବନର ଆବଶ୍ୟକୀୟ ଉପାଦାନମାନଙ୍କୁ ଏକତ୍ରିତ କରିବାକୁ ପ୍ରୟାସ କରିଛି । ବିଶ୍ୱ ସେଠାରେ ଏକ ସମାଜରେ ପରିଣତ ହୋଇଛି ଏବଂ ଏହି ବିଶ୍ୱ ସମୁଦାୟକୁ ନିୟନ୍ତ୍ରଣ କରୁଥିବା 'ସରକାର' ସମସ୍ତଙ୍କୁ ଆବଶ୍ୟକମତେ ସେମାନଙ୍କ ସର୍ବନିମ୍ନ ଆବଶ୍ୟକତା ଖାଦ୍ୟ, ବସ୍ତ୍ର ଓ ବାସଗୃହ ଯୋଗାଇ ଦେବାରେ କ୍ଷମ ହୋଇଛି –

''କବିତା ଗଢ଼େ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
ଦୁଇଟା ଲୁଗା ଜାମା ସବୁରି ପାଇଁ ମିଳେ
ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ
ବେକାର ରହିବାକୁ ନାହିଁଟି ଅଧିକାର
ସବୁରି ପାଇଁ କାମ ଯୋଗାଏ ସରକାର

କହିବା ପାଇଁ କଥା ସୁବରି ଦାବୀ ଅଛି
ମୁଁ ସେହି ସମାଜର କବିତା ବସେଁ ରଚି ।''

॥ ପାଞ୍ଚ ॥

ଏକ ମୁହୂର୍ତ୍ତ ସର୍ବସ୍ୱ ଅନୁଭୂତିର ସାର୍ଥକ ପରିପ୍ରକାଶ ହେଉଛି କବିତା । କେଉଁ ଏକ ପ୍ରଭାବ ସୃଷ୍ଟିକାରୀ ଅନୁଭବ ଯାହା ମୁହୂର୍ତ୍ତକ ପାଇଁ କବିର ହୃଦୟକୁ ବିମଥିତ କରିଦିଏ ତାର ସାର୍ଥକ ପରିପ୍ରକାଶରେ କବିତାର ଶୁଭ ଧରାବତରଣ ହୁଏ । ପ୍ରକୃତିର କେଉଁ ଏକ ପ୍ରଭାବୋତ୍ପାଦକ ଝଲକ, ଜୀବନର କେଉଁ ଏକ ଦାର୍ଶନିକ ଦୃଷ୍ଟିଭଙ୍ଗୀ, କୌଣସି ଏକ ପାର୍ଥିବ ଉପାଦାନ ଏହା କବିକୁ ବାରମ୍ବର ଆପଣାର ମାଦକିତ ସ୍ପର୍ଶରେ ବିହ୍ୱଳିତ କରିଦିଏ । ତାହା ହିଁ ହୁଏ କବିତାର ଜନ୍ମଜାତକ । କାଳିନ୍ଦୀଚରଣଙ୍କ ଅଧିକାଂଶ କବିତା ଏହି ପର୍ଯ୍ୟାୟର । ସଂସାରର କ୍ଷୁଦ୍ରାଦପି କ୍ଷୁଦ୍ର ପଦାର୍ଥଠାରୁ ଆରମ୍ଭ କରି ଉଜ୍ଜ୍ୱଳ ତମ ପଦାର୍ଥ ସମସ୍ତେ କାଳିନ୍ଦୀଙ୍କୁ ଅନେ ବହୁତେ ବିମୋହିତ କରିଛନ୍ତି । ସେହି ଉପାଦାନଟିର ପଦାର୍ଥତ୍ୱ ଭିତରେ କବିସତ୍ତା କିନ୍ତୁ ନିର୍ଦ୍ଦିଷ୍ଟ ଏକ ଦାର୍ଶନିକ ଅବବୋଧକୁ ସାମ୍ନାକରି ବସିଛି, ଯାହା କବିତାର ନିର୍ଯ୍ୟାସ ରୂପେ ପ୍ରକାଶିତ ହୋଇଛି । 'ସୁନା' (କ୍ଷଣିକ ସତ୍ୟ) କବିତାକୁ ଏହାର ଉଦାହରଣ ଭାବେ ପ୍ରଥମେ ଗ୍ରହଣ କରାଯାଇପାରେ । ଏହି ନିର୍ଜୀବ ଧାତୁଟି ପାଖରେ ପରିପୂର୍ଣ୍ଣ ହୋଇରହିଥିବା ଗୁଣାବଳୀକୁ କବି ସ୍ୱୀକାର କରି ତାକୁ 'ଭୁବନବାଞ୍ଛିତ' ବୋଲି କହିବସିଛନ୍ତି । ସେହି ସୁନାହିଁ ସାଧନାର ଶ୍ରେଷ୍ଠତମ ସିଦ୍ଧି ଏବଂ ଦୁନିଆର ଉଚ୍ଚତମ ଆଶା, ସୁନାର ଏହି ପ୍ରଶସ୍ତି କେତେ ପରିମାଣରେ ସତ୍ୟ ତାହା ଏହି ପଂକ୍ତି କେତୋଟିରୁ ସ୍ପଷ୍ଟ ହୋଇଯାଏ –

''ପୁରୁଷର ସ୍ୱର୍ଗ ତୁମେ ଧର୍ମ ତପ ରମଣୀର ପ୍ରେମ
ସବୁ ବନ୍ଧନର ଗ୍ରନ୍ଥି ହେ ଅସ୍ଥିର ହେ ଅମୂଲ୍ୟହେମ ।
ସାଧୁକୁ କରିଲ ହନ୍ତା ପଣ୍ଡିତକୁ କରିଲ ପାଷଣ୍ଡ
ସୂକ୍ଷ୍ମତମ କେନ୍ଦ୍ର ତୁମେ ବିଶ୍ୱର ବିରାଟ ମାନଦଣ୍ଡ ।
ବିରାଜିଲ ଧରାଧାମେ ଅଭିରାମ ଅଦ୍ୱିତୀୟ ସତ୍ୟ
ମାନର ବୃଦ୍ଧିପରେ ବଢ଼ାଇଲ ଆପଣା ମହତ୍ତ୍ୱ ।''

ସୁନାର ଲକ୍ଷଣ ତଥା ବୈଶିଷ୍ଟ୍ୟର ସାର୍ଥକ ପରିପ୍ରକାଶରେ କାଳିନ୍ଦୀଚରଣଙ୍କ ଲେଖନୀ ଏ କବିତାକୁ ଅଧିକ ହୃଦୟସ୍ପର୍ଶୀ କରିପାରିଛି ।

କେବଳ ସୁନା ଭଳି ଅମୂଲ୍ୟ ପଦାର୍ଥ ନୁହେଁ, ନିର୍ଜୀବ ପାହାଡ଼, ପାହାଡ଼ର ତୀଖ ଘାଟି, ଗାଆଁ ମାଟିର ଚାଳଘର ଏ ସକଳ କବି ଚେତନାରେ ସଫଳ ରଙ୍ଗ ଓ ରୂପ ଗ୍ରହଣ କରିଛନ୍ତି । ପାହାଡ଼ର ଉଚ୍ଚମଥାନ, ପାହାଡ଼ ଉପରୁ ତଳକୁ 'ଉପବୀତ' ପରି ଲମ୍ବି ଆସିଥିବା ସରୁପଥର ନୀରବ ନିଶ୍ଚଳ ସ୍ଥିତି କବି ଚେତନାରେ ଧ୍ୟାନସ୍ଥ ଯୋଗୀର ଚିତ୍ର ଆଙ୍କିଦେଇଛି । ସନ୍ଧ୍ୟାପୂର୍ବରୁ

ପାହାଡ଼କୁ ଅତିକ୍ରମ କରି ଆରପାରିରେ ଆପଣାର ଘରକୁ ଫେରିଯିବାର ଦୁର୍ବାର ଅଭିଳାଷ ରଖିଥିବା ପଥିକର ଭାବନା ଭିତରେ କବିତା 'ଏହି ଯେ ପାହାଡ଼' (ମହାଦୀପ) ବ୍ୟଞ୍ଜିତ । ପାହାଡ଼କୁ ଅତିକ୍ରମ କରିବା ଅବ୍ୟବହିତ ପୂର୍ବରୁ 'ସ୍ପନ୍ଦନ'କୁ ହିଁ ବାରମ୍ବାର ସାଉଁଟି ବସିଛି କବିସତ୍ତା । ଜୀବନ ପାହାଡ଼ର ପ୍ରତି ତୀଖ ଘାଟିକୁ ଅତିକ୍ରମ କରିବାର ଦୁର୍ବାର ଅଭିଳାଷ ହିଁ ଯେ ମଣିଷକୁ ଗତିଶୀଳ କରେ ତାକୁ ଜୀବନରେ ଆଗେଇ ଯିବାର ପ୍ରେରଣା ଦିଏ ଏହା କବିତାର ଶେଷ ପଂକ୍ତିମାନଙ୍କରେ ଅତ୍ୟନ୍ତ ସଫଳଭାବେ ଚିତ୍ରିତ –

''ଲଂଘିଲା କେତେ ଜୀବନେ ଏସନ ଗିରି
ଶତ ସଂକଟ ଅନ୍ତର ଗଲା ଚିରି ।
ଗତ ସନ୍ଧ୍ୟାର ସ୍ପନ୍ଦନ ପୁଣି ଲୋଡ଼େ
ଲଭିଥିଲା ଯାହା ପାହାଡ଼ ଉଠାଣି ମୋଡ଼େ ।''

ପାହାଡ଼ର ତୀଖ ଘାଟି କେତେବେଳେବା କବି ସତ୍ତାକୁ ବିଚଳିତ କରିଦେଇଛି । 'ଜୟପୁର ଘାଟି' (ମହାଦୀପ) କବିତା ଏହାର ଏକ ସଫଳ ଉଦାହରଣ । 'ବଣପାହାଡ଼ ରାଇଜ'କୁ ବୁଲିଗଲା ବେଳେ କବିସତ୍ତା ଜୟପୁର ଘାଟିର ନିଃସର୍ଗ ସୁନ୍ଦର କୋଳରେ ଭାବ ପ୍ରବଣ ହୋଇ ଉଠିଛି । ଆଦୌ କହି ହୋଇ ପାରି ନଥିବା 'ଅକୁହା ବାରତା'କୁ ପ୍ରକାଶ କରିବା ପାଇଁ ପାଗଳ ହୋଇ ଉଠିଛି । ସବୁବେଳ ପାଇଁ କବି ଚେତନାରେ ଘାଟି ତଳର ସେହି ବିମୁଗ୍ଧ ଚିତ୍ରଲେଖି ହୋଇ ଯାଇଛି । ଆପଣାର ସକଳ ସ୍ୱାତନ୍ତ୍ର୍ୟକୁ ପ୍ରକୃତିର ସେହି ବିମୋହନ କୋଳରେ ହରାଇ ବସିଛି କବିସତ୍ତା । ଏହି ଭାବ ଅତ୍ୟନ୍ତ କଳାତ୍ମକ ଭାବେ କବିତାରେ ଉତ୍ତୀର୍ଣ୍ଣ –

''ସେହି ଗିରି କୋଳେ ଲାଖିଲା ମନର ଦରଜ
ସେହି ଝରଣାରେ ଲୁଚିଲା ରାଗିଣୀ ମୂରଜ
କେତେ ବିଲବନେ ରହିଗଲା ଲାଖି ବିପୁଳ ଜୋଛନା ପରଶ ମୁଁ ଚାଖି
କେତେ ସକାଳେ ମୋ ଉଇଁଥିଲା ଶୁଭ ସୂରଯ
ସେହି ଘାଟିପଥେ ଲୁଚିଲା ରାଗିଣୀ ମୂରଜ ।''

ପାହାଡ଼ ନୁହେଁ ପଲ୍ଲୀ ଗାଆଁର ଚାଳଛପର ଘର ମଧ୍ୟ ବେଳେବେଳେ କବିଚେତନାକୁ ମୋହାଚ୍ଛନ୍ନ କରିଦେଇଛି । ବାଲ୍ୟ, କୈଶୋର ଓ ଆଦ୍ୟ ଯୌବନ ଅତିବାହିତ କରିଥିବା ଚାଳ ଛପର ଘରଟି କବି ଚେତନାରେ ସ୍ୱର୍ଗପୁର ଭଳି । ସେହି ଚାଳଘରହିଁ କବି ଚେତନାର ସକଳ ସୁଖ ଦୁଃଖ ବହନ କରିବା ସହିତ ମନର ସକଳ ଅଭିଳାଷକୁ ବହନ କରିଥାଏ । ସେହି ଘର ଆଗରେ କୋଟି କୋଟି ସୁଖର ଭୁବନ ଏକାନ୍ତ ନ୍ୟୂନ ଜଣାପଡ଼େ । କବି ରାଜପଦକୁ ଏହି ଚାଳଘର ତୁଳନାରେ ଅତ୍ୟନ୍ତ ନ୍ୟୂନ ବୋଲି ମଣିଛନ୍ତି । ଆନନ୍ଦ ଓ ଅଶ୍ରୁର ଅମାପ ଅନୁଭବ ସେହି ଚାଳଛାପର ଘରେ ଯେପରି ଲୁଚି ରହିଥାଏ । 'ଚାଳର ଘର' (ଛୁରୀଟିଏ ଲୋଡ଼ା) କବିତାରେ ଏହି ଭାବ ଅତ୍ୟନ୍ତ ପ୍ରାଞ୍ଜଳ –

''ଚାଳର ଘରେ ଜନ୍ମ ମୋର ବଞ୍ଚେ ମାଟି ତାଡ଼ି
ଚାଳର ଘରେ ଆଦ୍ୟଦେଇଛି ମୋର ବାଢ଼ି
ଚାଳର ମୋର କୁଟୀର ଗୋଟି
ତୁଚ୍ଛକରେ ଭୁବନ କୋଟି
ଚାଳର ଘରେ ପଡ଼ିଛି ଲୋଟି କେତେ ଯେ ଆଖିବାରି ।''

କେବଳ ପଦାର୍ଥ ନୁହେଁ ପ୍ରାଣୀବର୍ଗ ମଧ୍ୟ କାଳିନ୍ଦୀଙ୍କ କାବ୍ୟ ବଳୟକୁ ଅଧିକ ଆକର୍ଷଣୀୟ କରିଛନ୍ତି । ଉଦାହରଣ ସ୍ୱରୂପ 'ଚକ୍ରବାକ' (ମନେନାହିଁ) କବିତାକୁ ଗ୍ରହଣ କରାଯାଇପାରେ । କେଉଁ ପୌରାଣିକ ପୁରାବୃତ୍ତ ଅନୁସାରେ ଚକ୍ରବାକ ଦମ୍ପତିଙ୍କର ଦିନରେ ମିଳନ ଓ ରାତିରେ ବିଚ୍ଛେଦ ହୁଏ । ଉଭୟ ନଦୀର ବିପରୀତ ତୀରକୁ ଚାଲିଯାନ୍ତି । ରାତି ସରି ଆସିଲେ ପୁନର୍ବାର ଉଭୟଙ୍କର ମିଳନ ହୁଏ । ଯିବା ପୂର୍ବରୁ ଚକ୍ରବାକ ଦମ୍ପତି ପରସ୍ପରକୁ ବିଷାଦ ଦୃଷ୍ଟିରେ ଚାହିଁରହନ୍ତି । ସେହି ଦୁଃଖଦ ଚାହାଣିର ଚିତ୍ର କବିତାରେ ଅତ୍ୟନ୍ତ କଳାତ୍ମକଭାବେ ପ୍ରମୂର୍ତ୍ତ । ବିଚ୍ଛେଦର ଦାବଦହନରେ ମିଳନର ମଧୁଆଶା ଏମାନଙ୍କ ହୃଦୟରେ ଅହରହ ଜାଗ୍ରତ ଥାଏ । ପ୍ରେମର ଏହି ମହାନ ପୂଜାବେଦୀରେ ଅଶ୍ରୁ ତଥା ବିଷାଦର ମନ୍ତ୍ରଗାନ ହିଁ ପ୍ରେମର ଯଥାର୍ଥ ପରିଚୟ ଲିପି । କାଳିନ୍ଦୀଙ୍କ ଲେଖନୀ କବିତାର ଶେଷ ପଂକ୍ତିରେ ସ୍ୱୀକାର କରନ୍ତି –

''ଦୁଇ ମିଶି ଏକ ହେବା ପାଇଁ
ଯୁଗ ଯୁଗାନ୍ତରେ ଏହି ପ୍ରେମର ସାଧନା ସେ ଗୋ ଯାଆନ୍ତି ଜଗାଇ –
ବିରହର ବିଳାପେ ମୁଖର
ଭୁବନ ଗଗନ ସେ ଯେ କରିଯାନ୍ତି ଅବଶ କାତର ।''

ମାନବ ବର୍ଗ ମଧ୍ୟରୁ 'ଚାଷୀର ଭାଗ୍ୟ' ଓ 'ଭିକ୍ଷୁକ' ଏହି ଦୁଇଟି କବିତାକୁ ଗ୍ରହଣ କରାଯାଇପାରେ । ପ୍ରଥମ କବିତାଟି ଏକ ସରଳ ଗରିବ କୃଷକର ଅଭାବୀ ଜୀବନ ଗାଥା ହୋଇଥିବା ବେଳେ ଦ୍ୱିତୀୟ କବିତାଟିରେ ମାଗି ଆସିଥିବା ଭିକାରିଟି ମୁହୂର୍ତ୍ତକରେ ବିଶ୍ୱର ସର୍ବଶ୍ରେଷ୍ଠ ଦାତା ହୋଇଯାଇଛି । ପ୍ରଥମ କବିତାଟିର ପରିଣତି ବୈପ୍ଳବାତ୍ମକ ହୋଇଥିବା ବେଳେ ଦ୍ୱିତୀୟ କବିତାଟିରେ ଏକ ସ୍ୱୈରବାଦୀ ଭାବ ବିଭବ ପ୍ରମୁଖ ଭୂମିକା ଗ୍ରହଣ କରିଛି । 'ଚାଷୀର ଭାଗ୍ୟ' (ମହାଦୀପ) କବିତାର ପ୍ରଥମ ପର୍ଯ୍ୟାୟରେ ଗରିବ ଚାଷୀଟିର ସକଳ ଦୁଃଖ ଅତ୍ୟନ୍ତ କରୁଣ ଭାବେ ବର୍ଣ୍ଣିତ । ଚାଳ ଘର ଛପର ନହୋଇ ପାରିବା, ସ୍ତ୍ରୀ ପାଳିଜର ଭୋଗିବା, ବର୍ଷକର ପୁଅ କାଛୁ ଏବଂ କଫରେ ସଡ଼ ସଡ଼ ହେବା, ପ୍ରବଳ ବର୍ଷା ହେତୁ ବିଲ ଚାଷ ହୋଇ ନପାରିବା, ବାର ବର୍ଷର ବଡ଼ପୁଅକୁ ଧଇଁକାଶ ଧରିବା ଏବଂ ଜମିଦାର ସୁଧ ତାଗିଦା କରିବା ଭିତରେ ତାର ସକଳ ଜୀବନ ଅସ୍ତବ୍ୟସ୍ତ ଓ ଆକୁଳ ବିକଳ ହୋଇ ପଡ଼ିଛି । ଏଠାରେ ସବୁଜ ଚେତନାର ସ୍ୱପ୍ନ ବଳୟ ଆଉ ନାହିଁ । ଚାଷୀର ଏହି ଅଭାବୀ ଜୀବନଧାରାର ପରିବର୍ତ୍ତନ ପାଇଁ

କବିତାର ଅନ୍ତିମ ପର୍ବରେ ସାମ୍ୟବାଦୀ ଚେତନାର ବୈପ୍ଳବିକ ସ୍ୱର ଶୁଣାଯାଏ, ଯେତେବେଳେ ତାର ଭାବନାରେ କେବଳ ବିଦ୍ରୋହ ହିଁ ମୁଣ୍ଡ ଟେକି ଉଠେ –

''ଆପଣା ବରାଦ ଆପେ କରିବାକୁ ହେବ ଆଜି
ଗଲାଣି ସେ ବେଳକାଳ କରିବାକୁ ହାଁଜୀ ହାଁଜୀ !
କରିବାକୁ ହେବ ରଡ଼ି ନାହିଁ ନାହିଁ ନାହିଁ ଯାହା
କରାମତି ଦେଖାଇବ କେଡ଼େ ଘାସକଟା ଦାଆ ।''

ଅପରପକ୍ଷରେ 'ଭିକ୍ଷୁକ' କବିତାରେ ଏ ସ୍ୱର ସମ୍ପୂର୍ଣ୍ଣ ନୀରବ । 'କ୍ଷଣିକ ସତ୍ୟ' ସଂକଳନରେ ଏହି କବିତାଟିରେ ଅଭାବ, ଭିକାରି ଓ ଭିକ୍ଷାଥାଳ ସବୁଥିଲେ ମଧ୍ୟ ଏଠି ଭିକାରିଟି ପ୍ରକୃତରେ ଧନହୀନ ନୁହେଁ । ଦ୍ୱାର ଦ୍ୱାର ବୁଲି ପ୍ରତି ଘରେ ଧନରାଶି କଳନା କରୁଥିବା ନବବଧୂଟିଏ 'ରତନର ରତନ' ଖୋଜି ବସିବା ବେଳେ ଶୂନ୍ୟଭିକ୍ଷା ପାତ୍ରଟି ହାତରେ ଧରି ଭିକ୍ଷୁକ ଦ୍ୱାର ଦ୍ୱାର ବୁଲି ଶେଷରେ ତାର ଶୂନ୍ୟ ପୁରରେ ଆସି ପହଞ୍ଚିଛନ୍ତି, ଯାହାଙ୍କର ମାତ୍ର ଗୋଟିଏ ଦୃକ୍‌ପାତରେ ତାର ଶୂନ୍ୟପୁର ପୂର୍ଣ୍ଣ ହୋଇଯାଇଛି, ମାତ୍ର ସେଇ ବିଚିତ୍ର ଭିକ୍ଷୁକ ମୁଠାଏ ମାତ୍ର ଭିକ୍ଷା ଗ୍ରହଣ ନ କରି ଶୂନ୍ୟ ଥାଳଧରି ଫେରିଯାଇଛି । ପରମ ସତ୍ତାର ଜୀବସତ୍ତାକୁ ଏହି ନିଃସର୍ତ୍ତଦାନ ଏକ ପ୍ରତୀକିତ ରୂପରେ ଏହି କବିତାରେ ବ୍ୟଞ୍ଜିତ ।

॥ ଛଅ ॥

ପ୍ରକୃତିର ମନୋରମ ଆଲେଖ୍ୟ ଅଙ୍କନରେ କାଳିନ୍ଦୀଙ୍କ ଲେଖନୀ ଅତ୍ୟନ୍ତ ସିଦ୍ଧହସ୍ତ । ବର୍ଷା, ବୈଶାଖ, ଶିଶିର ଏବଂ ଶରତ ସମସ୍ତେ କାବ୍ୟ ନାୟକକୁ ଅନ୍ବେବହୁତେ ଆପଣାର ଅନୁଭବର ବାର୍ତ୍ତା ପ୍ରଦାନ କରିଛନ୍ତି । କେବଳ ଋତୁଚକ୍ର ନୁହେଁ, ସକାଳ ଏବଂ ସନ୍ଧ୍ୟା, ନଦୀ ଏବଂ ସମୁଦ୍ର, ପାହାଡ଼ ଓ ବଣ ସମସ୍ତେ କବିଙ୍କ ଆଖିରେ ସ୍ୱପ୍ନର ମାୟାଞ୍ଜନ ବୋଳି ଦେଇଛନ୍ତି । ମାତ୍ର ପ୍ରକୃତିର ଯେଉଁ ବିଭାବ କବିଙ୍କର ଅଧିକ ପ୍ରିୟ ସେ ହେଉଛି ସନ୍ଧ୍ୟା । କାଳିନ୍ଦୀଚରଣଙ୍କୁ ସନ୍ଧ୍ୟାର ବିମୁଗ୍ଧ କବି କହିଲେ ଅତ୍ୟୁକ୍ତି ହେବ ନାହିଁ । ବର୍ଷା କବିଙ୍କ ଲେଖନୀରେ ଅତ୍ୟନ୍ତ ମନୋରମ । 'ବର୍ଷା ନାୟିକା' (ଛୁଟିଟିଏ ଲୋଡ଼ା) କବିତାରେ ବର୍ଷାର ଚିତ୍ର ଅପେକ୍ଷା ବର୍ଷାରେ ଭିଜୁଥିବା ସ୍ୱପ୍ନ ସୁନ୍ଦରୀର ଚିତ୍ର ଅଧିକ ଭାବେ ବର୍ଣ୍ଣିତ । ସେହି ବର ବର୍ଣ୍ଣନୀ ସ୍ୱପ୍ନ ସୁନ୍ଦରୀ ମଧ୍ୟରେ ବର୍ଷାର ସକଳ ଭାବ ବିଭବକୁ ପରିପୂର୍ଣ୍ଣ କରିଦେଇଛନ୍ତି କବି । ବର୍ଷାର ସକଳ ଆବେଗିତ ଉପାଦାନ ସେହି ସ୍ୱପ୍ନାଳସୀ ନାୟିକା ମଧ୍ୟରେ ଏହି ଭାବରେ ରୂପ ଗ୍ରହଣ କରିଛି –

''ଆସ ତପତ ଜୀବନ ସୁଧା
ଏ ମରୁପଥେ ରସ ସଉଦା
ସକଳ ତୃଷା ସକଳ କ୍ଷୁଧା ଚଞ୍ଚଳା
ଆସ ଗୋ ଚାରୁ ହାସିନୀ ଶ୍ୟାମ ଅଞ୍ଚଳା ।

ଆସଗୋ ମୋର ଦିବସ କ୍ରୀଡ଼ା
ଆସଗୋ ମୋର ସାନ୍ଧ୍ୟ ବ୍ରୀଡ଼ା
ଶ୍ରାବଣ ଘନ ନିଶିଥ ପୀଡ଼ା ବ୍ୟଞ୍ଜନା
ଆସ ଗୋ ଉଷା ପ୍ରତୀଚୀ ଭାଲ ରଞ୍ଜନା ।

ବର୍ଷାର ବର୍ଣ୍ଣୋତ୍ସବମୟ ଚିତ୍ର କାଳିନ୍ଦୀଙ୍କ 'ଆଷାଢ଼ ସନ୍ଧ୍ୟା' ଓ 'ବର୍ଷା ଅଶ୍ରୁ' କବିତାରେ ମଧ ସ୍ପଷ୍ଟ ଉପଲବ୍ଧ ହୁଏ । 'ଆଷାଢ଼ ସନ୍ଧ୍ୟା' (କ୍ଷଣିକ ସତ୍ୟ) ଆଷାଢ଼ର ସାନ୍ଧ୍ୟ ବିଭବର ବିଷାଦବତ୍ତୁର ବର୍ଣ୍ଣନା ରହିଥିବା ବେଳେ 'ବର୍ଷା ଅଶ୍ରୁ' (ମହାଦୀପ)ରେ ବର୍ଷାର ଶ୍ୟାମଳ ଅଭିଷେକରେ ଆପଣାର ମଳିନ ଚେତନାକୁ ନିର୍ମଳ ତଥା ଉଜ୍ଜ୍ୱଳ କରିବାର ଅଭିଳାଷ ପୋଷଣ କରିଛି କାବ୍ୟପୁରୁଷ । ପ୍ରଖର ଗ୍ରୀଷ୍ମର ଅସହ୍ୟ ଉତ୍ତାପରେ ତାପିତ ଜୀବସତ୍ତା ବର୍ଷାର ସବୁଜ ଶୀତଳତାର ଅପେକ୍ଷା ରଖିଛି । ସେ ଅପେକ୍ଷା ରଖିଛି ନିଦାଘର ରୁକ୍ଷ ପ୍ରାନ୍ତରରେ ଶ୍ୟାମ ଘାସର ପଲ୍ଲବନର, ଅନ୍ତରରେ ଶୁଦ୍ଧ ତଥା ଶୁଭ୍ର ଶତଦଳର ପବିତ୍ର ହାସ ଖେଳି ଉଠିବାର, ଆକାଶର ଅବସାଦ ଗ୍ରସ୍ତ ଜଡ଼ତା ଭାଙ୍ଗିଯିବାର ଏବଂ ବିଶ୍ୱର ସକଳ କ୍ଷେତ୍ରରେ ନବ ଜୀବନର ଧାରା ଖେଳିଯିବାର –

''ପ୍ରାନ୍ତର ପଥେ ଖେଳି ଉଠୁ ଶ୍ୟାମଘାସ
ଅନ୍ତରେ ଫୁଟୁ କୋମଳ କମଳ ହାସ
ନିର୍ମଳ କରି ଆଲୋକ ପବନ
ନିର୍ମଳ କରି ଧରଣୀ ଗଗନ
ଜୀବନର ଧାରା ଦିଅହେ ଖେଳାଇ ବିଶ୍ୱେ ସକଳ ପଥେ
ଅଶ୍ରୁ ସଳିଳେ ନିର୍ମଳକର ମୋତେ'' (ବର୍ଷାଅଶ୍ରୁ)

ବର୍ଷାରଚିତ୍ର ଦେଲା ବେଳେ ଯେଉଁ ବୈଶାଖର ନିଷ୍ଠୁରତାକୁ ବ୍ୟଙ୍ଗ କରିଥିଲେ କବି 'ବୈଶାଖ ଭାବନା' (ମନେନାହିଁ) କବିତାରେ ସେହି ବୈଶାଖର ବନ୍ଦନା କରିଛନ୍ତି ସେ । କୋକିଳର ପଞ୍ଚମତାନ ଅଥବା ମଧୁମାସର ଜ୍ୟୋତ୍ସ୍ନା କି କୋମଳ ମଳୟ ଏହି ସକଳ ବାସନ୍ତିକ ଉପାଦାନମାନଙ୍କୁ ଏହି କବିତାରେ ଆଦର କରି ପାରିନାହାନ୍ତି ସେ । ଏହି ସକଳ ଉପାଦାନ ମନଭିତରେ ରୁଦ୍ର ଶପଥ ସୃଷ୍ଟି କରି ପାରନ୍ତି ନାହିଁ କି ଧରାରେ 'ଜୈତ୍ର ହୋମଶିଖା' ସୃଷ୍ଟି କରନ୍ତି ନାହିଁ, ଜୀବନ ପଥରେ ଘେରିରହିଥିବା ଜଞ୍ଜାଳ ସବୁକୁ ଦୂରେଇଦେବାର କ୍ଷମତା ଏମାନଙ୍କ ପାଖରେ ନାହିଁ । ପ୍ରାଚୀନ ଭିତରେ ଭରି ରହିଥିବା ଦୀନତା ଏବଂ ନବୀନ ମଧ୍ୟରେ ପରିପୂର୍ଣ୍ଣ ଥିବା ଅପାରଗତାର କାଳିମାକୁ ଧୋଇ ପୋଛି ସେମାନଙ୍କ ମଧ୍ୟରେ 'ପ୍ରାଣମୟ ସୃଷ୍ଟି'ର ସଂଚାର କ୍ଷମତା ଏମାନଙ୍କର କାହାର ନାହିଁ । କେବଳ ବୈଶାଖର ରୁଦ୍ର ରୂପ ହିଁ ପୃଥିବୀରେ ଏକ ଆଗ୍ନେୟ ବିପ୍ଳବ ସୃଷ୍ଟି କରିପାରିବ ଯାହାର ଫଳଶ୍ରୁତି ହେବ ବର୍ଷାର ଶ୍ୟାମଳ

ଅଭିସାର । ସୃଜନର ଏହି ଅମୃତ ଅନୁଭବଟି କବି ଲେଖନୀରେ ଏହିପରି –

''ପ୍ରାଚୀନର ଦୈନ୍ୟ ପରେ ସ୍ପର୍ଶୁ ତବ ଦୃଷ୍ଟି
ନବୀନର କାଳିମାରେ ମୃତ୍ୟୁ କରୁ ବୃଷ୍ଟି
ଧ୍ୱଂସର ସାଧନା ତବ ଲୋଡ଼ିଆଣୁ ପ୍ରାଣମୟ ସୃଷ୍ଟି
ଲୋଡ଼ିଆଣୁ ସୁଶ୍ୟାମଳ ଜୀବନ ବିଭବ
ମର୍ତ୍ତ୍ୟପରେ ସୁଶୀତଳ ଅମୃତ ଉତ୍ସବ
ନବୀନ ପ୍ରାଚୀନ ଦ୍ୱନ୍ଦ୍ୱ ଲଭୁଚିର ଶାନ୍ତ ପରାଭବ ।''

ଶରତର ସ୍ମୃତି ବହନ କରିଥିବା 'ଶରତ ସନ୍ଧ୍ୟା' (ମହାଦୀପ) ଏବଂ ଶିଶିରର ଭାବ ବିଭବକୁ ଆପଣାର କରିଥିବା 'ଶିଶିର ହାସ୍ୟ' (ମହାଦୀପ) ଦୁଇଟି ଋତୁର ରୂପଶୋଭା ପାଠକର ଆଖିଆଗରେ ଖୋଲି ଧରେ । ଶରତର ବିମୁଗ୍ଧ ସୁଷମା ଅବଲୋକନରେ ଭାବ ବିହ୍ୱଳ କବି ଆପଣାର ଦେହ 'ଆଖିମୟ' ହୋଇଯିବାର ଅନୁଭବ କରିଛନ୍ତି । ଦୁଇଟି ଆଖି ଯେପରି ଏପର୍ଯ୍ୟାପ୍ତ ବର୍ଣ୍ଣବିଭବକୁ ଦେଖିବାକୁ ଅସମର୍ଥ । ଅନନ୍ତ ଆଖିରେ ଏ ଦୃଶ୍ୟକୁ ପୁଷ୍ପମଗ୍ନ ଅବିଚଳିତ ଭ୍ରମର ପରି ଉପଭୋଗ କରିବାପାଇଁ ପ୍ରତିଜ୍ଞାପିହିତ ହୋଇଛି ଆଜି କବିସତ୍ତା । ଏହି ବିମୁଗ୍ଧ ରୂପ ଶୋଭା ପାନର ଅମୂର୍ତ୍ତ ଶବ୍ଦ ଚୟନ 'ଶରତ ସନ୍ଧ୍ୟା' କବିତାରେ ଏହିପରି –

''ଆଖିମୟ ଦେହ ମମ
ଲାଖେ ମଧୁଲିଟ ସମ
ସୁଷମାର ମଧୁପାନେ ରମଇ
ଅସ୍ଥିର ପାଦ ନାହିଁ ଗମଇ ।''

'ଶିଶିର ହାସ୍ୟ'ର ଶିଶିର ଶୀତର ନୁହେଁ 'ଭାଦରନିଶି'ର ଶିଶିର । ଏ ଶିଶିର କେବଳ ମାଳତୀର ଆଖିକୁ ଲୁହରେ ଓଦା କରିଦିଏନା, କେତକୀର ସୁବାସକୁ ମଧ ଦଶଦିଗରେ ଖେଳାଇ ଦିଏ । ତାରକା ଖଚିତ ଆକାଶରେ ଖେଳାଇ ଦିଏ ପଞ୍ଚମୀ ଜ୍ୟୋସ୍ନାର ଶୀତ ସମ୍ଭାର ଓ କମନୀୟ କମଳର ସୁକୋମଳ ବୁକୁରେ ଝରାଇ ଦିଏ ନୀଳ ଜଳବିନ୍ଦୁ । ଜୀବନର ସକଳ ଅବସାଦକୁ ଗୋଟିଏ ପଲକରେ ଭୁଲାଇଦେଇ ମିଳନର ପ୍ରାପ୍ତିର ଆନନ୍ଦ ପୃଥିବୀରେ ଖେଳାଇ ଦିଏ –

''ଆକାଶର ଶଶିତାରା ହସିଉଠେ ସହସା
ଫୁଲେ ଫୁଲେ ହାସ୍ୟର ବରଷା
ଧବଳିତ ଧରାତଳେ
ହାସର ଜୁଆର ଚଳେ

ସଜଳ ପରଶ ଲଭି ସରସା
ଫୁଲେ ଫୁଲେ ହାସ୍ୟର ବରଷା ।''

ସମୁଦ୍ର କବିଲେଖନୀରେ ମୁଖ୍ୟତଃ ପାଞ୍ଚୋଟି ରୂପରେ ଉତ୍କୀର୍ଣ୍ଣ । ପ୍ରଥମତଃ ତାର ଭୀମ ଗମ୍ଭୀର ରୂପରେ ସେ ଏକ ବିରାଟ ସତ୍ତାକୁ ପଲକରେ କାବ୍ୟ ପୁରୁଷକୁ ଦେଖାଇଦିଏ । ଦ୍ୱିତୀୟତଃ ନିଖିଳ ବିଶ୍ୱର ଆବିଳତାକୁ ପ୍ରକ୍ଷାଳନ କରି ମଧ ସେ ଆକାଶ ଦର୍ପଣ ଭଳି ନିତ୍ୟ ନୂତନ ଥାଏ । ତୃତୀୟତଃ ବାର୍ଦ୍ଧକ୍ୟଗ୍ରସ୍ତ ଅବସାଦବୋଧ ବିରୋଧରେ ସେ ଯେପରି ନୀରବ ଶବ୍ଦରେ ଅନନ୍ତ ନୀଳିମାର ବାର୍ତ୍ତା ପ୍ରଚାର କରେ । ଚତୁର୍ଥତଃ କବିଚେତନାରେ ସେ ସୁଦୂର ପ୍ରିୟାର ବାର୍ତ୍ତା ଦିଏ । ପ୍ରିୟାର ଆର୍ଦ୍ରଚିକୁର ଏବଂ ମୁକ୍ତ କବରୀର ବାସ୍ନା ସେ ସୁଦୂର ସେପାରୁ ଅନୁଭବିପାରେ । ପଞ୍ଚମତଃ ଏହି ସମୁଦ୍ର ଆପଣାର ବିଶାଳ ବ୍ୟାପକତା ଭିତରେ କବିସତ୍ତାକୁ ପ୍ରସାରିତ କରେ । କବିର ସୀମିତ ସତ୍ତା କ୍ରମେ ବ୍ୟାପକ ହୋଇଯାଏ । ରୂପ ଭିତରେ ବିଶ୍ୱରୂପର ଦ୍ୟୁତି ଖେଳିଯାଏ । ମୁହୂର୍ତ୍ତକ ଭିତରେ ବିଶାଳ ବିଶ୍ୱ ସେ ରୂପ ପାଖରେ ଛୋଟ ହୋଇଯାଏ । ଅନନ୍ତ ନୀଳସିନ୍ଧୁ ସାନ୍ତ ତଡ଼ାଗଟିଏ ପରି ସଂକୁଚିତ ହୋଇଯାଏ । ଅଗଣିତ ତାରା, ଗ୍ରହ, ସୂର୍ଯ୍ୟଚନ୍ଦ୍ର ଆପଣାର ବ୍ୟାପ୍ତି ଓ ଆଲୋକରେ କ୍ଷୀଣ ଓ ସଂକୁଚିତ ହୋଇଯାନ୍ତି । ଧୂଳିଭଳି ସକଳ ଦୃଶ୍ୟମାନ ସଂସାର କବି ସତ୍ତାର ବିଶ୍ୱମୟତା ମଧରେ ବିଲୀନ ହୋଇଯାଏ –

''ନୁହେଁ ମୁଁ କ୍ଷୁଦ୍ର ହେ ସିନ୍ଧୁ !
ନୁହଁଇ ଦୁର୍ବଳ ନୁହେଁ ହୀନ
ଅନ୍ତରେ ଜାଗିଛି ମୋର ଶକତି ପ୍ରାଚୀନ
ଅଛିମୋର ବିଶ୍ୱରୂପ ବିରାଟ ଅସୀମ
ତଡ଼ାଗ ସମାନ ଯହିଁ ତୋର ରୂପ ଭୀମ
ରବିଚନ୍ଦ୍ର ଗ୍ରହ ତାରା ଅକାଶପବନ
ନିଶିଦିନ
ରେଣୁସମ ଯହିଁ ଉଡ଼େ ଲୀନ ।''

ପ୍ରଭାତ ଓ ପ୍ରଭାତ ପରିବେଶକୁ କମ୍ ଭଲ ପାଇନାହାନ୍ତି କାଳିନ୍ଦୀ । ପ୍ରଭାତର ବାର୍ତ୍ତା ବହନ କରିଥିବା ତାଙ୍କର ତିନୋଟି କବିତା 'ହସେ ପାହାନ୍ତି ତାରା' (ଛୁରୀଟିଏ ଲୋଡ଼ା), 'ପ୍ରଭାତ ପ୍ରାସ' (କ୍ଷଣିକ ସତ୍ୟ) ଓ 'ପ୍ରଭାତ' (କ୍ଷଣିକସତ୍ୟ)ରେ ତିନୋଟିର ଭାବଧାରା ବିମ୍ବିତ । 'ହସେ ପହାନ୍ତି ତାରା'ରେ ବିଚ୍ଛେଦଜନିତ ଏକ ଆକୁଳ ଅନ୍ୱେଷଣର ସ୍ୱର ସ୍ପଷ୍ଟ । ଅନୁଜ ଭଗବତୀଙ୍କ ଅକାଳ ବିୟୋଗରେ ସେ ଏହି କବିତାଟି ରଚନା କରିଥିଲେ ୧୯୪୩ ମସିହାରେ । କାର୍ତ୍ତିକର ରାତି ଶେଷର ପାହାନ୍ତି ତାରା ଯେପରି ପୁଣ୍ୟ, ମୁକ୍ତି ଓ ଚେତନାର ବାର୍ତ୍ତାଦିଏ, ସେଇ ବାର୍ତ୍ତା କବି ଅନୁଜ ଭଗବତୀଙ୍କର ପ୍ରତିଟି ପଦକ୍ଷେପରେ ଅନୁଭବ କରିଥିଲେ । 'ଡଗର ପଡ଼ାର ଡଗର'ଙ୍କ ଅକାଳ ତିରୋଧାନ ହିଁ କବିତାର ଭାବବୃତ୍ତକୁ ଆଚ୍ଛନ୍ନ

କରିରଖିଛି । ପ୍ରଭାତର ଗତାନୁଗତିକ ବର୍ଣ୍ଣନା ଏଠାରେ ପୂର୍ଣ୍ଣତଃ ବିରଳ । 'ପ୍ରଭାତ' କବିତା ନିରୁତା ପ୍ରଭାତକାଳୀନ ଦୃଶ୍ୟାବଳୀ ବର୍ଣ୍ଣନାର ଏକ କବିତା । କୁଆଁତାରାର ମୃଦୁହସ, ପ୍ରତୀଚୀ ତୀରରେ ଅସ୍ତହେଉଥିବା ଚନ୍ଦ୍ର, ଶୀତଳ ପବନର ସ୍ପର୍ଶ, ପକ୍ଷିମାନଙ୍କ ଜାଗି ଉଠିବାର କାକଳି ଏ ସବୁ ଭିତରେ ସ୍ନାନାର୍ଥିନୀ ବଧୂମାନଙ୍କର ନଦୀ କୂଳକୁ ଗତି ଏବଂ କୃଷକଙ୍କର ସଂଗୀତ ଭିତରେ ଜୀବନର ଏକ ଚିରନ୍ତନ ପ୍ରବାହବୋଧ ଅତ୍ୟନ୍ତ କଳାତ୍ମକଭାବରେ ମୂର୍ଚ୍ଛିତ –

''ସେ ଆହ୍ୱାନେ ଜାଗେ ବିଶ୍ୱ ପ୍ରାଣ
ବଧୂ ଓହ୍ଲାଇଲେ ଘାଟେ ପଥିକ ଚଳିଲେ ବାଟେ
ଦୂର ବାଆ ବହିଆଣେ ହଳିଆର ଗାନ ।''

'ପ୍ରଭାତ ପ୍ରାସ' କବିତାରେ ପ୍ରଭାତର ବର୍ଣ୍ଣନା ମଧ୍ୟରେ ଅହେତୁକ ବିଷାଦ ବୋଧ ଅତି କଳାତ୍ମକଭାବେ ବ୍ୟଞ୍ଜିତ । ଉଦୟ ଭାନୁର ରକ୍ତିମା, ପ୍ରଭାତୀ ତାରାର ବିଷାଦିତ ଆତ୍ମଗୋପନ ଭଙ୍ଗୀ, ଗୋଲାପ ଅଧରରେ ଲାଖିଥିବା ଶିଶିର, କୁକ୍‌କୁଟର ଅବାରିତ ସ୍ୱର ଝଙ୍କାର, ଡାହୁକର ଧ୍ୱନି, ଧେନୁମାନଙ୍କର ଗୋଷ୍ଠାଭିସାର, କୁସୁମବନକୁ ସ୍ପର୍ଶ କରି ବହୁଥିବା ପବନର ଧୀରଗତି, ପୁଷ୍କରିଣୀରେ ହଂସର ଲୀଳାଚପଳ କ୍ରୀଡ଼ା ଭିତରେ କବି ଏକ ଅହେତୁକ ବିଷାଦବୋଧର ଅନୁସନ୍ଧାନ କରିଛନ୍ତି । ଏ ବ୍ୟଥାର ଅନୁସନ୍ଧାନ କରି କବି ଶେଷରେ ଆପଣା 'ମର୍ମ'ରେ ହିଁ ତାକୁ ଉପଲବ୍ଧ କରିଛନ୍ତି । ପ୍ରଭାତର ଚିତ୍ର ଭିତରେ ବିଷାଦର ଏ ବ୍ୟଞ୍ଜନା କବିତାକୁ ବେଶ୍ ହୃଦୟସ୍ପର୍ଶୀ କରିଛି ।

କାଳିନ୍ଦୀଙ୍କ ଅଧିକାଂଶ କବିତା ସନ୍ଧ୍ୟା ବର୍ଣ୍ଣନାରେ ମୁଖର । କେତେବେଳେ ଏହି ସନ୍ଧ୍ୟା ମିଳନର ଆଦ୍ୟ ଅନୁରାଗରେ ଚଳଚଞ୍ଚଳ ତ ଆଉ କେତେବେଳେ ଏହା ବିରହାନୁଭବରେ ବିଷାଦବତୁର । ପୌଷର ସନ୍ଧ୍ୟା ତାଙ୍କୁ ଭାବପ୍ରବଣ କରିଦେଇଛି । ଏହି ସନ୍ଧ୍ୟା ଜଡ଼କୁ ନବ ସ୍ପନ୍ଦନରେ ସ୍ପନ୍ଦିତ କରିଦଏ । ବିଶ୍ୱବାସୀଙ୍କ ମନ ଓ ପ୍ରାଣକୁ ରଂଜିତ କରିବାର ମୋହନ କଳାକୁ ନିଜ ଭିତରେ ସାଇତି ରଖିଥାଏ ସେ । ହଂସ ପୁଷ୍କରିଣୀର ନୀଳ ଜଳରେ ପହଁରି ସନ୍ଧ୍ୟାର ଶୋଭାକୁ ବହୁଗୁଣିତ କରେ । 'ପଉଷ ସନ୍ଧ୍ୟା'ର ପ୍ରତିଟି ପଂକ୍ତି ହୃଦୟ ଆକର୍ଷକ । ନବାନୁରାଗିଣୀ ନାଗରୀର ଜଳ ଆଣିଯିବା ବେଳର ଶ୍ଳଥ ଗତିର ଚିତ୍ର ଦେବାକୁ ଯାଇ କବି କହନ୍ତି –

''ବଉଦ ଚଳେ ଆକାଶ ପଥେ ବୋଇତ ଚଳେ ସାଗରେ
ଗାଗରୀ କାଖେ ନାଗରୀ ଚଳେ ପରମ ଅନୁରାଗରେ
ପଣରେ ତା'ର ସ୍ୱର୍ଣ୍ଣ ତବ ଅଞ୍ଜନ ହେ ଅଞ୍ଜନ ।
ପଉଷ ଶେଷ ସଂଧ୍ୟାଘେନ ବନ୍ଦନ ।''

ଏ ସନ୍ଧ୍ୟା ଆହୁରି ଅଧିକ ଆକର୍ଷଣୀୟ ହୋଇଯାଏ ଯେତେବେଳେ ବହୁ ଦୂରରୁ ଭାସି ଆସୁଥିବା ଅସ୍ପଷ୍ଟ ବଂଶୀ ସ୍ୱର ଶୁଭିଯାଏ । ପ୍ରଦୋଷ ପବନର ଧୀର ଲହରରେ ଖେଳି ବୁଲୁଥିବା

ଏହି ଚିତ୍ର ଚହଲା ବଂଶୀ ଧ୍ୱନି ସନ୍ଧ୍ୟାରାଗକୁ ଅଧିକ ହୃଦୟଗ୍ରାହୀ କରିଦିଏ । 'ସନ୍ଧ୍ୟାଲୋକେ' (କ୍ଷଣିକ ସତ୍ୟ)ର ଏଇ ପଂକ୍ତିରେ ଏ ଭାବ ଅଧିକ ବ୍ୟଞ୍ଜକ ରୀତିରେ ପ୍ରକାଶିତ –

''ଭାସି ଆସୁଥିଲା ଦୂରୁ ବଂଶୀ ବାଣୀ
ଚଉପାଶେ ସନ୍ଧ୍ୟା ପାତିଥିଲା କାନି
ଧୀରେ ଚୁମ୍ବୁଥିଲା ପ୍ରଦୋଷ ସମୀର ଭାଲେ
ରକତର ଛଟା ଖେଳୁଥିଲା ଶୁଭ୍ର ଗାଲେ ।''

କବିତାର ଅନ୍ତିମ ପର୍ବରେ ବିଷାଦର ସ୍ୱର ସ୍ପଷ୍ଟ । ସନ୍ଧ୍ୟାରାଗରେ ପାଦ ଥାପିଥିବା କବିଙ୍କ 'ପ୍ରାଣର ସଖା' ସେହି ସନ୍ଧ୍ୟାର ଅସ୍ପଷ୍ଟ ଧୂପଛାୟାରେ ତାଙ୍କ ପାଖରୁ ବିଦାୟ ନେଇଯାଇଛି । ପାଇ ପୁଣି ହରାଇବାର ଦୁଃଖକୁ ଭୁଲିପାରି ନାହାନ୍ତି କବି । ତେଣୁ ପରବର୍ତ୍ତୀ କେଉଁ ଏକ ସନ୍ଧ୍ୟାରାଗରେ ଆଉ କୌଣସି ଅନୁରାଗମୟୀ ମନୋହାରିଣୀକୁ ଆସିବାପାଇଁ ଆନ୍ତରିକ ଅନୁମତି ଦେଇପାରୁ ନାହାନ୍ତି କବି । ଏପରି କରିବାର ମୂଳରେ କେବଳ ବ୍ୟକ୍ତିଗତ ମନୋସ୍ଥିତିକୁ କେବଳ ଦାୟୀ କରିନାହାନ୍ତି କବି । ଆକାଶ ଓ ସାଗର ଉଭୟ ଏଠାରେ କବିଙ୍କ ଏହି ସିଦ୍ଧାନ୍ତ ନେବା ପାଇଁ ଦୁଇଗୋଟି ପ୍ରମୁଖ କାରଣ ତତ୍ତ୍ୱ ହୋଇଛନ୍ତି । ସକାଳର ଦେହଳିରେ ଆକାଶ ଦେହରେ ପାଦ ଥାପିଥିବା ସୂର୍ଯ୍ୟ ସନ୍ଧ୍ୟାରେ ଆକାଶଠାରୁ ବିଦାୟନେଇ ତାକୁ ଶୂନ୍ୟ କରିଯାଇଛି । କୌଣସି ଜିନିଷକୁ ପାଇଲେ ଯେ ପରବର୍ତ୍ତୀ ମୁହୂର୍ତ୍ତରେ ତାକୁ ହରାଇବାକୁ ପଡ଼େ ଏହା ଅନୁଭବ କରି ସମୁଦ୍ର କାହାଠାରୁ କିଛି ଗ୍ରହଣ ନ କରି ସଙ୍ଗେ ସଙ୍ଗେ ଫେରାଇ ଦେବାର କଠୋର ସାଧନା ଜାରି ରଖିଛି । ଏହି ଦୁହେଁ କବିଙ୍କୁ ତେଣୁ ଆପଣାର ଅନୁରାଗିଣୀକୁ ପାଖକୁ ନ ଆସିବା ପାଇଁ ମନା କରିବାପାଇଁ ପ୍ରେରଣା ଯୋଗାଇଛନ୍ତି –

''ସନ୍ଧ୍ୟା-ରାଗିଣୀ ରକତ ରାଗରେ ବଢ଼ିଛି ଏ ମୋର ବାସନା
(ତୁମେ) ଅଳତାର ରାଗ ଚରଣେ ଲେଖି ଗୋ ଆସନା ମୋ ପାଶେ ଆସନା !
ମୁଁ ଯେ ବୁଝିଛି ଆକାଶ ବେଦନା
ଆଜି ଶୁଣିଛି ସାଗର ସାଧନା
ତୁମେ ଦିଗ୍‌ବଳୟର କଜଳ ଲେଖି ଗୋ ନ ଆସ ସୁନୀଳ ବସନା
ଆଜି ବଢ଼ିଛି ପରାମୋ ବାସନା ।'' (ବିଶ୍ୱର ଆହ୍ୱାନ : ମହାଦୀପ) ।

'ଚକ୍ରବାକ' କବିତାରେ ଏହି ସନ୍ଧ୍ୟାର ଚିତ୍ର ଅତ୍ୟନ୍ତ କଳାତ୍ମକ ଭାବେ ଉତ୍କୀର୍ଣ୍ଣ । କବିତାଟିରେ ଚକ୍ରବାକର ରାତ୍ରିକାଳୀନ ମନୋସ୍ଥିତି ବ୍ୟଞ୍ଜିତ । ବିରହର ବ୍ୟଞ୍ଜକ ଉପାଦାନ ଭାବେ 'ଚକ୍ରବାକ' (ମନେନାହିଁ) ରେ ପ୍ରଥମେ ମିଳନାତ୍ମକ ବିବାହର ଉପମାନ ପ୍ରସ୍ତୁତ ହୋଇଛି । ସନ୍ଧ୍ୟାରେ ଦିନ ଓ ରାତିର ବିବାହ ଅନୁଷ୍ଠିତ ହୁଏ ଏବଂ ସହଚରୀ ରୂପେ ସନ୍ଧ୍ୟା ନବବଧୂର ପାଦରେ ମାଖିଦିଏ ଅଳତାର ଦାଗ ଏବଂ ବରର ପାଦରେ ପ୍ରଥମ ବିବାହ ମାଙ୍ଗଳିକ

ଅଳତା ପିନ୍ଧାଇ ଦିଏ । ଏହି ଚିତ୍ରଟି କାଳିନ୍ଦୀଙ୍କ ଲେଖନୀରେ ଅତ୍ୟନ୍ତ କଳାତ୍ମକ ଭାବେ ଉତ୍କୀର୍ଣ୍ଣ –

''ଦିବସ ନିଶାର ଏହି ବିବାହ ସମ୍ଯୋଗେ
ପ୍ରତୀଚୀର ଅଙ୍ଗେ
ସନ୍ଧ୍ୟା ସହଚରୀ କିବା ଲେଖଇ ଅଳତା
ପକ୍ଷୀକଣ୍ଠ ମୁଖରଇ କି ମଙ୍ଗଳ କଥା ।''

ମିଳନର ଏହି ସ୍ୱର କେବଳ ଚକ୍ରବାକର ବିରହ କାତର ସ୍ଥିତିକୁ ବହୁଗୁଣିତ କରିବା ପାଇଁ ପ୍ରଦତ୍ତ । ସନ୍ଧ୍ୟାରେ ତଥାପି ପ୍ରିୟତମାଠାରୁ ବିଦାୟ ନେଇ ନଥିବା ଚକ୍ରବାକ ଲଘୁପକ୍ଷରେ ସଂଚାରିତ ହୋଇ ଆସିଥିବା ଅନ୍ଧାରକୁ ଅପେକ୍ଷା ରଖିଛି ଯେତେବେଳ କି ସେ ତାର ପ୍ରିୟାକୁ ରାତିକ ପାଇଁ ବିଦାୟ ଦେବ । ସେଇ ଅନ୍ଧାରର କ୍ରମ ସଞ୍ଚରଣ ସ୍ଥିତି କବି ଲେଖନୀରେ ଅଧିକ କଳାତ୍ମକ ହୋଇ ଉଠିଛି ଯେତେବେଳେ କବି କହନ୍ତି ଯେ କବିର 'କରୁଣ ଛନ୍ଦ' ଭଳି ଅନ୍ଧାର ଭଳି ଅନ୍ଧାର କ୍ରମେ କ୍ରମେ ଚାରିଆଡ଼େ ଘୋଟିଆସିଛି । ଏଠାରେ 'କରୁଣ ଛନ୍ଦ' ଏହି ଶବ୍ଦ ପୁଞ୍ଜର ବିଷାଦର ଏକ ଉଚ୍ଚାଟିତ ଅନୁଭବ ମୂର୍ତ୍ତ ହୋଇ ଉଠିଛି ଯାହା ପରିବେଶକୁ ଅଧିକ ବିଷାଦମୁଖର କରିଦେଇଛି (କବିର କରୁଣ ଛନ୍ଦ ସମ / ଚଉଦିଗେ ଘୋଟି ଆସେ ଧୀରେ ଧୀରେ ତମ ।) 'ସନ୍ଧ୍ୟାପଥେ' (କ୍ଷଣିକ ସତ୍ୟ) ର ସନ୍ଧ୍ୟାର ଚିତ୍ର 'ଚକ୍ରବାକ' ପରି ଏତେ ପ୍ରଭାବଶାଳୀ ନୁହେଁ । ଆଷାଢ଼ ପବନ, ଆମ୍ରବନ ଓ ନବନୀତ ପରଶ ଆଦି ଅନୁଷଙ୍ଗ ଭିତରେ ସନ୍ଧ୍ୟାର ଏହି ଚିତ୍ର ଏତେଟା ପ୍ରଭାବୋତ୍ପାଦକ ନହେଲେ ମଧ ‌କବିତାର ଅନ୍ତିମ ଭାଗରେ ସନ୍ଧ୍ୟାର କ୍ରମପରିବ୍ୟାପ୍ତ ଅରୂପମୟତାର ବର୍ଣ୍ଣନା ଅତ୍ୟନ୍ତ ରୋଚକ ଭାବେ ବର୍ଣ୍ଣିତ । ଦିନରେ ଦିଶୁଥିବା ସକଳ ରୂପମୟତା ସନ୍ଧ୍ୟାରେ କ୍ରମେ ଅରୂପ ହୋଇ ଆସେ ଏବଂ ସକଳ ଦୂରବର୍ତ୍ତୀ ପୃଥକ୍ ଉପାଦାନ ଏକ ଅସୀମ ଅରୂପ ସତ୍ତା ମଧ୍ୟରେ ନିକଟେଇ ଆସେ । ଏପରିକି ନିଜ ଦେହର ସ୍ୱାତନ୍ତ୍ର୍ୟ ମଧ୍ୟ ସେହି ଅନନ୍ତ ଅରୂପତା ମଧ୍ୟରେ ଏକାକାର ହୋଇଯାଏ ଏବଂ ସେହି ଅରୂପ ସତ୍ତାକୁ ଆପଣାର ପ୍ରଣତି ନିବେଦନ କରେ –

''ନିଭିଲା ଦୂର ଶଇଳ ଚୂଡ଼ା କାନନ ଗଲା ଭାସି
ଅରୂପ ହେଲା ଧରାର ରୂପରାଶି ।
ସକଳ ଦୂର ନିକଟ ହେଲା ନିବିଡ଼େଗଲା ଛୁଇଁ
ସବୁଜଗିରି କାନନ ନଦୀଭୂଇଁ
ଏ ଦେହ ମୋର ନିଭିଗଲା ଏଥି ଜଣାଇ କାରେ ନତି ।''

ସନ୍ଧ୍ୟାର ବିଷାଦବିଧୁର ଚିତ୍ର 'ଆଷାଢ଼ ସନ୍ଧ୍ୟା' (କ୍ଷଣିକ ସତ୍ୟ) ଓ 'ଲୋହିତ ବ୍ୟଥା' (ମନେନାହିଁ) କବିତା ଦୁଇଟିରେ ଅତ୍ୟନ୍ତ କଳାତ୍ମକ ଭାବେ ବ୍ୟଞ୍ଜିତ । ଆଷାଢ଼ର ସନ୍ଧ୍ୟାକାଶକୁ

ଚାହିଁ କବି ଆପଣାର ଅନ୍ତରରେ 'ପରାସ' ଏବଂ ଚକ୍ଷୁରେ 'ଅଶ୍ରୁ'ର ଉପସ୍ଥିତିକୁ ପ୍ରତ୍ୟକ୍ଷ କରିଛନ୍ତି । ଏ ଭାବ ଅଧିକ ବ୍ୟଞ୍ଜକ ହୋଇ ଉଠିଛି ଆଷାଢ଼ର ଦୂବଘାସ ଉପରେ କଜଳ କଳା ମେଘରୁ ଝରିପଡୁଥିବା ଟୋପା ଟୋପା ବର୍ଷା ବିନ୍ଦୁ ଭିତରେ । ବର୍ଷଣମୁଖର ଏହି ସନ୍ଧ୍ୟା କବିଙ୍କୁ ଗୋଟିଏ ସିଦ୍ଧାନ୍ତରେ ନେଇ ପହଞ୍ଚାଇଛି ଯେ ସେ ଏକାକୀ (ସାଥୀ ହୀନ ମୁହିଁ କିବା ସାରା ମହୀରେ / ବିଜନ ବରଷା ପଥେ କେହି ନାହିଁରେ) । ସନ୍ଧ୍ୟାର ଏହି ବିଷାଦିତ ଚିତ୍ତବୃତ୍ତି 'ଲୋହିତ ବ୍ୟଥା' କବିତାରେ ଅଧିକ ସାର୍ଥକ । ଚିତ୍ତ ବୃତ୍ତିର ପ୍ରେରକ ଉପାଦାନଟି ହୋଇଛି ଦୂର ବିଲ ବନ ପଥରେ କାନ୍ଦିଉଠିଥିବା ବଂଶୀ । ଏହାରି ଧ୍ୱନି କବିଚେତନାର ସୁଦୂର ଅତୀତର ବେଦନାବିଧୁର ସ୍ମୃତିକୁ ମନେ ପକାଇଦେଇଛି ଯାହା ସନ୍ଧ୍ୟାର 'ସଜଳ ନେତ୍ର' ଏହି ଚିତ୍ରଟି ମଧ୍ୟରେ ଅଧିକ ବ୍ୟଞ୍ଜକ ହୋଇଛି –

''ଦୂର ଅତୀତର ଶୁଭୁଥିଲା ଭାଷା
କି ଗହନ ବ୍ୟଥା, ଦୁରନ୍ତ ଦୁରାଶା
ସନ୍ଧ୍ୟା ସୁନ୍ଦରୀ ସ୍ୱର୍ଣ୍ଣ ମେଘର ରଥେ
ସଜଳ ନୟନେ ଚାହିଁଥିଲା ବନପଥେ ।''

କାଳିନ୍ଦୀ ମୁଖ୍ୟତଃ ସନ୍ଧ୍ୟାର କବି । ସନ୍ଧ୍ୟାର ଚିତ୍ର ଦେଲାବେଳେ ତାଙ୍କ ଭାବପ୍ରବଣ କବିସତ୍ତା ଆନନ୍ଦ ଅପେକ୍ଷା ବିଷାଦକୁ ହିଁ ଅଧିକ ଆପଣାର କରିଛି । ତାଙ୍କର ଅଧିକାଂଶ କବିତା ସନ୍ଧ୍ୟାରାଗର ସଫଳ ଚିତ୍ରଣରେ ବର୍ଣ୍ଣୋତ୍ସବମୟ ହୋଇପାରିଛି ।

## ।। ସାତ ।।

କବିତା ଜୀବନର କଥା କହେ ଏବଂ ଜୀବନର ନିର୍ଦ୍ଦିଷ୍ଟ ଦାର୍ଶନିକ ଅବବୋଧ ପ୍ରତ୍ୟେକ କବିସତ୍ତାକୁ ଉଚ୍ଚକିତ କରିଥାଏ । କାଳିନ୍ଦୀଙ୍କ କାବ୍ୟ ଚେତନାରେ ଦାର୍ଶନିକ ଭାବବୋଧ ସହଜରେ ବାରିହୋଇପଡ଼େ । ଗଙ୍ଗାଧରଙ୍କ ପରେ ପରେ ଓଡ଼ିଆ କବିତା କ୍ଷେତ୍ରରେ ଅନେକ କବି ଜୀବନ ତଥା ଜଗତକୁ ଆଧାର କରି ଗଢ଼ି ଉଠିଥିବା ବିଭିନ୍ନ ଦାର୍ଶନିକ ଅବବୋଧକୁ କବିତାରେ ଧରି ରଖିବାର ପ୍ରୟାସ କରିଛନ୍ତି । ବିଶେଷ କରି ପୂର୍ବ ପ୍ରତିଷ୍ଠିତ ସିଦ୍ଧାନ୍ତର ବିରୋଧୀସ୍ୱର ନିଜ କବିତାରେ ସୃଷ୍ଟିକରି ତାର ଯାଥାର୍ଥ୍ୟ ପ୍ରତିପାଦନ କରିବାକୁ ପ୍ରୟାସ କରିଛନ୍ତି ଏହି କବିମାନେ । ଗଙ୍ଗାଧରଙ୍କ 'ମହାନ୍ଧକାର' (ଅର୍ଘ୍ୟଥାଳି) କବିତାକୁ ଏହାର ଉଦାହରଣ ଭାବେ ଗ୍ରହଣ କରାଯାଇପାରେ । ଯୁଗେ ଯୁଗେ ଅନ୍ଧକାର ଅପେକ୍ଷା ଆଲୋକର ଜୟଗାନ କରାଯାଇଛି । ଭାରତୀୟ ଆର୍ଯ୍ୟ ଋଷିମାନେ ଅନ୍ଧାରରୁ ଆଲୋକ ଆଡ଼କୁ ଚାଲିଯିବା ପାଇଁ ଆପଣାର ଉନ୍ମୁଖତା ପ୍ରକାଶ କରିଛନ୍ତି । ମାତ୍ର 'ମହାନ୍ଧକାର' କବିତାରେ ଗଙ୍ଗାଧର ଅନ୍ଧକାରର ନିତ୍ୟତା ତଥା ସନାତନତ୍ୱର ପ୍ରତିଷ୍ଠା କରିଛନ୍ତି ଆପଣାର ଯୁକ୍ତିବାଦୀ ବିଶ୍ଳେଷଣ ପ୍ରକ୍ରିୟା ମାଧ୍ୟମରେ । କାଳିନ୍ଦୀଙ୍କ 'ଜଡ଼ଦର୍ଶନ' (ମହାଦୀପ) ମଧ୍ୟ ଏହି ଧରଣର ଏକ କବିତା ।

କବିତାର ପ୍ରଥମ ପର୍ଯ୍ୟାୟରେ ଜନ୍ମ ଓ ମୃତ୍ୟୁର ରହସ୍ୟମୟତାରେ ଆଶ୍ଚର୍ଯ୍ୟ ଚକିତ ହୋଇ ପଡ଼ିଛି କବିସତ୍ତା । ଜୀବନର ଉଦ୍ଦେଶ୍ୟ ସମ୍ପର୍କରେ ତାର ମନରେ ପ୍ରଶ୍ନ ପରେ ପ୍ରଶ୍ନ । ଏହା ପରେ ପଞ୍ଚଭୂତରୁ ସୃଷ୍ଟି ହୋଇଥିବା ବିଶ୍ୱସୃଷ୍ଟି ଓ ସକଳ ପ୍ରାଣୀବର୍ଗ ଶେଷରେ ଯେଉଁ ପଞ୍ଚମହାଭୂତରେ ଲୀନ ହୋଇଯିବେ ସେହି ପଞ୍ଚଭୂତ ଯେ କେବଳ ଜଡ଼ତ୍ୱର ସମାହାର ଏହା କବିତାର ମଧ୍ୟାଂଶରେ ପ୍ରତିପାଦନ କରିବାକୁ ପ୍ରୟାସ କରିଛନ୍ତି କବି । ବିଶ୍ୱରେ ନିତ୍ୟ ପ୍ରବୃତ୍ତ ସ୍ଥିତିରେ ଥିବା ଏହି ପଞ୍ଚମହାଭୂତ ଯେ କେବଳ ଜଡ଼ତାର ସମାହାର ବ୍ୟତୀତ ଅନ୍ୟକିଛି ନୁହେଁ, ଏହା କବିତାର ଅନ୍ତିମ ପର୍ଯ୍ୟାୟରେ ବର୍ଣ୍ଣିତ ହୋଇଛି –

''ହେ ଜଳ ପବନ ଅଗ୍ନି ମୃତ୍ତିକା ଆକାଶ ମହାଭୂତ ।
ଯାହା ଘେନିଧରେ ପ୍ରାଣ ଯାହା ଛାଡ଼ି ଶେଷେ ହୁଏ ମୃତ ।
ତୁମେ ମୋର ଆଦି ଅନ୍ତ ତୁମେ ମୋର ସବୁ ସାନବଡ଼ ।
ତୁମେ ସତ୍ୟସନାତନ ଜ୍ଞାନ ରୂପୀ ଜଡ଼ ଆହେ ଜଡ଼ ।''

କାଳିନ୍ଦୀଚରଣଙ୍କ ଅନ୍ୟ ଏକ କବିତା 'ଶୂନ୍ୟ ଚିନ୍ତା' (ମହାଦୀପ)ରେ ଶୂନ୍ୟର ଯେଉଁ ବର୍ଣ୍ଣନା ପ୍ରଦତ୍ତ ହୋଇଛି ତାହା ମଧ୍ୟକାଳୀନ ଓଡ଼ିଆ ଜ୍ଞାନ ମିଶ୍ରା ଭକ୍ତି ମାର୍ଗୀୟ ଶୂନ୍ୟବାଦଠାରୁ ଭିନ୍ନ । ଏହି ଶୂନ୍ୟତା ମୁଖ୍ୟତଃ ଅସୀମ ଓ ଅନନ୍ତର ସୂଚନା ଦେଉଥିଲେ ମଧ୍ୟ ଏହାକୁ ଅଙ୍କ ଶାସ୍ତ୍ରର ଆଦିମ ମୂଳ ଏବଂ ସଂଖ୍ୟାର ଚରମ ସ୍ଥିତି ବୋଲି ଘୋଷଣା କରିଛନ୍ତି କବି (ସଂଖ୍ୟାର ଚରମ ତୁମେ ଗଣକର ଗଣନାର ଶେଷ / ଅଙ୍କର ଆଦିମ ଶୂନ୍ୟ ଆଦିମୂଳ ବିଶ୍ୱର ବିଶେଷ !) । ଏହି ଶୂନ୍ୟତା ଯୁଗେ ଯୁଗେ ମାନବ ମନରେ ଯେଉଁ ନାସ୍ତିବାଦ ସୃଷ୍ଟି କରିଛି, କବି ସେ ନାସ୍ତିକତାକୁ ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ସେହି ଅନନ୍ତ ଶୂନ୍ୟ ନିରାକାର ସତ୍ତାରେ ଆପଣାର ସାକାର ଜୀବନସତ୍ତାକୁ ପ୍ରତିଫଳିତ କରିବାକୁ ପ୍ରୟାସ କରିଛନ୍ତି କବି –

''ନିରାକାର କୋଳେ ମୋର ସାକାରଜୀବନ ଯିବି ରଚି,
'ନାହିଁ' ମଧ୍ୟେ ଚିତ୍କାରିବି ଅଛି ସବୁ ଅଛି ! ଅଛି ! ଅଛି !''

ଏହି 'ସବୁ ଅଛି'ର ଅନୁଭବ ଖାଲି ଆଖିରେ ହୋଇପାରେନାହିଁ । ଶୂନ୍ୟ ଭିତରେ ପୂର୍ଣ୍ଣର ସ୍ଥିତିକୁ ଲକ୍ଷ୍ୟ କରିବାର କଳାକୌଶଳ କେବଳ ଅନନ୍ତ ଜୀବନ ସ୍ରୋତ ସନ୍ଧାନୀର ଆଖିରେ ଥାଏ । 'ସୃଜନ ବ୍ୟଥା' (ମହାଦୀପ) କବିତାରେ ଏହି ଆପାତ ଅନୁଭୂତ 'ଶୂନ୍ୟତା' ମଧ୍ୟରେ ପୂର୍ଣ୍ଣତାର ସନ୍ଧାନ ଦେଇଛି କାବ୍ୟନାୟକ । ସେହି ସୂକ୍ଷ୍ମତମ ଶୂନ୍ୟସତ୍ତା ମଧ୍ୟରେ ଯେ ଜୀବନର ଗୀତି ଏବଂ ଅନନ୍ତକୋଟୀ ପାରମାଣବିକ ଚେତନା ପରିପୂର୍ଣ୍ଣ ରହିଛି, ତାହା ସେ ସ୍ପଷ୍ଟ ଘୋଷଣା କରିଛି ।

''ମାନବ ନୟନେ ଯାହା ଶୂନ୍ୟ ବୋଲି ହୁଅଇ ପ୍ରତୀତି
ସୂକ୍ଷ୍ମତମ ସେହି ଶୂନ୍ୟେ ପୂରିଅଛି ଜୀବନର ଗୀତି

କୋଟି ଚେତନାର ଅଣୁ ପରମାଣୁ ରସେ
ରୂପେ ରୂପେ ଏ ସୃଷ୍ଟି ବିଳସେ ।''

ସଂସାରର କ୍ଷଣ ଭଙ୍ଗୁରତା ସମ୍ପର୍କରେ ପୂର୍ଣ୍ଣ ସଚେତନ କାବ୍ୟ ନାୟକ । ଏହାର କାରଣ ଖୋଜି ବସିବା ଯେପରି ନିରର୍ଥକ ନିରାକରଣ ପାଇଁ ଚିନ୍ତା କରିବା ସେହିପରି ମୂଲ୍ୟହୀନ । ଏହି କ୍ଷଣଭଙ୍ଗୁରତା ହିଁ ସଂସାରର ନିୟମ । ଚନ୍ଦ୍ରକୁ ରାହୁ ଗ୍ରାସ କରିବା, ଉଷା କ୍ରମେ ଦିବସ ଦେଇ ପ୍ରଦୋଷରେ ବିଲୀନ ହେବା, ପୂର୍ଣ୍ଣଭାବେ ବିକଶିତ ନହେଉଣୁ କିଛି ଫୁଲ ତଳେ ଝରି ପଡ଼ିବା, ଅଥଳ ସମୁଦ୍ରରେ ନୌକା କୂଳସ୍ପର୍ଶ କରିବା ପୂର୍ବରୁ ବିଲୀନ ହୋଇଯିବା ଆଦି ଏକାନ୍ତ ସତ୍ୟ । ଏହାର କାରଣ ସମ୍ପର୍କରେ ମଣିଷ ସବୁବେଳେ ଅଜ୍ଞ । ମାତ୍ର ଏହା ଏକ ଅବାରିତ ସତ୍ୟ –

''କେତେ ଶଶି ଗ୍ରାସେ ରାହୁ କେତେ ଉଷା ମରଇ ଶ୍ରାବଣର ଅନ୍ଧାର କୋଳେ
ନ ଫୁଟୁଣୁ କେତେ ଫୁଲ ନ ହସୁ ପବନ ତୁଲ ଝଡ଼ିପଡ଼େ ଆହା ଧୂଳି ତଳେ
ନ ଲାଗୁଣୁ କୂଳେ ତରୀ ନୀଳ ଜଳରାଶିରେ କ୍ଷଣ କରେ ଯାଏ ସେ ମିଳାଇ
କେତେପଥ ହଜିଯାଏ ଆହା କ୍ଷଣପ୍ରଭା ପ୍ରାୟେ କେଉଁ ଗିରିବନ ଦେଶେ କାହିଁ । ''
(ବ୍ୟଥାର ସାଧନ : ଛୁରୀଟିଏ ଲୋଡ଼ା)

ଏହି ନଶ୍ୱର ଭାବ ହିଁ ମନୁଷ୍ୟ ମଧ୍ୟରେ ନାସ୍ତିକତା ତଥା ଜୀବନର ଅସ୍ତ୍ୟାତ୍ମକ ଦୃଷ୍ଟିକୋଣର ବିରୋଧୀ ଭାବ ସୃଷ୍ଟିକରେ । ଚିରନ୍ତନ ସତ୍ୟକୁ ଖୋଜିବାକୁ ପ୍ରୟାସ କରି ବିଫଳ ହେବାପରେ ମଣିଷ କ୍ରମେ ସଂସାରକୁ ମିଛ ମାୟାର ଘର ବୋଲି ଅନୁଭବ କରେ । ଧର୍ମ ସତ୍ୟ ଏବଂ ଭଗବାନଙ୍କ ବିରୁଦ୍ଧରେ ସେ ଅଙ୍ଗୁଳି ଉତ୍ତୋଳନ କରେ । 'ବ୍ୟଥା ଗୀତି' (ଛୁରୀଟିଏ ଲୋଡ଼ା) କବିତାରେ ଏ ଭାବଧାରା ବେଶ୍ ଉଜ୍ଜ୍ୱଳ –

''ସକଳ ମିଥ୍ୟା ସକଳ ଅନ୍ଧକାର
ସତ୍ୟ କାହିଁରେ କାହିଁଛି ଆଲୋକ ଦ୍ୱାର
ଧର୍ମପୁଣ୍ୟ ଭୁଲିଛି ମାନବ
ବିଶ୍ୱ ଶାସଇ ପାପର ଦାନବ
କାହିଁଛି ଧର୍ମ କାହିଁଛି ସତ୍ୟ କାହିଁ କାହିଁ ଭଗବାନ ?
ପୁଲକି ପୁଲକି ନାଚି ଉଠ ଆରେ ପ୍ରାଣ ।''

ଏହି ବେଦନାବୋଧ ଭିତରୁ କାବ୍ୟପୁରୁଷ ମାର୍ଗ ଖୋଜିଛି 'ନୀରବ ଆହ୍ୱାନ' (ମହାଦୀପ) କବିତାରେ । ଜୀବନର ସକଳ ବେଦନାବୋଧ ସତ୍ତ୍ୱେ ଜୀବନକୁ ଅସ୍ୱୀକାର ନକରି ଏକ 'ସ୍ୱପ୍ନ ରାଜ୍ୟ' ମଧ୍ୟରେ ମନକୁ ହଜାଇ ଦେବାର ସିଦ୍ଧାନ୍ତ ନେଇଛି ସେ । ସେହି ସ୍ୱପ୍ନଘନ ନୀରବ ସମାଧି ମଧ୍ୟରେ ସେ ସଫଳକାମ ହେବାର ପ୍ରୟାସ କରିଛି । ଅତୀତର ସକଳ

ବ୍ୟଥାପ୍ରଦ ଅନୁଭୂତିକୁ ଭୁଲି ବସିବାକୁ ସିଦ୍ଧାନ୍ତ କରିଛି ସେ । ନେତ୍ରରେ ଦେଖିଥିବା ସକଳ ବର୍ଣ୍ଣୋତ୍ସବମୟ ଉପାଦାନ, କର୍ଣ୍ଣରେ ଶୁଣିଥିବା ସକଳ 'ମଧୁବାଣୀ', ଅନ୍ୟ ଇନ୍ଦ୍ରିୟମାନଙ୍କ ପ୍ରମତ୍ତ କେଳିବିଳାସ ଭିତରେ ତୃପ୍ତି ନପାଇ ତଥାପି ଅତୃପ୍ତ ରହିଥିବା କାବ୍ୟନାୟକର ବିକଳ ମାନସିକ ସ୍ଥିତି 'ମନେନାହିଁ' କବିତାରେ ଅତ୍ୟନ୍ତ ଭାବୋଦ୍ଦୀପକ–

''ମୋହିଲା ନୟନ କେତେ ରୂପେ କେତେ ବର୍ଣ୍ଣେ
ସଦ୍ୟମୋର
କେତେ ମଧୁବାଣୀ ପଶିଯାଇଛି କର୍ଣ୍ଣେ
ମଧୁକର
ପାଞ୍ଚ ଇନ୍ଦ୍ରିୟେ ଷଡ଼ରିପୁ କଲେ ବିହାର
ମହାତୋଷେ ସରସ ହୋଇଲା ଏ ଦେହର ଦଶ ଦୁଆର
ନବରସେ
ତଥାପି କାହିଁତ ନଲଭେ ପରାଣ ତୃପତି
ସବୁପାଇଁ
ବୁଝାଇ ନିଜକୁ କରିଥିଲି କେତେ ଯୁକତି
ମନେ ନାହିଁ ' ।

ଏହି ବିଷଣ୍ଣ ତଥା ବିଷାଦିତ ଜୀବନର କାରଣ ଖୋଜିବାକୁ ଯାଇ କାବ୍ୟନାୟକ ଏକ ପରିପକ୍ୱ ମନୋସ୍ଥିତିରେ ବିଚାର କରି ବସିଛି ଯେ ଜୀବନର ବିଭିନ୍ନ ଅବସ୍ଥା ରୂପକ ହାଟରେ ସେ ସବୁବେଳେ ହାରିଯାଇଛି । ସମସ୍ତେ ତାର ଜ୍ଞାତ ଅଥବା ଅଜ୍ଞାତସାରରେ ତାକୁ ଠକି ଦେଇଛନ୍ତି । 'ଅଭୟ' (ମନେନାହିଁ) କବିତାରେ କାବ୍ୟନାୟକର ଏ ଅନୁଭବ ବେଶ୍ ଶାଣିତ (ଜୀବନର କାରବାର ଘେନି ସବୁହାଟେ ଗଲି ସିନା ଠକି) । ମାତ୍ର ଏହି ଠକାମିର ହେତୁ ବାହାରେ ନୁହେଁ ତା ଭିତରେ ଯେ ବିଦ୍ୟମାନ ଏହା କବିତାର ଅନ୍ତିମ ପଂକ୍ତିରେ ବର୍ଣ୍ଣିତ –

''ନିରାଶର ସବୁଦେଶୁଁ ଫେରି
ନିରେଖିଲି ନିଜ ହାତ ବେଡ଼ି
ସବୁଠାରୁ ନିଜ ପାପ ବେଶି
ବଜାଉଛି ସଦା ଜୟଭେରୀ !''

ଜୀବନପ୍ରତି ଏ ସକଳ ନାସ୍ତ୍ୟାତ୍ମକ ଦୃଷ୍ଟିକୋଣ ଭିତରେ ଜୀବନକୁ ଏବଂ ଜୀବନର ଉପସ୍ଥିତିର ସୂଚକ ଦେହ ସତ୍ତାକୁ ଭଲପାଇବାକୁ ପଶ୍ଚାତପଦ ହୋଇନି କାବ୍ୟନାୟକ । ଜୀବନର ସକଳ ପ୍ରତିକୂଳଭାବ ଉଦାହରଣ ସ୍ୱରୂପ ପାପ, ଲାଜ, ଭୟ, ଗର୍ବ ଓ ଘୃଣା ଆଦିକୁ 'ପାପ' (ମହାଦୀପ) କବିତାରେ ଏକ ଅସ୍ତିବାଦୀ ଦୃଷ୍ଟିକୋଣରୁ ଗ୍ରହଣ କରିନେଇଛି ସେ । ପାପ ତାଙ୍କୁ ସ୍ତୁତିଠାରୁ ଅଧିକ ଲୋଭନୀୟ ବୋଲି ମନେହୋଇଛି, ଲାଜ ତାକୁ 'ପେଲବ

ପରଶ' ଭଳି ପ୍ରତୀତ ହୋଇଛି । ଭୟ ତା ମନରେ ଅସୀମ ବଳ ସୃଷ୍ଟି କରିଛି । ଅପମାନ ତାର ଖ୍ୟାତି ପ୍ରତିଷ୍ଠା କରିଛି । ଜୀବନର ପ୍ରତ୍ୟେକ ଅନୁଭବର ମୂଳକାରଣ ହେଉଛି ଦେହ । ଦେହ ବ୍ୟତୀତ ଅନ୍ୟ କାହାରି ଅସ୍ତିତ୍ୱ ଉପଲବ୍ଧ ହୁଏ ନାହିଁ । ସଂସାରର ସବୁଖେଳ; ସବୁ ଆଦାନ ପ୍ରଦାନର ମୂକ ସାକ୍ଷୀ ତେଣୁ କାବ୍ୟନାୟକର ବିଚାରରେ ଏହି 'ଚାରୁଚର୍ମ' । ସେ ବିଶ୍ୱାସ କରିଛି ଯେ ଦେହ ପାଇଁ ମଣିଷ ଯାଗଯଜ୍ଞ କରେ । ଦେହ ପାଇଁ ମଣିଷ ଦୁର୍ଦ୍ଧର୍ଷ ସଂଗ୍ରାମ କରେ । ଦେହ ବ୍ୟତୀତ ଜଗତରେ ଅନ୍ୟ କୌଣସି ଉପାଦାନ ତେଣୁ ମଣିଷର ପ୍ରିୟ ନୁହେଁ । 'ଏ ଦେହକୁ ଭଲପାଏ ମୁହିଁ' (ମହାଦୀପ) କବିତାରେ ଏହି ଭାବବୋଧ ବଞ୍ଚିତ । ଏ ସ୍ଥିତିରେ ସେ ଆଉ ଜୀବନ ପ୍ରତି ଏକ ନେତିବାଦୀ ଦୃଷ୍ଟିକୋଣ ନୁହେଁ, ଅସ୍ତିବାଦୀ ଦୃଷ୍ଟିକୋଣ ପୋଷଣ କରିଛି ଏବଂ ସକଳ ଦୁଃଖ ବେଦନାକୁ ଜୀବନର ଏକ ଅଳଙ୍କାରଭାବେ ଗ୍ରହଣ କରିନେଇଛି । ଯେଉଁ ପର୍ଯ୍ୟନ୍ତ ଓଠରେ ଭାଷା ଅଛି, ମୁହଁରେ ହସ ଏବଂ ଆଖିରେ ଯୁଗପତ୍ ଆନନ୍ଦ ଓ ବିଷାଦର ଅଶ୍ରୁବିନ୍ଦୁ ଅଛି ସେ ପର୍ଯ୍ୟନ୍ତ ସେ ପରିପୂର୍ଣ୍ଣ ଜୀବନ ସତ୍ତାର ଅଧିକାରୀ, ଯାହା 'କାମଧେନୁ ଗାଭୀ' ଭଳି ତାର ସକଳ ଅଭିଳାଷକୁ ପୂରଣ କରିପାରେ –

''ଭାଷା ଯେବେ ତୋର ଜୀବିତ ରହିଛି ବଦନେ ହାସ,
ଜଳି ଉଠେ ଆଶା ଆଖିରେ ପୂରାଇ ଲୋତକ ପ୍ରାସ
ଅଛି ତେବେ ସବୁ ଅଛି କାମଧେନୁ ଜୀବନ ଗାଭୀ,
ଜଗତରୁ ବଳି କି ଲୋଡ଼ୁ ଅଧିକ କହ ତ ଭାବି ।''

## ॥ ଆଠ ॥

କାଳିନ୍ଦୀଙ୍କ କାବ୍ୟମାନସ ପ୍ରଥମ ପର୍ଯ୍ୟାୟରେ ରବୀନ୍ଦ୍ରଚେତନାରେ ଉଦ୍ଦୀପିତ ହୋଇ ବିଶ୍ୱସ୍ରଷ୍ଟାଙ୍କ ଉଦ୍ଦେଶ୍ୟରେ ଆପଣାର ପ୍ରଣତି ନିବେଦନ କରିଥିଲେ ମଧ ପରବର୍ତ୍ତୀ ପର୍ଯ୍ୟାୟରେ ସାମ୍ୟବାଦୀ ଚେତନା ଦ୍ୱାରା ପ୍ରଭାବିତ ହୋଇ ଭଗବାନଙ୍କ ଅସ୍ତିତ୍ୱ ଓ ଆଚରଣ ସମ୍ପର୍କରେ ସନ୍ଦେହୀ ହୋଇ ଉଠିଛି । ମାତ୍ର କାବ୍ୟପୁରୁଷର ଅନ୍ତରରେ ସେହି ପରମସତ୍ତା ପ୍ରତି ଭକ୍ତି, ଭୟ, ପ୍ରୀତି ଏବଂ ମମତା ପରିପୂର୍ଣ୍ଣ ହୋଇ ରହିଛି । ଏହା କାଳିନ୍ଦୀ କାବ୍ୟ ମାନସର ଆଦୌ ବିରୋଧାଭାସ ନୁହେଁ । କାଳିନ୍ଦୀ ମୁଖ୍ୟତଃ ଜୀବନର ପ୍ରତିକୂଳ ଦିଗରେ ପରିଚାଳିତ ରୁଢ଼ୀବାଦୀ ଧର୍ମଧାରଣା ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ମାତ୍ର ମଣିଷର ସ୍ୱର୍ଗୀୟ ଓ ମହାନ୍‌ଗୁଣ ଯେଉଁ 'ମହାପୁରୁଷ'ଙ୍କ ଜୀବନରେ ପରିପୂର୍ଣ୍ଣ ହୋଇ ରହିଛି, ସେହି ଅଦୃଶ୍ୟ ସର୍ବଶକ୍ତିମାନ୍‌ଙ୍କ ପ୍ରତି ତାଙ୍କର କେତେବେଳେ ହେଲେ ଅବିଶ୍ୱାସ ଭାବ ସୃଷ୍ଟି ହୋଇନାହିଁ । 'ପୁରୁଷ ସୂକ୍ତ' (ଛୁରିଟିଏ ଲୋଡ଼ା) ର ପ୍ରତିଟି ପଂକ୍ତିରେ ଏହି ମହାପୁରୁଷଙ୍କ ବଂଦନାର ସ୍ୱର ଅତ୍ୟନ୍ତ ସ୍ପଷ୍ଟ । ଆକାଶ, ପର୍ବତ, ପୃଥିବୀ ଓ ସମୁଦ୍ର ଆଦିଗନ୍ତ ସେଇ ଅଦୃଶ୍ୟ ଶୂନ୍ୟ ସତ୍ତାର ମହନୀୟ ଆଶିଷକୁ ଅନୁଭବ କରିଛି କାବ୍ୟନାୟକ । ଅରଣ୍ୟର ଶ୍ୟାମଳିମା, ପକ୍ଷୀର କାକଳି, ଦିନ ଓ

ରାତିର ନିତ୍ୟ ନିୟମିତ ପ୍ରବାହ, ଫୁଲର ପ୍ରଫୁଲ୍ଲ ଉପସ୍ଥିତି ଏ ସବୁ ସେହି 'ମହାପୁରୁଷ'ଙ୍କ ଅଦୃଶ୍ୟ ଇଙ୍ଗିତରେ ସମ୍ଭବ ହୋଇଥାଏ । ତାଙ୍କ ଆଦେଶ ବ୍ୟତୀତ ବିଶ୍ୱରେ ଧୂଳିଟିଏ ମଧ୍ୟ ହଲିପାରେ ନାହିଁ । ସେ ଏକାଧାରରେ ଜୀବନ ଏବଂ ମରଣର ଦେବତା । କବିଙ୍କ ଭାଷାରେ-

''ଆଦେଶ ନ ଲଭି ଉଡ଼େ ନାହିଁ ଧୂଳି
ପତ୍ର ନ ହଲେ କ୍ଷଣପାଇଁ ଭୁଲି
ପାଷାଣ ଦାରୁରେ ରହିଅଛି ପୂରି
ସକଳ ରନ୍ଧ୍ରେ ରନ୍ଧ୍ରେ
ହେ ମହାପୁରୁଷ ! ଚରଣ ତୁମରି ବନ୍ଦେ ।
ତୁମେ ହେ ଜୀବନ ତୁମେ ମହାକାଳ
ପ୍ରଳୟର ରୂପେ ଧୂମକେତୁ ଜାଳ
ଫାଟି ଯାଉ ଧରା ସିନ୍ଧୁ କରାଳ
ଡାକଇ ବଜ୍ରମନ୍ଦ୍ରେ
ହେ ମହାପୁରୁଷ ! ଚରଣ ତୁମରି ବନ୍ଦେ ।'

କ୍ଷମାର ପରିପୂର୍ଣ୍ଣ ଅବତାର ସେ । ଜଗତର ଦୁଃଖରେ ମୌନ ରହି ସେ ଆଖିରୁ ଲୁହ ଝରାଏ । ଜୀବନର ଝଂଜାମୟ କ୍ଷଣମାନଙ୍କରେ ଆକୁଳ ହୋଇ ପଡୁଥିବା ଜୀବସତ୍ତା ପାଇଁ ସେ କେବଳ ମାତ୍ର ମୂକ 'ଚିର ଦର୍ଶକ'ଟିଏ ହୋଇ ବସି ରହିଥାଏ । ଅପଲକ ନୀରବ ତଥା ଗମ୍ଭୀର ମୁଦ୍ରାରେ ବସିଥିବା ସେହି 'ମଉନ ଦେବତା' ମଣିଷକୁ ସହନଶୀଳତାର ଶିକ୍ଷା ଦେଇଚାଲେ । ଦୁଃଖ ଓ ବେଦନାର ତୀବ୍ର ଅନ୍ତର୍ଦାହ ମଧ୍ୟରେ ତଥାପି ବିଦ୍ୟମାନ ଥିବା ଆଲୋକିତ ଆକାଶ ତା'ମନରେ ଆଶା ସଂଚାର କରେ । ଏଣୁ ସେ ମୋହମୁକ୍ତ ଭାବରେ ଗାଇ ଉଠେ -

''ସେ ଦିବ୍ୟ ଆଶ୍ୱାସ ଲଭି ନ ଗଣଇ ବିଶ୍ୱ ପରାଜୟ
ନଥିଲେ ଏ ଭବେ କିଛି ରହିଛି ତ ଆଲୋକ ଆକାଶ
ମୋର ଚିର ପରିଚିତ ବେଦନାର ପରମ ଆଶ୍ୱାସ
ଆସୁ ପରଚଣ୍ଡ ବାଧା ଯିବ ପୁଣି କ୍ଷଣେ ସେ ଉଭେଇ
ଆସୁ ଅମାନିଶି କ୍ଷଣେ ପାହିଯିବ ସବୁ ଦୁଃଖନେଇ ।' (ନୀରବତା : କ୍ଷଣିକ ସତ୍ୟ)

ଏହି ଅଦୃଶ୍ୟ ସତ୍ତାଙ୍କୁ ଯେତେବେଳେ ଦେହଧାରୀ ହେବାର କଳ୍ପନା କରେ, ସେତେବେଳେ କାବ୍ୟପୁରୁଷର ଆଖି ଆଗରେ ଯେଉଁ କ୍ଷମା ତଥା କରୁଣାର ମୂର୍ତ୍ତିଟିଏ ଉପସ୍ଥିତ ହୁଏ, ସେ ହେଉଛନ୍ତି ଦେବଶିଶୁ ଯୀଶୁଖ୍ରୀଷ୍ଟ (ଦେବଶିଶୁ ଯୀଶୁ: ଏହି କବିତାଟି କ୍ଷଣିକ ସତ୍ୟ ଓ ମହାଦୀପ ଉଭୟ ସଂକଳନରେ ସ୍ଥାନିତ ହୋଇଛି) । ଯୀଶୁ ବିଶ୍ୱକଲ୍ୟାଣପାଇଁ କ୍ରୁଶବିଦ୍ଧ ହୋଇଥିଲେ । ତାଙ୍କ ପ୍ରତି ଏ ଅମାନୁଷିକ ଦଣ୍ଡବିଧାନ କରିଥିବା ମଣିଷମାନଙ୍କ ପାଇଁ ତାଙ୍କର ଅନ୍ତିମ ବାଣୀଥିଲା –

''କଣ୍ଟକକ୍ଷତ ନିତି ନାହିଁ ମୋର ଦେହୁଁ
ଆଘାତ ମୋହର ଲାଗେ ସବୁ ଅବୟବେ
ତଥାପି କହଇ କ୍ଷମା ଦିଅ ତାକୁ ସେହୁ
ଆପଣା ଚରିତ ପାରି ନାହିଁ ବୁଝି ଲବେ ।''

ଅପକାରୀ ପ୍ରତି ଏ ଅନୁପମ ଉଦାରତା ବିଶ୍ୱ ଇତିହାସରେ ଅଦ୍ୱିତୀୟ । ସେହି କ୍ଷମା ତଥା ପରମ ପ୍ରେମର ଅବତାରଙ୍କୁ ଅକୁଣ୍ଠ ଭାବେ ଭଲପାଇ ବସିଛି କାବ୍ୟନାୟକ । ସେହି ଅମୃତ ପ୍ରେମମୟ ପରମ ସତ୍ତାକୁ ଦେହ ଭିତରେ, ଇନ୍ଦ୍ରିୟର କଳରୋଳ ଭିତରେ ଏକାନ୍ତ ଭାବେ ଉପଲବ୍ଧ କରିବ ବୋଲି ସେ ଦେହକୁ ଭଲପାଇ ବସିଛି । ତାଙ୍କରି ପ୍ରେମ ପାଇବା ପାଇଁ ଆପଣାକୁ ପ୍ରେମ କରିବସିଛି । ପରମ ସତ୍ତାର ଅଦୃଶ୍ୟ ସତ୍ତା ତା ଦେହକୁ ଅମୂର୍ତ୍ତ ସ୍ପର୍ଶ ଦେବ ବୋଲି ଦେହକୁ ତାର ସୁନାଠାରୁ ଅଧିକ ମୂଲ୍ୟବାନ ବୋଲି ମନେ କରିଛି ସେ । ସେହି 'ପ୍ରିୟତମ'ଙ୍କୁ ଜୀବନର ସକଳ ପ୍ରେମ ନିବେଦନ କରି ଛଳନାହୀନ ଭାବରେ ଗାଇ ଉଠିଛି–

''ଏ ଶୋଭା ମୋର ମଉଳେ ନାହିଁ ଏ ସୁଖେ ନାହିଁ କ୍ଳେଶ ଗୋ
ଯୁଗେ ଯୁଗେ ଏ ନୁହେଁ ପୁରୁଣା ସାଜେ ମୁଁ ଯେଉଁ ବେଶ ଗୋ
ତୁମରି ପ୍ରେମେ ଭୁବନ ଭଲ ଲାଗଇ
ଚେତନା ମମ ସକଳ ପଥେ ଜାଗଇ
ହତାଶେ ଆଉ ନୁହେଁ ମୁଁ ଜଡ଼
ମରଣ ଆଉ ନ ମଣେ ବଡ଼
ତୁମରି ଲାଗି ଶତ ଜୀବନ ଆଜି ଗୋ ଏଥି ମାଗଇ ।''

(ତୁମରି ପ୍ରେମ : ଛୁରୀଟିଏ ଲୋଡ଼ା) ।

ବିଭୁବୋଧରେ କାଳିନ୍ଦୀ କାବ୍ୟମାନସ ଉଚ୍ଛକିତ ହୋଇଥିଲେ ମଧ ସେ ଥିଲେ ମୁଖ୍ୟତଃ ମଣିଷର କବି । ମଣିଷର ବେଦନା, ଦୁଃଖ ଏବଂ ଦୈନ୍ୟ ତାଙ୍କ ଲେଖନୀରେ ସୁନ୍ଦର ରୂପ ଗ୍ରହଣ କରିଥିଲା । ଜାତିର ଉନ୍ନତି ପାଇଁ ସେ ସବୁବେଳେ ସ୍ୱପ୍ନ ଦେଖୁଥିଲେ । 'ଆରେ ଦୁର୍ମଦ ଜାତି' (ମନେ ନାହିଁ) ରେ ଉତ୍କଳର ପ୍ରଗତି ପାଇଁ ଉତ୍କଳୀୟମାନଙ୍କ ଉନ୍ନତି ପାଇଁ ସ୍ୱପ୍ନ ଦେଖିଥିବା କାଳିନ୍ଦୀଚରଣ, 'ରବୀନ୍ଦ୍ରବନ୍ଦନା' (କ୍ଷଣିକ ସତ୍ୟ)ରେ ଅଧିକ ସ୍ୱାଭିମାନୀ ହୋଇ ଉଠିଛନ୍ତି । 'ଆରେ ଦୁର୍ମଦ ଜାତି' ରେ କାଳିନ୍ଦୀ ମୁଖ୍ୟତଃ ଅତୀତ ଉତ୍କଳର ଐତିହ୍ୟ, ତାର ପାଇକମାନଙ୍କ ବୀରତ୍ୱ, ସାଧବମାନଙ୍କ ଦୂରଦେଶରେ ବ୍ୟାପାର ବାଣିଜ୍ୟ କରିବାର କୌଶଳକୁ ପ୍ରକାଶ କରି ସୁପ୍ତ ଜାତି ମଧରେ ଏକ ଜାଗୃତିର ମନ୍ତ୍ର ପ୍ରଚାର କରିଛନ୍ତି । ପଡ଼ୋଶୀ ଦ୍ୱାରରେ ଭିକ୍ଷାପାଇଁ ହାତ ପାତିଥିବା ଏହି ଜାତିପାଇଁ କବିଙ୍କ ଦୁଃଖ ଅନୁଶୋଚନାର ଅନ୍ତ ନାହିଁ –

''ପଡ଼ୋଶୀ ଦୁଆରେ ଭିକ୍ଷୁକ ତୁରେ ଦାସ
ପଡ଼ୋଶୀ ପାଖରେ ହସିବା ଖୋରାକ ତୁହି
ତଥାପି ରହିଛି ଆଜି ଏ ଓଡ଼ିଶା ଭୂଇଁ
ତଥାପି କହତ ଯାଇନି କେସନେ ଫାଟି
ଆରେ ଅବିନୀତ ଆରେ ଦୁର୍ମଦ ଜାତି ।''

କାଳିନ୍ଦୀଙ୍କ ବିଚାରରେ ଓଡ଼ିଆ ଜାତି କଥାର ନୁହେଁ କର୍ମର ଜାତି । କହିବା ଅପେକ୍ଷା କରିବାକୁ ସେ ସବୁବେଳେ ପ୍ରାଧାନ୍ୟ ଦେଇଥାଏ । କାମ କରି କରି ସେ କୂର୍ମ ପାଲଟିଯାଏ । ତାର ହାତ ତିଆରି ଆକାଶ ଉଚ୍ଚ ପଥର ଦେଉଳ ଜାତିର ଟେକ ରଖିଥିଲେ ମଧ୍ୟ କଥାର ଯାଦୁକରୀ ପ୍ରଭାବରେ ଅନ୍ୟମାନେ ବିଶ୍ୱର ଦୃଷ୍ଟି ଆକର୍ଷଣ କଲାବେଳେ କର୍ମ ପ୍ରବଣତାର ଜାତି ନୀରବରେ ଆପଣାର ଭାଗ୍ୟକୁ ଆଦରି ଆପଣାର କର୍ମ କରିଯାଇଛି । ଏହି କର୍ମପ୍ରବଣ ଜାତିର ନୀରବ ପ୍ରଣତିକୁ ଗ୍ରହଣ କରିବାକୁ କାଳିନ୍ଦୀ 'ରବୀନ୍ଦ୍ରବନ୍ଦନା'ରେ ଅନୁରୋଧ କଲାବେଳେ ମୁଖ୍ୟତଃ ଏ ଜାତିର କର୍ମତତ୍ପର ମନୋବୃତ୍ତିର ପ୍ରଶଂସା କରିବା ସହିତ ବଂଗୀୟ ତଥା ଅନ୍ୟ ଜାତିମାନଙ୍କ କର୍ମ ବିହୀନ ବକ୍ତବ୍ୟ ଚଟୁଳତାର ବ୍ୟଙ୍ଗ କରିଛନ୍ତି –

''କହିବାଠାରୁ କରିଛି ବେଶି ସେ ଜାତି ତେଣୁ ଶିଖିନି କଥା
କଥାର ରାଜ୍ୟ ନ ଘେନ ଦୋଷ କ୍ଷମ ହେ ତା'ର ଦୁର୍ବଳତା
ପଥର ଦେହେ ଫୁଟାଇ ଭାଷା କରିଛି ଯେଣୁ କାର୍ଯ୍ୟ ଯେ
ସାଧକ ତୁମେ, ତୋଳଇ ତା'ର ଅର୍ଘ୍ୟ ଘେନ ଆର୍ଯ୍ୟ ହେ ।''

କାଳିନ୍ଦୀଙ୍କ 'ଭାରତ ଆସିବ ଫେରି' (ମହାଦୀପ), 'ଜାଗ ଜାଗ ଗାନ୍ଧୀ' (ମହାଦୀପ) ଓ 'ରକ୍ତସ୍ରୋତ' (ମହାଦୀପ) ଆଦି କବିତାର ସ୍ୱର କେବଳ ଉତ୍କଳୀୟତା ମଧ୍ୟରେ ସୀମିତ ନୁହେଁ । ଏଠାରେ ମହାଭାରତୀୟତାର ସ୍ୱର ସ୍ପଷ୍ଟ । ମଣିଷର ଭୌଗୋଳିକ ବଳୟ ଏଠାରେ ଗୋଟିଏ ନିର୍ଦ୍ଦିଷ୍ଟ ଭୂଖଣ୍ଡକୁ ଆବୋରି ନ ବସି ବିଶାଳ ଓ ବ୍ୟାପକ ହୋଇଯାଇଛି । ମାତ୍ର ଏହା ବିଶ୍ୱତୋମୁଖୀ ହୋଇଛି 'ମହାଦୀପ' ସଂକଳନର 'ଅଗଣିତ ଆଗୁଆନ' ଓ 'ଶତାବ୍ଦୀ ସୈନିକ' କବିତାରେ, ଯେଉଁଠି ସକଳ ଧର୍ମଧାରଣା ବିରୁଦ୍ଧରେ ମାନବବାଦର ବୈପ୍ଳବିକ ସ୍ୱର ମଥା ତୋଳିଛି । ଏହି ସ୍ୱର କେବଳ ମଣିଷର ବନ୍ଦନା କରିଛି । ସକଳ ଭାଷା, ବର୍ଣ୍ଣ, ଧର୍ମ ଓ ସଂପ୍ରଦାୟ ଉର୍ଦ୍ଧ୍ୱରେ ଥିବା ମଣିଷର ବନ୍ଦନା ଏହି କବିତା ଦୁଇଟିର ଲକ୍ଷ୍ୟ । ଉଦାହରଣ ସ୍ୱରୂପ 'ଅଗଣିତ ଆଗୁଆନ' ର ଗୋଟିଏ ପଂକ୍ତିକୁ ଉଦ୍ଧାର କରାଯାଇପାରେ –

''ସ୍ୱଦେଶ ବିଦେଶ ସୀମାରେଖା ନାହିଁ ମାନେ
ଚାଲିଛି ଚମକି କି ଭୀଷଣ ଅଭିଯାନେ
ସବୁଜାତି ରୂପ ସବୁନରନାରୀ ଏକ
ସବୁ ଭାଷାଭାଷୀ ଗାଉଛି କେବଳ ମଣିଷ ଜାତିର ଟେକ ।''

ଏ ପର୍ଯ୍ୟାୟରେ କାଳିନ୍ଦୀଚରଣ ମୁଖ୍ୟତଃ ବିଶ୍ୱ ମାନବାତ୍ମାର କବି । ସକଳ ଧର୍ମ, ପରମ୍ପରା, ଚଳଣିକୁ ଅସ୍ୱୀକାର କରି ସେ କେବଳ ମଣିଷର ହିଁ ଜୟଗାନ କରିଛନ୍ତି । ଯେଉଁ ବାଣୀରେ ମଣିଷର ଦୁଃଖ ଓ ବେଦନା ଅଙ୍କିତ ହୋଇନାହିଁ, ଯେଉଁ ବାଣୀ ମଣିଷର ଅଶ୍ରୁ ଓ ଆନନ୍ଦର ବାର୍ତ୍ତା ବହନ କରିନାହିଁ ସେ ବାଣୀ ତାଙ୍କର ବାଣୀ ନୁହେଁ ବୋଲି କବି ଦୃଢ଼ଭାବରେ ଘୋଷଣା କରିଛନ୍ତି –

''ଯେ ବାଣୀ ଛୁଇଁନି ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର ନହେଉ ଗୋଚର ନ ଆସୁ ମୁଖେ
ଯେ ବାଣୀ ନକହେ ମଣିଷ ଜାତିର ଶୋଣିତ ବ୍ୟଥା
ସେ ନୋହୁ ମୋ ଭାଷା ସେହି ବାଣୀମୋର ନ ହେଉ କଥା ।''

(ମୋ ବାଣୀ : ଛୁରୀଟିଏ ଲୋଡ଼ା)

ଜୀବନ ପ୍ରତି ଏକ ସକାରାତ୍ମକ ଦୃଷ୍ଟିକୋଣ, ପରମ ସତ୍ତା ପ୍ରତି ଅତୁଟ ବିଶ୍ୱାସ, ମଣିଷର ଉନ୍ନତି ପାଇଁ ସମର୍ପିତ ଚିତ୍ତବୃତ୍ତି ଏବଂ ସର୍ବୋପରି କାଳର ଅନନ୍ତ ପ୍ରବହମାନତାରେ ବିଶ୍ୱାସୀ କାଳିନ୍ଦୀଚରଣ ଓଡ଼ିଆ କବିତା କ୍ଷେତ୍ରରେ ଏକ ସ୍ୱତନ୍ତ୍ର ସ୍ଥାନ ଯେ ସୃଷ୍ଟି କରିଯାଇଛନ୍ତି, ଏଥିରେ ସନ୍ଦେହର ଅବକାଶ ନାହିଁ ।



# ମାନବବାଦୀ କବି କାଳିନ୍ଦୀଚରଣ

**ଡକ୍ଟର କୃଷ୍ଣଚନ୍ଦ୍ର ପ୍ରଧାନ**

ବିଂଶ ଶତକର ଆଦ୍ୟଭାଗ ବିଭିନ୍ନ କାରଣ ପାଇଁ ବିଶ୍ୱ ଇତିହାସରେ ସ୍ମରଣୀୟ । ଦୁଇ ଦୁଇଟି ବିଶ୍ୱଯୁଦ୍ଧ, ରୁଷିଆର ସମାଜବାଦୀ ଆନ୍ଦୋଳନ, ଲିଗ୍ ଅଫ୍ ନେସନ୍‌ସ୍‌ର ପରିକଳ୍ପନାଦି ସେହି ସ୍ମରଣୀୟ ଘଟଣାର କେତେକାଂଶ ଭାବରେ ଚିହ୍ନିତ କରାଯାଇପାରେ । ବିଶ୍ୱଜନମାନସ ଉପରୋକ୍ତ ଘଟଣାଗୁଡ଼ିକ ଦ୍ୱାରା କେବଳ ଯେ ପ୍ରଭାବିତ ହୋଇଛି, ତାହା ନୁହେଁ, ପରନ୍ତୁ ଆତ୍ମବିଶ୍ଳେଷଣ ଓ ସମଗ୍ର ବିଶ୍ୱର ଅବବୋଧ ନିମିତ୍ତ ନିଜକୁ ପ୍ରସ୍ତୁତ କରିବା ଆରମ୍ଭ କରିଛି । ଅକ୍ଟୋବର ରିଭୋଲ୍ୟୁସନ୍ ଓ ବିଶ୍ୱଯୁଦ୍ଧ ପରବର୍ତ୍ତୀ ପୃଥିବୀ ଜନ୍ମ ଦେଇଛି ଲିଗ୍ ଅଫ୍ ନେସନ୍‌କୁ । ମଣିଷକୁ ବୁଝିବାକୁ ଓ ତା'ର ହୃଦୟ ଜୟ କରିବାକୁ ଆରମ୍ଭ ହୋଇଛି ଯୁଗାନ୍ତକାରୀ ପ୍ରକ୍ରିୟା । ଜନ୍ମ ନେଇଛି ବିଶ୍ୱଶାନ୍ତି ପାଇଁ ନବ୍ୟ ମାନବତାବୋଧ । ମଣିଷକୁ ଭଲ ପାଇବା, ତା' ସୁଖ ଦୁଃଖରେ ସମଭାଗୀ ହେବା, ଅମୃତ ମଣିଷ ମନରେ ସୃଷ୍ଟି ହୋଇଥିବା ଜିଘାଂସା, ନିଃସଙ୍ଗତା ଓ ଅସହାୟତାକୁ ଦୂର କରି ତା' ସ୍ଥାନରେ ମାନବିକ ସଂପ୍ରୀତି ତଥା ଦୟା, କ୍ଷମା ଓ ସହନଶୀଳତାର ଉଦ୍ରେକ କରିବା ହୋଇଛି ଏହି ବିଂଶଶତକର ଆଦ୍ୟପାଦର ମୁଖ୍ୟ ଲକ୍ଷ୍ୟ ।

ସମଗ୍ର ବିଶ୍ୱ ପରି ଉପନିବେଶବାଦର ଶାସନ ଚକ୍ର ତଳେ ବହୁଦିନ ଧରି ନିଷ୍ପେଷିତ ଭାରତୀୟ ଜନଜୀବନରେ ଏହି ସମୟରେ ଗାନ୍ଧିଜୀଙ୍କର ଆବିର୍ଭାବ, ତାକୁ ଦେଇଛି ବଞ୍ଚିବାର ନୂଆ ପ୍ରେରଣା । ଅହିଂସାର ପ୍ରଚାର ତଥା ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପ୍ରତ୍ୟେକ ମଣିଷକୁ ଭଲ ପାଇବାକୁ ଗାନ୍ଧିଜୀ ଯେଉଁ ଆହ୍ୱାନ ଦେଇଥିଲେ, ତା'ର ଏକ ସୁଦୂର ପ୍ରସାରୀ ଫଳ ଅନୁଭୂତ ହେଲା ଭାରତୀୟ ଜନମାନସରେ । ସାହିତ୍ୟ କ୍ଷେତ୍ରରେ ଠିକ୍ ଏହି ସମୟରେ ବଙ୍କିମଚନ୍ଦ୍ର 'ହଂସ' ପତ୍ରିକା ମାଧ୍ୟମରେ ଯେଉଁ ନୂତନ ସ୍ୱର ଶୁଣାଇଥିଲେ, ତା'ର ମୂଳ ଚେର ରହିଥିଲା ୧୯୧୭ ମସିହାର ରୁଷିଆରେ ସଂଘଟିତ ସମାଜବାଦୀ ଆନ୍ଦୋଳନ ଭିତରେ ।

ଓଡ଼ିଶା ଏହି ସମୟରେ ବିଶ୍ୱର ପରିବର୍ତ୍ତିତ ଚିନ୍ତାଧାରାଠାରୁ ମୁକ୍ତ ନଥିଲା । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା, ୧୯୩୬ ମସିହାରେ ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ସ୍ୱୀକୃତି ପ୍ରଦାନ, ୧୯୧୦-୨୦ ମଧ୍ୟରେ ସତ୍ୟବାଦୀ ସାଧକଙ୍କର ଜାତୀୟତାବାଦର

ପ୍ରଚାର, ଅଳ୍ପ କେତେବର୍ଷ ପୂର୍ବରୁ ଅର୍ଥାତ୍ ୧୮୮୨ ମସିହାରେ ଉତ୍କଳ ସଭା ପ୍ରତିଷ୍ଠା, ୧୮୮୬ ମସିହାରେ ଉତ୍କଳ ବ୍ରାହ୍ମ ସମାଜ ସୃଷ୍ଟି ଦ୍ୱାରା ଓଡ଼ିଶାରେ ଏକ ନବୀନ ଜୀବନ ମୂଲ୍ୟବୋଧର ପ୍ରସାର ଓଡ଼ିଶାର ଜନମାନସରେ ଆଣିଛି ଉଲ୍ଲେଖନୀୟ ପରିବର୍ତ୍ତନ । ୧୯୩୧ ମସିହାରେ 'ସବୁଜ ସାହିତ୍ୟ ସମିତି'ର ପ୍ରତିଷ୍ଠା ପୂର୍ବରୁ ଏ ଦେଶରେ ଗୋଟିଏ ନୂତନ ଚେତନାର ଉଷ୍ମ ବାତାବରଣ ଯେ ସୃଷ୍ଟି ହୋଇ ସାରିଥିଲା, କହିବା ବାହୁଲ୍ୟମାତ୍ର । ସାହିତ୍ୟ ମାଧ୍ୟମରେ ସାମାଜିକ ଉନ୍ନତି ସାଧନ, ସଂସ୍କାର ଆନୟନ ଏବଂ ଏକ ନୂତନ ମୂଲ୍ୟବୋଧର ସାହିତ୍ୟ ସୃଷ୍ଟି ଥିଲା ଏହି ସବୁଜଗୋଷ୍ଠୀର ଲକ୍ଷ୍ୟ । ଏମାନେ ଜାତିପ୍ରଥା ଓ ଭେଦଭାବ ନୀତିର ଥିଲେ ତୀବ୍ର ବିରୋଧୀ । ୧୯୩୫-୩୬ ମସିହା ବେଳକୁ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ ଯେଉଁ ନବଯୁଗ ସାହିତ୍ୟ ସଂସଦର ଭିତ୍ତିଭୂମି ପ୍ରତିଷ୍ଠିତ ହେଲା, ଏହାର ପୃଷ୍ଠଭୂମିରେ ରହିଥିଲା ଋଷ ବିପ୍ଳବର ପ୍ରତ୍ୟକ୍ଷ ପ୍ରଭାବ । କବି କାଳିନ୍ଦୀଚରଣ ପାଣିଗ୍ରାହୀ ସତ୍ୟବାଦୀ ସାଧକଗଣଙ୍କର ଜାତୀୟତାବାଦୀ ଚିନ୍ତାଧାରା ଓ ଅନୁଜ ଭଗବତୀ ଚରଣ ପାଣିଗ୍ରାହୀଙ୍କ ପ୍ରଗତିବାଦୀ ଚିନ୍ତାଧାରାର ମଧ୍ୟବର୍ତ୍ତୀ ପର୍ଯ୍ୟାୟକୁ ଗ୍ରହଣ କରିନେଇଥିଲେ । ଅନ୍ୟ ଭାବରେ କହିଲେ କାଳିନ୍ଦୀଚରଣଙ୍କ ସୃଷ୍ଟିରେ ସବୁଜ ଚେତନାର ରୋମାଣ୍ଟିକ୍ ଭାବାଳୁତା, ସତ୍ୟବାଦୀ ଗୋଷ୍ଠୀର ଜାତୀୟତାବାଦୀ ଚିନ୍ତାଧାରା ଓ ଧୂସର ପୃଥିବୀର ପ୍ରଗତିବାଦୀ ଭାବଧାରାର ମିଶ୍ରିତ ସ୍ୱର ହେଲା ପରିଲକ୍ଷିତ । ଆଶ୍ଚର୍ଯ୍ୟର ବିଷୟର ଏହି ସମୟର ଅବ୍ୟବହିତ ପୂର୍ବରୁ ସମଗ୍ର ବିଶ୍ୱରେ ଯେଉଁ ନବ୍ୟମାନବତାବାଦ ଜନ୍ମ ନେଇଥିଲା, ତା' ମଧ୍ୟରେ ଉପରୋକ୍ତ ତିନୋଟି ଭାବଚେତନାର ଅପୂର୍ବ ସମ୍ମିଶ୍ରଣ ସଂଘଟିତ ହୋଇଥିଲା । ମଣିଷ ନିଜେ ବଞ୍ଚିବା ଓ ଅନ୍ୟମାନଙ୍କୁ ଶାନ୍ତିରେ ବଞ୍ଚିବାକୁ ଦେବା ଥିଲା ଏହି ଯୁଗର ପ୍ରମୁଖ ଆଭିମୁଖ୍ୟ । ଏହାରି ପୃଷ୍ଠଭୂମି ଉପରେ ପରବର୍ତ୍ତୀ ସମୟରେ ଗଢ଼ି ଉଠିଥିଲା ଜାତିସଂଘ ।

ସ୍ରଷ୍ଟା ମାତ୍ରେଇ ମାନବବାଦୀ । ମଣିଷ ତଥା ଜଗତକୁ ଭଲ ନ ପାଇପାରିଲେ ସୃଷ୍ଟି ଭ୍ରୂଣ ଅସମ୍ଭବ । ଅବଶ୍ୟ ସ୍ରଷ୍ଟାଙ୍କର ସମାଜ ଚେତନା ଓ ସମାଜ ପ୍ରତି ରହିଥିବା ଅଙ୍ଗୀକାର ବଦ୍ଧତାର ଦାୟକୁ ନେଇ ଏହି ଅବବୋଧରେ ସାମାନ୍ୟ ତାରତମ୍ୟ ପରିଲକ୍ଷିତ ହୋଇପାରେ । ତେବେ ସ୍ରଷ୍ଟା ମାନେ ହିଁ ଯେ ମାନବିକତାର ରୂପକାର, ଏଥିରେ ଦ୍ୱିମତ ନାହିଁ । ଏହି ଦୃଷ୍ଟିରୁ ମାନବବାଦୀ କବି କାଳିନ୍ଦୀଚରଣଙ୍କୁ ଆଲୋଚନା କରାଯାଇପାରେ ।

ଆଦ୍ୟ ଯୌବନରେ କବି ପାଣିଗ୍ରାହୀଙ୍କ ସୃଷ୍ଟିରେ ରୋମାଣ୍ଟିକ୍ ଚେତନାର ଅବାଧ ପରିପ୍ରକାଶ ଘଟିଥିଲେ ହେଁ ଚତୁର୍ଥ ଦଶକ ବେଳକୁ ସେ କ୍ରମଶଃ ସମାଜ ସଚେତନ ହୋଇ ଉଠିଛନ୍ତି । ମଣିଷ ପ୍ରତି ତାଙ୍କର ଦାୟିତ୍ୱବୋଧକୁ ସେ ମର୍ମେ ମର୍ମେ ଉପଲବ୍ଧି କରିଛନ୍ତି ଓ ତାହାର ପ୍ରତିଫଳନ ଘଟିଛି ତାଙ୍କର କେତୋଟି କବିତାରେ । ଅବଶ୍ୟ ଏହା ପୂର୍ବରୁ ସେ ଯେଉଁ କବିତା ରଚନା କରିଛନ୍ତି, ସେଥିରେ ଏହି ମାନବିକତାବୋଧର ସ୍ୱର ଯେ ଉତ୍କୀର୍ଣ୍ଣ

ହୋଇନାହିଁ, ତାହା ନୁହେଁ; ମାତ୍ର ସେ ସ୍ୱର ପ୍ରଣୟର ସ୍ୱପ୍ନଭିଜା ଆବେଗରେ ଧୂସରତା ଲଭିଛି । ସ୍ୱରରେ ଆବେଗ ରହିଛି କିନ୍ତୁ ଉଷ୍ମତା ନାହିଁ । ଏହା ଦ୍ୱାରା ସମାଜ ମଣିଷ ପ୍ରତି ରହିଥିବା କର୍ତ୍ତବ୍ୟବୋଧରେ ଯେ ସେ ଅବହେଳା କରିଛନ୍ତି, କୁହାଯାଇ ନପାରେ । କ୍ଷୁଧିତ ମାନବର ଆର୍ତ୍ତଚିତ୍କାର ତାଙ୍କ କବିପ୍ରାଣକୁ କିପରି ବ୍ୟଥା ଦେଉଥିଲା, ତାର ଏକ ନମୁନା 'ପାଶୋରି ଦେଲିରେ ଶିମୁଳିପାଳ' କବିତାରୁ ଅନୁସନ୍ଧାନ କରାଯାଇପାରେ –

କ୍ଷୁଧିତ ମାନବ କାକୁତି କରଇ
　　　　　　ପତାଇ ଥାଳ
ପଥପରେ ଶତମାନବର ଶିଶୁ
　　　　　　ଦେଖାଏ କାନି
ଅକାଳେ ଝାଉଁଳି ପଡ଼ଇ କେତେରେ
　　　　　　ଜୀବନଲତା ।

(କାଳିନ୍ଦୀ ରଚନାଚୟ - ୨ୟ ଖଣ୍ଡ,
ନିଉ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ - ୧୯୭୪, ପୃ - ୩୩୩)

ଓଡ଼ିଶା ପରି କୃଷିପ୍ରଧାନ ଦେଶରେ କୃଷକର ଭାଗ୍ୟ କେଡ଼େ ବିଡ଼ମ୍ବିତ, ତାହା ପ୍ରତ୍ୟକ୍ଷ ନ କଲେ ଜାଣି ହୁଏ ନାହିଁ । ଜଗତକୁ ଆହାର ଦେଉଥିବା ଏହି ଗୋଷ୍ଠୀଟି ନିଜର ଆହାର ପାଇଁ ଅନ୍ୟର ଶରଣାପନ୍ନ ହୁଏ । ଭଲ ବସ୍ତ୍ରଟିଏ କିମ୍ବା ଘରଟିଏ ତା' ଭାଗ୍ୟକୁ ଜୁଟେନା । ପିଲାମାନେ ଜର, କଫରେ ଯାତନା ସହୁଥିବା ବେଳେ ଔଷଧଟିକିଏ ଦେଇ ହୁଏନା । ଏହା ସତ୍ତ୍ୱେ ମଧ ଜମିଦାର ଦାଉ ସାଧେ । ତା'ର ଆର୍ଥିକ ଦୁରବସ୍ଥା ଦେଖି ଧନୀସାହୁ ପରି ବ୍ୟକ୍ତି ମିଥ୍ୟାସାକ୍ଷୀ ଦେବାକୁ ପ୍ରବର୍ତ୍ତାଏ । କୃଷକର ଏହି ବିଡ଼ମ୍ବିତ ଜୀବନ ମାନବବାଦୀ କବି କାଳିନ୍ଦୀଚରଣଙ୍କୁ କମ୍ ବ୍ୟଥା ଦେଇନାହିଁ । 'ଚାଷୀର ଭାଗ୍ୟ' କବିତାରେ ଏହାର ଚମତ୍କାର ପରିପ୍ରକାଶ ଘଟିଛି –

ବରଷା ଆସିଲା, ଚଷା　　କି ଭାବନା କରେ ବସି
ଚୂଲାରେ ପଶଇ ପାଣି　　ଅଧେଚାଳ ପଡ଼େ ଖସି
ଘରଣୀ କଜିଆ କରି　　ଆଜି ତାକୁ ପାଳିଜର
ବରଷକ ପିଲାଟା ତ　　କାଛୁ, କଫେ ସଡ଼ ସଡ଼
ସବୁବେଳେ ଛଟ ଛଟ　　ଦିନରାତି କାଉଁ କାଉଁ
ଦେଇଛି ସକାଳେ ପେଇ　　ଟୋପେ ତାକୁ ଚିନା ଜାଉ
ଏ ବେଳାକୁ ନାହିଁ କିଛି　　ଶୁଖାଇ ଦେଲାଣି ମୁହଁ × × ×
ଚଇତନ ଡାକିଥିଲା　　ଆଜି ତା'ର ପାଲା ପୂଜା
କିଏ ଯିବ ପାଲା ଦେଖି　　ଘରେ ନାହିଁ ଚୁଡ଼ା ଭୁଜା × × ×

କିଣିଥିଲା ଛଡ଼ାଟିଏ      ପିଲାଏ ଖାଇବେ ଦୁଧ
ମହାଜନ ଦେଖି ତାହା      ତାଗଦା କରିଛି ସୁଧ !
ଜମିଦାର ପିଆଦାକୁ      ଆଠଣା ଦେଇଛି କାଲି
ଏ ବରଷ ଖଜଣାଟା      ସତାରିବ ମାସେ ଖାଲି × × ×
ଧନୀସାହୁ ଦୋକାନରୁ      ଦି' ଅଣା ହୋଇଛି ବାକି
ସେଥିଲାଗି ଫୁସୁଲାଏ      ଦେବା ପାଇଁ ମିଛ ସାକ୍ଷୀ । (ପୃ-୪୧୯-୨୦)

ପୂର୍ବରୁ ଆଲୋଚନା ପ୍ରସଙ୍ଗରେ ସୂଚାଇ ଦିଆଯାଇଛି ଯେ, ସବୁଜ ଗୋଷ୍ଠୀ ଥିଲେ ରକ୍ଷଣଶୀଳତା ଓ ଜାତିଭେଦର ତୀବ୍ର ବିରୋଧୀ । ଧର୍ମ ନାମରେ, ଧନ ନାମରେ, ପାପପୁଣ୍ୟ ଆଳରେ ସାଧାରଣ ମଣିଷ ସୁବିଧାବାଦୀଙ୍କ ଦ୍ୱାରା ବାରମ୍ବାର ନିର୍ଯ୍ୟାତିତ ହୋଇଥାନ୍ତି । ଦେବତା ମଣିଷ ମନର ଏକ ଦୁର୍ବଳ ଭିତ୍ତି । ଏହି କାରଣରୁ ସେ ବାରମ୍ବାର ଅନ୍ୟ ସ୍ୱାର୍ଥର ବଳି ପଡ଼େ । ଏଥିପାଇଁ କବି ମନ୍ଦିରକୁ ଗୋଟିଏ କାରାଗାର ସହିତ ତୁଳନା କରିଛନ୍ତି, ଯେଉଁଠାରେ ଧର୍ମଭୀରୁ ମଣିଷଟିଏ ଥରେ ବନ୍ଦୀ ହେଲେ ଆଉ ମୁକ୍ତ ହୋଇପାରେ ନାହିଁ । ଅମୃତ ସନ୍ତାନ ମଣିଷ ଦେବତା ତା'ରି ଭିତରେ ପ୍ରତିଦିନ ମରି ମରି ଜୀଇଥାଏ —

''ଧନଜନ ପାପପୁଣ୍ୟ
    ଜଗତର ଶତ ଭେଦାଭେଦ
ଭ୍ରାନ୍ତି ଆବରଣ କେତେ
    ଅର୍ଥହୀନ ପ୍ରଥାଦିଏ ଖେଦ !
ଦେଉଳ କବାଟ ତୋର
    ରୁଦ୍ଧ ସେହି ସହସ୍ର ଅର୍ଗଳେ
ମନ୍ଦିର ନୁହେଁ ସେ କାରା !
    ଦେବତା ମରଇ ତାରି ତଳେ ।

(ଯୌବନଯାତ୍ରୀ - ପୃ - ୩୨୨)

ଭାରତରେ ନବଚେତନାର ବାର୍ତ୍ତାବହ ଗାନ୍ଧୀ ଥିଲେ ମାନବତାବାଦର ମୂର୍ତ୍ତିମନ୍ତ ପ୍ରତୀକ । କବି ଏହି ମହାତ୍ମାଙ୍କୁ ମାନବତାବାଦର ପ୍ରକୃତ ପୂଜାରୀ ଭାବରେ ଗ୍ରହଣ କରିଛନ୍ତି । ମାନବର ସେବାପାଇଁ ସେ ତାଙ୍କର ସମଗ୍ର ଜୀବନକାଳ ବ୍ୟୟ କରି ଦେଇଛନ୍ତି । ଶାନ୍ତି, ମୈତ୍ରୀ ଓ ଭ୍ରାତୃଭାବର ପ୍ରଚାର କରି ସମଗ୍ର ଜଗତକୁ ସେ ଦେଇଛନ୍ତି ନୂତନ ଦିଶା । ଗାନ୍ଧୀଙ୍କ ଜୀବନାଲୋକ ମାଧ୍ୟମରେ କବି ମାନବବାଦୀ ଚେତନାର କଥା କହିଛନ୍ତି ତାଙ୍କ 'ଜାଗ ଜାଗ ଗାନ୍ଧୀ !' କବିତାରେ –

ପ୍ରାସାଦ-କୁଟୀର ଭେଦ ମମତାର ବନ୍ଧନରେ ବାନ୍ଧି
ସକଳ ସଂଘର୍ଷ ପରେ ଶାନ୍ତି ଢାଳି ଜାଗ ଜାଗ ଗାନ୍ଧି !

ଜାଗ ଜାଗ ଯୁଗେ ଯୁଗେ ବାକୁ ତବ କଲ୍ୟାଣ ବାରତା-
ଲଭିପାରେ ଶାନ୍ତି ଧରା ନ ଗଡ଼ାଇ ପୁଞ୍ଜିପତି ମଥା । × × ×
ମୂକ ମାନବର ମୁଖୁଁ ମୁଖରିତ ହେଉ ପୁଣି ଭାଷା
ଦଳିତର ପୀଡ଼ିତର ତେଜିଦିଅ ଜ୍ୱଳନ୍ତ ପିପାସା
କ୍ଷୁଧିତକୁ ଶିଖାଅ ହେ ଭାଗ୍ୟ ତାର ନୁହେଁ ଅନାହାର
ଅପର ନେଇଛି କାଢ଼ି ଜନ୍ମଗତ ସର୍ବ ଅଧିକାର
ବସ୍ତ୍ରହୀନେ ବତାଅ ହେ ନିଜ ହାତେ ନିର୍ମିବାକୁ ବସ୍ତ୍ର
ନିରସ୍ତ୍ରକୁ ଦିଅ ଆଣି ଅଦ୍‌ଭୁତ ଅହିଂସାର ଅସ୍ତ୍ର
ମରଣର ପଥ ଚାହିଁ ବସି ରହେ ଯେତେ ଅସହାୟ
ଉଠୁ ସେ ସାହସଭରେ ପାଇବାକୁ ଫେରି ନିଜ ନ୍ୟାୟ । (ପୃ - ୪୦୧-୦୨)

ମାନବବାଦୀ କବି ମଣିଷର ସ୍ଥିତି ଓ ବଞ୍ଚିବା ଉପରେ ଗୁରୁତ୍ୱ ଦିଏ । 'ବସୁଧୈବ କୁଟୁମ୍ବକମ୍' ହେଉଛି ତା'ର ନୀତି । ସମାଜର ବନ୍ଧନ ଓ ରକ୍ଷଣଶୀଳତାର ବାଡ଼ ଅତିକ୍ରମ କରି ସେ ମାନବର ବନ୍ଦନାଗୀତି ଗାଏ । ଭାଷା, ଦେଶର ଭୌଗୋଳିକ ସୀମା ତା' ନିକଟରେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ସବୁରି ଉପରେ ମଣିଷର ସ୍ଥିତି – ଏହା ହିଁ ମାନବବାଦୀ କବିର ଘୋଷଣା । ତେଣୁ ସେ ଗାଏ –

''ସ୍ୱଦେଶ ବିଦେଶ ସୀମାରେଖା ନାହିଁ ମାନେ
ଚାଲିଛି ଚମକି କି ଭୀଷଣ ଅଭିଯାନେ
ସବୁ ଜାତି ରୂପ ସବୁ ନରନାରୀ ଏକ
ସବୁ ଭାଷାଭାଷୀ ଗାଉଛି କେବଳ
ମଣିଷ ଜାତିର ଟେକ ।'' (ପୃ - ୪୧୧)

୧୯୩୫-୩୬ ମସିହା ବେଳକୁ କବିଙ୍କ ସ୍ୱରରେ ଆସିଲା ପରିବର୍ତ୍ତନ । ସମାଜର ଅନ୍ଧ କୁସଂସ୍କାର, ଶୋଷଣ, ନିପୀଡ଼ିତର ଅସହାୟ ଚିତ୍କାର ତାଙ୍କ କବିତାର ସ୍ୱରକୁ କରିଛି ଶାଣିତ ଓ ତିର୍ଯ୍ୟକ୍ । ଭଗବତୀ ଚରଣ ପାଣିଗ୍ରାହୀଙ୍କ ବୈପ୍ଲବିକ ଆହ୍ୱାନ ସୃଷ୍ଟି କରିଛି ମାନବତାବାଦର ନୂତନ ଇସ୍ତାହାର । ଦଳିତ, ପୀଡ଼ିତ ମଣିଷ ହୋଇଛନ୍ତି କବି ନିକଟରେ ଏକାନ୍ତ ଶ୍ରେୟ । ଦେବତାର ନିରାଜନା ନୁହେଁ, ଲକ୍ଷ ଲକ୍ଷ ଶୋଷିତ ମଣିଷ ବନ୍ଦନା ଗାଉଛି କବି । ସେମାନଙ୍କର ଲୁହ କବିର ହୃଦୟରେ ସୃଷ୍ଟି କରିଛି ପ୍ରତିକ୍ରିୟା । ଆଜି ପର୍ଯ୍ୟନ୍ତ ଦେବତା ବୋଲି ଯାହାକୁ ଭକ୍ତି ଅର୍ଘ୍ୟ ପ୍ରଦାନ କରି ଆସିଥିଲା, ତା' ନିକଟରେ ସେ ପ୍ରତୀୟମାନ ହୋଇଛି ଶିଳାଖଣ୍ଡ ରୂପେ । ତେଣୁ ସେ ଚାହିଁଛି ମଣିଷର ନିରାଜନା କରିବାକୁ; ଯଦିଓ ମଣିଷ ଭିତରେ ସେ କମ୍ ଅମଣିଷପଣିଆକୁ ପ୍ରତ୍ୟକ୍ଷ କରିନାହାନ୍ତି । ଏହା ସତ୍ତ୍ୱେ ଦଳିତ ମଣିଷ ହୋଇଛି ତା'ର ଉପାସ୍ୟ । ୧୯୩୯ ମସିହାରେ ରଚିତ 'ଛୁରୀଟିଏ ଲୋଡ଼ା' କବିତାରେ କବିଙ୍କର ଏହି ଭାବଧାରା ପ୍ରକାଶିତ —

''ନିବିଡ଼ ନିରାଶେ ଦେବତା ପାଶରୁ ଫେରି
ଖୋଜିଲି କାହାର ବଜାଇବି ତେବେ ଭେରୀ ?
ଦୁନିଆ ଭିତରେ ସାଉଁଟିଲି କାହିଁ କେବା
ମଜିବି କାହିଁରେ ପୂଜିବି କରିବି ସେବା
ସୃଜିବି ପୁଲକ କାହାର ପୀରତି ଗାଇ
ଜୀଇଁବାକୁ ଏଥି ମାତ୍ର ଦିନକ ପାଇଁ ?
''ମଣିଷ'', ''ମଣିଷ'' ଶୁଭିଲା ଦୂରରୁ ଡାକ
ଦୁନିଆର ଯେତେ ଦଳିତ ପୀଡ଼ିତ ଯାକ
ସ୍ପନ୍ଦନ ସେହି ପୁଲକ ପରାସ ରେଖା
ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା
ସେହି ସେ ଦେବତା ସେହି ମୋର ଆରାଧନା
ସକଳ ପୁଲକ ପରାସର ସରଜନା ।

(କାଳିନ୍ଦୀରଚନାଚୟ - ଗ୍ରନ୍ଥାବଳୀ, ୧ମ ଖଣ୍ଡ -
ନିଉ ଷ୍ଟୁଡ଼େଣ୍ଟସ୍ ଷ୍ଟୋର, କଟକ - ୧୯୭୧, ପୃ - ୨୭୫-୭୬)

ମଣିଷର ହୀନମନ୍ୟଭାବ ଓ ଜାତି-ଭେଦ ରୂପକ ପ୍ରାଚୀର ମଣିଷ ମଧ୍ୟରୁ ମଣିଷତ୍ୱକୁ ଲୁଟି ନେଇଛି । ତା' ଭିତରେ ପଶୁଭାବ ହୋଇଉଠିଛି ପ୍ରବଳ । ନରବଳି ପାଇଁ ନର ହୋଇଛି ଆଗୁସାର । ସାମାନ୍ୟ ସ୍ୱାର୍ଥ ପାଇଁ କଳହ, ଜାତି-ଧର୍ମର ବଡ଼ିମା ମଣିଷ ହାତରେ ଲଗାଇ ଦେଇଛି ଶୃଙ୍ଖଳ । ମଣିଷର ଓଠରୁ କେଉଁ ଦିନରୁ ହସ ଶୁଖିଯାଇଛି । ତା'ର ସ୍ୱାଧୀନତା ବଳି ପଡ଼ିଥିବାରୁ କୁକୁରଠାରୁ ବି ଆହୁରି ହୀନ ଜୀବନଯାପନ କରିବାକୁ ସେ ବାଧ ହୋଇଛି –

''ଉଠେ ହାହାକାର ଦେଶ ଛାରଖାର    କ୍ଷୁଦ୍ର କଳହ ରହିଛି ବେଢ଼ି
ସାନ ସାନ ଜାତି-ଧର୍ମର ଭେଦ    ସବୁରି ହାତରେ ଦେଇଛି ବେଡ଼ି
ସବୁରି ଅଧରୁ ହାସ୍ୟ ଶୁଖିଛି    ପଶୁଠାରୁ ହୀନ ମାନବ ଜାତି
କୁକ୍କୁରଠାରୁ ଘୃଣ୍ୟ ଅଧିକ    ପରପଦାଘାତେ ନ ଜଳେ ଛାତି !''

(ନରବଳି - ପୃ - ୨୭୯-୮୦)

ତେଣୁ ମଣିଷର କଥାକୁ କବି ନିଜର କବିତାର ଭାଷା ରୂପେ ଗ୍ରହଣ କରିବାକୁ ଇଚ୍ଛା ପ୍ରକାଶ କରିଛନ୍ତି । କବିତା ମାଧ୍ୟମରେ କବି ମଣିଷର ହୃଦୟର ଭାବକୁ ପରିପ୍ରକାଶ କରିଛନ୍ତି । ତେଣୁ ସେ 'ମୋ ବାଣୀ'ରେ ଉଦ୍‌ଘୋଷଣା କରନ୍ତି -

''ଯେ ବାଣୀ ଛୁଇଁନି    ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର    ନ ହେଉ ଗୋଚର ନ ଆସୁ ମୁଖେ

ଯେ ବାଣୀ ନ କହେ ମଣିଷ ଜାତିର ଶୋଣିତ ବ୍ୟଥା
ସେ ନୋହୁ ମୋ ଭାଷା ସେଇ ବାଣୀ ମୋର ନହେଉ କଥା । × × ×
ପଶୁ ଛାତି ଚିରି ପିଶାଚ- ରାଇଜେ ମଣିଷ ଗଢୁ
ସେଇ ବାଣୀ ମୋର ଦୁନିଆଯାକର କାନରେ ପଡୁ । (ପୃ - ୨୮୬)

୧୯୪୨ ମସିହାରେ ପ୍ରକାଶ ପାଏ କବିଙ୍କର 'ଆଗାମୀ' କବିତା । ଏଥିରେ କବି ନିଜ କବିତାର ସନ୍ନିଧାନ ପ୍ରସ୍ତୁତ କରିଛନ୍ତି । ଏହି କବିତାଟିରେ କବି ଏପରି ଏକ ସମାଜର ପରିକଳ୍ପନା କରିଛନ୍ତି, ଯେଉଁଠି କୌଣସି ମଣିଷ ଖାଦ୍ୟ ବିନା ଅକାଳରେ ଝଡ଼ି ନ ପଡ଼େ । ପ୍ରତ୍ୟେକ ମାନବ ଶିଶୁ ତା ହକ୍‌ରୁ ବଞ୍ଚିତ ନହୁଏ । ଶିକ୍ଷା ପାଇବାର ଅଧିକାର ସମସ୍ତଙ୍କର ରହୁ । ବେକାରୀ ନ ରୁହନ୍ତୁ । କାମ କରିବାର, କଥା କହିବାର ଅଧିକାର ସମସ୍ତେ ଲାଭ କରନ୍ତୁ । ଗରିବ ଧନିକ ଦ୍ୱାରା ଶୋଷିତ ନ ହୁଅନ୍ତୁ କିମ୍ବା ଅନାହାର, ଅର୍ଦ୍ଧାହାରରେ କୌଣସି ଅମୃତ ସନ୍ତାନ ବଞ୍ଚିବାର ଅଧିକାର ନ ହରାନ୍ତୁ –

କବିତା ଗଢ଼େଁ ଏକ ବିରାଟ ସମାଜର । ସବୁରି ପାଇଁ ଯହିଁ ବଖରେ ହେଲେ ଘର ॥
ସକଳେ ଲଭିବାକୁ ମୁଠାଏ ଦୁଧଭାତ । ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ ॥
ଦୁଇଟା ଲୁଗାଜାମା ସବୁରି ପାଇଁ ମିଳେ । ପଢ଼ିବା ପାଇଁ ବାଧା କାହାରି ନାହିଁ ତିଳେ ॥
ବେକାର ରହିବାକୁ ନାହିଁ ଟି ଅଧିକାର । ସବୁରି ପାଇଁ କାମ ଯୋଗାଏ ସରକାର ॥
କହିବା ପାଇଁ କଥା ସବୁରି ଦାବୀ ଅଛି । ମୁଁ ସେହି ସମାଜର କବିତା ରଚେ ବସି ॥
ନାହିଁଟି ଅଧିକାର ମରିବା ଲାଗି ଯହିଁ । ଭିକ୍ଷା ଅନାହାରେ ତାଡ଼ନା ଖାଲି ସହି ॥
ମରିବା ପାଇଁ ପୁଣି ଧନର ପାରାବାରେ । ନାହିଁଟି ଅଧିକାର କାହାରି ସେହିଠାରେ ॥
ଗରିବ ଯେ ସମାଜେ ଜାଣଇନାହିଁ ଭୀତି । ଧନିକ ନ କରଇ ଦିନରେ ଡକାଇତି ॥
ଧନର ବିନିମୟେ ନହୁଏ କିଣା ସବୁ । କେବଳ ପଶୁ ଯହିଁ ବୋଲାଏ ନାହିଁ ପ୍ରଭୁ ॥
କେବଳ ମୂର୍ଖର ଶକତି ନାହିଁ ଭୁଜେ । ଆଗାମୀ ସମାଜର କବିତା ରଚେ ମୁଁ ଯେ ॥
(ପୃ-୩୫୬)

ବର୍ତ୍ତମାନ ଜଗତରେ ମଣିଷ ମଣିଷର ବିଶ୍ୱାସବୋଧକୁ ଶୋଷଣ କରୁଛି । ତା'ର ସରଳତାକୁ ଅପହରଣ କରି ଧୂର୍ତ୍ତ ମଣିଷ ନିଜର ସ୍ୱାର୍ଥ ହାସଲ କରେ । ଧର୍ମ ନାମରେ ଅନାଚାର ଓ ବ୍ୟଭିଚାର ସମାଜ ଜୀବନକୁ କଳୁଷିତ କରି ଚାଲିଛି । ସରଳ ମଣିଷର ଅଜ୍ଞତାର ସୁଯୋଗ ନେଇ ସର୍ବଶକ୍ତିମାନ ଦେବତା ନାମରେ ସ୍ୱାର୍ଥପର ଧନିକ ମଣିଷ ନିଜର ଫାଇଦା ଉଠାଏ । ଭାଗ୍ୟ ଓ ଭଗବାନଙ୍କ ନାମରେ ନିରୀହ ମଣିଷ ସବୁକାଳେ ସବୁକ୍ଷେତ୍ରରେ ବଳିପଡ଼ି ଚାଲେ । ସମାଜର ଏହି ଅତ୍ୟାଚାର ବିରୋଧରେ କବି ପ୍ରତିକ୍ରିୟାଶୀଳ ହୋଇ ଉଠିଛନ୍ତି । ତାଙ୍କର ଦରଦୀ ପ୍ରାଣ କାନ୍ଦିଉଠିଛି ସମାଜର ଏହି ଗଡ଼ିବାଦୀ ଚିନ୍ତାଧାରା ଦେଖି । ତେଣୁ ସେ ୧୯୩୫ ମସିହାରେ ରଚିତ 'ଅତିମାନବ' କବିତାରେ ଲେଖିଥିଲେ —

ଉଠ ଜାଗ ଜାଗ !
ଦେବତାର ଆକ୍ରମଣେ ମାନବ ମରଇ ହତଭାଗ୍ୟ
ପରାହତ ବୁଦ୍ଧି ପରେ ତା'ର
ଚିରଦିନ ପ୍ରତିଷ୍ଠିତ ଖ୍ୟାତି ଦେବତାର
ଘୋଷଇ ବିଜୟ
ମାନବ ଅଜ୍ଞତା ପରେ ନାମ ବହି ସର୍ବଜ୍ଞାନମୟ ।
ମାନବର ଶକ୍ତି ପରେ ବସି
ସର୍ବଶକ୍ତିମାନ ରୂପେ ଦେବତା ଉଠଇ ଅଟ୍ଟହସି । × × ×
ବହି ସେହି ବିରାଟ ଅନ୍ଧତା
ଅସ୍ପୃଶ୍ୟ ଅଦୃଶ୍ୟ ନାମେ ହସେ କାହିଁ ଅଜ୍ଞାତ ଦେବତା ।
ମାନବର ବୁଦ୍ଧି ଯହିଁ ନୁହଇ ଅଧିକ
ଭାଗ୍ୟ ନାମ ଧରି ତହିଁ ଶାସନ କରଇ ଆକସ୍ମିକ !
ସେ ଦୈବର ପରାଜୟ ଲାଗି
ଉଠ ଉଠ ମହାକର୍ମ-ରଣାଙ୍ଗନେ ଜାଗି (ପୃ - ୩୮୬)

ମଣିଷର ସ୍ୱାର୍ଥରକ୍ଷାଲାଗି ସମାଜର ସୃଷ୍ଟି । ଦୁର୍ବଳକୁ ସବଳ ଦାଉରୁ ରକ୍ଷା କରିବା ଏହାର ପ୍ରଥମ କର୍ତ୍ତବ୍ୟ । ଅଥଚ ଏଠି ଠିକ୍ ତା'ର ବିପରୀତ ଘଟେ । ମଣିଷର ଅସହାୟତାର ସୁଯୋଗ ନିଏ ସବଳ । ଗରିବ ମଣିଷ ବିଚରା ଦୁଇବେଳା ପେଟକୁ ମୁଠାଏ ଖାଇବାକୁ ପାଉ ନଥିବା ସମୟରେ ଧନିକ ବଳକା ଧନକୁ ବରବାଦ କରି ବଦଖର୍ଚ୍ଚାର ବାହାଦୁରୀ ନେଇଥାଏ । ୧୯୩୬ ମସିହାରେ ରଚିତ 'ଜୟ ଭଗବାନ' କବିତାରେ ସମାଜର ଏହି ବାସ୍ତବ ଦିଗଟି ପ୍ରକାଶିତ —

ଅସହାୟ ଦେଖି ସବଳ ମାରଇ
ନିଜେ ପଡ଼ି ଦୁଃଖ ଶୋକେ
ଅତି ସମ୍ପଦ ହୁଅଇ ବିଷମ
ମହା ମାନସିକ ଭୋକେ
ବଳକା ଧନକୁ ବିଞ୍ଚିବ ବୋଲି
ନ ମିଳଇ ଅବକାଶ
ଦୁନିଆ ବଜାରେ ସହଜେ ତେଣୁ ସେ
ଅପଖରଚର ବାସ । (ପୃ - ୩୬୭)

୧୯୩୮ ମସହିାରେ ରଚିତ 'ଯାଦୁଘର' ମାନବବାଦୀ କବି କାଳିନ୍ଦୀଚରଣଙ୍କ ଏକ ଶ୍ରେଷ୍ଠ କବିତା । ସାମ୍ପ୍ରତିକ ସମାଜର ଏକ ନିଛକ ଚିତ୍ର ଏହି କବିତାରେ ଦେଖିବାକୁ ମିଳେ ।

ଧର୍ମକୁ ନେଇ ସମାଜରେ ଜୁଆଖେଳ ଚାଲିଛି । ଧର୍ମର ପ୍ରକୃତ ଅର୍ଥ ନ ବୁଝି ତଥାକଥିତ ଧର୍ମ ଧ୍ୱଜାଧାରୀମାନେ ଧର୍ମକୁ ନେଇ ବ୍ୟବସାୟ କରି ଚାଲିଛନ୍ତି । ମନ୍ଦିର ଓ ଗୀର୍ଜାରେ ଧର୍ମକୁ ନେଇ ମତାନ୍ତର ଓ ମନାନ୍ତର । ଛେଳି ଓ ଗୋରୁ ବଳି ନାମରେ ମନ୍ଦିର ତଥା ଗୀର୍ଜାରେ ମଣିଷର ବଳି ଚଢ଼ି ଚାଲିଛି । ପୃଥିବୀକୁ ଯାହା ଧରିରଖେ, ତାହାହିଁ ଧର୍ମ । ମଣିଷ ଓ ଜଗତର ସ୍ଥିତିରେ ସନ୍ତୁଳନ ରକ୍ଷା କରିବାରେ ହିଁ ଧର୍ମର ମହତ୍ତ୍ୱ । ବୁଦ୍ଧ, ଯୀଶୁ ଓ ମହମ୍ମଦ ଯେଉଁ ଧର୍ମ ପ୍ରଚାର କରି ଯାଇଥିଲେ, କାହିଁ ତାର ସ୍ୱରୂପ ଓ ରୂପରେଖ ! ମନ୍ଦିର, ମସ୍‌ଜିଦ୍ ଓ ଗୀର୍ଜାରେ ସେଥିପାଇଁ ଧର୍ମନାମରେ ମଣିଷବୋଦାର ବଳି ଚାଲିଛି । କବି ସେଥିପାଇଁ ଧର୍ମକୁ ଗୋଟିଏ ଯାଦୁଘର ସହିତ ତୁଳନା କରିଛନ୍ତି । ଯାଦୁଘରେ ଯାହା ସାଇତା ରହିଥାଏ, ତାହା କେବଳ ପ୍ରଦର୍ଶନ ପାଇଁ । ସେଥିରେ ଜୀବନର ସତ୍ତା ନଥାଏ । ଆଜି ଜଗତର କଙ୍କାଳ ସେହି ଜୀବହୀନ ଧର୍ମରୂପୀ ଯାଦୁଘରେ ସାଇତା ରହିଛି । ସେହି କବିତାଟିର କେତୋଟି ପଦ ଏହି ପ୍ରସଙ୍ଗରେ ଉଲ୍ଲେଖଯୋଗ୍ୟ–

ନଗରେ ନଗରେ ପଥେ ଜନପଦେ ଧର୍ମ ଦେଖିବାପାଇଁ
ହାତ ବଢ଼ାଇଲି ଧରିବି ବୋଲି ମୁଁ ପୁଛିଲଇଁ କେତେ କାହିଁ !
ଦେଉଳେ ଦେଖିଲି ଧର୍ମ ଯା'ଅଛି ଗୀର୍ଜାରେ ସେତ ଆନ
କିଏ ଅବା ଛେଳି କିଏ ପୁଣି ଗୋରୁ କାଟିବା ପାଇଁକି ଥାନ ।
କିଛି ନ କାଟିବାପାଇଁ ଯେଉଁଠାରେ କହିଲେ ଧର୍ମଗୁରୁ
ଲକ୍ଷ୍ୟ ସେଠାରେ ମଣିଷର ବେକ ମଣିଷର ପାଦ ଉରୁ× × ×
କାହିଁରେ ସତ୍ୟ, କାହିଁରେ ଧର୍ମ !- ଧରିଛି ଧରାକୁ ଯାହା
ଆଦିମ ଯୁଗରୁ ହୋଇଛି ସେ ପରା ମଣିଷ-ଜାତିର ସାହା ?
ବୁଦ୍ଧ ଯୀଶୁର ମନ୍ତ୍ର କାହିଁବା କାହିଁ ମହମ୍ମଦ ଖୋଦା ?
ସବୁ ଦିଅଁ ଆଜି ବଳି ପଡ଼ିଲେଣି ମଣିଷ ହୋଇଛି ବୋଦା !
ସକଳ ଧର୍ମ ଯୁକ୍ତି ତରକ ନିୟମ କାନୁନ୍ କାଟି
ଧରିଛି ଧରାକୁ, ଯବାବ୍ ଘୋଷୁଚି କମାଣ ବାରୁଦ ଫାଟି × × ×
ଜୀବର ରାଇଜେ ଧର୍ମ ସେ ଖାଲି ଜୀବହୀନ ଯାଦୁଘର
ନୁହେଁ କିଛି ଆଉ ସଞ୍ଚିତ ତହିଁ କଙ୍କାଳ ଜଗତର । (ପୃ-୪୧୭-୧୮)

କବି କାଳିନ୍ଦୀଚରଣ କେବଳ କବିତା ପାଇଁ କବିତା ରଚନା କରିନାହାନ୍ତି । ପତିତ, ଲାଞ୍ଛିତ, ପୀଡ଼ିତ ଓ ବଞ୍ଚିତଙ୍କ ନିମିତ୍ତ ତାଙ୍କ ହୃଦୟରେ ଭରି ରହିଥିଲା କରୁଣା ଓ ସମ୍ବେଦନା । ପ୍ରଚଳିତ ସାମାଜିକ ବ୍ୟବସ୍ଥା, ଅନୁଦାର ପରିବେଶ, ଅନ୍ଧ କୁସଂସ୍କାର ବିରୋଧରେ ସେ ସ୍ୱର ଉତ୍ତୋଳନ କରିଛନ୍ତି ଲକ୍ଷ୍ୟ ଲକ୍ଷ୍ୟ ସାଧାରଣ ମଣିଷର ସୁରକ୍ଷା ପାଇଁ । କବି ଜୀବନର ପୂଜାରୀ । ରୂପ ପୂଜା ତାଙ୍କର ଧ୍ୟେୟ ନୁହେଁ । ଯାହା ମଣିଷକୁ ସୁରକ୍ଷା କରିପାରେ ନାହିଁ,

ମଣିଷକୁ ସୁଖରେ ଟିକିଏ ବଞ୍ଚିବାକୁ ରାହା ଦେଇପାରେ ନାହିଁ, ସେପରି ଧର୍ମର କ'ଣ ବା ଆବଶ୍ୟକତା ଅଛି ? 'ପୁରୀମନ୍ଦିର' କବିତାଟିରେ କବିଙ୍କର ମାନବବାଦୀ ଚିନ୍ତାଧାରାର କିପରି ବିମଳ ଫଲ୍‌ଗୁ ପ୍ରବାହିତ ତାହା ଲକ୍ଷ୍ୟ କରାଯାଉ –

ଆଦର୍ଶ ଯାହାର ମହା ସାମ୍ୟନୀତି ନାହିଁ ଭେଦ-ଜ୍ଞାନ
ମାନବ ଶିଶୁର ଯହିଁ ନାହିଁ ଜାତି-ଦ୍ୱେଷ ଅପମାନ,
କବୀର, ନାନକ, ବୁଦ୍ଧ, ଚୈତନ୍ୟ, ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର
ଲେଖିଲେ ଏ ପାଷାଣର ଗତେ
''ସକଳ ସେ ସମାନ ଜଗତେ''
ସବୁ ବଡ଼ ସାନ
ଦୀନ ଧନବାନ
ନତ ମୁଣ୍ଡ
ଏଥିରୁଣ୍ଡ

କବିଙ୍କର ଯେଉଁ କବିତାଗୁଡ଼ିକରେ ବାମପନ୍ଥୀ ଚିନ୍ତାଧାରା ପ୍ରକାଶ ପାଇଛି, ସେଠାରେ ତାଙ୍କର ମାନବବାଦୀ ଭାବଧାରା ବେଶ୍ ତୀକ୍ଷ୍ଣ ଓ ସୁସ୍ପଷ୍ଟ । ସର୍ବହରାର ବିଜୟ ପାଇଁ ସେ କବିତାରେ ତୋଳିଛନ୍ତି ବିପ୍ଳବର ସ୍ୱର । ଏହି ବୈପ୍ଳବିକ ଭାବଧାରା ଧ୍ୱଂସ ପାଇଁ ନୁହେଁ; ନୂତନ ସୃଷ୍ଟିର ସୃଜନ ପାଇଁ । ଦଳିତ ଓ ନିଷ୍ପେଷିତ ଜନତାଙ୍କ ପାଇଁ ତାଙ୍କ ହୃଦୟରେ ଯେଉଁ ସମ୍ବେଦନଶୀଳତା ଭରି ରହିଥିଲା, ତାହା ବେଳେ ବେଳେ ସଂଗ୍ରାମର ସ୍ୱରରେ ଅନୁରଣିତ । ବାଜିରାଉତ କବିତାର କେତୋଟି ଧାଡ଼ି ଏ କ୍ଷେତ୍ରରେ ଉଲ୍ଲେଖଯୋଗ୍ୟ–

''ଝାଳ ଦେଇ ଯେତେ ଗଢ଼ିଲୁ ରାଇଜ ରଜା
ଲୁହ ଦେଇ ତୋର ହତିଆର ତହିଁ ପଜା
ବେଳ ଏହି ବେଳ ଏହି
ତୋଳିଥିଲୁ ଯାକୁ, ତାଡ଼ିବୁ ତାହାକୁ,
ନଶୁଅରେ ଆଉ ଚେଇଁ''

ଉପରୋକ୍ତ କବିତାରେ ବାସ୍ତବତାର ପଦଧ୍ୱନି ସ୍ପଷ୍ଟ ହେଲେହେଁ, ସମ୍ବେଦନଶୀଳତାର ଅଭାବ ନାହିଁ । ଏହି ପ୍ରସଙ୍ଗରେ ୧୯୪୪ ମସିହାରେ ରଚିତ 'କିଏ ଶଳା ଶଇତାନ' କବିତାଟିକୁ ଉଦାହରଣ ସ୍ୱରୂପ ଗ୍ରହଣ କରାଯାଇପାରେ । ମାନବତାବାଦୀ କବି ସଦାବେଳେ ଶୋଷିତ, ନିପୀଡ଼ିତଙ୍କ କଥାହିଁ କୁହେ । ଶତ ଝଡ଼ଝଞ୍ଜା ସତ୍ତ୍ୱେ ଯେଉଁମାନେ ବଞ୍ଚିବା ପାଇଁ ସଂଗ୍ରାମରତ, ସମାଜରେ ଯେଉଁମାନେ ସର୍ବଦା ଅବହେଳିତ ଜୀବନଯାପନ କରି ଆସିଥାନ୍ତି, ସେହି ଗରିବମାନେହିଁ କବିଙ୍କର ଏକାନ୍ତ ପ୍ରିୟ । ସମାଜର ଉଚ୍ଚବର୍ଗର ମଣିଷ ଯୁଗେ ଯୁଗେ

ଗରିବ ମଣିଷକୁ ଅସମ୍ମାନ କରି ଆସିଥାନ୍ତି । ଏହି ସାଧାରଣ ମଣିଷ ନିଜ ପେଟରୁ ଦାନା କାଢ଼ି ସା'ନ୍ତଙ୍କ ପେଟ ପୂରାନ୍ତି; ମାତ୍ର ସେମାନଙ୍କୁ ସେହି ଅବହେଳିତ ଜୀବନ ନେଇ ବଞ୍ଚି ରହିବାକୁ ହୁଏ –

''ଜନ୍ମ ଆମର ମଣିଷ କୁଳରେ, ନାହିଁ ଇଜ୍ଜତମାନ
ଆମ ଝିଅବୋହୂ ସବୁରି ଶାଳୀହେ, ଆମେ ଶଳା ଶଇତାନ !
ବର୍ଷା ଖରାରେ ସଢ଼ୁଁ ଶୁଖୁଁ ଆମେ ଯାହା ପାଇଁ ଟେକିଛତି,
ନିଜ ଘରେ ଡାକିଆଣୁ ଅନ୍ଧାର ଯାହାପାଇଁ ଜାଳି ବତୀ ।
ଯାହା ପିଲାପାଇଁ ଭୋଜନ ସଜାଡୁଁ ନିଜ ପିଲା ମାରି ଭୋକେ !
ହଜୁର ମଣିମା ସାଆନ୍ତ ସେମାନେ ଆମେ ବଜ୍ଜାତ ଲୋକେ ! × × ×
ସର୍ବସ୍ୱ ଖାଇ ଖାଇବ ହାଉଆ, ବୋଲି ହେ ଗାଡ଼ିରେ ଚଢ଼ି
ଆମ ଘର ବିଲ ପାଣିରେ ଭାସିବ, ଆସିଗଲେ ନଈବଢ଼ି
ହକ ଧନଦେଇ ଧାନ ସେର ପାଇଁ ଦୁଆରେ ଦୁଆରେ ବୁଲି
ଛିଡ଼ା ହେଉଁ ଗୋଡ଼ ଭାଙ୍ଗି ତେବେତ ଘରେ ନ ଜଳିଲା ଚୂଲୀ !
ଦାନ୍ତ ନିକୁଟି ହାତଯୋଡ଼ି କହୁଁ ଭୋ ଆଜ୍ଞା ଅବଧାନ,
ହୁଅପଛେ ତୁମେ ମଣିଷ ହଜୁର, ଆମେ ଶଳା ଶଇତାନ
× × × × × ×
ବିଲେଇ କୁକୁର ଶୁଣାଅଛି ଦିନେ ବୁଝେ ମାନ ଅପମାନ,
ମଣିଷ କି ଦିନେ ନ ପାରିବ ବୁଝି କିଏ ଶଳା ଶଇତାନ'' (ପୃ-୪୨୧-୨୩)

ଆଜିର ବ୍ୟକ୍ତି ସର୍ବସ୍ୱ ମଣିଷ ନିଜର ସ୍ୱାର୍ଥପାଇଁ ସମୂହ ସ୍ୱାର୍ଥକୁ ଅକାଳରେ ବଳିଦେଇପାରେ । ନିଜର କୀର୍ତ୍ତି ଓ ଯଶ ପାଇଁ ଅପରର ଅପକୀର୍ତ୍ତି ତଥା ଅପଯଶ ରଟାଏ । ନିଜକୁ ସୁସ୍ଥ ସୁନ୍ଦର ରଖିବା ପାଇଁ ଅନ୍ୟର ମୃତ୍ୟୁ କାମନା କରେ । ଏପରି ବ୍ୟକ୍ତିଙ୍କୁ କବି ତୀବ୍ର ବ୍ୟଙ୍ଗୋକ୍ତି କରିବା ସଙ୍ଗେ ସଙ୍ଗେ, ଚେତାବନୀ ମଧ୍ୟ ଶୁଣାଇଛନ୍ତି । ଏହାଦ୍ୱାରା କବିଙ୍କୁ କେବଳ ଏକ ବିପ୍ଳବୀ କବିର ଆଖ୍ୟାଦେଲେ, ତାଙ୍କ ପ୍ରତି ଉଚ୍ଚିତ ବିଚାର ହୋଇଛି ବୋଲି କୁହାଯାଇନପାରେ । ଏହି ବ୍ୟଙ୍ଗୋକ୍ତି ଓ ଶାଣିତ କଟାକ୍ଷ ମଧ୍ୟରେ କବିଙ୍କ ମାନବାଦୀ ଚିନ୍ତାଧାରାଟି ପ୍ରକଟିତ –

''ଆପଣାର କୀର୍ତ୍ତି ଲାଗି ଅପରର ଲୋଡ଼େ ଅପକୀର୍ତ୍ତି
ଲେଖିବାକୁ ନିଜ ନାମ ଅପରର ନାମ ଦିଏ ପୋଛି
ଆନର ଆଣଇ ମୃତ୍ୟୁ
ନିଜେ ଲୋଡ଼ି ଅମର ପଦବୀ
ସ୍ୱୀୟ ସୁଖ ଆଶେ ପୁଣି ପରପ୍ରାଣେ ଦୁଃଖ ଦିଏ ରଚି ।
(ବିଶ୍ୱଗ୍ରନ୍ଥି - ପୃ- ୪୨୪)

କବି ମାନବବାଦୀ ହୋଇଥିବାରୁ ଗାନ୍ଧୀ ଓ ଯୀଶୁଙ୍କୁ ନିଜ ଜୀବନର ଆଦର୍ଶ ଭାବରେ ଗ୍ରହଣ କରି ନେଇଥିଲେ । ବୋଧହୁଏ ମାହାତ୍ମାଗାନ୍ଧୀ ଓ ଯୀଶୁଖ୍ରୀଷ୍ଟ ବିଶ୍ୱର ସର୍ବଶ୍ରେଷ୍ଠ ମାନବାଦୀ ବ୍ୟକ୍ତିତ୍ୱ, ଯିଏ ଅନ୍ୟର ସୁଖ ପାଇଁ ନିଜ ଜୀବନକୁ ଅକାଳରେ ବିସର୍ଜନ ଦେଇଥିଲେ । 'ଦେବଶିଶୁ ଯୀଶୁ' କବିତା ମାଧ୍ୟମରେ କବି ନିଜ ଜୀବନର ଆଦର୍ଶ ଓ ଆଭିମୁଖ୍ୟ ସଂପର୍କରେ ସୂଚନା ଦେଇଛନ୍ତି, ଯାହା ତାଙ୍କ ମାନବିକ ଗୁଣର ସର୍ବଶ୍ରେଷ୍ଠ ନିଦର୍ଶନ ରୂପେ ଗ୍ରହଣ କରାଯାଇପାରେ –

''କଣ୍ଟକ କ୍ଷତ ନିଭିନାହିଁ ମୋର ଦେହୁଁ
ଆଘାତ ମୋହର ଲାଗେ ସବୁ ଅବୟବେ
ତଥାପି କହଇଁ କ୍ଷମା ଦିଅ ତାକୁ, ସେହୁ
ଆପଣା ଚରିତ ପାରିନାହିଁ ବୁଝି ଲବେ !
ତଥାପି କହେ ଯେ ଆସରେ ମାନବ-ଜାତି
ଛାତିରେ ତୋହର ଧରା ପଦାଘାତ ହେଉ
ଅଗ୍ନିରେ ତୋର ପଥ ଗଢ଼ିଦିଅ ଭବେ
ଆଲୋକେ ତୋହରି ହସି ଉଠୁ ଅମାରାତି (ପୃ.-୪୨୮)

ମାନବାଦୀ କବି କାଳିନ୍ଦୀଚରଣ କେତେବେଳେ ବ୍ୟଙ୍ଗ ବିଦ୍ରୂପ ମାଧ୍ୟମରେତ, ଅନ୍ୟ କେତେବେଳେ ବିପ୍ଳବର ସାମସଙ୍ଗୀତ ମାଧ୍ୟମରେ ମାନବତା ବାଦର ଜୟଗାନ କରିଛନ୍ତି । ସେ କେବଳ ସମସ୍ୟାର ଅବତାରଣା କରିନାହାନ୍ତି, ପରନ୍ତୁ ସମାଧାନର ସୂତ୍ରଟି ମଧ୍ୟ ମଣିଷ ସମାଜ ହାତରେ ଧରାଇ ଦେଇଛନ୍ତି । ତାଙ୍କର 'ଆଗାମୀ' କବିତାଟି ଏ କ୍ଷେତ୍ରରେ ନିଶ୍ଚିତଭାବରେ ଏକ ସ୍ୱାଗତଯୋଗ୍ୟ ପଦକ୍ଷେପ । ଏଥିରେ ସେ ଯେଉଁ ସମାଜର ପରିକଳ୍ପନା କରିଛନ୍ତି, ତାହା ହୁଏତ ଏକ ସମାଜବାଦୀ ସାମାଜିକ ବ୍ୟବସ୍ଥା ହୋଇପାରେ, ମାତ୍ର ଏଥିରୁ ତାଙ୍କର ମାନବବାଦୀ ଦୃଷ୍ଟିଭଙ୍ଗୀଟି ବେଶ୍ ସ୍ପଷ୍ଟ ହୋଇ ଉଠେ ।



# କାଳିନ୍ଦୀଚରଣଙ୍କ କବିତାରେ ଅତୀନ୍ଦ୍ରିୟ ସ୍ୱର

ଡକ୍ଟର ସୌଦାମିନୀ ନନ୍ଦ

କବିତା ସମୟର ସ୍ୱର । ତତ୍‌କାଳ ଓ ଭିନ୍ନ କାଳକୁ ଯୁଗପତ୍ ବିଭକ୍ତ କରୁଥିବା ଓ ତଥାପି ଏକତ୍ର ଯୋଡୁଥିବା ଏକ ବିଯୁକ୍ତରେଖା । ପୁଣି ହାଇଫେନ ଚିହ୍ନ । କବିର ଏକକ ବ୍ୟକ୍ତିସତ୍ତା ପୁଣି ନୈର୍ବ୍ୟକ୍ତିକତାକୁ ଚିହ୍ନାଇ ବାରିଦେଉଥିବା ସମ୍ବାଦସୂକ୍ତ । କବିତାର ଉଦ୍‌ବୋଧନ ଆବେଗରେ କବିର ସ୍ୱର ଉଚ୍ଚାରଣ ତାରୁଣ୍ୟର ଆବେଗ ଉତ୍ସାରରେ ଯାର ଉଚ୍ଛ୍ୱାସ ଉତ୍ତରଳତା ଯୌବନରେ ପ୍ରସାର ବିସ୍ତାର ଲଭେ ଓ ପରିଣତ ବୟସରେ ଗଭୀର ନିମଜ୍ଜ ହୁଏ । କବିର କବିତା ସ୍ରୋତ ତେଣୁ ତାର ଅନ୍ତଃବାହିତ ଆବେଗ ଓ ବାସ୍ତବ ଉପଲବ୍‌ଧିରେ ପ୍ରାପ୍ତ ଅଭିଜ୍ଞାନର ଦୁଇ ତୀରକୁ ଆଶ୍ରୟ କରିଥାଏ । ଆବେଗର ଉତ୍ସାରଣ ବ୍ୟାକୁଳତା ସ୍ଥାନକାଳର ଉପସ୍ଥିତ ବାସ୍ତବତାକୁ ଯଦି ଉଲ୍ଲଘଂନ କରିଯାଏ ତ ସେ ଆଉ ଏକ ଭିନ୍ନ କଳ୍ପଲୋକର ଆଶ୍ରୟ ନିଏ । ପୃଥିବୀ ଭିତରର ହେଉ ବା ବାହାରର ତାହା କିନ୍ତୁ ବେଶି ଭାବରେ ଆକାଶିକ ଏବଂ ଆକାଶହିଁ ତା ପାଇଁ ଅପାର୍ଥିବର ପ୍ରଥମ ସ୍ପନ୍ଦନଭୂମି ଯେହେତୁ ତାର ପୃଥିବୀରେ ଅନୁପଲବ୍‌ଧ କଳ୍ପିତ ସୁଖର ତାହା ଚାରଣଭୂମି । ଏଇ ଅପାର୍ଥିବତାର ରୂପ, ଅତୀନ୍ଦ୍ରିୟତାର ଅବଧାରଣା ବ୍ୟକ୍ତିର ଆୟୁକାଳରେ ପରିବର୍ତ୍ତିତ ହୁଏ । ତାର ବ୍ୟକ୍ତିସତ୍ତାର ବିବର୍ତ୍ତିତ ଚେତନାସ୍ତର ଅବଲମ୍ବନରେ ବିକଶିତ ହୁଏ । କୈଶୋରର ସମ୍ମୋହିତ ମୁକ୍ତି ବିହ୍ୱଳତା ସ୍ୱପ୍ନାଶ୍ରୟୀ । ସ୍ୱପ୍ନଲୋକ ତା ପାଇଁ କଳ୍ପନା ସଞ୍ଚାରୀ, ଅତୀନ୍ଦ୍ରିୟତା ତା ପାଇଁ ଉଡ଼ାପଣ । ଆଧୁନିକ ଓଡ଼ିଆ କାବ୍ୟଯୁଗର ବହମାନ ଧାରାରେ ସବୁଜ କାବ୍ୟସ୍ୱର ସେଇ କୈଶୋର, ନବତାରୁଣ୍ୟର ଆକାଶଉଡ଼ା ସ୍ୱପ୍ନ ସମ୍ମୋହିତ ଅତୀନ୍ଦ୍ରିୟତାର ବିହ୍ୱଳଗାନ ।

ପ୍ରାଚୀନ କବିତା ପାର୍ଥିବତା ତଥା ପରମାର୍ଥପରତା ଏଇ ଦୁଇ ବିପରୀତ ଦିଗ ବାରି ଶିଖିଥିଲା । ଭକ୍ତିକାବ୍ୟ ଓ ରୀତିକାବ୍ୟ ସ୍ୱରରେ, ଆଙ୍ଗିକରେ ଓ ଆଭିମୁଖ୍ୟରେ ବିଧିବଦ୍ଧଭାବେ କାବ୍ୟାଦର୍ଶର ଭିନ୍ନତାକୁ ରକ୍ଷା କରୁଥିଲେ । ଆଧୁନିକ କବିତା ରୀତି କି ଭକ୍ତି କିଛି ବି ସ୍ପଷ୍ଟ ଗ୍ରହଣ କରି ନାହିଁ । ତାର କାବ୍ୟଚେତନା ଯେଉଁ ଦୃଷ୍ଟିବଳୟକୁ ପ୍ରସାରିତ ତାହା ମର୍ତ୍ତ୍ୟବିହାରୀ କିମ୍ବା ଶୂନ୍ୟସଞ୍ଚାରୀ ସେ ଭିନ୍ନତାବୋଧ ତା ପାଇଁ ଅସ୍ପଷ୍ଟ । ସବୁଜ କାବ୍ୟକାଙ୍କ

ଏକ ଯୁଗସନ୍ଧି, ଯୁଗାଭାସ । ଆଭିମୁଖ୍ୟ ନିରୂପଣରେ ଅନିଶ୍ଚିତ, ବିକ୍ଷିପ୍ତ ଜୀବନାଦର୍ଶ ସନ୍ଧାନୀ । ପଛରେ ରାଧାନାଥୀୟ ନବଯୁଗ କାବ୍ୟଚେତନାର ବିଶୁଦ୍ଧ ରୋମାଣ୍ଟିକ ରୂପପିପାସା, ସୌନ୍ଦର୍ଯ୍ୟ ଓ ପ୍ରେମର ଉପାସନା ବିଭୋରତା, ମଧୁସୂଦନୀୟ ଅତୀନ୍ଦ୍ରିୟ ଭାବବିଳାସ, ପ୍ରତିବେଶୀ ରବୀନ୍ଦ୍ର କବିତାର ମିଷ୍ଟିକ୍ ଭାବପ୍ରଭାବ; ଏ ସବୁଜ-ମାନସିକତା କାଳିନ୍ଦୀଚରଣଙ୍କ ଆଦ୍ୟ କାବ୍ୟରୂପକୁ ସମାଚ୍ଛନ୍ନ କରିଛି ।

କାଳିନ୍ଦୀଚରଣଙ୍କ କାବ୍ୟସ୍ୱରରେ ବିବିଧତା ଓ ଭିନ୍ନତା ରହିଛି । ଈଶ୍ୱର, ପ୍ରକୃତି, ମଣିଷ, ମାଟି ବିଭିନ୍ନ ସମୟରେ ତାଙ୍କ କବିତାର ଭାବବଳୟ ଆଲୋଡ଼ିତ କରିଛନ୍ତି । ମାନବବାଦ ତାଙ୍କ ରଚନାର ବଳିଷ୍ଠତମ ବିଭାବ । ସମସାମୟିକତାରୁ ଉତ୍ସାରିତ ସମ୍ମୁଖ ପୃଥିବୀର (ପାରିବାରିକ ପ୍ରଭାବ: ଭଗବତୀ ଚରଣ ପାଣିଗ୍ରାହୀଙ୍କ ସୂତ୍ରରୁ ମଧ୍ୟ) ବାସ୍ତବବାଦୀ ଜୀବନ ସମସ୍ୟା, ବୈପ୍ଳବିକ ସମାଜ ଚେତନା ତଥା ସାଧାରଣ ମଣିଷର କଥା ତାଙ୍କ କବିତା ଓ ଉପନ୍ୟାସରେ ଆତ୍ମପ୍ରକାଶ ଲୋଡ଼ିଛି । ଏହାରି ଭିତରେ ଭାସମାନ ମେଘଖଣ୍ଡ ଭଳି କେତୋଟି ଈଶ୍ୱର ଭାବନା ମୂଳକ ଓ ଅତୀନ୍ଦ୍ରିୟ ବୋଧାତ୍ମକ କବିତା ମଝିରେ ମଝିରେ ଚିତ୍ର ବିନ୍ୟାସରେ ଆବିର୍ଭୂତ ହୋଇଛନ୍ତି । ସମଧର୍ମା ବୈକୁଣ୍ଠନାଥଙ୍କ ପରି ତାଙ୍କ କବିତାରେ ଆଚ୍ଛନ୍ନ ବିଭୁପ୍ରାଣତାର ଭାବମୋହ ଏତେ ତୀବ୍ର ନୁହେଁ । ମାତ୍ର ଯେଉଁ କେତୋଟି ମେଟା ଫିଜିକାଲ ଓ ଅତୀନ୍ଦ୍ରିୟ ବୋଧବାଚକ ଉଚ୍ଚାରଣ ଘଟିଛି, ସେଗୁଡ଼ିକ ତାଙ୍କର ନିଷ୍କପଟ, ଜିଜ୍ଞାସୁ ତଥା ଭାବ-ବିଶ୍ୱସ୍ତ ଚିତ୍ତର ପ୍ରତିଫଳନ । ବେଳେବେଳେ ନାସ୍ତିକ ପ୍ରତିପାଦନ (ଜଡ଼ଦର୍ଶନ) ଠାରୁ ମଧୁସୂଦନୀୟ ଭକ୍ତି ଓ ରବୀନ୍ଦ୍ରନାଥଙ୍କ ରହସ୍ୟବାଦୀ ପ୍ରୀତି ପର୍ଯ୍ୟନ୍ତ ତାଙ୍କ କବିତାରେ କେବଳ କାଳିନ୍ଦୀଚରଣଙ୍କର ନୁହଁ, ସବୁଜକାଳୀନ କାବ୍ୟ-ମାନସର ବିକ୍ଷିପ୍ତ ପ୍ରତିଫଳନ ଦେଖାଯାଏ ।

''ଦେହ ମୋର ସାଜଇ ବସି ତୁମରି ପ୍ରେମ ଲାଗି ଯେ
ନିଜକୁ ମୁଁ ଯେ କରଇ ପ୍ରେମ ତୁମରି ଅନୁରାଗୀ ହେ ।'' (ପ୍ରସାଧନ : ମୋ କବିତା)

ପ୍ରସାଧାନରତା ବାସକସଜ୍ଜା ମୁଗ୍‌ଧାନାୟିକାର ଏ ଭାବାନୁଭବ ଅନ୍ତରାଳରେ ଆଗାମୀ କାଳର ଏକ ଦୃପ୍ତ ଆଗ୍ନେୟ ପୌରୁଷସତ୍ତା ଲୁକ୍‌କାୟିତ ବୋଲି ସହଜରେ ଭାବିହୁଏନାହିଁ । ସବୁଜ ସୁଲଭ ବିଷାଦ ବିଧୁରତା ଓ ଚିରପ୍ରଣୟର ବିଦେହ ମଧୁରତା ଅଭିଳାଷୀ ତରୁଣମାନସରେ ପ୍ରଣୟାବେଗର ଆକୁଳ ଉଚ୍ଚାଟନ ସମ୍ବୋଧନରେ ଲୋଡ଼ିବାକୁ ଏକ ଅଦେହୀ ଅରୂପ ସତ୍ତାଙ୍କୁ ନେଇ ଭାବନା ବିଳାସ କରିଛି । ମାନବବାଦୀ ଓ ସମାଜବାଦୀ ଚିନ୍ତାଧାରାର ବୈପ୍ଳବିକ କବି/ଲେଖକ ରୂପେ ପରିଚିତ କାଳିନ୍ଦୀଚରଣ କବିତାର ଏଇ ଅତୀନ୍ଦ୍ରିୟ ଅଭିଳାଷ ସ୍ୱାଭାବିକ ଯୁଗାନୁସୃତ । ପରେ ପରେ ଏକ ଭିନ୍ନ ଭାବାଦର୍ଶ ପ୍ରେରିତ ଓ ଭିନ୍ନମାର୍ଗସନ୍ଧାନୀ ହୋଇଥିଲେ ବି ଅତୀନ୍ଦ୍ରିୟ ଜିଜ୍ଞାସା ତତ୍ତ୍ୱ ଓ ଉପଲବ୍‌ଧି ଦିଗରୁ କାଳିନ୍ଦୀ କାବ୍ୟମାନସରେ କିଛି ପରିମାଣରେ ବଳିଷ୍ଠ ଉପସ୍ଥାପନା ଲୋଡ଼ିଛି । ତେବେ ନିଃସନ୍ଦେହରେ

କାଳିନ୍ଦୀଚରଣଙ୍କର ଇନ୍ଦ୍ରିୟୋତ୍ତର କାବ୍ୟ-ଉପଲବ୍ଧିର ଅନ୍ତଃପ୍ରେରଣା ବିଶୁଦ୍ଧ ରୋମାଣ୍ଟିକ ଭାବାଦର୍ଶ ଅନୁପ୍ରେରିତ; ତାର ରହସ୍ୟବାଦୀ ଉଚ୍ଚାରଣରେ ଅତୀନ୍ଦ୍ରିୟ ଉପଲବ୍ଧି ଅପେକ୍ଷା ଅତୀନ୍ଦ୍ରିୟତା ପ୍ରତି ଉନ୍ମୁଖତାର ଆବେଗ ହିଁ ସହଜ ଅବଲମ୍ବିତ ।

ଉତ୍କଳସାହିତ୍ୟ ୧୩୩୬-୩୭ ସାଲ କାର୍ତ୍ତିକ ସପ୍ତମ ସଂଖ୍ୟାରେ ପ୍ରକାଶିତ ‘ଅବ୍ୟକ୍ତ’ କବିତାଟିରେ ପ୍ରଯୁକ୍ତ ‘ଅରୂପ’ ଶବ୍ଦରେ ପାରମ୍ପରିକ ଶବ୍ଦ/ବ୍ରହ୍ମ ଭାବଚେତନ ସହ ରବୀନ୍ଦ୍ରକାବ୍ୟର ସ୍ୱରଚେତନାଟି ବିମୂର୍ଚ୍ଛିତ । ଏଇ କବିତାର ଭାବ ଅଭିବ୍ୟକ୍ତି ଓ ଭାଷା ସଂଯୋଜନାରେ କାବ୍ୟ ମନୋହାରିତାର ରସସିଦ୍ଧି ସୁସଂସାଧିତ । କବି ବାକ୍‌ମନର ଅତୀତ ନିଗୂଢ଼ ଭାବସ୍ପନ୍ଦନ ପ୍ରତି ଉନ୍ମୁଖ । ବିଶ୍ୱ ବାଙ୍ମୟ ତାହାରି ଅଭିବ୍ୟକ୍ତି ପ୍ରଚେଷ୍ଟା ବୋଲି ସେ ଜାଣନ୍ତି । ସେ ଅକୁହା କଥା କବିଙ୍କୁ ମୁଖର କରୁଛି । ମାତ୍ର ସେ କହିବାକୁ ଅକ୍ଷମ, ତେଣୁ ବିଷାଦିତ । ଏଇ ବିଷାଦର ଉତ୍ସ ରୋମାଣ୍ଟିକ ଭାବାକୁଳତା ବୋଲି ସହଜରେ ଚିହ୍ନିହୁଏ, ଯଦିଓ ତତ୍ତ୍ୱତଃ ମେଟାଫିଜିକାଲ ଜିଜ୍ଞାସା ଏହାର ମର୍ମସ୍ୱର । କବିଙ୍କର ଅନ୍ୟ ଏକ କବିତା ‘ଲୋହିତ ବ୍ୟଥା’ ରେ ପ୍ରକଟିତ ଅହେତୁକ ବିଷାଦବୋଧର ଉତ୍ସକୁ ଏଠାରେ ଅନୁସନ୍ଧାନ କରାଯାଇପାରେ ।

‘ଲୋହିତ ବ୍ୟଥା’ ରଂଗ ପ୍ରତୀକଗୂଢ଼ ରୋମାଣ୍ଟିକ-ରହସ୍ୟବାଦୀ ଅତୀନ୍ଦ୍ରିୟବାଦୀ କବିତା । ରଂଗରେ ପ୍ରତୀକ ବ୍ୟଞ୍ଜନା ସୃଷ୍ଟି ସବୁଜ କାବ୍ୟଚେତନାର ଏକ ସଫଳ ପରୀକ୍ଷା ଥିଲା ସ୍ୱୟଂ ସବୁଜ ନବୀନତାର, ତାରୁଣ୍ୟର, ଜୀବନର ଓ ପ୍ରାଣ ଧର୍ମିତାର ପ୍ରତୀକ ହେବା ଭଳି ଲୋହିତ ନବାନୁରାଗର, ହୃଦୟର ପ୍ରୀତିରାଗର ଭାବ-ବେଦନ ପୁଷ୍କଳ ଥିଲା । କବିତାଟି ସୁଦୂର ପ୍ରଣୟଗାନର ଗୁଞ୍ଜନ । ଦୂର ବଂଶୀତାନ କବି ଚିତ୍ତରେ ଉଦାସ ଭରିଦେଇଛି । ଅଶ୍ରୁତ ସ୍ୱରଧ୍ୱନିଟିଏ କବିଙ୍କ ଅନ୍ତରକୁ ବିରସ ବିଧୁର କରିଦେଇଛି । କବି ସେ କଥାର ଅର୍ଥ ବୁଝନ୍ତି ନାହିଁ । ତେଣୁ ଅବ୍ୟକ୍ତର ବେଦନା ଭୋଗନ୍ତି ।

‘‘ଅଦୂରକାର ଗୀତଟି କଥା
ମରମେ ମୋର ଲଗାଏ ବ୍ୟଥା
x x x ପରଶ ତାର ପରାସ ଦିଏ ପରାଣ ମୂଳେ ମମ’’ (ପଦ ୨, ୪)

ତେବେ ଏମିତି କେତେ କବି କାଳକାଳ ଧରି ସେ ଅରୂପ ରହସ୍ୟକୁ ଓ ତା ପ୍ରତି ମଣିଷ ହୃଦୟର ଅବୁଝା ଆକର୍ଷଣକୁ ବୁଝାଇବାକୁ ଶବ୍ଦଚିତ୍ରର ପ୍ରୟାସ କରିଛନ୍ତି । ମାତ୍ର ‘‘ପାରିନି ଜ୍ଞାନୀ, ପାରିନି କବି/ସେ କଥା କହି, ଲେଖି ସେ ଛବି ।’’ (ପଦ - ୫ - ଲୋହିତ ବ୍ୟଥା) । ରୋମାଣ୍ଟିକ ଅତୀନ୍ଦ୍ରିୟତାରୁ ରହସ୍ୟବାଦୀ ଅରୂପ-ତତ୍ତ୍ୱକୁ ଏପରି ଭାବ ନିଷ୍କ୍ରମଣ, ହୁଏତ ସନ୍ତର୍ପଣ, ମାତ୍ର ତଥାପି ତାତ୍‌କାଳିକ ଏବଂ ଅନାୟାସ ।

କବିଙ୍କ ଅନ୍ତର୍ଚେତନାରେ ସ୍ରଷ୍ଟା ପୁରୁଷ ସୁ-ସ୍ୱୀକୃତ । 'ବିଶ୍ୱରାଶି ତାହାରି ଦାନ' । ସେହି କଥା କହିବାକୁ ସପ୍ତସ୍ୱରର ବିଧାନ । ତାହାରି ଚିତ୍ର ଆଙ୍କିବାକୁ ସପ୍ତରଂଗର ସୃଷ୍ଟି । ନିଖିଳ ପ୍ରକୃତି ତାରି ରୂପପରିଗ୍ରହ କରିଛି । ତଥାପି ତାହା ଅସ୍ଫୁଟ । ବାରବାର ପରାଜୟର ଗ୍ଳାନି ସତ୍ତ୍ୱେ ଲଜ୍ଜାତପା ପାଷାଣ ତା ପାଇଁ ବିଗଳିତ ହୋଇ ସ୍ରୋତସ୍ୱିନୀ ସାଜେ । ପ୍ରକାଶ-ଅକ୍ଷମ ସେଇ ବିରାଟ ଅଭିଳାଷକୁ ହୃଦୟରେ ଧାରଣ କରି କବି ମଧ ସେହି ବିଶ୍ୱବେଦନାରେ ଭାଗୀ ହୋଇପଡ଼ନ୍ତି । ଏ ସ୍ୱରର ପ୍ରତିଧ୍ୱନି ପରବର୍ତ୍ତୀ କାଳରେ 'ନୀରବ ଆହ୍ୱାନ' କବିତାରେ ଅଧିକ ଭାବଗମ୍ଭୀର ହୋଇଛି, ସବୁ କୋଳାହଳ ଭେଦି ଶୁଣିବି ମୁଁ ଶବ୍ଦହୀନ ନୀରବତା ଡାକ ।'' (ମହାଦୀପ - ମୋ କବିତା) । ନିର୍ଗୁଣ ବାଚକ ଅନାମ ଅଶବ୍ଦ ଏଥିରେ ସ୍ପଷ୍ଟ ପ୍ରତିଧ୍ୱନିତ ।

କବିତାଟିର ଭାବଉଦ୍‌ବୋଧନ କବିଙ୍କ କାବ୍ୟଦର୍ଶନର କିଛି ସ୍ପଷ୍ଟ ଦିଶା ସଂକେତ ଦିଏନାହିଁ ଅବଶ୍ୟ । ଏକ କାବ୍ୟ ଉପଲବ୍‌ଧି ରୂପେ ବିଶ୍ୱରହସ୍ୟର ଯେଉଁ ଅନ୍ତଃଗୂଢ଼ ରୂପଟି ଏଥିରେ ପ୍ରତିଫଳିତ, ତାର ଉପସ୍ଥାପନାରେ କବି କିନ୍ତୁ ତାଙ୍କ ଚମତ୍କାରୀ କଳାକୁଶଳତାର ଆଭାସ ଦେବାରେ ସମର୍ଥ ହୋଇଛନ୍ତି । ଲକ୍ଷ୍ୟ କରିହୁଏ, ପାରମ୍ପରିକ ଆଧ୍ୟାତ୍ମ ଗାନ ଏବଂ ରାବୀନ୍ଦ୍ରିକ ସ୍ୱରାଳାପର ମିଶ୍ରଣ ଭିତରେ ଏଇ ଅତୀନ୍ଦ୍ରିୟାତ୍ମକ ଅନୁଭାବନାଟି କାବ୍ୟର ଆଭିମୁଖ୍ୟ ବା କବିଙ୍କ ନିଜର ବିଚାର ଦୃଷ୍ଟି ସଂପର୍କରେ କୌଣସି ସ୍ପଷ୍ଟ ରୂପ ସଂକେତ ଦିଏନାହିଁ । ଅହେତୁକ ବିଷାଦବୋଧ ଓ ଭାବକାରୁଣ୍ୟ କବିତାଟିର ଆକର୍ଷଣୀୟ ବିଭାବ ରୂପେ ଏହାକୁ ଏକ ସୁନ୍ଦର ରୋମାଣ୍ଟିକ ଆଚ୍ଛନ୍ନତାରେ ଭରି ରଖିଛନ୍ତି, ମାତ୍ର ଉତ୍ତୀର୍ଣ୍ଣ ରସାନୁଭବର ସାର୍ଥକତା ଆଣି ପାରିନାହାନ୍ତି । ଆତ୍ମବିଷାଦର ଅବସାଦ ଚଳମାନ ମେଘଖଣ୍ଡ ପରି ଆଶାୟୀ ସମ୍ମୋହ ବ୍ୟତୀତ କିଛି ସ୍ଥିର ଆତ୍ମସନ୍ଦେଶରେ ଅର୍ଥବାନ ନୁହନ୍ତି ।

୧୯୩୧ରେ ରଚିତ କୁହୁପ୍ରାସ (ଛୁରୀଟିଏ ଲୋଡ଼ା - ୧୯୫୦) ଅନୁରୂପ ରୋମାଣ୍ଟିକ ଭାବାଦର୍ଶ ସଂପ୍ରେରିତ ଅତୀନ୍ଦ୍ରିୟ ରହସ୍ୟ ସଂଚାରୀ କବିତା । ଏଥିରେ ଇଂରେଜ କବିଙ୍କର ସମ୍ବୋଧନାତ୍ମକ ପକ୍ଷୀଗୀତିର ଭାବ ପ୍ରତିଫଳନ ଘଟିଛି । ପ୍ରକୃତିର ସ୍ନିଗ୍ଧ ମଧୁର ପରିବେଶ, ପକ୍ଷୀର କୂଜନ ଓ ଦୁଇ ବନବାଳାଙ୍କ ରୂପରେ ବିମୋହିତ ମୁଗ୍ଧ କବିଚିତ୍ତ ଏକ ଅତୀନ୍ଦ୍ରିୟ କଳ୍ପନା-ରାଜ୍ୟକୁ ଅପସାରିତ ହୋଇଛି । କବି ଏକ ଅଜଣା ସଂଗୀତ ଶୁଣିଛନ୍ତି –

''ଯାହା ଧରାର ମରମତଳୁ
 ଉଠିଲା ଭେଦି ବିଶ୍ୱ ମରୁ
ସକଳ ପଥେ ସକଳ ଘାଟେ
 ଚକିତ କଲା ବାଜି ।''

ଶାଶ୍ୱତ ଅରୂପ ମାତ୍ର ପ୍ରତିରୂପରେ ନିଜ ବିଶ୍ୱରୂପତାର ପ୍ରତିଭାସ ଅଙ୍କନ କରିଥାନ୍ତି, ନିଜ ସୃଜନୀ ସଂକଳ୍ପକୁ ଶବ୍ଦ ସନ୍ଦେଶ କରି ବିଶ୍ୱକୁ ପ୍ରେରଣ କରିଥାନ୍ତି, ଏଇ ଅଧ୍ୟାତ୍ମ

ଅନୁପ୍ରାଣନାଟି କବିତାର ଛତ୍ରେ ଛତ୍ରେ ପ୍ରତିଫଳିତ । ସବୁ ଦୃଶ୍ୟର ଅନ୍ତରାଳରେ ସେହି ଏକ ଭାବାତୀତ ପ୍ରେମ ବିରାଜିତ। ସୁତରାଂ କବିପ୍ରାଣ ଅନାୟାସରେ ବିଶ୍ୱକୁ 'ପ୍ରିୟର ଆଲିଂଗନ' ଦେଇପାରେ, ଜୀବନକୁ ଗ୍ଲାନିତାପକୁ ସେଇ ଭାବ ଆବେଶରେ ବିସ୍ମୃତ ହୋଇପାରେ, ସକଳ ଅନ୍ତରର ଦ୍ୱେଷ ଓ ଅବିଶ୍ୱାସର ବିଷକୁ ନିଜ ଶ୍ରଦ୍ଧାର ଅସୀମ ଶକ୍ତିରେ ଜୀବନାମୃତରେ ରୂପାନ୍ତରିତ କରିପାରେ । ସେଇ ମହାନ ଶକ୍ତିଧର ମୃତ୍ୟୁଂଜୟ ବିଶ୍ୱପୁରୁଷଙ୍କୁ କବି ଆତ୍ମସତ୍ତାରେ ସମ୍ଭାବିତ ଦେଖିଛନ୍ତି -

''ଅଛି ମୋର ବିଶ୍ୱରୂପ ବିରାଟ ଅସୀମ
ତଡ଼ାଗ ସମାନ ତହିଁ ତୋର ରୂପ ଭୀମ
ରବିଚନ୍ଦ୍ର ଗ୍ରହ ତାରା ଆକାଶ ପବନ
ନିଶିଦିନ
ରେଣୁ ସମ ଭଜେ ଯହିଁ ଲୀନ''          (ସିନ୍ଧୁ–ଛୁରୀଟିଏ ଲୋଡ଼ା)

ଅସ୍ମିତାର କ୍ଷୁଦ୍ରରେଣୁରେ ବିରାଟ ଅସୀମଙ୍କର ବିଶାଳ ପ୍ରକାଶ ଲୋଡ଼ିବା, ଏହା ଯେତିକି ରୋମାଣ୍ଟିକ ଅତୀନ୍ଦ୍ରିୟତାର ଆକୁଳତା, ସେତିକି ଅଧ୍ୟାତ୍ମ ଆସ୍ପୃହାର ଆକୁତି ବି । ସେଇଥିପାଇଁ ଭାବାକୁଳତା ଯେତେବେଳେ 'ଅରୂପର ଆହ୍ୱାନ କରିଛି –

''ହେ ଅତନୁ, ତନୁ ଛାଡ଼ି ମିଳିବାକୁ ତୁମର ଗତିରେ
ଲୋଡ଼ୁଅଛି ପ୍ରାଣ ମମ ଆଜି ଏଇ ଚ଼ଇତି ରାତିରେ –''

ଅତନୁ, ଚଇତିରାତି ପ୍ରଭୃତି ରୋମାଣ୍ଟିକ ଆବେଗାପ୍ଲୁତ ଶବ୍ଦ ଯେତିକି ମର୍ତ୍ତ୍ୟ ପ୍ରେମାଭିଳାଷର ସମ୍ବାଦ ବାଢ଼ିଛି ସେତିକି ତନୁହୀନ ଦେହାତୀତ ପ୍ରଣୟର ବିଦେହ ବିସ୍ତାର ପ୍ରବଣତା ରୂପକ ଅତୀନ୍ଦ୍ରିୟତାର ରହସ୍ୟରେ ହଜିବାର ସଂକେତ ଦେଇଛି । ଅପାର୍ଥିବ ପ୍ରତି ପ୍ରତ୍ୟୟ ଓ ବିଶ୍ୱାସର ମନ୍ତ୍ର ଦୃଢ଼ୋଚ୍ଚାରିତ ହୋଇଛି –

''ନୁହେ ନୁହେ ଅକାରଣ ଅର୍ଦ୍ଧସ୍ଫୁଟ ଆହତ ମଞ୍ଜରୀ
ଅପ୍ରକାଶ ବାଣୀ ଯେତେ ମିଳାଇଛି ହୋଇନାହିଁ ଧରି
ପ୍ରତି ଅଣୁ ପରମାଣୁ ନୋହେ ଅକାରଣ
କୋଟି କୋଟି ଜୀବନ ମରଣ
ଏ ବିରାଟ ବିଶ୍ୱେ କେବେ ନାହିଁ କାର ଭୟ
ଚିରଦିନ ଝରଇ ଅଭୟ । (ସୃଜନ ବ୍ୟଥା - ମୋ କବିତା)

'ବିଶ୍ୱର ଆହ୍ୱାନ' କବିତାରେ ଯେଉଁ ବ୍ୟକ୍ତିର ଜୟଗାନ, ତାହା ମଧ୍ୟ ମାନବାତ୍ମାର ଐଶ୍ୱରିକ ଗୌରବର ସ୍ୱୀକୃତି ପତ୍ର । ବ୍ୟକ୍ତି ଚେ଼ତନାରେ ବିଶ୍ୱ ସଂପୃକ୍ତିର ଏଇ ଉଦ୍‌ବୋଧନ

ଭୂମି ଉପରେ ପୂର୍ବର ଦୁର୍ବିସହ ପୃଥିବୀ ପ୍ରେମ ଆପ୍ଲୁତ କବି ହୃଦୟ ପାଇଁ କେବଳ ଚିର ସହନୀୟ ନୁହେ, ରମଣୀୟ ଓ ବରଣୀୟ ମନେହୋଇଛି ।

''ତୁମରି ପ୍ରେମେ ଭୁବନ ଭଲ ଲାଗଇ
ଚେତନା ମମ ସକଳ ପଥେ ଜାଗଇ
ହତାଶେ ଆଉ ନୁହେଁ ମୁଁ ଜଡ଼
ମରଣ ଆଉ ନ ମଣେ ବଡ଼
ତୁମରି ଲାଗି ଶତ ଜୀବନ ଆଜି ମୋ ଏଥି ମାଗଇ ।'' (ପ୍ରସାଧନ)

କବି ଅନ୍ତଃସତ୍ତାରେ ଜୀବନପ୍ରେମୀ; ବିଶ୍ୱାଲିଂଗନର ଗଭୀର ବ୍ୟାକୁଳତାରୁ ଉଚ୍ଚାରିତ ତାଙ୍କର ଜୀବନବାଦୀ ସାମ୍ୟମୈତ୍ରୀବାଣୀ, ଯାହା ତାଙ୍କର କବିତା, ଉପନ୍ୟାସ ଓ ନାଟକରେ ପ୍ରତିଫଳିତ । 'ମୁକ୍ତାଗଡ଼ର କ୍ଷୁଧା' ଓ 'ଅମରଚିତା' ଉପନ୍ୟାସ ଦ୍ୱୟରେ ସଂକେତିତ ସାମ୍ୟବାଦୀ ଚିନ୍ତାଧାରା, ଜନକଲ୍ୟାଣ ଓ ଆର୍ଥନୀତିକ ସମତା ତାର ମୂଳ ପ୍ରତିପାଦନ; ଏହା ଯେପରି ଗାନ୍ଧିଜୀଙ୍କ ରାମରାଜ୍ୟ ଓ ମାର୍କ୍ସଙ୍କ ସାମ୍ୟରାଜ୍ୟର ସମତାକରଣ ଏବଂ ଏ ବିଧାନ ଈଶ୍ୱରଙ୍କୁ ଜୀବନରୁ ବହିଷ୍କାର କରି ନୁହେ, ଈଶ୍ୱରଙ୍କୁ ମାନବର ଜୀବନଧାରାରେ ବାସ୍ତବତାର ଭୂମିରେ ନବରୂପତାରେ ଆବିଷ୍କାର କରିବାର ପ୍ରୟାସ । 'ମାଟିର ମଣିଷ'ରେ ତ ଗାନ୍ଧୀ ଦର୍ଶନର ପ୍ରୟୋଗବାଦୀ ଉପସ୍ଥାପନାରେ ଈଶ୍ୱର ଓ ମଣିଷ ମିଶିଯାଇଛନ୍ତି ଏବଂ ମଣିଷ - ଈଶ୍ୱରଟିଏ ଈଶ୍ୱର ମଣିଷ ରୂପ ଅବତାର ଚେତନାଠାରୁ ବିଶାଳତର ଓ ବ୍ୟାପକତର ସ୍ଥିତିରେ ଆବିର୍ଭୂତ ହୋଇଛି । ସାମ୍ୟବାଦ, ସମାଜବାଦ କି ଯଥାର୍ଥ ମାନବବାଦ ଅଧ୍ୟାତ୍ମବାଦର ବିରୋଧ ନୁହନ୍ତି ବରଂ ତାର ପ୍ରାୟୋଗିକ ରୂପ ବିଭାବ - କାଳିନ୍ଦୀଚରଣ, ବୈକୁଣ୍ଠନାଥ ଏବଂ ଅଧୁନା ପ୍ରତିଷ୍ଠିତ ଲେଖକ ମନୋଜ ଦାସଙ୍କ କାବ୍ୟଜୀବନ ତାର ସାକ୍ଷ୍ୟ ।

ପ୍ରକୃତପକ୍ଷେ କାଳିନ୍ଦୀଚରଣଙ୍କ କାବ୍ୟଭାବନାର ମେଟାଫିଜିକାଲ ଇନ୍ଦ୍ରିୟୋତ୍ତର ଜିଜ୍ଞାସା ରୋମାଣ୍ଟିସିଜମ୍ ପରିପୁଷ୍ଟ ସେଇ ଭାବଭୂମିରୁ ଉଦ୍‌ବୋଧିତ ଯାହା ଗଭୀର ଓ ସ୍ଥାୟୀ ଉପଲବ୍‌ଧିରେ ରହସ୍ୟବାଦୀ ଅତୀନ୍ଦ୍ରିୟତାକୁ ଲକ୍ଷ୍ୟ କରିଥାଏ । ତାଙ୍କ ରଚ଼ନାର ବିଶ୍ୱାସଦୀପ୍ତ ବିଶ୍ୱଚେତନା ଉଦ୍‌ବୁଦ୍ଧ ମାନବବାଦୀ ଦର୍ଶନ 'ସର୍ବୈକମ୍'ରୁ ଉତ୍‌ସାରିତ । ଏ ପରିପ୍ରେକ୍ଷୀରେ ପାରଂପରିକ ଧର୍ମାଚାର, ସ୍ମୃତି-ଦର୍ଶନ, ଶୁଷ୍କ ବୈରାଗ୍ୟ ଓ ମୁମୁକ୍ଷା ବିରୁଦ୍ଧରେ ଯୁଗୋଚିତ ନବ କାବ୍ୟଭାବନା ସଂଗେ ତାଳଦେଇ କାଳିନ୍ଦୀଚରଣଙ୍କ କାବ୍ୟସ୍ୱର ଯେଉଁ ବିଦ୍ରୋହ ରଚନା କରିଛି ତାହା ଧର୍ମ ବିରେଧୀ ନୁହେଁ, ବରଂ ମାନବଧର୍ମର ବିରୋଧୀ ଆଚାରପ୍ରବଣ ସଂସ୍କାରବଦ୍ଧ ସମାଜର ଅବକ୍ଷୟିଷ୍ଣୁତାକୁ । ଅପାର୍ଥିବ ପ୍ରତି ଉନ୍ମୁଖତା, ଭାବପ୍ରବଣ ତାରୁଣ୍ୟର ବିଶ୍ୱାନୁରାଗ, ଆଦର୍ଶବାଦୀ ଯୌବନର ନିଷ୍ଠା ଓ ପ୍ରତିକ୍ରିୟାତ୍ମକ ଏକ ମାନବବାଦୀ ବାସ୍ତବଦର୍ଶନ,- ରବୀନ୍ଦ୍ର ନାଥଙ୍କ ପ୍ରତିପାଦନରେ ଯାହା ମାନବଧର୍ମ (Religion of Man)

ରୂପେ ଉଦ୍‌ବୋଧିତ । ତାହା କାଳିନ୍ଦୀଚରଣଙ୍କ କବି ସତ୍ତାର କ୍ରମ ବିବର୍ତ୍ତିତ ରୂପ ଆଲେଖ୍ୟ । ସବୁଜ କବିଙ୍କ ଉଦ୍‌ଘୋଷଣା, 'ସମାଜ ମାନିବି ନାହିଁ ଲୋକମତ ଦଳିବି ଚରଣେ'– ବ୍ୟକ୍ତିଗତ ସୁଖ କି ମତ ପ୍ରତିଷ୍ଠା ପାଇଁ ନୁହେ, ମଣିଷର କଥା କହିବା ପାଇଁ କବିଟିଏ ସ୍ୱାଧୀନ ମତ ପ୍ରକାଶ କ୍ଷେତ୍ରରେ ନିର୍ଭୀକ ହୋଇ ରହିବାର ଦୃପ୍ତ ଘୋଷଣା ପତ୍ର । ସେଇଥିପାଇଁ କାଳିନ୍ଦୀଚରଣ ବହୁ ସମ୍ଭାବନା ସତ୍ତ୍ୱେ ସକ୍ରିୟ ଦଳ-ଅଧୀନ ସାମ୍ୟବାଦୀଟିଏ ହୋଇପାରିଲେ ନାହିଁ, ତାଙ୍କ ସାମ୍ୟବାଦୀ ଦର୍ଶନ ତାଙ୍କ ଅନ୍ତରସ୍ଥ ଅଧ୍ୟାତ୍ମ ଆକୁତିଟିକୁ ବିଭିନ୍ନ ସାମୟିକ ସଂଶୟ ଓ ନୈରାଶ୍ୟର ଭାବସଂଘାତ ସତ୍ତ୍ୱେ ବିନାଶ କରିବାରେ ସମର୍ଥ ହୋଇନାହିଁ ବୋଲି । ତଥାପି କାଳିନ୍ଦୀ କାବ୍ୟ ଚେତନା ପୂର୍ଣ୍ଣ ସ୍ୱୀକୃତି କି ପୂର୍ଣ୍ଣ ଅସ୍ୱୀକୃତିର ନୁହେ ଏବଂ କାଳିନ୍ଦୀ କାବ୍ୟମାନସର ଏ ସଂଶୟ ଦୋଳନ ସମସାମୟିକ ଯୁଗ ଚେତନାର । ଏ ଦୃଷ୍ଟିରୁ ସତୀର୍ଥ ବୈକୁଣ୍ଠନାଥଙ୍କ କାବ୍ୟଚେତନା ସହ ତାଙ୍କର ସ୍ୱରର ସାମ୍ୟ, ବୈଷମ୍ୟ ବିଚାରଣୀୟ । ମଧ୍ୟଯୁଗୀୟ ସ୍ୱର୍ଗ ପାରତ୍ରିକ ଓ ଅମରତ୍ୱ ପ୍ରତି ସନ୍ଦେହ, ଆକ୍ଷେପ, ନାସ୍ତିବାଣୀ ଥରକୁ ଥର ମୁଣ୍ଡ ଟେକିଛନ୍ତି, 'ଜୀବନ ପରେ ନାହିଁରେ କିଛି ନାହିଁ ।' ତଥାପି କାଳିନ୍ଦୀ କାବ୍ୟଦର୍ଶନ ସଂପୂର୍ଣ୍ଣ ଚାର୍ବାକୀୟ ହୋଇପାରିନାହିଁ ।

କବିପ୍ରାଣରେ ଅରୂପର ଆହ୍ୱାନକୁ ମାନବୀୟ ଆର୍ତ୍ତି ଦୈନ୍ୟ ଛୁପାଇ ପାରିନାହିଁ । ସାଲିସ୍‌ବ୍ୟର୍ଥ ଏ ଭଗ୍ନ ସ୍ୱରାଳାପ ଅତୀନ୍ଦ୍ରିୟପ୍ରବଣ ସବୁଜ କାବ୍ୟ ଭାବନାର ପ୍ରଧାନ ଅନ୍ତର୍ଦ୍ୱନ୍ଦ୍ୱ ରୂପେ ପ୍ରକଟିତ । ଦେଖାଯାଏ - ଜାଗତିକ ସମସ୍ୟା ପ୍ରତି ଦୃଷ୍ଟି ଦେବାବେଳେ କବି ଯେପରି ଈଶ୍ୱର ବିମୁଖ, ଆତ୍ମାନୁଭବରେ ଅନ୍ତର ଦେବତାଙ୍କ ପ୍ରତି ସେପରି ଭାବ ବିଶ୍ୱସ୍ତ । ପୃଥିବୀର ଦୁଃଖ ଦେଖି ତାଙ୍କ ସ୍ୱର ବାରବାର ଦେବତାର ବିଦ୍ରୋହୀ ହୋଇଛି, ନିଜକୁ ନାସ୍ତିକ ବୋଲି ଘୋଷଣା କରିଛି ଆଉ ହୃଦୟର ସମ୍ପର୍କରେ ଅନ୍ତରରେ ଅନ୍ତରତମଙ୍କ ଚିର ଅନୁଗତ ରହିଛି । ତାଙ୍କ ପ୍ରତି ବିମୁଖ ଭାବନା ମଧ୍ୟ ଅସହ୍ୟ ହେଉଛି । 'ତୁମେ ଅପମାନ ପ୍ରିୟ ମରଣ ହୁଁ ବଳି ଦେଉ ବ୍ୟଥା / ତବ ଅପମାନ କଲେ ମୂକ ହେଉ ମୋର ସବୁକଥା' (ଆସ୍ତିକର ଆକୁତି) । ମନେହୁଏ ଏ ପ୍ରିୟ କେବଳ ଅନ୍ତରର, କେବଳ ଆତ୍ମାର ଦୋସର, ଆତ୍ମାର ନିଭୃତରେ ତାଙ୍କର ସ୍ଥିତି ଓ ଅନ୍ତଃପ୍ରେରଣା ରୂପେ ଜାଗରୂକ, ରବୀନ୍ଦ୍ରନାଥଙ୍କ ଜୀବନଦେବତା ସମବାଚୀ । ପକ୍ଷାନ୍ତରେ ପୁରୀମନ୍ଦିର କବିତାରେ ସଂବୋଧିତ ପାଷାଣ-ଦେବତା ଆନୁଷ୍ଠାନିକ, ରିଚୁଆଲ, ପ୍ରତୀକ, ବ୍ୟକ୍ତିର ବିଶ୍ୱାସସିଦ୍ଧ ଓ ବିଶ୍ୱାସ ବାହାରେ ସ୍ଥିତିହୀନ । ବଡ଼ ପରୋକ୍ଷ ଓ ସୁଦୂର, ନିଃସଂପୃକ୍ତ । କାଳିନ୍ଦୀ କବିତାରେ ଏଇ ବିରୋଧାଭାସଟି ସ୍ପଷ୍ଟ ଓ ପ୍ରବଳ । ତାଙ୍କ କବିତା ବହୁରୂପେ, ବହୁ ଭାବେ ବିଶ୍ୱସ୍ରଷ୍ଟାଙ୍କୁ ଅସ୍ୱୀକାର କରିବାକୁ ପ୍ରୟାସ କରିଥିବାବେଳେ ଆତ୍ମାର ବ୍ୟାକୁଳତା ପ୍ରାଣସ୍ରଷ୍ଟାଙ୍କୁ ଯେଉଁ ଭାବନିବେଦନ କରିଛି ସେଥିରେ କବିଙ୍କ ଅଧ୍ୟାତ୍ମ ଆକୁତି ଓ ଅତୀନ୍ଦ୍ରିୟ ବ୍ୟାକୁଳତା ସ୍ପଷ୍ଟ । ଏ ସ୍ୱର ବିଶ୍ୱଜନ ପ୍ରତିନିଧି କବି ମଣିଷଟିର ନୁହେ, ତାହା ଏକକ

ଅନ୍ତଃସତ୍ତାର । କବି ସଚେତନ ଭାବେ ଦ୍ୱିଧା ସ୍ଥିତିକୁ ଅବଲମ୍ବନ କରିଛନ୍ତି ଏବଂ ଏହାରି ଭିତରୁ ଡାୟାଲେକ୍‌ଟିକ୍ ହେଗେଲୀୟ ପନ୍ଥାରେ ଉଭୟର ସମନ୍ୱୟ ସ୍ଥିତିକୁ ଲକ୍ଷ୍ୟ ରଖିଛନ୍ତି । ଚିର ରହସ୍ୟମୟଙ୍କ ସହ ନିବିଡ଼ ସଂଯୋଗ ତାଙ୍କ ପ୍ରଣୟୀ ସତ୍ତାର ନିଭୃତ କାମନା ଏବଂ ଏହାସହ ବିଶ୍ୱର ଏକୀଭୂତ ମିଳନର ଆଶା କବି ସତ୍ତାରେ ନିଗୂଢ଼ ହୋଇ ବିଦେହ ମାର୍ଗରେ ଅରୂପ ପ୍ରୀତିର କାମନା କରିଛି । ବିଶ୍ୱର ପଥ ଘାଟରେ ନିଜ ପ୍ରାଣର ସ୍ପର୍ଶ ଦେଇ କବି ସେ ବ୍ୟାପ୍ତ ପ୍ରେମ ସହ ଏକାତ୍ମ ହେବାର ଅଭିଳାଷ ପୋଷଣ କରିଛନ୍ତି ।

ମୋଟ ଉପରେ ବାସ୍ତବବାଦୀ ଚେତନା କବିଙ୍କ ରୋମାଣ୍ଟିକ୍, ରହସ୍ୟବାଦୀ ଅତୀନ୍ଦ୍ରିୟ କାବ୍ୟ ଭାବନାରେ ଥରକୁଥର ସଂଶୟ ସଙ୍ଘାତ ସୃଷ୍ଟି କରିଛି ଓ ତାଙ୍କ କାବ୍ୟାଦର୍ଶକୁ ଭିନ୍ନମାର୍ଗ ସନ୍ଧାନୀ କରାଇଛି । ତା ସତ୍ତ୍ୱେ ଅତୀନ୍ଦ୍ରିୟତାର ସମ୍ମୋହରୁ ସେ ମୁକ୍ତ ହୋଇ ପାରିନାହାନ୍ତି । ଆଦ୍ୟ କାଳରେ ଉଚ୍ଚାରିତ ଅତୀନ୍ଦ୍ରିୟ ଅଭିଳାଷ କ୍ରମଶଃ କମଳବିଳାସୀ ସ୍ୱପ୍ନଚାରିତାର ମୋହ ଓ ଦୁର୍ବଳତାକୁ ପରିହାର କରି ଏକ ନିଶ୍ଚୟାତ୍ମକ ଜୀବନବାଦୀ ବାସ୍ତବତାର ଦୃଢ଼ ଭୂମି ଉପରେ ଆପଣାକୁ ପ୍ରତିଷ୍ଠା କରିବାକୁ ଅତୀନ୍ଦ୍ରିୟ ଦର୍ଶନରୁ ପ୍ରେରଣାରୁ ସମର୍ଥ ହୋଇଛି - ଏହା କବିଙ୍କ ସାମଗ୍ରିକ ରଚନା ରୂପରେ ଆଭାସିତ ।



# କାଳଜୟୀ ସୃଷ୍ଟି ଓ ସ୍ରଷ୍ଟା କାଳିନ୍ଦୀଚରଣ

ଡକ୍ଟର ମନୋରଂଜନ ପ୍ରଧାନ

କାଳିନ୍ଦୀଚରଣ (୧୯୦୧ - ୧୯୯୧) ସବୁଜ ଯୁଗର ଅନ୍ୟତମ କର୍ଣ୍ଣଧାର ଭାବରେ ୧୯୨୧ରୁ ୧୯୩୫ ପର୍ଯ୍ୟନ୍ତ ଏହାର ଲାଳନ ପାଳନ ଦାୟିତ୍ୱ ଗ୍ରହଣ କରିଥିଲେ । ଅନ୍ୟ ଚାରିବନ୍ଧୁଙ୍କ ସାହଚର୍ଯ୍ୟରେ ତାଙ୍କ ପୂର୍ବସୂରୀମାନଙ୍କ ଆଦର୍ଶକୁ ଏମାନେ ସବୁଜିମା ପ୍ରଦାନ କରିଥିଲେ । ଏଥି ସହିତ ସମକାଳରେ ପ୍ରଖ୍ୟାତ ସାହିତ୍ୟ ସମ୍ପାଦକ ବିଶ୍ୱନାଥ କରଙ୍କ ପ୍ରେରଣା ଓ ପଡ଼ୋଶୀ ରାଜ୍ୟରେ ଜନ୍ମଗ୍ରହଣ କରିଥିବା ତଥା ଭାରତବର୍ଷରେ ପ୍ରଥମ ନୋବେଲ ପୁରସ୍କାର ଲାଭ କରିଥିବା ରବୀନ୍ଦ୍ରନାଥଙ୍କ ତୁଙ୍ଗ ପ୍ରତିଭାକୁ ଆଦର୍ଶ ମନେକରି ପାଞ୍ଚଜଣ ଉଦୀୟମାନ ଯୁବକ ଯେଉଁ ନୂତନ ଚେତନାର ପ୍ରଚାର ଓ ପ୍ରସାର କରାଇଲେ ତାହା ବାସ୍ତବିକ୍ ଓଡ଼ିଆ ସାହିତ୍ୟ ପାଇଁ ଅପାଶୋରା ହୋଇ ରହିବ । କିନ୍ତୁ ଅନେକ ସୃଷ୍ଟିରେ ରବୀନ୍ଦ୍ର ଆଦର୍ଶ ବ୍ୟତିରେକେ ମଧ କାଳିନ୍ଦୀଚରଣଙ୍କ ପ୍ରତିଭା ଥିଲା ଉର୍ଜ୍ୱସ୍ୱଳ । ସାଧାରଣତଃ, ସମାଲୋଚକଗଣ କହିଥାନ୍ତି ଯେ, ସବୁଜ ଯୁଗର ଆରମ୍ଭରୁ ହିଁ ପାଞ୍ଚଜଣଙ୍କ ସାହିତ୍ୟ ଥିଲା ରବୀନ୍ଦ୍ର ଅନୁଗାମୀ । ଏହା କେତେକାଂଶରେ ସତ୍ୟ; ମାତ୍ର ସମ୍ପୂର୍ଣ୍ଣ ସତ୍ୟ ହୋଇ ନପାରେ ।

ବକ୍ତବ୍ୟର ଯୁକ୍ତିଯୁକ୍ତତା ପାଇଁ କାଳିନ୍ଦୀଚରଣଙ୍କ ତିନୋଟି କୃତିକୁ ବିଚାର କରାଯାଇପାରେ । ଯେଉଁଗୁଡ଼ିକ ମୁଖ୍ୟତଃ ଲେଖକଙ୍କ ସାହିତ୍ୟିକ ଜୀବନର ଏଗାରବର୍ଷ ମଧ୍ୟରେ ରଚିତ । ମୋ ବିଚାରରେ 'ମାଂସର ବିଳାପ' (୧୯୨୬), 'ପୁରୀ ମନ୍ଦିର' (୧୯୨୭) ଓ 'ମାଟିର ମଣିଷ' (୧୯୩୧) କାଳିନ୍ଦୀଚରଣଙ୍କ ଏକ ଏକ ଶ୍ରେଷ୍ଠ ଗଳ୍ପ, କବିତା ଓ ଉପନ୍ୟାସ । ପ୍ରତ୍ୟେକଟିରେ ପ୍ରକାଶ ପାଇଛି ଲେଖକଙ୍କ ମାନବତାବାଦୀ ଭାବଧାରାର ବାସ୍ତବ ଦୃଷ୍ଟିଭଙ୍ଗୀ । କାଳିନ୍ଦୀଙ୍କ ସମକାଳରେ ଓ ପରବର୍ତ୍ତୀ ଓଡ଼ିଆ ସାହିତ୍ୟରେ ବହୁ ଗଳ୍ପ, କବିତା ଓ ଉପନ୍ୟାସ ରଚିତ । ମାତ୍ର ମାନବେତର ଚରିତ୍ର ମଧ୍ୟଦେଇ 'ମାଂସର ବିଳାପ' ପରି ଗଳ୍ପ 'ପୁରୀ ମନ୍ଦିର' ସଦୃଶ ମାନବତାବାଦୀ ସାମ୍ୟଚେତନା ଧର୍ମୀ କବିତା ଓ ଚମତ୍କାର ମାନବୀୟ ଭାବ ସମ୍ପର୍କ ଓ ସମ୍ବନ୍ଧଭିତ୍ତିକ ଉପନ୍ୟାସ ଭାବରେ 'ମାଟିର ମଣିଷ' ଅନନ୍ୟ ।

'ମାଂସର ବିଳାପ' ଗଳ୍ପରେ କାଳିନ୍ଦୀଚରଣ ଇଂଲିଶ ଗ୍ରେ ହାଉଣ୍ଡ 'ଡୋରା' ଓ ଦେଶୀ ଅରଣ୍ୟର କୃଷ୍ଣସାର 'ଜଳି'ର ଜୀବନ କାହାଣୀକୁ ହିଁ ଶୁଣାଇଛନ୍ତି । ଗଳ୍ପ ରଚନାର ପୃଷ୍ଠଭୂମିରେ

ମୁସଲମାନ ମାଂସବେପାରୀର ଖାସି ନିର୍ବାଚନ ଘଟଣାଟି (ଅଙ୍ଗେ ଯାହା ନିଭାଇଛି - ପୃଷ୍ଠା - ୨୦୯) ରେଖାପାତ କରିଥିଲେ ହେଁ ଲେଖକଙ୍କ ମାନବିକ ସମ୍ବେଦନାର ଚିତ୍ର ଏଥିରେ ସ୍ପଷ୍ଟ । ମାତୃହରା ଜଲିକୁ ସ୍ନେହ ଆଦର ଦେଇ ପାଳିବା ଭିତରେ ଜମିଦାରଙ୍କ ଉଦାର ମାନବୀୟ ଚେତନା ଯେମିତି ପ୍ରକଟିତ ସେମିତି ମାଂସାଶୀ କୁକୁର ଓ ଶାକଭୋଜୀ ହରିଣ ମଧ୍ୟରେ ବନ୍ଧୁତା ପାଠକ ପ୍ରାଣରେ ପୁଲକ ସଂଚାର କରେ । ଗଳ୍ପଟିର ପରିଣତିକୁ ଜାଣିବା ପାଇଁ ଅପେକ୍ଷା କରିଥିବା ପାଠକ ଉଦ୍‌ବେଳିତ ହୋଇ ଗାନ୍ଧିଙ୍କ ପ୍ରବର୍ତ୍ତିତ ଅହିଂସା ମାର୍ଗକୁ ମନେପକାଇଥାଏ । ଜମିଦାରଙ୍କ ହୃଦୟବତ୍ତାର ପରିଚୟ ଦେବାକୁ ଯାଇ କାଳିନ୍ଦୀଚରଣ ତାଙ୍କ ଚିଡ଼ିଆଖାନାଟି ସମ୍ପର୍କରେ ମଧ ଦୁଇଚାରୋଟି କଥା କହିଛନ୍ତି । ବନ୍ଧୁବତ୍ସଳ ଜମିଦାରଙ୍କ ବଡ଼ପଣ ଓ ଆତ୍ମସମ୍ମାନ ସମାନ୍ତରାଳ ଭାବରେ ଗତି କରିଛି । ମଣିଷର ଅହଂ ଓ ଉଦାରର ନମୁନା ବୋଧହୁଏ ଜମିଦାର ଚରିତ୍ରରେ ହିଁ ପ୍ରକାଶ ପାଇବା ଉଚିତ ଥିଲା । ବିଦେଶୀ ବନ୍ଧୁଙ୍କୁ ବଣଭୋଜିରେ ଆପ୍ୟାୟିତ କରିବାପାଇଁ ଜମିଦାରଙ୍କର ଜଲିର ମାଂସ ପ୍ରତି ଯେଉଁ ନିଃଷ୍କରୁଣ ସିଦ୍ଧାନ୍ତ ଏହା ତାଙ୍କର କିଂକର୍ତ୍ତବ୍ୟବିମୂଢ଼ ଭାବକୁ ସୂଚାଏ ନାହିଁ; ବରଂ ପଶୁକୁ ଆଦର ଯତ୍ନରେ ପାଳୁଥିବା ମଣିଷର ସଇତାନ ପ୍ରକୃତିକୁ ଉନ୍ମୋଚନ କରେ । ହୋଇପାରେ ଜମିଦାର ପରିସ୍ଥିତିରେ ପଡ଼ି ଅନନ୍ୟୋପାୟ ହୋଇ କ୍ଷମତାଶାଳୀ ବନ୍ଧୁଙ୍କ ନିକଟରେ ଅସହାୟତା ଜନିତ ନିଷ୍ଠୁରତା ପ୍ରକାଶ କରିଛନ୍ତି; କିନ୍ତୁ ନିଜ ହୃଦୟ ଓ ବିବେକ ନିକଟରେ ବଳି ପଡ଼ିବା ଶିକ୍ଷିତ ଓ ସ୍ନେହୀ ବ୍ୟକ୍ତିଙ୍କ ପାଖରେ ସହଜରେ ନ ଘଟିବା ଦରକାର । କାଳିନ୍ଦୀଚରଣ ପରୋକ୍ଷରେ କହୁଛନ୍ତି – ମଣିଷର ଅସହାୟତା ସ୍ଥାନ, କାଳ ନିର୍ବିଶେଷରେ ସମ୍ଭବ, ମାତ୍ର ବିଦେଶୀ ଗ୍ରେ ହାଉଣ୍ଡ କୁକୁରଟିର ଅନୁପମ ସ୍ନେହପ୍ରବଣତା, ସଂବେଦନଶୀଳତା ମଣିଷର ଏକାନ୍ତ ଶିକ୍ଷଣୀୟ ହେବା କାମ୍ୟ । ବୁଦ୍ଧିଶୂନ୍ୟ କୁକୁରଟି ଯଦି ବଂଧୁ ପ୍ରତି କରାଯାଇଥିବା ଅନ୍ୟାୟର ପ୍ରତିରୋଧ କରିପାରିଲା ତେବେ ମଣିଷ ନିଜ ବନ୍ଧୁଙ୍କୁ ଖୁସି କରିବା ପାଇଁ ନିଜ ବିବେକ ପାଖରେ ନେଇଥିବା ଅନ୍ୟାୟ ସିଦ୍ଧାନ୍ତର ପ୍ରତିବାଦ / ପୁନଃ ବିଚାର କରିପାରିବ ନାହିଁ କାହିଁକି ?

ମଣିଷର ପାଶବିକ ପ୍ରବୃତ୍ତି ମଧ୍ୟରେ ମଧ ଦେବତ୍ୱ ଶକ୍ତିର ସଂଯୋଗ ଥାଏ । ଜମିଦାରଙ୍କ ନିଷ୍ଠୁରତା ମଧ୍ୟରେ ତାଙ୍କ ହୃଦୟ ବିଳାପର ଚିତ୍ରଣ ଅଧିକ ମାର୍ମିକ ମନେହୁଏ । ବେଳେବେଳେ ତାଙ୍କୁ ଲାଗେ "ଜ୍ଞାନଶୂନ୍ୟ କୁକୁରଟାର ପାଦତଳେ ପଡ଼ି କ୍ଷମାଭିକ୍ଷା କରିବାକୁ ତାଙ୍କ ଭିତରେ କିଏ ଯେପରି ବାଧ କରୁଛି ।" "କାହିଁ ମାଂସାଶୀ କୁକୁରଟାଠାରୁ କଣ ମୋ ଅନ୍ତର ଏତେଦୂର ନୃଶଂସ ! ଛିଃ ଛିଃ, ସଂସାରଟାରେ କ'ଣ କେବଳ ସବଳ ଦୁର୍ବଳକୁ ଅଧୀନ ରଖି ଆତ୍ମସାତ କରି, ଉଦରସାତ୍ କରି ଜୀବନଧାରଣ କରିବାକୁ ଜାତ ହୋଇଛି । ଜଣେ ବଞ୍ଚିବ ବୋଲି ଆଉ ଜଣକର ମୃତ୍ୟୁ ଏକାନ୍ତ ଆବଶ୍ୟକ ! ମନୁଷ୍ୟ ଯେ ବିଶ୍ୱଗ୍ରାସ କରିବାକୁ ବସିଛି, ଏହାର ଯୁକ୍ତି କ'ଣ, ନା, ସେସବୁ ଜୀବଠାରୁ ବୁଦ୍ଧିମାନ ଓ ବିବେକବାନ୍ । କୁହାଯାଇପାରେ ଏ ପ୍ରତିକ୍ରିୟା ସ୍ୱୟଂ ଲେଖକଙ୍କର । ପ୍ରଥମ ବିଶ୍ୱଯୁଦ୍ଧ ପରେ ପୁଞ୍ଜିବାଦୀ ରାଷ୍ଟ୍ରମାନଙ୍କର ବିଶ୍ୱଗ୍ରାସ କରିବାକୁ

ଯେଉଁ ଉଦ୍ୟମ ଚାଲିଥିଲା, ହୁଏତ ତାହାରି ବିରୁଦ୍ଧରେ ଏ ପ୍ରତିକ୍ରିୟା । ମଣିଷକୁ ଉଚ୍ଚ ଓ ନୀଚ ଭାବରେ ବିଚାର ନ କରି ତା'ର ଆତ୍ମିକ ବିକାଶ ପ୍ରତି ଗାଳ୍ପିକ ଏଥିରେ ଗୁରୁତ୍ୱ ଦେଇଛନ୍ତି । ପଶ୍ଚାତ୍ତାପ ଓ ଅନୁଶୋଚନା ହିଁ ମଣିଷ ଜୀବନକୁ ଉଚ୍ଚତର ସୋପାନକୁ ଉନ୍ନୀତ କରିଥାଏ । ଜମିଦାର ବାବୁଙ୍କ ପଶ୍ଚାତ୍ତାପ ଥିଲା ଏହିପରି –''ତାଙ୍କର ଭୀଷଣ ବିରାଗ ଓ ବିକାର ଜାତ ହେଲା । ଯେଉଁ ଜିହ୍ୱା ଜଲିର ମାଂସ ସ୍ୱାଦ ପରୀକ୍ଷା କରିଥିଲା, ତାହା କିପରି ଅବଶ ହୋଇ ଆସିଲା, ଜଲିର କଲିଜା ଯେଉଁ ଗଳା ମଧ୍ୟରେ ଯାଇଥିଲା, ତାହା ସଂକୁଚିତ ହୋଇ କିପରି ରୁଦ୍ଧ ହୋଇ ଆସିଲା । ଜମିଦାର ବାବୁ ମନେକଲେ, ସେ ଗଳା ଯଦି ଚିରଦିନ ପାଇଁ ରୁଦ୍ଧ ହୁଏ ଏବଂ ସେ ଜିହ୍ୱା ଯଦି ଅବଶ ହୋଇ ଛିନ୍ନ ହୋଇପଡ଼େ, ତେବେ ତାଙ୍କର ମର୍ମନ୍ତୁଦ ଯାତନାର ଟିକିଏ ଅବା ଉପଶମ ହୋଇପାରନ୍ତା ।''

ମାନବତାବାଦୀ ସ୍ରଷ୍ଟା କାଳିନ୍ଦୀଚରଣ ମଣିଷର ମଣିଷ ପଣିଆ ପ୍ରତି ସଂବେଦନଶୀଳ ହୋଇ ଗଳ୍ପଟିରେ ଜୀବନ ପ୍ରତି ଯେଉଁ ଉଦାର ଦୃଷ୍ଟିଭଙ୍ଗୀ ପ୍ରକଟିତ କରିଛନ୍ତି ତାହା 'ମାଂସର ବିଳାପ'କୁ ବିଶ୍ୱସାହିତ୍ୟର ଯେ କୌଣସି ଉଚ୍ଚକୋଟୀର ଗପ ସହିତ ସମାନ କରାଇଥାଏ । ସମ୍ଭବତଃ ଏଇଥିପାଇଁ ହିଁ ଏହା ଦେଶବିଦେଶର ବହୁଭାଷାରେ ଅନୂଦିତ ।

ମଣିଷକୁ ଅନ୍ଧଭାବରେ ଭଲ ପାଉଥିବା କବି କାଳିନ୍ଦୀଚରଣ 'ପୁରୀ-ମନ୍ଦିର' କବିତାରେ ଜୀବନ୍ତ ଦେବତା ମଣିଷର ବନ୍ଦନା ଓ ଆରାଧନା କରି ମାନବତାବାଦୀ ଚେତନାର ଚମତ୍କାର ପରିଚୟ ଦେଇଛନ୍ତି । କବିତାଟିର ପରିକଳ୍ପନା, ଗଠନଶୈଳୀ ଓ ଅନ୍ତର୍ନିହିତ ମାନବଧର୍ମୀ ଚିନ୍ତାଧାରା ଏହାକୁ ନିଃସନ୍ଦେହରେ କ୍ଲାସିକ୍ ମୂଲ୍ୟ ପ୍ରଦାନ କରିବା ସହିତ କାଳିନ୍ଦୀଙ୍କ ଭବିଷ୍ୟତ ମାନବଧର୍ମୀ ସାହିତ୍ୟିକ ଆଭିମୁଖ୍ୟର ସ୍ପଷ୍ଟ ସଂକେତ ପ୍ରଦାନ କରେ ।

'ପୁରୀ ମନ୍ଦିର' କବିତାଟି କେବେହେଲେ ସାମୟିକ ଆବେଗ ଉଚ୍ଛ୍ୱାସରୁ ସୃଷ୍ଟି ହୋଇନାହିଁ । ଏଥିରେ ଅଛି କବିଙ୍କର ଅନ୍ତରାତ୍ମାର ସଂପ୍ରସାରିତ ଭାବାବେଗ । ମଣିଷର ଧର୍ମବିଶ୍ୱାସ, ଜାତୀୟ ଜୀବନର ପ୍ରତିଷ୍ଠା ପାଇଁ ତ୍ୟାଗ, ଶୋଷଣହୀନ ଓ ଶ୍ରେଣୀହୀନ ରାଷ୍ଟ୍ର ନିର୍ମାଣର ପ୍ରେରଣା । ସଚେତନ କବିମନ ନିରନ୍ତର ଆନ୍ଦୋଳିତ ହୋଇ ପ୍ରକୃତିର ରୂପ ପୂଜା ସଙ୍ଗେ ସଙ୍ଗେ ଜୀବନ ପୂଜା କରିଛି । ମାନବକୁ ଦେବତା ଠାରୁ ନ୍ୟୂନ ନକରି କାଳିନ୍ଦୀ ଲେଖିଛନ୍ତି –

''କାଷ୍ଠ ପାଷାଣ ଗଠିତ ହେ ନିର୍ଜୀବ ଦେବତା-ମୂରତି !
ଏ ଦେଶ-ଶୋଣିତେ ଆଜି ଜାଗ୍ରତ ଯେ ବିଶ୍ୱର କୀରତି,
ମାନବର ଶିଳ୍ପ କଳା କଳ୍ପନା ଘଟିତ
ଯୁଗଯୁଗ ଧରି ଯାହା ହୋଇଛି ଗଠିତ

ମାନବର ହସ୍ତେ ବହି ରୂପ
ଭାଗ୍ୟେ ତା'ର କରୁଛ ବିଦ୍ରୂପ
ଅନ୍ତର ଗୁହାରି
ଶୁଣକି ତାହାରି ?
ଶୂନ୍ୟ ପ୍ରାଣ
ହେ ପାଷାଣ !''

'ପୁରୀ ମନ୍ଦିର'ରେ କବି କାଳିନ୍ଦୀଚରଣ ଜଗନ୍ନାଥଙ୍କୁ ଜଣାଣ କରିନାହାନ୍ତି, ମାତ୍ର ଆରାଧନା କରିବା ସମୟରେ ଭଗବାନଙ୍କୁ ମନେପକାଇ ଦେଇଛନ୍ତି – ମଣିଷର ତ୍ୟାଗ, ନିଷ୍ଠା ଓ ପରିଶ୍ରମ ଯୋଗୁଁ ସେ ପୂଜିତ । ଗର୍ବ, ଅହଂକାର, ଯଶ, କୀର୍ତ୍ତିକୁ ଭୁଲି ଯେଉଁ ରାଜା ଏ ପାଷାଣର ଗିରି ନିର୍ମାଣ କରାଇଛନ୍ତି ତାଙ୍କ କୀର୍ତ୍ତିକୁ ନମସ୍କାର କରିବା ପାଇଁ କୋଟି କୋଟି ଜନତା ଆସୁଛନ୍ତି ଓ ସେଇ ସୁଯୋଗରେ ନିର୍ଜୀବ ମୂର୍ତ୍ତିର ଦର୍ଶନ ମିଳୁଛି । କବି କହିଛନ୍ତି –

''ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟ-ପତାକା ଉଡ଼ାଉଛି ଅନନ୍ତ ଗଗନେ,
ବିରାଟ ଯେ ଆତ୍ମା ଏହି ପାଷାଣେ ନିହିତ
ଉଦ୍ଦେଶ୍ୟେ ତାହାରି ଆଜି ନମ୍ର ମୋର ଚିତ୍ତ
ରକତ ମାଂସର ଯେତେ ହସ୍ତ
ନିର୍ମିଲା ଏ ପ୍ରସ୍ତର ସମସ୍ତ,
ତାହାରି ସକାଶେ
ଏ ପାଷାଣ ପ୍ରାଣେ
ନମସ୍କାର
ବାରଂବାର ।''

ମାନବକୁ ଶ୍ରେଷ୍ଠତା ପ୍ରଦାନ କରି ତା'ର ଅନ୍ତରାତ୍ମାକୁ ଅଧ୍ୟୟନ କରି କାଳିନ୍ଦୀଚରଣ କହିଛନ୍ତି, ପ୍ରେମ ଭକ୍ତିର କେତେ ରସ ବୁହାଇ ମଣିଷ ଏ ପାଷାଣକୁ ତରଳାଇ ଦେବା ସହିତ ନିଜ ଜୀବନରସକୁ ବିଶ୍ୱ ନିକଟରେ ଉତ୍ସର୍ଗ କରିଦେଇଛି । ସେହି ଉତ୍ସର୍ଗୀକୃତ ଆତ୍ମା ନିକଟରେ ମୁଁ ବାରମ୍ବାର ନମସ୍କାର ଜଣାଉଛି । ସମାଲୋଚକଗଣ ରବୀନ୍ଦ୍ରନାଥଙ୍କ 'ଧୂଳା ମନ୍ଦିର' କବିତାର ଭାବବସ୍ତୁ ସହିତ ଏହାକୁ ତୁଳନା କରିଥାନ୍ତି । ମାତ୍ର 'ଧୂଳା ମନ୍ଦିର' କବିତାରେ ଥିବା ରାବୀନ୍ଦ୍ରିକ ରହସ୍ୟବାଦ 'ପୁରୀ ମନ୍ଦିର' ରେ ଅଦୃଶ୍ୟ । ସର୍ବୋପରି 'ପୁରୀ ମନ୍ଦିର' ପରି ଭାବ ଓ ବିଷୟଗତ ପରିବ୍ୟାପ୍ତି ହିଁ କାଳିନ୍ଦୀଙ୍କ କବିତାର ବିଶିଷ୍ଟତାକୁ ପ୍ରମାଣ କରାଏ ।

'ମାଟିର ମଣିଷ' ଉପନ୍ୟାସ ସମୟ, ସମାଜ ଓ ମଣିଷ ଆତ୍ମାର ଯେଉଁ ସଂକେତ ବହନ କରିଛି, ସେ ଦୃଷ୍ଟିରୁ ଏହାକୁ ଏକ ମହାକାବ୍ୟିକ ଉପନ୍ୟାସ ଭାବରେ ବିବେଚନା

କରାଯାଇ ପାରେ । ଯେହେତୁ ଏଥିରେ ଉପନ୍ୟାସର କଳାଧର୍ମ ଯଥାଯଥ ଭାବରେ ପ୍ରକଟିତ, ସେହେତୁ ଏହାର ଆଲୋଚ୍ୟ ବିଭାବ ଯଥାକ୍ରମେ; କଥାବସ୍ତୁ, ଚରିତ୍ର, ଭାଷା, ପରିବେଶ ଓ ସନ୍ଦର୍ଶନ ଭୂମି ବିବେଚ୍ୟ ।

ମାଟିର ମଣିଷର କଥାବସ୍ତୁ ରାମଚନ୍ଦ୍ରଙ୍କ ପିତୃସତ୍ୟ ପାଳନ ଭଳି ଏକ ଘଟଣାକୁ କେନ୍ଦ୍ରକରି ଗତି କରିଛି । ଏହାର ନାୟକ ବରଜୁ ପଧାନ ବାପର ମୃତ୍ୟୁକାଳୀନ ଦୁଇଟି ବାକ୍ୟକୁ ବେଦବାକ୍ୟ ପରି ପାଳନ କରିଛି । ଚାଷୀ ଶାମ ପଧାନ ମଲାବେଳକୁ ବଡ଼ ପୁଅକୁ ଡାକି କହିଯାଇଥିଲା "ତମେ ତ ଯୋଡ଼ିଏ ଭାଇ – ବିଲ ମଝିରେ ହିଡ଼ ନପଡ଼େ କି ଘର ମଝିରେ ପାଚେରୀ ନ ଉଠେ । ଏଥିପାଇଁ ତୁ ଜଗିଥିବୁ ।" ବରଜୁ ବୁଢ଼ା ବାପର ଏଇ ଅନୁରୋଧକୁ ଜଗିରଖି ଏଇ ଭାଇ ଭଗାରିଆ ପାରିବାରିକ ଜୀବନ ଘରଭଙ୍ଗା ଟାଉଟରିଆ କଳିଆମାନଙ୍କ ଦ୍ୱାରା ଅଧୁଷିତ ଗ୍ରାମ୍ୟ ଜୀବନରେ ତ୍ୟାଗ ଓ ସହିଷ୍ଣୁତାର ଯେଉଁ ନୂତନ ଇତିହାସ ସୃଷ୍ଟି କରିଛି; ତାହାହିଁ ହେଉଛି 'ମାଟିର ମଣିଷ'ର ନିର୍ଯ୍ୟାସ ।

ବରଜୁର ତ୍ୟାଗ ଓ ସହିଷ୍ଣୁତା ସହିତ କାଳିନ୍ଦୀଚରଣଙ୍କ ଅନ୍ୟ ଏକ ବୈଶିଷ୍ଟ୍ୟ ହେଲା ଓଡ଼ିଶାର ନିଛକ ଏକ ଯୌଥ ପରିବାରକୁ ଚିତ୍ରଣ କରିବା । ଏହି ଚିତ୍ରଣ ଏତେ ମାର୍ମିକ ଯେ ସାଧାରଣ ପାଠକ ମଧ ଏହାକୁ ପଢ଼ିବାବେଳେ ପାରିବାରିକ ଜୀବନର ଆତ୍ମୀୟତା ଓ ଗ୍ରାମ୍ୟଜୀବନକୁ ଗଭୀର ଭାବେ ଅନୁଭବ କରିପାରେ । ଗାଁ ଗଣ୍ଡାରେ ଭାଇ ଭାଇ ମଧରେ ଏକାତ୍ମବୋଧ ପୁଣି ଖଳଲୋକମାନଙ୍କ ଈର୍ଷା ଓ ଷଡ଼ଯନ୍ତ୍ରରେ ଉଭୟ ଉଭୟଙ୍କୁ ବିରୋଧ କରିବା, ଯାଆ ଯାଆ ମଧରେ ସାଂସାରିକ କାରଣରୁ ଶତ୍ରୁତା ଓ ତଦ୍‌ଜନିତ ଅସଦ୍‌ଭାବ, ଘରର ଆର୍ଥିକ ଅସ୍ୱଚ୍ଛଳତା ପରି ଯାବତୀୟ ସମସ୍ୟା ଆଦିର ଚିତ୍ର ମାଟିର ମଣିଷରେ ଅଙ୍କିତ । ଏସବୁ କେବଳ କାହାଣୀର ବିକାଶରେ ସାହାଯ୍ୟ କରିନାହିଁ, ପରନ୍ତୁ ବରଜୁ ପଧାନର ମାନବିକତାର ମହତ୍ତର ଆଦର୍ଶ ଓ ମୂଲ୍ୟବୋଧକୁ କରିଛି ଉଦ୍‌ଭାସିତ ।

ମାଟିର ମଣିଷର ପ୍ରତ୍ୟେକଟି ଚରିତ୍ର ସୃଷ୍ଟି ମୂଳରେ କାଳିନ୍ଦୀଚରଣଙ୍କର କିଛି ନା କିଛି ଉଦ୍ଦେଶ୍ୟ ନିହିତ । ବରଜୁ ଆଦର୍ଶ ସ୍ଥାନୀୟ ତଥା ମୁରବିର ଭୂମିକାରେ ଅବତୀର୍ଣ୍ଣ ହୋଇଥିବାବେଳେ ହରିମିଶ୍ର ଖଳନାୟକ ଶ୍ରେଣୀର ପ୍ରତିନିଧିତ୍ୱ କରେ । ହାରାବୋଉ ସ୍ୱାମୀ ନିକଟରେ ଆତ୍ମସମର୍ପଣ କରିଥିବା ନିଷ୍ପାପର ସ୍ତ୍ରୀର ପରିଚୟ ଦେଉଥିବାବେଳେ ନେତ୍ରମଣି ଉଗ୍ରା, ସ୍ୱାର୍ଥପର । ପ୍ରକୃତରେ ଅସହାୟ ଛକଡ଼ି ଚରିତ୍ରଟି ପାଠକ ପ୍ରାଣକୁ ଆପ୍ଳୁତ କରାଏ । ବାପାପରି ଭଲ ପାଉଥିବା ବଡ଼ ଭାଇକୁ ମୁଣ୍ଡଟେକି କଥା କହିବାର ସାହସ ନାହିଁ ତାର । ଭାଇର ବ୍ୟକ୍ତିତ୍ୱ ନିକଟରେ ସେ ନିଜକୁ ତୁଚ୍ଛ ମନେ କରୁଥିଲେ ହେଁ ପରଙ୍କ ପ୍ରରୋଚନା ଓ ସ୍ତ୍ରୀ କୁବୁଦ୍ଧିର ଶିକାର ହୋଇ ବରଜୁ ଆଗରେ ଭିନ୍ନ ହେବା ପାଇଁ ସେ ପ୍ରସ୍ତାବ ବାଢ଼ିଛି । ମାତ୍ର ବରଜୁ ବାପର କଥା ରକ୍ଷା ନିମନ୍ତେ ନିଜ ପିଲାକବିଲାଙ୍କୁ ଧରି ସବୁ ଦାୟିତ୍ୱ ଆଦରର ସାନଭାଇ ଛକଡ଼ି ଓ ଭାଇବୋହୂ ନେତ୍ରମଣିଙ୍କୁ ଦେଇ ଘରଛାଡ଼ି ଚାଲିଯାଇଛି, ଭାଇର ହୃଦୟ ପରିବର୍ତ୍ତନ କରିବା

ଆଶାରେ । ବାସ୍ତବିକ୍, ମାଟିର ମଣିଷର ପ୍ରତ୍ୟେକଟି ଚରିତ୍ର ସ୍ୱାଭାବିକ । ଛକଡ଼ିର ଭାଇ ପ୍ରତି ଭକ୍ତି ଯେପରି ସ୍ୱାଭାବିକ୍ ନିଜ ପୁତୁରା ଝିଅାରୀଙ୍କ ପ୍ରତି ସ୍ନେହ ଆଦର ମଧ୍ୟ ସେମିତି ସ୍ୱାଭାବିକ । ଏଥି ସହିତ ସ୍ତ୍ରୀ ଓ ପରମାନଙ୍କ କଥାରେ ପରିଚାଳିତ ହୋଇ ଭାଇଠାରୁ ଭାଗନେବା ପାଇଁ କହି ବସିବା ମଧ୍ୟ କୌଣସି ଦୃଷ୍ଟିରୁ ଅସ୍ୱାଭାବିକ ନୁହେଁ । କାରଣ ଲେଖକଙ୍କ ଭାଷାରେ ସେ ଥିଲା ସରଳ ଓ ମାଇଚିଆ । ଯାହାର ବ୍ୟକ୍ତିତ୍ୱର ବିକଶିତ ଦିଗ ଲକ୍ଷଣୀୟ ନୁହେଁ ।

ମାଟିର ମଣିଷରେ କାଳିନ୍ଦୀଚରଣଙ୍କ ପ୍ରତ୍ୟେକଟି ଚରିତ୍ରକୁ ଚିତ୍ରଣ କରିବା ମୂଳରେ ଥିବା ଏକନିଷ୍ଠତା ପାଠକକୁ ଅଭିଭୂତ କରାଏ । ବରଜୁର ସ୍ନେହ, ଶ୍ରଦ୍ଧା, ତ୍ୟାଗ ଓ ଉଦାର ଆଦର୍ଶ ବେଳେ ବେଳେ ହାରାବୋଉ ଆଖିକୁ ମଧ୍ୟ ଅଶ୍ରୁପ୍ଲାବିତ କରିଦେଇଛି । ହରିମିଶ୍ରଙ୍କ ଈର୍ଷାନ୍ୱିତଭାବ ଓ ଅକଲ୍ୟାଣକର ଷଡ଼ଯନ୍ତ୍ର ଏତେ ଉଗ୍ର ଯେ ଉପନ୍ୟାସଟିରେ ପାଠକର ଉତ୍କଣ୍ଠା ଓ ଆକର୍ଷଣ ଶକ୍ତିକୁ ପ୍ରଖରତା ପ୍ରଦାନ କରେ । ମାତ୍ର ଏଇ ଷଡ଼ଯନ୍ତ୍ରର ଶିକାର ହେଉଥିବା ବରଜୁ ଓ ହାରାବୋଉ ଭଳି ଚରିତ୍ରଗଣ ଅନେକ ସମୟରେ ମଧ୍ୟ ଏହାକୁ ଗୁରୁତ୍ୱ ଦେଇନାହାନ୍ତି । ସାଧାରଣ ପାଠକର ସଶ୍ରଦ୍ଧ ଉପଲବ୍ଧିକୁ ରସସିକ୍ତ କରାଇବା ପାଇଁ ବୋଧହୁଏ ଲେଖକଙ୍କର ଏହା ଏକ କଳା । କାଳିନ୍ଦୀଚରଣଙ୍କ ଏ କଳାଧର୍ମ 'ମାଟିର ମଣିଷ'ର ଶିଳ୍ପଧର୍ମକୁ ମହାନୁଭବତାର ଶୀର୍ଷକୁ ଉନ୍ନୀତ କରିପାରିଛି । ଆଦର୍ଶକୁ ଜୀବନର ବ୍ରତ ଭାବରେ ଗ୍ରହଣ କରି ବରଜୁକୁ ଯେଉଁ ସଂଗ୍ରାମ କରିବାକୁ ପଡ଼ିଛି, ସେଥିରେ ସେ ଦ୍ୱନ୍ଦ୍ୱହୀନ ଓ ସିଦ୍ଧାନ୍ତନିଷ୍ଠ । ବରଜୁ ଚରିତ୍ରର ଏହି ମହନୀୟ ଚିତ୍ରଣରେ କାଳିନ୍ଦୀଚରଣଙ୍କ ଏକାଗ୍ରତା ଓ ଗୁଣାଦର୍ଶ ପ୍ରତିପାଦିତ ।

ସମଗ୍ର ଉପନ୍ୟାସଟିର ପରିବେଶ ହୋଇଛି ଏକ ପଲ୍ଲୀଗ୍ରାମ । ଯାହାକୁ କେବଳ ଓଡ଼ିଶାର ନୁହେଁ, ଭାରତବର୍ଷର ଏକ ନିଷ୍କପଟ ଗ୍ରାମ୍ୟ ଜୀବନର ଆଲେଖ୍ୟ କୁହାଯାଇପାରେ । ଯେଉଁଠି ଝାଟିମାଟିର କୁଡ଼ିଆ ଓ ଭଙ୍ଗା ଛାତରେ ଆକାଶ ଦେଖୁଥିବା ନିରନ୍ନ ଅବହେଳିତ ଲୋକଙ୍କ ଚିତ୍ର ବର୍ଣ୍ଣିତ । ଦୁଃଖ ମଧ୍ୟରେ ଘଟୁଥାଏ ଶୋଷକର ପୀଡ଼ନ, ବଢ଼ି, ମରୁଡ଼ି ଆଦି ଦୈବଦୁର୍ବିପାକ । ସୁଖ ବିରାଜିଥାଏ ବାହାବ୍ରତ ପୁଆଣି, ଓଷା ପର୍ବପର୍ବାଣି, ଭାଗବତ ଟୁଙ୍ଗି, ମନ୍ଦିର ଆଦିରେ । ମାଟିକୁ ଆଶ୍ରାକରି ପଡ଼ିରହିଥିବା ମଣିଷର ହସକାନ୍ଦର କାହାଣୀ ହିଁ ସମଗ୍ର ଉପନ୍ୟାସଟିର ପରିବେଶକୁ ପ୍ରାଣବନ୍ତ କରିପାରିଛି ।

ମାଟିର ମଣିଷ ଉପନ୍ୟାସର କଥାବସ୍ତୁ ଓ ପରିବେଶକୁ କେନ୍ଦ୍ରକରି ଏହାର ଭାଷାଶିଳ୍ପ ନିର୍ମିତ । ସ୍ଥାନକାଳପାତ୍ର ଉପଯୋଗୀ ଭାଷାର ଅପୂର୍ବ ପ୍ରୟୋଗ ହେତୁ 'ମାଟିର ମଣିଷ' ଶିକ୍ଷିତ, ଅର୍ଦ୍ଧ ଶିକ୍ଷିତ ଓ ଅଶିକ୍ଷିତଙ୍କର ମର୍ମକୁ ସ୍ପର୍ଶକରେ । ସଂଳାପଧର୍ମିତା ଏହାକୁ କରିପାରିଛି ହୃଦ୍ୟ । ବରଜୁର ଭାଷା ଛକଡ଼ିକୁ ଯେତିକି ସୁହାଏ, ନେତ୍ରମଣିର ଭାଷା ସେହିପରି ଛକଡ଼ିକୁ ଆପଣାର କରେ । ସୁତରାଂ ପାତ୍ରମୁଖୀ ଅତି ଜୀବନ୍ତ ଲୌକିକ ଭାଷା ପ୍ରୟୋଗ ହେତୁ କାଳିନ୍ଦୀଚରଣ ଏହାକୁ ଅତ୍ୟନ୍ତ ସରସ ସୁନ୍ଦର କରିପାରିଛନ୍ତି ନିଃସନ୍ଦେହରେ ।

'ମାଟିର ମଣିଷ' ଭାରତୀୟ ସ୍ୱାଧୀନତା ଆନ୍ଦୋଳନ କାଳରେ ରଚିତ ହୋଇଥିବାରୁ ଏଥିରେ ଗାନ୍ଧୀବାଦୀ ଆଦର୍ଶ କ୍ରିୟାଶୀଳ । ଗାନ୍ଧୀଙ୍କ ସ୍ୱପ୍ନ ଆଦର୍ଶ, ଅହିଂସା, ଐକ୍ୟରେ ଅନୁପ୍ରାଣିତ ବରଜୁ ସମାଜର ଏକ ସାର୍ଥକ ପ୍ରତିନିଧି । ଅହିଂସା ନୀତିର ପ୍ରତିଷ୍ଠା ପାଇଁ ଧରମୁ ଦାସକୁ ହରିମିଶ୍ରଙ୍କ ବିରୁଦ୍ଧରେ ହିଂସା ମାର୍ଗରୁ ନିବୃତ୍ତ କରିଛି । ଜାତି ଧର୍ମ ବର୍ଣ୍ଣ ନିର୍ବିଶେଷରେ ସେ ସମସ୍ତଙ୍କୁ ସଂଗଠିତ କରି ଏକ ଐକ୍ୟରଜ୍ଜୁରେ ଆବଦ୍ଧ ହେବାର ମନ୍ତ୍ର ଶିଖାଇଛି । ମାତ୍ର ହରିମିଶ୍ରଙ୍କ କାରସାଦି ଏତେ ବେଶୀ ଛକଡ଼ି ଓ ନେତ୍ରମଣିଙ୍କୁ ପ୍ରଭାବିତ କରିଛି ଯେ, ଗାନ୍ଧି ଦର୍ଶନ ଅଙ୍କୁରିତ ହେବା ଆଗରୁ ସେ ଗାଁ ଛାଡ଼ି ଚାଲିଯାଇଛି । ଏ ଚାଲିଯିବାରେ ଅବଶ୍ୟ କୌଣସି ପଳାୟନପନ୍ଥୀ ମନୋବୃତ୍ତିର ପ୍ରେରଣା ନଥିଲା । 'ଲୁହାର ମଣିଷ'ରେ ଏହାର ବଳିଷ୍ଠ ପରିପ୍ରକାଶ ପ୍ରମାଣିତ ।

କାଳିନ୍ଦୀଚରଣ ସବୁଜ ଯୁଗର ରୋମାଣ୍ଟିକ ଭାବାବେଗରେ ବହୁ ସାହିତ୍ୟ ରଚନା କରିଥିଲେ ହେଁ ଗାନ୍ଧି ଦର୍ଶନ ଦ୍ୱାରା ସେ ଥିଲେ ପ୍ରଭାବିତ । ଏହାର ନିଦର୍ଶନ ସ୍ୱରୂପ ମାଟିର ମଣିଷରେ ପ୍ରଖ୍ୟାପିତ ଗାନ୍ଧିବାଦୀ ଦର୍ଶନକୁ ସେ ପ୍ରଚାର କରିଛନ୍ତି ପରୋକ୍ଷରେ ।

ଶେଷରେ ଏତିକି କୁହାଯାଇପାରେ ଯେ, ମଣିଷର ସୀମିତ ମନ ଓ ହୃଦୟର ସଂକୀର୍ଣ୍ଣତାକୁ ଅତିକ୍ରମ କରିବା ପାଇଁ ଏକ ଉଦ୍‌ବୁଦ୍ଧ ଅନୁପ୍ରେରଣାର କଥା, ମଣିଷ ହସକାନ୍ଦରେ ଅନୁରଣିତ ଏ ଗ୍ରନ୍ଥ ମାନବିକ ସମ୍ବେଦନାଦିରେ ଋଦ୍ଧିମନ୍ତ ଏକ ଜୀବନ୍ତ ଆଲେଖ୍ୟ । ଏଥିରେ ମାନବିକ ଆବେଦନ, ସମ୍ପର୍କ, ସ୍ନେହ, ପ୍ରେମ, ସଂପ୍ରୀତି ଓ ସହାବସ୍ଥାନ ଏବଂ ସଂଘର୍ଷ-ଦ୍ୱନ୍ଦ୍ୱ, ସଫଳତା-ବିଫଳତାର ଚିତ୍ର ପରିସ୍ଫୁଟ । ଭାରତୀୟ ଆଦର୍ଶବୋଧ, ରାମଚନ୍ଦ୍ରଙ୍କ ସତ୍ୟ, ଯୀଶୁଖ୍ରୀଷ୍ଟଙ୍କ କ୍ଷମାମୟ ପବିତ୍ର ପ୍ରେମ ଓ ଗାନ୍ଧିଜୀଙ୍କ ଅହିଂସାମାର୍ଗ 'ମାଟିର ମଣିଷ'ର କଥାବସ୍ତୁରେ ସ୍ପଷ୍ଟ ହୋଇଥିବାରୁ ଯଥାର୍ଥରେ କୁହାଯାଇପାରେ କାଳିନ୍ଦୀଚରଣଙ୍କର ଏହା ହିଁ ସାର୍ଥକ ମାନବବାଦୀ ଚେତନାର କାଳଜୟୀ ସୃଷ୍ଟି ।

କାଳିନ୍ଦୀଚରଣ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ କରିଛନ୍ତି ଋଦ୍ଧିମନ୍ତ । ତାଙ୍କ ଲେଖନୀର କାଉଁରୀ ସ୍ପର୍ଶରେ କବିତା, ଗଳ୍ପ, ପ୍ରବନ୍ଧ, ଉପନ୍ୟାସ, ନାଟକ, ନାଟିକା, ଆଲୋଚନା, ଆତ୍ମଜୀବନୀ ଆଦି ସାହିତ୍ୟିକ କୃତିଚୟ ଭିନ୍ନ ସ୍ୱାଦର ସନ୍ଧାନ ଦିଏ । ପ୍ରତ୍ୟେକଟି କୃତିରେ ଲେଖକଙ୍କର ନିଷ୍ଠା ଓ ନୈପୁଣ୍ୟ ପ୍ରଦର୍ଶିତ ସତ, ମାତ୍ର ତାଙ୍କ ସମଗ୍ର ସୃଷ୍ଟି ମଧ୍ୟରେ ଆଲୋଚିତ ତିନୋଟିକୁ ଗୋଟିଏ ଗୋଟିଏ ଅମୂଲ୍ୟରତ୍ନ ଭାବରେ ଗ୍ରହଣ କରାଯାଇପାରେ । ଏଗୁଡ଼ିକର ସାହିତ୍ୟିକ ଆବେଦନ ଯୋଗୁଁ ଯେମିତି ରଚନା ତ୍ରୟ ହୋଇଯାଇଛି କାଳୋତ୍ତୀର୍ଣ୍ଣ, ସେମିତି କାଳିନ୍ଦୀଚରଣ ମଧ୍ୟ ହୋଇଛନ୍ତି କାଳଜୟୀ ।

◆

# କାଳିନ୍ଦୀଚରଣଙ୍କ ପ୍ରବନ୍ଧ ସାହିତ୍ୟର ଭିତ୍ତିଭୂମି ଓ ପରିସର

ଡକ୍ଟର ପ୍ରଦୀପ୍ତ କୁମାର ବାରିକ୍

ମହାଭାରତ ସମରରେ ମଧ୍ୟମପାଣ୍ଡବ ଅର୍ଜୁନଙ୍କ ଭୂମିକା ଯାହାଥିଲା, ଠିକ୍ ତାହା ହିଁ ଥିଲା ସବୁଜ ସାହିତ୍ୟ ଗୋଷ୍ଠୀ ଭିତରେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କର । ଅକ୍ଷରକ୍ରମରେ ସବୁଜଗୋଷ୍ଠୀର (ଅବକାଶହ) ପଞ୍ଚସାହିତ୍ୟରଥୀଙ୍କ ମଧ୍ୟରେ କାଳିନ୍ଦୀଚରଣଙ୍କ କ୍ରମ ବି ଥିଲା ଠିକ୍ ମଧ୍ୟମ ବା ତୃତୀୟରେ । ଓଡ଼ିଆ ସାହିତ୍ୟରେ ସବୁଜଗୋଷ୍ଠୀ ଯେଉଁ ଉଦ୍‌ବେଳନ ସୃଷ୍ଟି କରିଥିଲେ, ତନ୍ମଧ୍ୟରେ ବେଶୀଭାଗ ଥିଲା ତାଙ୍କର । ସେ ଥିଲେ ଯୋଗଜନ୍ମା । ଅନ୍ନଦା ଶଙ୍କର ଆୟୁଷରେ ଶେଷତମ ଥିଲେ ହେଁ ଅବଦାନ ଦୃଷ୍ଟିରୁ ସେ ଥିଲେ ସବୁଜ-ସୂର୍ଯ୍ୟର ଶେଷରଶ୍ମି । ଜୀବନର ପରିଣତ ବୟସ ବେଳକୁ ତାଙ୍କ ରଚନାରେ ସବୁଜ ଚେତନାଟି ନଥିଲା ସତ କିନ୍ତୁ ରହିଯାଇଥିଲା ସବୁର ଚେତନା (Consciousness of all) । ଗଳ୍ପ, ଉପନ୍ୟାସ, କବିତା ଓ ପ୍ରବନ୍ଧ ଭଳି ପ୍ରତିଟି ସାହିତ୍ୟିକ ବିଭବକୁ ତାଙ୍କର ଦାନ ଥିଲା ଅତୁଳନୀୟ । ସେ ହିଁ ଥିଲେ ସବୁଜଗୋଷ୍ଠୀର ସଫଳ ଏବଂ ପୂର୍ଣ୍ଣାଙ୍ଗ ପ୍ରତିନିଧି । ("Kalindi Charan, in the group made a mark also as a wirter of short stories, poet, essayist, novelist and story writer. Kalindi Charan standsout today as the real representative of the group, covering as he does all the facets of the group's activities." (Mayadhar Mansingh - History of Oriya Literature, P. 249) । ପାଣ୍ଡବ ପଞ୍ଚଭ୍ରାତାଙ୍କ ମଧ୍ୟରେ କେବଳ ଅର୍ଜୁନ ହିଁ ଥିଲେ ସବ୍ୟସାଚୀ । ଉଭୟ ହସ୍ତ ତାଙ୍କର ଥିଲା ଧନୁର୍ବିଦ୍ୟାରେ ନିପୁଣ ଭାବେ କୁଶଳୀ । ସେହିପରି ସବୁଜଗୋଷ୍ଠୀଙ୍କ ମଧ୍ୟରେ କାଳିନ୍ଦୀଚରଣ ଥିଲେ ସାହିତ୍ୟର ପ୍ରତିଟି ବିଭବରେ ପ୍ରତୁଳଯଶର ଅଧିକାରୀ । କବିତା, ଗଳ୍ପ ଓ ଉପନ୍ୟାସ ରଚନା କ୍ଷେତ୍ରରେ ସେ ଯେଉଁଭଳି ପ୍ରସିଦ୍ଧି ଅର୍ଜନ କରିଛନ୍ତି, ପ୍ରବନ୍ଧ ରଚନା କ୍ଷେତ୍ରରେ ମଧ୍ୟ ସେହିଭଳି କିଛି କମ୍ ପ୍ରଭାବ ଛାଡ଼ିଯାଇ ନାହାନ୍ତି ।

କାଳିନ୍ଦୀଚରଣଙ୍କ ପ୍ରବନ୍ଧ-ମାନସ ଥିଲା ବିଚିତ୍ରବର୍ଣ୍ଣ କୁସୁମରାଜିର ଲୀଳାୟିତ ସରୋବର । ଜୀବନ ଓ ଅନୁଭବର ବିଭିନ୍ନ ପ୍ରସଙ୍ଗକୁ ନେଇ ସେ ରଚନା କରିଛନ୍ତି ଅନେକ

ପ୍ରବନ୍ଧ । ପ୍ରାୟ ୪୫ରୁ ଉର୍ଦ୍ଧ୍ୱ ପ୍ରବନ୍ଧ ରଚନା କରି ସେ ସବୁଜ ସାହିତ୍ୟ ଗୋଷ୍ଠୀର ଜଣେ ବହୁମୁଖୀ ପ୍ରତିଭା (multifaceted talent) ଭାବରେ ନିଜକୁ ପ୍ରତିଷ୍ଠିତ କରାଇ ପାରିଛନ୍ତି । ତାଙ୍କ ପ୍ରବନ୍ଧ ସାହିତ୍ୟର ଭାବଭୂମି ଓ ପରିସର ଥିଲା ସୁବିସ୍ତୀର୍ଣ୍ଣ । 'ମୋହେନ୍-ଜୋ-ଦାରୋ' ଠାରୁ ଆରମ୍ଭ କରି 'ସିଂହଭୂମିରେ ଶୃଗାଳ' ପର୍ଯ୍ୟନ୍ତ ଅଥବା 'ପୁରାଣର ବିଦୂଷୀ'ଠାରୁ ଆରମ୍ଭ କରି ଫ୍ୟାସିବାଦ ପର୍ଯ୍ୟନ୍ତ ଏହିପରି ଅନେକ ଅନୁଷଙ୍ଗ ଉପରେ ସେ ତାଙ୍କର ତାର୍କିକ ମନୋଭାବର ଯେଉଁ ପରିଚୟ ପ୍ରଦାନ କରିଛନ୍ତି, ତାହା ବାସ୍ତବରେ ଯେ କୌଣସି ସଚେତନ ପାଠକର ହୃଦୟାବେଗକୁ ତାଙ୍କ ପ୍ରତି ଶ୍ରଦ୍ଧାଶୀଳ କରାଏ । ଇଂରାଜୀ ସାହିତ୍ୟର ସମାଲୋଚକ Hugh Walker ବାସ୍ତବରେ ପ୍ରବନ୍ଧ ସମ୍ପର୍କରେ ଯେଉଁ ଅଭିମତ ପୋଷଣ କରିଥିଲେ ("Apparently, there is no subject from the stars to the dust-heap and from the amoeba to man which may not be dealt within an essay." quoted in A Background to the Study of English Literature - B. Prasad, page - 139) ତାହା ପ୍ରାବନ୍ଧିକ କାଳିନ୍ଦୀଚରଣଙ୍କ ପାଇଁ ଅକ୍ଷରେ ଅକ୍ଷରେ ସତ୍ୟ ।

ତାଙ୍କ ପ୍ରବନ୍ଧ ସାହିତ୍ୟର ବିପୁଳାଚ ପୃଥ୍ୱୀକୁ ସ୍ଥୂଳତଃ ନିମ୍ନୋକ୍ତ କେତୋଟି ଭାଗରେ ବିଭକ୍ତ କରି ହେବ ।

(୧) ସାହିତ୍ୟିକ ପ୍ରବନ୍ଧ (Literary Essay and Criticism)
(୨) ଅନୁଶୀଳନାତ୍ମକ ପ୍ରବନ୍ଧ (Reflective Essays)
(୩) ଦାର୍ଶନିକ ପ୍ରବନ୍ଧ (Philosophical Essays)
(୪) ଜୀବନୀମୂଳକ ପ୍ରବନ୍ଧ (Biographical Essays)
(୫) ସାମାଜିକ ପ୍ରବନ୍ଧ (Social Essays)
(୬) ରାଜନୀତିକ ପ୍ରବନ୍ଧ (Political Essays)
(୭) ଅନ୍ୟାନ୍ୟ ପ୍ରବନ୍ଧ (Miscellaneous Essays)

### (୧) ସାହିତ୍ୟିକ ପ୍ରବନ୍ଧ (Literary Essay and Criticism)

କେତେକ ସାହିତ୍ୟିକ କୃତିର ମୂଲ୍ୟାୟନ କରିବା ସଙ୍ଗେ ସଙ୍ଗେ ସେଗୁଡ଼ିକର ସାରସ୍ୱତ ମର୍ଯ୍ୟାଦା ଆକଳନ କରିଛନ୍ତି କାଳିନ୍ଦୀଚରଣ । ଏହାଛଡ଼ା ଆଉ କେତେକ ସାହିତ୍ୟିକ ପ୍ରସଙ୍ଗକୁ (Literary Issue)ନେଇ ସେ ମଧ ମୌଳିକ ପ୍ରବନ୍ଧ ରଚନା କରିଛନ୍ତି । ସୁତରାଂ ତାଙ୍କର ସାହିତ୍ୟିକ ପ୍ରବନ୍ଧର ପରିସର ଖୁବ୍ ବ୍ୟାପକ ହୋଇଛି ।

'ମଥୁରା ମଙ୍ଗଳ ସମାଲୋଚନା' ତାଙ୍କ ସାହିତ୍ୟିକ ପ୍ରବନ୍ଧମାନଙ୍କ ମଧରେ ସର୍ବୋକୃଷ୍ଟ ବିବେଚିତ ହୋଇଥାଏ । ଏହା ଉଭୟ ଏକ ପ୍ରବନ୍ଧ ଏବଂ ଏକ ସମାଲୋଚନା । ଡିମାଇ

ସାଇଜ୍‌ର ଦୀର୍ଘ ୧୨୧ ପୃଷ୍ଠାବ୍ୟାପୀ ଏହି ଆଲୋଚନାଟି ତାଙ୍କ ପ୍ରାବନ୍ଧିକ ଖ୍ୟାତିର ଶିରୋଭୂଷଣ ବୋଲି କୁହାଯାଇପାରେ । ୧୯୨୩ ମସିହାରେ ଅନୁଷ୍ଠିତ ଆଠମଲ୍ଲିକ-ସାହିତ୍ୟ ପ୍ରତିଯୋଗିତାରେ ଏହି ପ୍ରବନ୍ଧଟି ଶ୍ରେଷ୍ଠ ବିବେଚିତ ହୋଇଥିବାରୁ ୧୯୨୪ ମସିହାରେ 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ପୁରସ୍କୃତ ହୋଇଥିଲା ଏବଂ ସ୍ୱର୍ଗତ ବିଶ୍ୱନାଥ କରଙ୍କ ସମ୍ପାଦିତ ସ୍ୱନାମଧନ୍ୟ 'ଉତ୍କଳ ସାହିତ୍ୟ' ମାସିକ ପତ୍ରିକାରେ ଧାରାବାହିକ ପ୍ରକାଶିତ ହୋଇଥିଲା । ଏହି ପ୍ରବନ୍ଧରେ କାଳିନ୍ଦୀଚରଣ ମାନବ ସମାଜରେ କବିତାର ଉନ୍ମେଷ ଓ ପ୍ରତିଷ୍ଠା ସମ୍ପର୍କରେ ଏକ ସୁଚିନ୍ତିତ ମତ ବ୍ୟକ୍ତ କରିଛନ୍ତି । ''ଯେଉଁଦିନୁ ଆର୍ଯ୍ୟମାନେ ସୌନ୍ଦର୍ଯ୍ୟର ଉପାସନା କରି ଶିଖିଲେ, ପୂର୍ବ ଆକାଶରେ ରକ୍ତାଭ ଉଷାର ପୁଣ୍ୟ ଆଗମନ ଦେଖି ଭାବ ବିହ୍ୱଳ ଓ କମ୍ପିତ କଣ୍ଠରେ ବନ୍ଦନା ଆରମ୍ଭ କଲେ, ସେହି ଦିନୁ ମାନବ ସମାଜରେ କବିତ୍ୱର ଭିତ୍ତି ସ୍ଥାପିତ ହେଲା । ଯେଉଁଦିନୁ ପରମଯୋଗୀ ଭଗବାନ ବାଲ୍ମୀକିଙ୍କ ଅନ୍ତର କ୍ରୌଞ୍ଚ ପକ୍ଷୀର ବ୍ୟଥାରେ ଆକୁଳ ହୋଇ ଛନ୍ଦୋବଦ୍ଧରେ କ୍ରନ୍ଦନ କରି ଉଠିଲା, ମୁକ୍ତାକାଶ ବିହାରିଣୀ କବିତା ସେହିଦିନୁ ଛନ୍ଦରାଗରେ ସଂଯତ ହୋଇ ରହିଲା ।''

ଭକ୍ତଚରଣଙ୍କ 'ମଥୁରା ମଙ୍ଗଳ'ର ସମାଲୋଚନାରେ କାଳିନ୍ଦୀଚରଣ ତାଙ୍କ ସାହିତ୍ୟ-ସମାଲୋଚକର ପରିଚୟକୁ ସ୍ପଷ୍ଟ କରିପାରିଛନ୍ତି । ଜଣେ ସାଧାରଣ ପାଠକ ଓ ସମାଲୋଚକ ମଧ୍ୟରେ ଥିବା ସୂକ୍ଷ୍ମ ପ୍ରଭେଦ ପ୍ରଦର୍ଶନ ପୂର୍ବକ ସେ ସାହିତ୍ୟ ସମାଲୋଚକର ମୌଳିକ ଯୋଗ୍ୟତା ଓ ଗୁଣଧର୍ମ ନିର୍ଣ୍ଣୟ କରିଛନ୍ତି । ''ପାଠକ ଅପେକ୍ଷା ସମାଲୋଚକର କର୍ତ୍ତବ୍ୟ ଯେ ବେଶି, ଏହା ସହଜରେ ଅନୁମେୟ; ପୁଣି ସମାଲୋଚନା - ଯାହା ଉତ୍କୃଷ୍ଟ କବିତା ତାହାର, ସମାଲୋଚକକୁ ବହୁ ପରିମାଣରେ ସାବଧାନ ହେବାକୁ ହୁଏ; କାରଣ ସମାଲୋଚନା ହିଁ ଅନେକ ସମୟରେ କବିତାର ମହତ୍ୱ ନଷ୍ଟ କରିଥାଏ । ଯେଉଁ କବିତାରେ କବିର ଅନନ୍ତଭାବ-ପ୍ରବଣତାର ଆଭାସ ମିଳେ, ସମାଲୋଚକର ବିଜ୍ଞାନ ଦୃଷ୍ଟିରେ ଅନେକ ସମୟରେ ତାହା ଜଡ଼-ସୀମା ମଧ୍ୟରେ ଆବଦ୍ଧରୂପେ ପ୍ରତୀୟମାନ ହୁଏ ।''

ସଂପ୍ରତି ସାହିତ୍ୟ ସମାଲୋଚନା କ୍ଷେତ୍ରରେ ଯେଉଁ କେତେଗୋଟି ଧାରା ପ୍ରଚଳିତ, ତନ୍ମଧ୍ୟରୁ କବି-ସମାଲୋଚନା ପଦ୍ଧତି ସର୍ବୋତ୍ତମ । ଏ ଧରଣର ସମାଲୋଚକମାନଙ୍କୁ କବି-ସମାଲୋଚକ (Poet Critic) କୁହାଯାଏ । ଇଂରାଜୀ ସାହିତ୍ୟରେ କୋଲେରିଜ୍ ଏବଂ ଇଲିଅଟ୍ ଏ ଶ୍ରେଣୀର ସମାଲୋଚକ ହୋଇଥିବାବେଳେ ଓଡ଼ିଆ ସାହିତ୍ୟରେ ମାୟାଧର ମାନସିଂହ, ସୁରେନ୍ଦ୍ର ମହାନ୍ତି, ଚିନ୍ତାମଣି ବେହେରା ଇତ୍ୟାଦି ଏ ଧାରାକୁ ଅନୁସରଣ କରିଛନ୍ତି । କବିର ହୃଦୟ, କଳ୍ପନା ଓ ସୃଷ୍ଟିଶୀଳତା ସହିତ ଜଣେ ସମାଲୋଚକର ସୂକ୍ଷ୍ମ ଅନ୍ତର୍ଦୃଷ୍ଟି, ଗଭୀର ମନନଶୀଳତା ଓ କାବ୍ୟାନୁଶୀଳନ ସଂଯୁକ୍ତ ହେଲେ ଯେଉଁ ଅପୂର୍ବ ରାଗରଙ୍ଗ ସୃଷ୍ଟିହୁଏ, ତାହା ହିଁ କବି ସମାଲୋଚକର ଭାବଧର୍ମ । ଏ ପ୍ରକାର ସମାଲୋଚନାକୁ ସର୍ଜନାତ୍ମକ ସମାଲୋଚନା (Creative Criticism) ମଧ୍ୟ କୁହାଯାଇଥାଏ । ସୃଷ୍ଟିଶୀଳତା ଓ ସମାଲୋଚନା ଯେଉଁଠି

ଗୋଟିଏ ହୃଦୟରେ ଦୁଇଟି ଧାରା ହୋଇ ପ୍ରବାହିତ ହୋଇଥାନ୍ତି, ତାହା ହିଁ କବି-ସମାଲୋଚନା । ବିଂଶ ଶତକର ଅଷ୍ଟମ ଦଶକ ପରେ ଓଡ଼ିଆ ସାହିତ୍ୟ-ସମାଲୋଚନା କ୍ଷେତ୍ରରେ ଏହାର ପ୍ରାଧାନ୍ୟ ଅନୁଭୂତ ହୋଇଥିବା ବେଳେ କାଳିନ୍ଦୀଚରଣ କିନ୍ତୁ ତୃତୀୟ ଦଶକ (୧୯୨୩)ରେ ଏହାର ବିଧିବଦ୍ଧ ସ୍ୱରୂପ ଦେଖାଇ ଯାଇଛନ୍ତି । ''ଅନେକ ମନେକରିପାରନ୍ତି କବି ଭାବରେ ପ୍ରଥମରୁ ଅନୁପ୍ରାଣିତ ହେଲେ ସମାଲୋଚକ ନିରପେକ୍ଷ ହୋଇପାରେ ନାହିଁ । ଏ ଭାବନା କିନ୍ତୁ ସମୀଚୀନ ନୁହେଁ । ସମାଲୋଚକର କବିର ଅନୁଭୂତି ଥିବା ଆବଶ୍ୟକ, ଯଦ୍ୱାରା ସେ କବିତାକୁ ସମଷ୍ଟିଭାବରେ ପୂର୍ଣ୍ଣରୂପରେ ହୃଦୟଙ୍ଗମ କରିବ; ଆଉ ସେଥି ସଙ୍ଗେ ସଙ୍ଗେ ଅନ୍ୟ ଏକ ଅଧିକ ଗୁଣ ମଧ୍ୟ ଲୋଡ଼ା, ଯାହା ଘେନି ସେ କବିତାକୁ ତନ୍ନ ତନ୍ନ ଭାବରେ ବିଶ୍ଳେଷଣ କରି ତାହାର ଦୋଷଗୁଣ ଦେଖାଇ ପାରିବ । କବି ଭାବରେ ଅନୁପ୍ରାଣିତ ନ ହୋଇ କେବଳ ଶବ୍ଦ ଅର୍ଥ ବୁଝିଗଲେ ତ କବିତା ବୁଝା ସରିଗଲା ନାହିଁ, ସେଥିରେ କବିତାର ଆତ୍ମାର ଯେ ସର୍ବତ୍ର ବିଳାସ, କଥା ବିକାଶ ତାହା ତ ଉପଲବ୍ଧି କରିବା ଆବଶ୍ୟକ ।'' (କାଳିନ୍ଦୀ ରଚନାଚୟ - ୨ୟ ଖଣ୍ଡ, ପୃ - ୪୨୫-୨୬) । କବିର ହୃଦୟ ନଥିଲେ କବିତା ସମାଲୋଚନା କରିବା ଦୁରୂହ । ତେଣୁ କୁହାଯାଇଛି - To judge of poets is only the faculty of poets.

ପ୍ରସିଦ୍ଧ ଇଂରେଜ ଉପନ୍ୟାସ ଲେଖିକା ଜର୍ଜ ଇଲିଅଟ୍ (George Eliot) ଙ୍କ ସହିତ ଭକ୍ତଚରଣଙ୍କୁ ତୁଳନା କରିଛନ୍ତି କାଳିନ୍ଦୀଚରଣ । ଜର୍ଜଙ୍କ ଭାଷାରେ ଭକ୍ତଚରଣଙ୍କ ବିଭୁବୋଧ ଓ କ୍ଲୈବ ପ୍ରାଣତାକୁ ସମର୍ଥନ ଜଣାଇଛନ୍ତି । Writing was a part of his religion and he could write no word that was not prompted from within. ମଥୁରାମଙ୍ଗଳରେ ଭକ୍ତଚରଣ ଶ୍ରୀକୃଷ୍ଣ-ବ୍ରଜାଙ୍ଗନା ମାନଙ୍କ ସଂପର୍କକୁ ଯେଉଁଭଳି ଲଳିତ ମଧୁର ଭାଷାରେ ଉପସ୍ଥାପନ କରିଛନ୍ତି ତାହାର ସମାଲୋଚନା କରିବାକୁ ଯାଇ କାଳିନ୍ଦୀବାବୁ କିଛି ଊଣା କବିତାବେଗ ସୃଷ୍ଟିକରି ନାହାନ୍ତି । ବାସ୍ତବିକ ଜଣେ କବି ସମାଲୋଚକର ଭୂମିକାରେ ସେ ଏଠାରେ ଅବତୀର୍ଣ୍ଣ । ଗୋଟିଏ ସାହିତ୍ୟିକ ସୃଷ୍ଟିକର୍ମର ସମାଲୋଚନା କରିବାକୁ ଯାଇ ସେ ଯେଉଁ ସାହିତ୍ୟିକ ଅନୁସୃଜନ (Literary transcreation) ଉପସ୍ଥାପନ କରିଛନ୍ତି ତାହା ଯୋଗ୍ୟ ପାଠକ ମାତ୍ରେ ହିଁ ଅନୁଭବ କରିପାରିବେ । ''ଯୌବନର ପ୍ରଥମ ମଳୟ ସେମାନଙ୍କ ଅଂଗରେ ସ୍ପର୍ଶ କରିଛି; ପ୍ରେମର ମୃଦୁ ସ୍ୱଚ୍ଛ ତରଙ୍ଗରେ ସେମାନେ ଭାସମାନ-ପ୍ରେମରସ ସେମାନଙ୍କ ଅନ୍ତରରେ ଉଦ୍‌ବେଳିତ ହୋଇ ଉଠୁଛି, ଅହରହ ହୃଦୟବନ୍ଧ ଲଂଘନକରି ଯେପରି ବିଶ୍ୱପ୍ଲାବନ କରିଯିବାକୁ ଅସ୍ଥିର ହୋଇ ପଡ଼ିଅଛି; କିନ୍ତୁ ସେ ଯେ ପ୍ରେମର ତୃଷ୍ଣା- ଅପରିସୀମ, ଅନନ୍ତ ! ଯେତେ ସେ ପ୍ରେମ ଢାଳ କଲେ, କଣ୍ଠ ଭରି ଯେତେ ସେ ରସ ପାନକଲେ ହେଁ ଯୁବତୀ-ପ୍ରାଣ ଅଧିକ ଉଦ୍‌ବେଳିତ ହୋଇଉଠୁଛି; ସେ ତୃଷ୍ଣା ମେଣ୍ଟିବାର ନୁହେଁ । ଗୋପୀ ମାନଙ୍କର ଅନନ୍ତ ଅତୃପ୍ତି ଅବା ସମଗ୍ର ବିଶ୍ୱ ପ୍ରାଣରେ ଜାଗ୍ରତ ହୋଇ ଉଠେ ! ସେହି ପ୍ରେମ

ମଦ ଆକଣ୍ଠ ପାନକରି ଗୋପ ଲଳନାମାନେ ସାଂସାରିକ ଜ୍ଞାନଶୂନ୍ୟ-ପତି-ପୁତ୍ର-ଗୁରୁଜନ ମାନଙ୍କ କଥା ସେମାନେ ଏଡ଼ି ଦେଇଛନ୍ତି । ଶ୍ରୀକୃଷ୍ଣ କି ଅମୃତ ସେମାନଙ୍କୁ ଚଖାଇ ଦେଇ ଅଛନ୍ତି, ଯାହାଘେନି ସେମାନେ ଜଗତର ଅନ୍ୟ ସମସ୍ତ ତୁଚ୍ଛ କରିଦେଖନ୍ତି'' (ତତ୍ରୈବ ପୃ- ୪୬୯) । ମଥୁରାମଙ୍ଗଳ ବର୍ଣ୍ଣିତ ରାଧା-କୃଷ୍ଣଭାବକୁ ଗଦ୍ୟ କବିତାରେ ରୂପ ଦେଇଛନ୍ତି କାଳିନ୍ଦୀ ଚ଼ରଣ । ଏ ସମାଲୋଚ଼ନା-ପଠନ ପାଠ଼କ ହୃଦୟରେ ଏପରି ଏକ ମାୟାଲୋକ ସୃଷ୍ଟିକରାଏ, ଯାହାର ବିସ୍ମୟୋଦ୍ଦୀପକ ଭାବ ସଂପଦରେ ସେ ନିଜେ ବୁଡ଼ିଯାଏ । ଗୋପାଙ୍ଗନାମାନଙ୍କ ପ୍ରେମାବସ୍ଥା ବର୍ଣ୍ଣନାରେ ସେ କହିଛନ୍ତି – ''ଏକ ପ୍ରେମ ରସପୂର୍ଣ୍ଣ ମହାସିନ୍ଧୁରେ ଯେପରି ସେମାନେ ସନ୍ତରଣଶୀଳା ଯକ୍ଷନାରୀ ଅଥବା ପ୍ରେମ ସମୀରଣଧୌତ ପ୍ରେମମୟ ଏକ ଅନନ୍ତ ସୁନୀଳ ଆକାଶରେ ଉଡ଼୍‌ଡ଼ୀୟମାନା ଅପ୍‌ସରାବୃନ୍ଦ । ସେହି ପ୍ରେମର ଶୀତଳ ସ୍ୱଚ୍ଛ ସଲିଳ ମଧୁର ପବନ ପାନ କରି ସେମାନେ ଜୀବନ ଧରି ଅଛନ୍ତି; ଯେପରି ଯୌବନ ପ୍ରଫୁଲ୍ଲ ନଗ୍ନକୋମଳ ଅଙ୍ଗକୁ ପ୍ରେମର ସ୍ୱଚ୍ଛ ସୌରଭର ଲହରୀ ଓ ସୁନୀଳ ସୁଷମ ପୁଷ୍ପ ଗନ୍ଧାମୋଦିତ ଅମ୍ବର ଦ୍ୱାରା ଆବୃତ କରିଅଛନ୍ତି । ପ୍ରଜାପତି ସଦୃଶ କୁଞ୍ଜବନର ପୁଷ୍ପେ ପୁଷ୍ପେ ବିହାର କରୁଅଛନ୍ତି । କଦମ୍ବଛାୟାରେ ବିଳାସ କରୁଅଛନ୍ତି, ଯମୁନା ସ୍ରୋତରେ ଜୀବନର ସକଳ ସୁଷମାରାଶି ଭସାଇ ଦେ଼ଉଅଛନ୍ତି । ଏହି ଭୋଗ ତୃଷିତା କାମବିହ୍ୱଳା ଲଜ୍ଜାହୀନା ରମଣୀମାନଙ୍କୁ ଜଣେ ମାତ୍ର ପୁରୁଷ ନାନା ସୁସଜ୍ଜ ରୂପରେ ତ୍ରିଭଙ୍ଗ ଭଂଗୀରେ ମୁରଲୀନିନାଦ ଦ୍ୱାରା ନୃତ୍ୟ କରାଉଅଛି ।'' (ତତ୍ରୈବ - ପୃ. ୪୭୦) ।

ଓଡ଼ିଆ ସାହିତ୍ୟରେ ମଧ୍ୟଯୁଗ କାବ୍ୟ ବହୁଳତାର ଯୁଗ । ଏ କାବ୍ୟ ଗୁଡ଼ିକ ମଧ ଅଶ୍ଳୀଳତା ଦୋଷରେ ଦୁଷ୍ଟ ବୋଲି ଅନେକ ସମାଲୋଚକ ମତ ପୋଷଣ କରିଥାଆନ୍ତି । କାବ୍ୟର ଶିଳ୍ପ ସୌନ୍ଦର୍ଯ୍ୟ, ନିର୍ମାଣ କୌଶଳ ଏବଂ ଏଥିରେ ପ୍ରକଟିତ କଳ୍ପନାଶକ୍ତିକୁ ଗୌଣ ମନେ କରି କେବଳ ଅଶ୍ଳୀଳତାକୁ ପ୍ରାଧାନ୍ୟ ଦିଆଗଲେ ବିବେଚକର ଦୃଷ୍ଟିରେ ଅଶ୍ଳୀଳତା ବଡ଼ ହୋଇ ଦେଖାଯିବା ସ୍ୱାଭାବିକ । ସମାଲୋଚ଼କ କାଳିନ୍ଦୀଚ଼ରଣ କିନ୍ତୁ ଏଭଳି ଦୃଷ୍ଟିଭଙ୍ଗୀକୁ ଅଯଥାର୍ଥ ବୋଲି ମନେ କରିଛନ୍ତି । ତାଙ୍କ ମତରେ ''ଶିଳ୍ପୀ ଯଦି ନଗ୍ନ ମୂର୍ତ୍ତି ରଚ଼ନା କରନ୍ତି, ସେ ମୂର୍ତ୍ତିକୁ ଲୋକେ ନାନା କୁତ୍ସିତ ରୂପରେ ଦେଖିପାରନ୍ତି । କିନ୍ତୁ ସେଥିରେ ଯଦି କିଛି ସତ୍ୟର ପରିଚ଼ୟ ମିଳେ, ଉଚ୍ଚକଳାର ଯଦି କିଛି ଭାବ ତହିଁରେ ଫୁଟିଥାଏ, ଯୁଗେ ଯୁଗେ ତାହାର ପୂଜା । ମନୁଷ୍ୟର ବାହ୍ୟ ଆକୃତି ଓ ଆଭ୍ୟନ୍ତରୀଣ ଗୁଣ ମଧ୍ୟରେ ଯଦି କିଛି ପ୍ରଭେଦ ଥାଏ କବିତାରେ ବର୍ଣ୍ଣିତ ବିଷୟ ଓ କବିତ୍ୱର ସେହି ପ୍ରଭେଦ । ଏହି ହିସାବରେ ଆମ୍ଭେମାନେ ଭଞ୍ଜ ସାହିତ୍ୟକୁ ସମ୍ମାନର ସହିତ ଗ୍ରହଣ କରିବାକୁ ପଶ୍ଚାତ୍‌ପଦ ନୋହୁଁ ପୁଣି ଏହି କାରଣରୁ ହିଁ ଭଞ୍ଜଚ଼ରଣଙ୍କ ସ୍ଥାନ ଯଥାର୍ଥ କବି ଆସନରେ ନିର୍ଦ୍ଦେଶ କରୁଅଛୁଁ ।'' (କାଳିନ୍ଦୀ ରଚ଼ନାଚୟ - ୨ୟ ଭାଗରେ ସଂକଳିତ 'ମଥୁରା ମଙ୍ଗଳ ସମାଲୋଚ଼ନା'ରୁ ଉଦ୍ଧୃତ) । 'ମଥୁରା ମଙ୍ଗଳ ସମାଲୋଚ଼ନା'ରେ ପ୍ରାବନ୍ଧିକ ଯେଉଁ ଆଲୋଚ଼ନା କରିଛନ୍ତି ତାହା Literary criticism

ଦୃଷ୍ଟିରୁ କେବଳ interpretation of art ରେ ସୀମିତ ନରହି ଏକ transcreation ପର୍ଯ୍ୟାୟକୁ ଉନ୍ନୀତ ହୋଇପାରିଛି । ଏତଦ୍‌ଭିନ୍ନ ଆଉ ଯେଉଁ ସାହିତ୍ୟିକ ପ୍ରବନ୍ଧ ଗୁଡ଼ିକ ଏ ପର୍ଯ୍ୟାୟର ପରିସରଭୁକ୍ତ ହୋଇପାରେ ସେଗୁଡ଼ିକ ହେଲା - 'ସାହିତ୍ୟରେ ବ୍ୟବସାୟ'; ଲାବଣ୍ୟବତୀରେ ଉପେନ୍ଦ୍ରଭଞ୍ଜ, ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମ, ଫକୀରମୋହନଙ୍କ ଚରିତ୍ର ଚିତ୍ରଣ, ସାହିତ୍ୟରେ ପରିବର୍ତ୍ତିତ ଭାବବୋଧ ଏବଂ ରବୀନ୍ଦ୍ରଗଳ୍ପର ବିଶେଷତ୍ୱ' ଇତ୍ୟାଦି ।

'ସାହିତ୍ୟରେ ବ୍ୟବସାୟ' ପ୍ରବନ୍ଧରେ ପ୍ରାବନ୍ଧିକ ସାହିତ୍ୟ କିପରି ଜୀବନ ଧାରଣର ମାଧ୍ୟମ (Sustenance of life) ହୋଇ ପାରିଛି ସେ ସଂପର୍କରେ ଆଲୋଚନା କରିଛନ୍ତି । ବିଭିନ୍ନ ଖବରକାଗଜ ପତ୍ର ପତ୍ରିକା ମାଧ୍ୟମରେ ଗଳ୍ପ,କବିତା, ପ୍ରବନ୍ଧ, ଦର୍ଶନ, ବିଜ୍ଞାନ ବା ଇତିହାସ ଇତ୍ୟାଦି ବିଷୟରେ ଲେଖା ପ୍ରକାଶ କରି ଆଜିକାଲି ଅନେକ ଲେଖକ ଲେଖିକା ଜୀବିକା ନିର୍ବାହ କରୁଛନ୍ତି । ସ୍ପନ୍ଦନପୂର୍ଣ୍ଣ ଘଟଣାବଳୀ (Sensitive issue)ର ଆଧାରରେ ଉପନ୍ୟାସ ରଚନାକରି ଆନ୍ତର୍ଜାତିକ ସ୍ତରରେ ଏହାର ଚାହିଦା ଓ ବିପଣନରୁ ଲେଖକ ମାନେ ଲକ୍ଷ ଲକ୍ଷ ଟଙ୍କା ଉପାର୍ଜନ କରୁଛନ୍ତି । ମୋଟାମୋଟି କହିବାକୁ ଗଲେ ଅନ୍ୟାନ୍ୟ ପଣ୍ୟଦ୍ରବ୍ୟ ପରି ସାହିତ୍ୟ ଆଜି ଏକ ବ୍ୟାବସାୟିକ ସାମଗ୍ରୀରେ ପରିଣତ ହୋଇଛି ବୋଲି ପ୍ରାବନ୍ଧିକ ମତ ପୋଷଣ କରିଛନ୍ତି । ଉପଭୋକ୍ତା ସମାଜର ଅଭିବୃଦ୍ଧି ଯୋଗୁ ଆଜି 'ଲୋକ ସାହିତ୍ୟର ବହୁଳ ପ୍ରସାର ଅନୁପାତରେ ଉଚ୍ଚାଙ୍ଗ ସାହିତ୍ୟର କ୍ଷେତ୍ର ମଧ୍ୟ ପ୍ରଶସ୍ତତର ହୋଇଛି'' ।

'ଲାବଣ୍ୟବତୀରେ ଉପେନ୍ଦ୍ରଭଞ୍ଜ' ବାସ୍ତବରେ ତାଙ୍କର ଏକ ଉଚ୍ଚାଙ୍ଗ. ସାହିତ୍ୟ ସମାଲୋଚନା । ଏଥିରେ ସେ କହିବାକୁ ଚାହିଁଛନ୍ତି – ''କବିମାତ୍ରେ ଜଣେ ଯାଦୁକର । କୁତ୍ସିତକୁ ସୁନ୍ଦର, ନୀଚକୁ ଉଚ୍ଚ, ଘୃଣାକୁ ପ୍ରେମପୂର୍ଣ୍ଣ ଏବଂ ହୀନକୁ ମହତ୍ କରିବାର ଅଦ୍ଭୁତ କର୍ମ କବିର କାଉଁରୀ କାଠିରେ ହିଁ ସମ୍ଭବପର ହୋଇଥାଏ । ହିଂସା-ଦ୍ୱେଷ-ଲୋଭ-ମୋହ ପୂର୍ଣ୍ଣ ପୃଥିବୀକୁ ଚିର ଆନନ୍ଦମୟ, ଆଲୋକମୟ ସ୍ୱର୍ଗଲୋକରେ ପରିଣତ କରିପାରେ – କେବଳ କବି । ଯଥାର୍ଥରେ ସ୍ୱର୍ଗଲୋକର ପରିକଳ୍ପନା କବି କୁଳର ହିଁ ଜୀବନ୍ତ ସୃଷ୍ଟି'' ବଙ୍ଗୀୟ ସମାଲୋଚକ ବିଜୟ ଚନ୍ଦ୍ର ମଜୁମଦାର ଭଞ୍ଜଙ୍କୁ 'mighty literary acrobat' କହିବା ଭଳି କାଳିନ୍ଦୀବାବୁ ମଧ୍ୟ ଭଞ୍ଜଙ୍କୁ ଜଣେ ଯାଦୁକର ବୋଲି ପ୍ରତିପାଦନ କରିଛନ୍ତି ଏବଂ ଇଂରାଜୀ ନାଟ୍ୟକାର ସେକ୍ସପିୟରଙ୍କ ସମକକ୍ଷ ବୋଲି ମତ ପ୍ରଦାନ କରିଛନ୍ତି – ''ସେକସ୍‌ପିଅରଙ୍କୁ ଯେପରି ଶ୍ରେଷ୍ଠ ଯାଦୁକର ରୂପେ ବର୍ଣ୍ଣନା କରାଯାଏ ଏବଂ ତାଙ୍କର ଟେମ୍ପେଷ୍ଟ ନାଟକରେ ଏହି ଯାଦୁକରୀ ବିଦ୍ୟାରେ ବିଚକ୍ଷଣତା ଦେଖାଯାଏ, ଲାବଣ୍ୟବତୀ ମହାକାବ୍ୟରେ କବି ସମ୍ରାଟ ମଧ୍ୟ ସେହିପରି ଶ୍ରେଷ୍ଠ ଯାଦୁକର ରୂପେ ପ୍ରତିପନ୍ନ ହୋଇଛନ୍ତି । କଳ୍ପନାର ଇନ୍ଦ୍ରଜାଲ ବୁଣିବାରେ କବି ସମ୍ରାଟ ଅନତିକ୍ରମଣୀୟ'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର. ପୃ-୬୬) । ସିଂହଳ ରାଜ ନବରରେ ଐନ୍ଦ୍ରଜାଲିକର ରାମଲୀଳା ପ୍ରଦର୍ଶନ ପୁଣି ଯୋଗିନୀଙ୍କ ମାୟାବଳରେ ଲାବଣ୍ୟବତୀର ଶୟନ କକ୍ଷରେ ଚନ୍ଦ୍ରଭାନୁର ମିଳନ ସଙ୍ଗେ ଟେମ୍ପେଷ୍ଟରେ ପ୍ରସ୍‌ପେରୋଙ୍କ

ଯାଦୁବିଦ୍ୟାବଳରେ ସମୁଦ୍ର ମଧ୍ୟରେ ଝଡ଼ସୃଷ୍ଟି ଏବଂ ଏରିୟଲ୍ ମାଧ୍ୟମରେ ମିରାଣ୍ଡାସହିତ ତାହାର ପ୍ରେମିକ ଫର୍ଡ଼ିନାଣ୍ଡର ମିଳନ ଚିତ୍ରର ଆଶ୍ଚର୍ଯ୍ୟ ସାମଞ୍ଜସ୍ୟ ଦେଖାଯାଏ । ଘୋର ଅରଣ୍ୟ ଭିତରେ ଏକାକୀ ସୁବର୍ଣ୍ଣମୟ ନଗରରେ ଲାବଣ୍ୟବତୀ ତାହାର ପୂର୍ବ ଜନ୍ମରେ ବାଞ୍ଛାବତୀ ନାମ ଧାରଣା କରି ଯେତେବେଳେ ଚନ୍ଦ୍ରଭାନୁର ପୂର୍ବଜନ୍ମର ପ୍ରେମ - ସନ୍ୟାସୀ ପ୍ରଭାକରକୁ ଭେଟିଛି, ସେ ଚିତ୍ର ମନେପକାଇ ଦିଏ ଅରଣ୍ୟ ବାସିନୀ ମିରାଣ୍ଡା ସହିତ ତାହାର ପ୍ରଣୟୀ ଫର୍ଡ଼ିନାଣ୍ଡର ମିଳନ ଦୃଶ୍ୟ । ମିରାଣ୍ଡା ଯେପରି ତାହାର ନିର୍ବାସନରେ ପ୍ରଥମ ପୁରୁଷକୁ ଦେଖି କହି ଉଠିଛି "ଆହା ମନୁଷ୍ୟ କି ସୁନ୍ଦର !" ଠିକ୍ ସେମିତ ନିଜକୁ ପାଶୋରି ପକାଇ ସହଜ ଭାବରେ ବାଞ୍ଛାବତୀ ଆତ୍ମସମର୍ପଣ କରିଛି ପ୍ରଭାକରର ବାହୁଯୁଗଳ ମଧ୍ୟରେ । ଉପେନ୍ଦ୍ରଭଂଜ ଇଂରାଜୀ ଜାଣି ନଥିଲେ କିମ୍ବା ସେକ୍ସପିଅରଙ୍କ ନାଟକ ପଢ଼ିନଥିଲେ ମଧ୍ୟ ଦୁଇ ମହାକବିଙ୍କ କଳ୍ପନାରେ ଏହି ଅଦ୍ଭୁତ ସାମଞ୍ଜସ୍ୟ ବିଚିତ୍ର ନୁହେଁ । କାଳିନ୍ଦୀଚରଣଙ୍କ ଲାବଣ୍ୟବତୀ କାବ୍ୟର ଏତାଦୃଶ ସମାଲୋଚନା ତାଙ୍କ ତୁଳନାତ୍ମକ ସମାଲୋଚନା (Comparative Criticism) ଜ୍ଞାନର ପରିଚୟ ବହନ କରେ । ସେକ୍ସପିଅର ଓ ଉପେନ୍ଦ୍ର ଭଂଜଙ୍କ ରଚନାର ଏ ଅଦ୍ଭୁତ ସଂଯୋଗକୁ ଲକ୍ଷ୍ୟକଲେ ବାସ୍ତବରେ 'Great men think alike' ଉକ୍ତିଟି ଖୁବ୍ ପ୍ରାସଙ୍ଗିକ ମନେହେବ ।

ଲାବଣ୍ୟବତୀ କାବ୍ୟର ସଂକ୍ଷିପ୍ତ ସମାଲୋଚନା ଅବସରରେ ସେ ଖୁବ୍ ଏକ ଚିନ୍ତାଶୀଳ ଏବଂ ଅଭିନବ ଅଭିଜ୍ଞାନ ପ୍ରଦର୍ଶନ କରିଛନ୍ତି । ଲାବଣ୍ୟବତୀ କାବ୍ୟର ମୁଖ୍ୟସ୍ୱର ଶୃଙ୍ଗାର ହୋଇଥିବା ବେଳେ କାଳିନ୍ଦୀ ଚରଣ କିନ୍ତୁ କରୁଣ ବୋଲି ମତ ଦିଅନ୍ତି । "ରୂପ-ବର୍ଣ୍ଣନା, ଚରିତ୍ର-ଚିତ୍ରଣ, ଋତୁବର୍ଣ୍ଣନା, ବିଚ୍ଛେଦ-ମିଳନ ପୁଣି ଚନ୍ଦ୍ରଭାନୁର ଶିକାର ବର୍ଣ୍ଣନାରେ ଓ କାଳକେୟ ପ୍ରଭୃତି ରାକ୍ଷସ ମାନଙ୍କ ଦମନରେ ଯେଉଁ ବୀରରସର ଅବତାରଣା କରାଯାଇଛି, ସବୁରି ଭିତରେ ଏକ ଅବିଚ୍ଛିନ୍ନ କରୁଣ ରସ ଅନ୍ତଃସ୍ରୋତା ଫଲ୍‌ଗୁପରି ପ୍ରବାହିତ । କରୁଣ ରସ ହିଁ କାବ୍ୟକୁ ମାଧୁର୍ଯ୍ୟରେ ମଣ୍ଡିତ କରେ । (ତତ୍ରୈବ - ପୃ.-୬୬) । ପ୍ରାବନ୍ଧିକଙ୍କର ଏତାଦୃଶ ସ୍ୱମତ ଉପସ୍ଥାପନ ତାଙ୍କୁ ଏକ ଉଚ୍ଚକୋଟୀର ସ୍ୱାଧୀନଚେତା ସାହିତ୍ୟ-ସମାଲୋଚକର ଆସନରେ ଅଭିଷିକ୍ତ କରାଏ ।

କେବଳ ଓଡ଼ିଆ ସାହିତ୍ୟର କତିପୟ ସାହିତ୍ୟିକ ସୃଷ୍ଟି ସଂପଦ ଉପରେ ସମାଲୋଚନା ଲେଖି ସେ ତାଙ୍କ ସମାଲୋଚକର ଦୃଷ୍ଟିକୁ ସୀମିତ କରିଦେଇ ନାହାନ୍ତି; ସେ ମଧ୍ୟ ତାକୁ ଅଧିକ ବିସ୍ତାରିତ କରି ପାରିଛନ୍ତି ହିନ୍ଦୀ, ବଂଗଳା, ଇଂରାଜୀ, ଫରାସୀ ଓ ରୁଷିଅ ଇତ୍ୟାଦି ଅନ୍ୟାନ୍ୟ ସାହିତ୍ୟାନୁଶୀଳନର ଦୃଷ୍ଟାନ୍ତ ଉପସ୍ଥାପନ କରିଥିବା ଯୋଗୁ । ବୋଧହୁଏ ସେଥିପାଇଁ ଓଡ଼ିଆ ସାହିତ୍ୟର ଇତିହାସ ପ୍ରଣେତା ଡଃ ମାୟାଧର ମାନସିଂହ ତାଙ୍କୁ 'ସବୁଜ ଯୁଗର ସଫଳତା : କାଳିନ୍ଦୀଚରଣ' ବୋଲି ଅଭିହିତ କରିଛନ୍ତି । ସବୁଜ ସାହିତ୍ୟ ଗୋଷ୍ଠୀଙ୍କ ପାଇଁ ରବୀନ୍ଦ୍ରନାଥ ଥିଲେ ଏକ ପ୍ରଚଣ୍ଡ ପ୍ରେରଣା । ରବୀନ୍ଦ୍ରଙ୍କ ପ୍ରଭାବରେ ଏମାନେ ସମସ୍ତେ ଥିଲେ ପ୍ରଭାବିତ

ଓ ଅନୁପ୍ରେରିତ । ସୁତରାଂ କାଳିନ୍ଦୀଚରଣଙ୍କ ପାଇଁ ରବୀନ୍ଦ୍ର ସାହିତ୍ୟ ଅନୁଶୀଳନ କରିବା ଏକ ନୈତିକ ଦାୟବୋଧ (moral responsibility) ଭଳି ପ୍ରତୀୟମାନ ହୋଇଛି । 'ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମ' ପ୍ରବନ୍ଧରେ ମନେହୁଏ କାଳିନ୍ଦୀଚରଣ ବିଶ୍ୱପ୍ରେମରେ ଦୀକ୍ଷିତ ହୋଇଛନ୍ତି କମ୍; ରବୀନ୍ଦ୍ର ପ୍ରେମରେ ଦୀକ୍ଷିତ ହୋଇଛନ୍ତି ବେଶୀ । ଏହି ପ୍ରବନ୍ଧରେ ପ୍ରାକ୍ କଥନ ସମୟରେ ସେ କହିଥିଲେ – ''ରୂପ ମଧ୍ୟରେ ଅରୂପର ସ୍ପର୍ଶ, କ୍ଷୁଦ୍ର ମଧ୍ୟରେ ବୃହତ୍ତମର ଚେତନାରେ ଅଭିଭୂତ କବିର ଅନ୍ତର । ବ୍ୟକ୍ତି ଯେଉଁଠାରେ ବ୍ୟଷ୍ଟି ମଧ୍ୟରେ ଆପଣାକୁ ପାଏ, ଜୀବାତ୍ମା ପରମାତ୍ମାରେ ବିଲୀନ ହେବାକୁ ଲୋଡ଼େ, ଜାତୀୟତା ଉପଲବ୍ଧି କରେ ଅନ୍ତର୍ଜାତୀୟ ଭାବଧାରାକୁ, ରବୀନ୍ଦ୍ରନାଥଙ୍କ ବୈଶିଷ୍ଟ୍ୟ ସେହିଠାରେ । ସୀମା ମଧ୍ୟରେ ଅସୀମର ଅବକାଶ ହିଁ ତାହାଙ୍କ ଦର୍ଶନ ।'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର-ପୃ.-୬୯) । ଏହି ବକ୍ତବ୍ୟରେ ପାଠକ ଲକ୍ଷ୍ୟକରେ ବିଶ୍ୱପ୍ରେମ ଆଳରେ ପ୍ରାବନ୍ଧିକ ସତେ ଯେପରି ରବୀନ୍ଦ୍ରଙ୍କ ବନ୍ଦନା ଗାନ କରିଛନ୍ତି । ରବୀନ୍ଦ୍ରଙ୍କର 'ଜୀବନସ୍ମୃତି', 'ସୋନାର ତରୀ', 'ମାନସୀ', 'ଚିତ୍ରା', 'ବଳାକା' ଇତ୍ୟାଦି କବିତା, ଗୋରା (Gora) ଉପନ୍ୟାସ ଓ 'କାବୁଲିବାଲା' ଗଳ୍ପର ସମ୍ୟକ ଆଲୋଚନା କରି ସେ ରବୀନ୍ଦ୍ରଙ୍କ ଅନନ୍ତ ଆସକ୍ତିର ସୂଚନା ଦେଇଛନ୍ତି । ମନେହୁଏ, କାଳିନ୍ଦୀବାବୁ ନିଜ ଆଖିରେ ବିଭୁବୋଧର ଅଞ୍ଜନ ବୋଳିହୋଇ ସାମ୍ନାରେ ଯାହାର ଛବି ଦେଖିଛନ୍ତି ତାହା ବିଶ୍ୱ ନିୟନ୍ତା ଭଗବାନଙ୍କର ନୁହେଁ; ବରଂ ତାଙ୍କର ଅତି ପ୍ରିୟକବି ବିଶ୍ୱକବି ରବୀନ୍ଦ୍ରନାଥଙ୍କର ।

ରବୀନ୍ଦ୍ରନାଥଙ୍କୁ ନେଇ ତାଙ୍କର ଅନ୍ୟଏକ ସମାଲୋଚନାତ୍ମକ ପ୍ରବନ୍ଧ 'ରବୀନ୍ଦ୍ର ଗଳ୍ପର ବିଶେଷତ୍ୱ' । ଏହା କଟକ ଆକାଶବାଣୀ ସୌଜନ୍ୟରୁ ତା ୭ । ୮ । ୫୮ ରିଖ ରବୀନ୍ଦ୍ର ତିରୋଧାନ ଦିବସରେ ପ୍ରଚାରିତ ହୋଇଥିଲା । ଓଡ଼ିଆ ସାହିତ୍ୟର ସବୁଜ ଗୋଷ୍ଠୀଙ୍କ ପାଇଁ ରବୀନ୍ଦ୍ରନାଥ ଥିଲେ ଏକ ନିର୍ଭର ପ୍ରତିଶ୍ରୁତି । ଆମ ସବୁଜ ଚେତନାଟି ଯେପରି ଅମୂଳତରୁ ନୁହେଁ, ଠିକ୍ ସେହିପରି ସବୁଜ କାବ୍ୟକୁମ୍ଭଟି ମଧ୍ୟ ସବୁଜ କବିଙ୍କ ହୃଦୟ ଯମୁନା ନୀରରେ ପରିପୂର୍ଣ୍ଣ ନୁହେଁ; ତାର ସମସ୍ତ ଜଳ ପ୍ରତ୍ୟକ୍ଷତଃ ରବିତୀର୍ଥରୁ ସଂଗୃହୀତ ।'' (ଦାଶରଥି ଦାଶ - ସାହିତ୍ୟ ସଂଧାନ ପୃ-୨୫୩) । ରବୀନ୍ଦ୍ରନାଥ ଥିଲେ ଶତଧାର ପ୍ରତିଭାର ସ୍ରୋତସ୍ୱିନୀ, ଗଳ୍ପ, ଉପନ୍ୟାସ, କବିତା, ନାଟକ, ପ୍ରବନ୍ଧ ଓ ସାହିତ୍ୟ – ସମାଲୋଚନା ଇତ୍ୟାଦି ସାହିତ୍ୟ ରଚନାର ପ୍ରାୟ ପ୍ରତ୍ୟେକ କ୍ଷେତ୍ରରେ ଜଣେ ପ୍ରଥିତଯଶା ଶିଳ୍ପୀ ଭାବରେ ରବୀନ୍ଦ୍ରଙ୍କ ପ୍ରଭାବ ସର୍ବବାଦିସମ୍ମତ । ତାଙ୍କ ଅମର ଲେଖନୀର କାଉଁରୀ ସ୍ପର୍ଶରେ ବଂଗଳା ସାହିତ୍ୟ ବିଶ୍ୱ ସାହିତ୍ୟ ଦରବାରରେ ମହିମାଦୀପ୍ତ ହୋଇପାରିଛି । କେବଳ ରବୀନ୍ଦ୍ରନାଥଙ୍କ ପ୍ରତିନିଧିତ୍ୱ ହେତୁ ବଙ୍ଗଳା ସାହିତ୍ୟ ଭାରତୀୟ ସାହିତ୍ୟମାନଙ୍କର ଅଗ୍ରଣୀ ହୋଇପାରିଛି । ୧୯୧୩ ମସିହାରେ ସେ ବିଶ୍ୱବିଖ୍ୟାତ ନୋବେଲ ପୁରସ୍କାର ଲାଭ କରନ୍ତି ଓ ବିଶ୍ୱକବି ରୂପେ ପ୍ରତିଷ୍ଠିତ ହୁଅନ୍ତି । ଭାରତୀୟ ସାହିତ୍ୟର କାବ୍ୟଗୁରୁ ଆସନରେ ଅଧିଷ୍ଠିତ ହୋଇ ସେ ପ୍ରତ୍ୟେକ ପ୍ରାନ୍ତୀୟ ସାହିତ୍ୟରେ ସୃଷ୍ଟି କରିପାରନ୍ତି ରବୀନ୍ଦ୍ରପ୍ରୀତିର ନବାନୁରାଗ । ଏତଦ୍‌ବ୍ୟତୀତ ଓଡ଼ିଶା ରାଜ୍ୟ

ବଙ୍ଗଳାର ପଡ଼ୋଶୀ ହୋଇଥିବାରୁ ସବୁଜ ସ୍ରଷ୍ଟାମାନେ ରବୀନ୍ଦ୍ରପ୍ରଭାବକୁ ଏଡ଼ାଇ ପାରି ନାହାନ୍ତି । ଏଇ ସୂତ୍ରରେ କାଳିନ୍ଦୀଚରଣ ରବୀନ୍ଦ୍ର ଗଳ୍ପସାହିତ୍ୟର ମୂଲ୍ୟାୟନ କରିଛନ୍ତି । 'ମେଘ ଓ ରୌଦ୍ର' ରବୀନ୍ଦ୍ରନାଥଙ୍କର ଏକ ସାର୍ଥକ କ୍ଷୁଦ୍ରଗଳ୍ପ । ସତ୍ୟ ଓ ନ୍ୟାୟ ନାମରେ ଯେଉଁ ବ୍ୟକ୍ତି ଜନ-ସେବାରେ ନିଜକୁ ଉତ୍ସର୍ଗକରେ, ଶେଷରେ ପୁଣି ସେହି ଅଜ୍ଞ ଜନତା ସମସ୍ତ ଉପକାର ବଦଳରେ ଜନନାୟକର ଯେଉଁ ଦୁର୍ଦ୍ଦଶା ଘଟାଏ, ତାହାରି ଏକ ବାସ୍ତବ ପ୍ରାଣବନ୍ତ ଆଲେଖ୍ୟ ହେଲା 'ମେଘ ଓ ରୌଦ୍ର' । କାଳିନ୍ଦୀବାବୁ ଏହି ଗଳ୍ପର ମୂଲ୍ୟାୟନ କରିଛନ୍ତି ନିବିଡ଼ ଆନ୍ତରିକତାର କାଳି ଓ କଲମରେ । ''ଯେଉଁ ଦେଶ, ସମାଜ ଓ ଜନତା ଉଦ୍ଦେଶ୍ୟରେ କବି ନିଜ ହୃଦୟରେ ଅସରନ୍ତି ସ୍ନେହ ପ୍ରେମ ଢ଼ାଳି ଦେଇଥିଲେ ଶେଷରେ ପ୍ରତିଦାନ ସ୍ୱରୂପ ତାହାରି ଠାରୁ ଯେ ସେ ତୀବ୍ର ବ୍ୟଙ୍ଗ ତିରସ୍କାର ଦ୍ୱାରା ଲାଞ୍ଛିତ ହୋଇଥିଲେ, ସେହି ବ୍ୟର୍ଥତାର ଚିତ୍ର ହିଁ ମନୋଜ୍ଞ ପ୍ରକାଶଭଙ୍ଗୀରେ ଓ କାହାଣୀର ପରୋକ୍ଷ ଆବରଣ ମଧ୍ୟରେ ଅସାମାନ୍ୟ ବାସ୍ତବ ରୂପ ଘେନିଛି 'ମେଘ ଓ ରୌଦ୍ର' ଗଳ୍ପଟିରେ । କଳାସୃଷ୍ଟିର ଉତ୍କର୍ଷ ଘଟେ ସେହି ସମୟରେ, ଯେଉଁ ଶୁଭ ମୁହୂର୍ତ୍ତରେ ଲେଖକର ନିଜ ଅଭିଜ୍ଞତାର ମହାନ୍ ବିସ୍ତୃତି ପୁଣି ବାସ୍ତବ ଅନୁଭୂତିର ଗଭୀରତା ସଙ୍ଗେ ଉତ୍ତୁଙ୍ଗ ଆଦର୍ଶବାଦର ସାମଞ୍ଜସ୍ୟ ପ୍ରତିଷ୍ଠିତ ହୁଏ । ରବୀନ୍ଦ୍ର ଗଳ୍ପର ବିଶେଷତ୍ୱ ଏହିଠାରେ ।'' କ୍ଷୁଧିତ-ପାଷାଣ ଗଳ୍ପର ପଠନ ଓ ଅନୁଶୀଳନ ପାଠକ ପ୍ରାଣରେ କଳ୍ପନା ଓ ବାସ୍ତବତାକୁ ନେଇ ଛାଇ ଆଲୁଅର ଯେଉଁ ଲୁଚକାଳି ଖେଳ ସୃଷ୍ଟି କରେ ତାହାର ସ୍ୱରୂପ କାଳିନ୍ଦୀଙ୍କ ଭାଷାରେ ଏହିପରି – ''କ୍ଷୁଧିତ-ପାଷାଣ ଅଢ଼େଇ ଶହ ବର୍ଷ ପୂର୍ବର ଦ୍ୱିତୀୟ ଶା-ମାମୁଦଙ୍କର ଅରଣ୍ୟ ବେଷ୍ଟିତ ସେହି ନିର୍ଜନ ପ୍ରାସାଦ – ସେଇଠାରେ ଲେଖକ ନିଜକୁ ଅଢ଼େଇଶହ ବର୍ଷର କେଉଁ ଏକ ଅଲେଖା ଇତିହାସର ଜଣେ ଅପୂର୍ବ ବ୍ୟକ୍ତିରୂପେ ଅନୁଭବ କରନ୍ତି, ଆଉ ସେଥି ସଂଗେ ପାଠକର ଅନୁଭୂତିମୟ ଚିତ୍ତକୁ ଏପରି ଏକ ଭାବରାଜ୍ୟକୁ ନେଇଯାଆନ୍ତି ଯେଉଁଠି ଖଣ୍ଡସ୍ୱପ୍ନର ଆବର୍ତ୍ତ ମଧ୍ୟରେ ଏହି କ୍ୱଚିତ୍ ହେନାର ଗନ୍ଧ, କ୍ୱଚିତ ସିତାର ଶବ୍ଦ, କ୍ୱଚିତ ସୁରଭିଜଳ-ଶୀକର ମିଶ୍ରବାୟୁର ହିଲ୍ଲୋଳ ମଧ୍ୟରେ କ୍ଷଣେ କ୍ଷଣେ ବିଦ୍ୟୁତ ଶିଖାପରି ଗୋଟିଏ ନାୟିକାର ସାକ୍ଷାତ ପାଏ । ତାହାରି ଜାଫ୍ରାନ୍ ରଙ୍ଗର ପାଇଜାମା ଏବଂ ଦୁଇ ଶୁଭ୍ର ରକ୍ତିମ କୋମଳ ପାଦରେ ବକ୍ରଶୀର୍ଷ ଜରିର ଚଟି ଅତିପିନଦ୍ଧ ଜରିଫୁଲକଟା କାଞ୍ଚଲା ଆବଦ୍ଧ ବକ୍ଷଦେଶ, ମୁଣ୍ଡରେ ଗୋଟିଏ ଲାଲଟୋପି – ଆଉ ତହିଁରୁ ସୁନାର ଝାଲର ଝୁଲିପଡ଼ି ତାହାର ଶୁଭ୍ର ଲଲାଟ ଓ କପୋଳ ବେଷ୍ଟନ କରୁଛି ।'' (କାଳିନ୍ଦୀ ଚରଣ ପ୍ରବନ୍ଧ ସମଗ୍ର - ପୃ- ୨୪୩) । ରବୀନ୍ଦ୍ରନାଥଙ୍କ ଅତି ଲୋକପ୍ରିୟ ଓ ପରିଚିତ ଗଳ୍ପ 'କାବୁଲିବାଲା' । କାଳିନ୍ଦୀ ଚରଣଙ୍କ ଏହି ଗଳ୍ପର ବିଶ୍ଳେଷଣ ବାସ୍ତବରେ ପ୍ରଣିଧାନଯୋଗ୍ୟ । ''ଗଳ୍ପଟିରେ ପାହାଡ଼ିଆ ନୃଶଂସ କାବୁଲିବାଲା ପ୍ରାଣରେ ଯେଉଁ ଅପୂର୍ବ ବାତ୍ସଲ୍ୟ ଜାଗ୍ରତ ହୋଇଛି ତାହା ମାନବ ଚରିତ୍ରର ଏକ ବିରାଟ ଅଧ୍ୟୟନ । ସେଥି ସଂଗେ ପାଞ୍ଚବର୍ଷ ବୟସର ଛୋଟ ଝିଅ ମିନିର ଶିଶୁ ଚରିତ୍ର ଯେଉଁ ବୈଷମ୍ୟ ବା ତାରତମ୍ୟ ସୃଷ୍ଟି କରିଛି ତାହା ଫଳରେ ହୋଇଛି ଦୁଇଟି ଅମର ଚରିତ୍ରର ଉଦ୍ଭବ ।'' (ତତ୍ରୈବ ପୃ - ୨୪୩)

''ସ୍ତ୍ରୀ ଚରିତ୍ର ଓ ପୁରୁଷଭାଗ୍ୟକୁ ଦେବତାମାନେ ସୁଦ୍ଧା ଜାଣନ୍ତି ନାହିଁ, ମନୁଷ୍ୟ ଅବା କି ଛାର ! ସେଥିପାଇଁ ବୋଧହୁଏ ସ୍ତ୍ରୀ ପୁରୁଷଙ୍କ ଚରିତ୍ର ଓ ଭାଗ୍ୟ ବିଶ୍ଳେଷଣ କରିବା ପାଇଁ କବି, ଔପନ୍ୟାସିକ, ନାଟ୍ୟକାରମାନଙ୍କର ପ୍ରବଳ ଉଦ୍ୟମ ଦେଖାଯାଏ । ରାମାୟଣ, ମହାଭାରତ ଓ ଅନ୍ୟାନ୍ୟ କାବ୍ୟପୁରାଣ, ଇତିହାସର କେତେକ ଚରିତ୍ର ସେଥିପାଇଁ ଆଜି ଆମ ଆଗରେ ଜୀବନ୍ତ ଆଦର୍ଶ ।'' – ଏହି ବକ୍ତବ୍ୟକୁ ଉପୋଦ୍‌ଘାତ ଭାବେ ବ୍ୟବହାର କରିଛନ୍ତି କାଳିନ୍ଦୀଚରଣ ତାଙ୍କ 'ଫକୀର ମୋହନଙ୍କ ଚରିତ୍ର ଚିତ୍ରଣ' ପ୍ରବନ୍ଧରେ । ଏଥିରେ ସେ ମତ ପୋଷଣ କରନ୍ତି ଯେ ପ୍ରତିଟି ମଣିଷ ଭିତରେ ଅନ୍ତର୍ନିହିତ ଅଛି ଦୁଇଟି ପ୍ରବୃତ୍ତି - ପାପ ଓ ପୁଣ୍ୟ, ଦେବତା ଓ ରାକ୍ଷସ ଅବା ଆଲୁଅ ଓ ଅନ୍ଧାର । ପ୍ରାଚୀନ ଓ ମଧ ଯୁଗରେ ମଣିଷ ମନର ଏହି ଆଦର୍ଶ ପ୍ରବୃତ୍ତିଟିକୁ ବେଶୀ ଭାବରେ ଚରିତ୍ର ଚିତ୍ରଣ କରାଯାଉଥିଲା । କିନ୍ତୁ ପରିବର୍ତ୍ତିତ ପରିସ୍ଥିତରେ ଆଜି ଆଦର୍ଶର ସ୍ଥାନକୁ ଅଧିକାର କରିଛି ବାସ୍ତବତା । ସୁତରାଂ କେବଳ ଆଦର୍ଶର ଅନୁଗାମୀ ନ ହୋଇ ଯାହା ବାସ୍ତବ ତାର ରୂପ ଚିତ୍ର ଅଙ୍କନ କରିବା ଅଧୁନାତନ କାଳର ଲେଖକମାନଙ୍କର ହୋଇଛି ଶ୍ରେୟ । ପୁନଶ୍ଚ କୌଣସି ଚରିତ୍ର ଏକାବେଳେକେ ଦେବତା ସ୍ଥାନୀୟ ନୁହେଁ କିମ୍ବା ଅନ୍ୟପକ୍ଷରେ ରାକ୍ଷସ ସ୍ଥାନୀୟ ବି ନୁହେଁ । ପାରିପାର୍ଶ୍ୱିକ ଅବସ୍ଥା ଓ ଘଟଣାଚକ୍ର ପ୍ରଭାବରେ କୌଣସି ଚରିତ୍ର ଦେବତାର ସ୍ୱଭାବ ପ୍ରଦର୍ଶନ କରିଥିଲାବେଳେ ଆଉ କିଏ ବା ରାକ୍ଷସଭାବ ପ୍ରଦର୍ଶନ କରିଥାଏ । ପରିସ୍ଥିତି ବଦଳିଗଲେ ଏ ପ୍ରକାର ଆଚରଣ ବି ବଦଳି ଯାଇପାରେ । ''ତେଣୁ ଚରିତ୍ରର ଦୋଷାଦୋଷ ଅପେକ୍ଷା ଅବସ୍ଥାଚକ୍ରର ଦୋଷାଦୋଷ ଉପରେ ଆଜିର ଲେଖକ ଅଧିକ ଧ୍ୟାନନିଷ୍ଠ ।'' (ତତ୍ରୈବ ପୃ.-୭୫) । ଏଇ ସୂତ୍ରକୁ ଆଧାରକରି କାଳିନ୍ଦୀଚରଣ ଫକୀରମୋହନ ଚରିତ୍ର ଗ୍ୟାଲେରୀର ସମସ୍ତଙ୍କୁ ବିଚାର କରିବସିଛନ୍ତି । ତାଙ୍କ ଚରିତ୍ରାୟନର ନିୟାମକ ହୋଇଛି ବାସ୍ତବବାଦୀ ଦୃଷ୍ଟିଭଙ୍ଗୀ । ତେଣୁ ପ୍ରାବନ୍ଧିକ କହନ୍ତି – ''ଯଥାର୍ଥରେ ଓଡ଼ିଆ ସାହିତ୍ୟରେ ବାସ୍ତବବାଦୀ ଚରିତ୍ର ଚିତ୍ରଣର ଆଧୁନିକ ମୂଳଦୁଆ ପକାଇଛନ୍ତି ଫକୀର ମୋହନ । ସମୁଦାୟ ଗ୍ରହ ଉପଗ୍ରହ ସୂର୍ଯ୍ୟ ଚାରିପାଖେ ପରିକ୍ରମା କଲାଭଳି ଫକୀର ମୋହନଙ୍କ ଚରିତ୍ରରାଜିର କେନ୍ଦ୍ରସ୍ଥଳ ଗୋଟିଏ । ତାହା ହେଉଛି ଆଲୋକ ଓ ଆନନ୍ଦ । ଆଦର୍ଶ ସମାଜ ଓ ଅମୃତଜୀବନ ହିଁ ସେମାନଙ୍କର ଲକ୍ଷ୍ୟସ୍ଥଳ ।'' ପ୍ରବନ୍ଧଟିର ସୀମିତ ବ୍ୟାପ୍ତି ଓ ସଂକୀର୍ଣ୍ଣ କଳେବର ହେତୁ ପ୍ରାବନ୍ଧିକ ପ୍ରତ୍ୟେକ ଚରିତ୍ରର ଯଥାଯଥ ବିଶ୍ଳେଷଣ କରିପାରି ନାହାନ୍ତି । ତେବେ ଫକୀର ମୋହନ କଥା ସାହିତ୍ୟର ସମାଲୋଚନା ପାଇଁ ସେ ଯେଉଁ ହେତୁଟି ନିର୍ଦ୍ଦେଶ କରିଛନ୍ତି ତାହା ତାଙ୍କୁ ଜଣେ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି ସମ୍ପନ୍ନ ସମାଲୋଚକର ପରିଚୟ ପ୍ରଦାନ କରିଥାଏ ।

'ସାହିତ୍ୟରେ ପରିବର୍ତ୍ତିତ ଭାବବୋଧ' ପ୍ରବନ୍ଧରେ କାଳିନ୍ଦୀଚରଣ ତାଙ୍କ ମୌଳିକ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଛନ୍ତି । ଏହାକୁ Literary Criticism ନ କହି ବରଂ Literary Essay କହିବା ଅଧିକ ଯୁକ୍ତିଯୁକ୍ତ ହେବ । ବ୍ୟକ୍ତିବାଦର ଉଦ୍‌ଥାନ ଯୋଗୁଁ

ସମାଜବାଦ ଆଜି ସନ୍ତପ୍ତ । କିନ୍ତୁ ବ୍ୟକ୍ତି ଓ ସମାଜ ପରସ୍ପରର ପରିପନ୍ଥୀ ନୁହନ୍ତି ବରଂ ପରିପୂରକ । ତେଣୁ ଆଜିର ଲେଖକ ପାଇଁ ଏହା ଆହ୍ୱାନ – ସେ କିପରି ବ୍ୟକ୍ତି ସ୍ୱାତନ୍ତ୍ର୍ୟକୁ ସୁରକ୍ଷିତ କରିବା ସଂଗେ ସଂଗେ ସୁସ୍ଥ ସମାଜର ସ୍ୱପ୍ନ ଦେଖିପାରିବ । ଆଲୋଚନା ପ୍ରସଙ୍ଗରେ ପ୍ରାବନ୍ଧିକ ବିଶ୍ୱର ଦୁଇଟି ଅଗ୍ରଣୀ ରାଷ୍ଟ୍ର ରୁଷିଆ ଓ ଆମେରିକାର ଉଦାହରଣ ରଖିଛନ୍ତି । ବିଶ୍ୱ ସମୁଦାୟ ଆଗରେ ଏମାନେ ସଭ୍ୟ ଓ ଉନ୍ନତ ରାଷ୍ଟ୍ର ଭାବେ ବିବେଚିତ ହେଲେ ହେଁ ଏ ଦେଶ ଦ୍ୱୟରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟ କିପରି ପଦେ ପଦେ କ୍ଷୁଣ୍ଣ ତାହା ସେ ଦେଖାଇଛନ୍ତି । ଆମେରିକା ଓ ରୁଷିଆ, ଯାହା ଉପରେ ଆଜି ବିଶ୍ୱଯୁଦ୍ଧ ବା ବିଶ୍ୱଶାନ୍ତି ସବୁଠାରୁ ବେଶୀ ପରିମାଣରେ ନିର୍ଭରକରେ, ବିଜ୍ଞାନ ସମ୍ମତ ଶିଳ୍ପ ସଂଗଠନରେ ଯେଉଁ ରାଷ୍ଟ୍ରଦ୍ୱୟ ଅଗ୍ରଣୀ, ସେଠାରେ କିନ୍ତୁ ଏକାଧିକ କବି, ସାହିତ୍ୟିକ ଓ କଳାକାର ଆତ୍ମହତ୍ୟା କରିଥାନ୍ତି - କାହିଁକି ? ଏ ସମସ୍ୟାର ସମାଧାନ ନିର୍ଣ୍ଣୟ କରିବାକୁ ସେ ଚାହିଁଛନ୍ତି । ପ୍ରସଙ୍ଗକ୍ରମେ ରୁଷର ପ୍ରଖ୍ୟାତ କବି ମାୟାକୋଭସ୍କି ଏବଂ ଆମେରିକାର ଖ୍ୟାତନାମା ଔପନ୍ୟାସିକ ହେମିଙ୍ଗୱେଙ୍କ ଆତ୍ମହତ୍ୟା କଥା ଆଲୋଚନାର ପରିସରଭୁକ୍ତ ହୋଇଛି । ଏହି ଦୁଇଟି ଐତିହାସିକ ଆତ୍ମହତ୍ୟା ହିଁ ଆଧୁନିକ ସାହିତ୍ୟରେ ଜୀବନ ଜିଜ୍ଞାସାର ବାଣୀ ଶୁଣାଇଥାଏ । ପ୍ରତି ଲେଖକର ଯେଉଁ ସାମାଜିକ ଅଙ୍ଗୀକାରବଦ୍ଧତା (Social commitment) ରହିଛି ତାହା ତିନୋଟି ଗୁଣଧର୍ମ ଉପରେ ପର୍ଯ୍ୟବସିତ - (୧) ଜୀବନ-ଜିଜ୍ଞାସା (୨) ନୂତନ ମୂଲ୍ୟବୋଧର ପ୍ରତିଷ୍ଠା ଏବଂ (୩) ସୃଜନାତ୍ମକ ଉଦ୍‌ବେଗର ପରିଚୟ ଏହି ଗୁଣତ୍ରୟକୁ ପ୍ରତିଷ୍ଠା ଦେବାପାଇଁ ଲେଖକର ଯେଉଁ ଦୁର୍ବିନୀତ ସାହସ ଲୋଡ଼ା, ଏପରିକି ମୃତ୍ୟୁ ସମକ୍ଷରେ ମଧ; ହେମିଙ୍ଗୱେ ଓ ମାୟାକୋଭସ୍କି ତାହାରି ଏକ ନିର୍ମମ ନିରଙ୍କୁଶ ବହ୍ନି ଆହ୍ୱାନ । ଆଧୁନିକ ଭାରତୀୟ ସାହିତ୍ୟ ଏହି ଆହ୍ୱାନର ଯୋଗ୍ୟ ପ୍ରତ୍ୟୁତ୍ତର ଦେଇ ପାରିବ ବୋଲି ପ୍ରାବନ୍ଧିକ ଆସ୍ଥାବାନ ହୋଇଛନ୍ତି । ସାହିତ୍ୟ ହୋଇ ପାରିବ ବ୍ୟକ୍ତି ଓ ସମାଜ ମଧରେ ଏକ ଆତ୍ମିକ ସଂଯୋଗ ସେତୁ । ସାହିତ୍ୟର ଏହି ଗଠନ ମୂଳକ ଭୂମିକାରେ ଯେଉଁ ସମାଜ ଓ ବ୍ୟକ୍ତି ପରିପୁଷ୍ଟ ହେବେ, ସେଥିରେ ହତାଶ ହେମିଙ୍ଗୱେ ଓ ଅନୁତପ୍ତ ମାୟାକୋଭସ୍କି କଣ୍ଠରୁ ପୁଣିଥରେ ଝରିପଡ଼ିବ ଆଶା ଓ ଆଶ୍ୱାସନାର ଅମିୟବାଣୀ । ଏଥିରେ ପ୍ରାବନ୍ଧିକ ସୁସ୍ଥ ସମାଜ ଗଠନ ଓ ବ୍ୟକ୍ତିତ୍ୱର ନିରଙ୍କୁଶ ବିକାଶ ପାଇଁ ସାହିତ୍ୟକୁ ଏକ ଉତ୍କୃଷ୍ଟ ମାଧମ ଭାବେ ବିବେଚନା କରିଛନ୍ତି ।

'ଓଡ଼ିଆ ସାହିତ୍ୟ ପରମ୍ପରା' ପ୍ରବନ୍ଧରେ କାଳିନ୍ଦୀ ଚରଣ ସାରଳା ମହାଭାରତ ସମ୍ପର୍କରେ ଏକ ତାତ୍ତ୍ୱିକ ସମାଲୋଚନା ବାଢ଼ିଛନ୍ତି । ସାରଳା ମହାଭାରତ ରଚନାର ପୃଷ୍ଠଭୂମି ସମ୍ବନ୍ଧରେ ତାଙ୍କ ଅଭିମତ ବେଶ ପ୍ରଣିଧାନଯୋଗ୍ୟ । ଆଗରୁ ଭାଷା ଥିଲା ଦେବଭାଷା । ସାହିତ୍ୟ ଥିଲା ସଂସ୍କୃତ । ଆଉ ତାହାରି ଚର୍ଚ୍ଚା କରିଥିଲେ ବ୍ରାହ୍ମଣ ପଣ୍ଡିତମାନେ । ମାତ୍ର ଦେବଭାଷା - ସଂସ୍କୃତଯେବେ ପୈଶାଚିକ ଓଡ଼ିଆ ଭାଷାକୁ ଅବନତ ହେଲା ତା'ର ଲେଖକ ଜଣେ ଶୂଦ୍ର ହେବା ନିହାତି ଯୁକ୍ତି ସଂଗତ ବୋଲି ସେ ମତ ପୋଷଣ କରିଛନ୍ତି ଏବଂ ତାଙ୍କର

ଏହି ମତ ଖୁବ୍ ଯଥାର୍ଥ ବୋଲି ମନେହୁଏ । ''ଅଳ୍ପକେତେଜଣ ସଂସ୍କୃତ-ପଣ୍ଡିତ-ଗୋଷ୍ଠୀର ବିଳାସ ଆସନରୁ ଖସିଆସି ବାଗ୍‌ଦେବୀ ମୂର୍ଖ ନିରକ୍ଷର ଶୂଦ୍ର ଅଛୁଆଁ ସାଧାରଣ ମଣିଷ ସମାଜ ଭିତରେ ଆପଣା ମହିମା ବାଣ୍ଟିବାକୁ ଇଚ୍ଛାକଲେ । ତେଣୁ ତାଙ୍କର ପୂଜକ ମଧ୍ୟ ସେଇ ଶ୍ରେଣୀରୁ ବାହାରିଲେ । ବ୍ରାହ୍ମଣ ପୁରୋହିତ ଆଉ ଲୋଡ଼ା ହେଲେ ନାହିଁ । ଓଡ଼ିଆ ସାହିତ୍ୟର ଜନ୍ମବୃତ୍ତାନ୍ତ ଭିତରେ ଏଇ ତଥ୍ୟଟିକୁ ପାଶୋରି ଦେଇହେବ ନାହିଁ । କାହିଁକି ନା ସେତିକିବେଳୁ ସଂସ୍କୃତର ଏକଚ୍ଛତ୍ର ରାଜତନ୍ତ୍ର ଓଡ଼ିଆ ସାହିତ୍ୟର ଗଣତନ୍ତ୍ର ଭିତରେ ଲୁଚିଯିବା ପାଇଁ ଆରମ୍ଭକଲା । ଯେଉଁ ଭାଷାକୁ ଏ ଅଞ୍ଚଳର ମୂର୍ଖ ପଣ୍ଡିତ ସ୍ତ୍ରୀ ପୁରୁଷ ପିଲା ବୁଢ଼ା ସମସ୍ତେ କହନ୍ତି, ସମସ୍ତେ ବୁଝନ୍ତି, ସେହି ଭାଷା ହେଲା ସାହିତ୍ୟର ସମ୍ପତ୍ତି । ଆଉ ସେ ସମ୍ପତ୍ତିର ପ୍ରଥମ ମାଲିକ ହେଲେ ଶୂଦ୍ରମୁନି ସାରଳା ଦାସ ।'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର-ପୃ-୮୩) । ସାରଳାଦାସ ହିଁ ବ୍ୟାସଦେବଙ୍କ ମହାଭାରତକୁ ପରିଚିତ କରାଇଲେ ଓଡ଼ିଶାର ପୁରପଲ୍ଲୀରେ । ସେ ହିଁ କେବଳ ଋଷିଜନ ବନ୍ଦିତ ମହାଭାରତ ସହିତ ସଂଯୋଗ ସ୍ଥାପନ କରାଇଲେ ଓଡ଼ିଶା ଭୂଖଣ୍ଡର । ଭାରତ ସହିତ ଓଡ଼ିଶାର ଏ ଅବିଚ୍ଛେଦ୍ୟ ସମ୍ପର୍କକୁ ଲକ୍ଷ୍ୟ କରି ଗୋପବନ୍ଧୁ କହିଛନ୍ତି –

''ଜଗତ-ସରସେ ଭାରତ କମଳ
ତା ମଧ୍ୟେ କେଶର ପୁଣ୍ୟ ନୀଳାଚଳ ।'' (ବନ୍ଦୀର ଆତ୍ମକଥା - ଗୋପବନ୍ଧୁ ଦାସ)

ଆତ୍ମାଭିତରେ ପରମାତ୍ମାଭଳି ଏକ ଭିତରେ ଅନେକ ପୁଣି ଅନେକ ଭିତରେ ଏକର ଦର୍ଶନ । ଓଡ଼ିଶା ଭିତରେ ଭାରତ ଓ ପୁଣି ଭାରତ ଭିତରେ ଓଡ଼ିଶାକୁ ଉପଲବ୍ଧି କରିବାର ସୂତ୍ର ହେଉଛି ଶୂଦ୍ରମୁନି ସାରଳା ଦାସଙ୍କ ସାଧନାର ଫଳ । ସେହି ସାଧନା ହିଁ ଆମ ଓଡ଼ିଆ ସାହିତ୍ୟର ପୁଣ୍ୟ ପରମ୍ପରା ।

କାଳିନ୍ଦୀଚରଣଙ୍କ ସ୍ୱରାଜ୍ୟ ଉପନ୍ୟାସ, କବିତା ଓ ଗଳ୍ପ ହେଲେ ହେଁ ସେ ନାଟକ ରାଜ୍ୟରୁ ସମ୍ପୂର୍ଣ୍ଣ ଅପାଙ୍‌କ୍ତେୟ ନଥିଲେ । ସେ ନାଟକ ରଚନା କରିନାହାନ୍ତି ସତ କିନ୍ତୁ ଓଡ଼ିଶାର ନାଟ୍ୟଜଗତ ସହିତ ତାଙ୍କର ପୂର୍ଣ୍ଣ ପରିଚିତି ଥିଲା । ନାଟକ, ନାଟ୍ୟକାର ଓ ରଂଗମଞ୍ଚ ସଂପର୍କରେ ତାଙ୍କ ଅବବୋଧ ଅତ୍ୟନ୍ତ ସ୍ୱଚ୍ଛ ଥିବା କଥା ତାଙ୍କ ରଚିତ 'ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଐତିହାସିକ ଅଭ୍ୟୁଦ୍ୟଥାନ' ପ୍ରବନ୍ଧରୁ ଜଣାପଡ଼େ । ଏହି ପ୍ରବନ୍ଧଟି ପ୍ରଥମେ ଇଂରାଜୀରେ ରଚିତହୋଇ ୧୯୫୬ ମସିହାରେ କେନ୍ଦ୍ର ସଂଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ଦିଲ୍ଲୀଠାରେ ଅନୁଷ୍ଠିତ ନାଟକ-ଚକ୍ରରେ ପଠିତ ହୋଇଥିଲା । ପରେ ଏହା ନରେନ୍ଦ୍ର ମୋହନ ବେହେରାଙ୍କ ଦ୍ୱାରା ଓଡ଼ିଆ ଭାଷାକୁ ଅନୂଦିତ ହୋଇଥିଲା ।

'ପ୍ରାଚୀନ ଓଡ଼ିଆରେ ବ୍ୟଙ୍ଗ ବିଚାର' ଏକ ଉନ୍ନତ ସାହିତ୍ୟ ସମାଲୋଚନା ଧର୍ମୀ ପ୍ରବନ୍ଧ । ଦେହର ସୁସ୍ଥତା ସହିତ ମନର ସୁସ୍ଥତା ମଧ୍ୟ ଜୀବନ ପାଇଁ ଉପାଦେୟ । ଏଥିପାଇଁ ସାହିତ୍ୟ କ୍ଷେତ୍ରରେ ଯେତେସବୁ ବ୍ୟବସ୍ଥା ରହିଛି, ତନ୍ମଧ୍ୟରେ ବ୍ୟଙ୍ଗ (Satire) ଏକ ଉତ୍କୃଷ୍ଟ

ମାଧମ । ଏହା ମଧ୍ୟ ଅନେକ ସମୟରେ ସମାଜ ସଂସ୍କାର ପାଇଁ ଏକ ତୀକ୍ଷ୍ଣ ଅସ୍ତ୍ର ରୂପେ ବ୍ୟବହୃତ ହୋଇଥାଏ । ପ୍ରାବନ୍ଧିକ କାଳିନ୍ଦୀଚରଣ ବିଶ୍ବାସ କରୁଥିଲେ 'A Man is not poor if he can still laugh' । ଆହୁରି ମଧ୍ୟ ତାଙ୍କର ଧାରଣା ଯେ – 'If you laugh the entire world laughs with you. When you weep, you weep alone' । ଓଡ଼ିଆ ସାହିତ୍ୟରେ ବ୍ୟଙ୍ଗ ସାହିତ୍ୟର ବଳିଷ୍ଠ ପରମ୍ପରା ନିର୍ଦ୍ଦେଶ କରିବାକୁ ଯାଇ ସେ ଯଦୁମଣି ସାହିତ୍ୟରୁ ଅନେକ ଉଦାହରଣ ଓ ପହଳି (riddle)ର ଉଦାହରଣ ବାଢ଼ିଛନ୍ତି । ଏହାଛଡ଼ା ସେ ବତ୍ସା ଦାସଙ୍କ 'କଳସା ଚଉତିଶା', ସାରଳା ଦାସଙ୍କ 'ଭୀମ ହିଡ଼ିମ୍ବା ଚରିତ', ଦୀନକୃଷ୍ଣଙ୍କ 'ବୁଢ଼ାନାଉରୀ' ଇତ୍ୟାଦି ପ୍ରସଙ୍ଗର ଅବତାରଣା କରି ତାଙ୍କ ପ୍ରବନ୍ଧର ସାରବତ୍ତା ପ୍ରମାଣ କରିଛନ୍ତି ।

## (୨) ଅନୁଶୀଳନାତ୍ମକ ପ୍ରବନ୍ଧ (Reflective Essay) :

ଭୋଗବାଦୀ ସଭ୍ୟତା ଆଜି ନିରୋଳା ମଣିଷ ପଣିଆ ଉପରେ କୁଠାରାଘାତ କରିଚାଲିଛି । ଇଂରାଜୀରେ ଯାହା କୁହାଯାଉଥିଲା "As wealth accumulates, man decays." ଉକ୍ତିଟିର ସତ୍ୟତା ପ୍ରମାଣିତ ହୋଇଛି । ଭୋଗବାଦ ରାକ୍ଷସର ମୁଖ୍ୟ ଆଧାର ହେଉଛି ଧନତନ୍ତ୍ର; ଅର୍ଥାତ୍ ଧନତନ୍ତ୍ରର ଗବାକ୍ଷ ପଥ ଦେଇ ଭୋଗବାଦ ଆସିଛି । ଏହି ଭୋଗବାଦ ଆଜି ଭାରତର କାହିଁକି ସାରା ପୃଥିବୀର ଦୂରତମ ଗ୍ରାମର ଦରିଦ୍ରତମ ସଂସାରକୁ ବି ଛାରଖାର କରିବସିଲାଣି । ଧନିକର ସର୍ବଗ୍ରାସୀ ଲୋଭ ନିର୍ଦ୍ଧନର ପ୍ରଚଣ୍ଡ ଈର୍ଷାର କାରଣ ହୋଇଛି । ଫଳତଃ ସମାଜ-ଶରୀର ମଧ୍ୟରେ ଅତି ଗୋପନ ଭାବରେ ହିଂସା-କୀଟ ପ୍ରବେଶ କରି ଏହାର ଭିତ୍ତିସ୍ତମ୍ଭକୁ ଦୁର୍ବଳ କରିଦେଲାଣି । ଏହି ହିଂସାର ରୂପ ଆଜି ଧର୍ମଭିତରେ, ଜାତି ଭିତରେ, ଗୋଷ୍ଠୀ ଭିତରେ ଓ ଏପରିକି ସର୍ବତ୍ର ଅନୁଭୂତ ହେଉଛି । ସୁତରାଂ ମଣିଷର ବ୍ୟଷ୍ଟିଗତ ଜୀବନ ଏବଂ ସମଷ୍ଟିଗତ ଜୀବନ ଉଭୟ ଆଜି କଳୁଷିତ । ଏହି ଜାଗତିକ ସମସ୍ୟା Global Problemର ରାହୁଗ୍ରାସୀ ପ୍ରଭାବରୁ ମୁକ୍ତିଲାଭ କରିବା ଆଜିର ମଣିଷ ପକ୍ଷେ ଏକ ଦୁରନ୍ତ ପ୍ରଶ୍ନବାଚୀ । ଏହି ପ୍ରଶ୍ନବାଚୀମାନଙ୍କର ଏକ ଆଶୁ ଅଥଚ ସନ୍ତୋଷଜନକ ସମାଧାନ ଦେଇଛନ୍ତି କାଳିନ୍ଦୀଚରଣ ତାଙ୍କ ଚିନ୍ତାମୂଳକ ପ୍ରବନ୍ଧଗୁଡ଼ିକରେ ।

ଗଭୀର ମନନଶୀଳତାର ଆତ୍ମପରିଚୟ ବହନ କରି କାଳିନ୍ଦୀଚରଣଙ୍କର ଚିନ୍ତାମୂଳକ ପ୍ରବନ୍ଧଗୁଡ଼ିକ ପାଠକ ସମକ୍ଷରେ ଆତ୍ମପ୍ରକାଶ କରନ୍ତି । ସେଗୁଡ଼ିକ ବ୍ୟାପ୍ତିରେ ଯେତିକି ବିସ୍ତୃତ, ସମସ୍ୟା ଉପସ୍ଥାପନ ଓ ସମାଧାନରେ ମଧ୍ୟ ସେତିକି ପ୍ରସ୍ତୁତ ।

'ଉତ୍ତରାଧିକାର' ପ୍ରବନ୍ଧରେ ପ୍ରାବନ୍ଧିକ ଗାନ୍ଧୀବାଦର ଜୈତ୍ର ପତାକା ଉଡ଼ାଇଛନ୍ତି । ଯୁଦ୍ଧ, ଅଶାନ୍ତି, ହିଂସା ଓ ରକ୍ତପାତ - ଏସବୁ ମାନବ ସଭ୍ୟତାର ସହଗାମୀ ହୋଇଛନ୍ତି କାଳେ କାଳେ । କିନ୍ତୁ ଆମ ଜାତିର ପିତା ମହାତ୍ମାଗାନ୍ଧୀଙ୍କ ପ୍ରରୋଚନାରେ ରକ୍ତହୀନ ଯୁଦ୍ଧ ଓ ରକ୍ତହୀନ

ବିପ୍ଲବର ନିଶାଣ ଧରି ସବୁରି ଊର୍ଦ୍ଧ୍ୱରେ ଭାରତବର୍ଷ ଠିଆ ହୋଇଛି ମଣିଷ ଜାତିର ହଜାର ହଜାର ବର୍ଷର ଇତିହାସକୁ ଉପହାସ କରି । ନବ ଭାରତର ସର୍ବଶ୍ରେଷ୍ଠ ଭାସ୍କର, ସବୁଠାରୁ ବଡ଼ କାରିଗର ଗାନ୍ଧିଜୀ, ହିଟ୍‌ଲର୍, ମୁସୋଲିନି, ନେପୋଲିୟନ୍, ଆଲେକ୍‌ଜାଣ୍ଡାର, ଲିଙ୍କନ୍, ୱାସିଙ୍ଗଟନ୍, ରୁଷୋ ଓ ସକ୍ରେଟିସ୍‌ଙ୍କ କଥା ଆମେ ଅନ୍ବେବହୁତେ ଅବହିତ ଅଛୁ । ରାମ, କୃଷ୍ଣ, ଯୁଧିଷ୍ଠିର, ଶଙ୍କର, ଚୈତନ୍ୟ, ନାନକ ପ୍ରଭୃତି ପ୍ରାଚ୍ୟବୀର ମନୀଷୀମାନଙ୍କର ଆଦର୍ଶରେ ଆମେ ଅନୁପ୍ରାଣିତ । ଯୀଶୁ, ମହମ୍ମଦ, କନ୍‌ଫ୍ୟୁସିଅସ୍, ବୁଦ୍ଧ ପ୍ରଭୃତି ସଂସ୍କାରକ ବା ଧର୍ମପ୍ରଚାରକ ମଧ୍ୟ ପୃଥିବୀରେ ତାଙ୍କ ନିଜ ନିଜ ପ୍ରଭାବ ଅନୁଭୂତ କରାଇ ପାରିଛନ୍ତି । ଖାଲି ଏତିକି ନୁହେଁ, ଦର୍ଶନ, ବିଜ୍ଞାନ, କଳା, ସାହିତ୍ୟ ଓ ଇତିହାସ କ୍ଷେତ୍ରରେ ବହୁ ମନୀଷୀ ଦେଶ ଓ ସମାଜକୁ ବହୁ ଅମୂଲ୍ୟ ଦିଗ୍‌ଦର୍ଶନ ଦେଇଛନ୍ତି । ''କିନ୍ତୁ ରାଜନୀତି କ୍ଷେତ୍ରରେ ଗାନ୍ଧୀ ଯେଉଁ ଅହିଂସା ଅସ୍ତ୍ର ଧରାଇ ଦେଲେ, ପୃଥିବୀର ସୃଷ୍ଟିକାଳରୁ ଆଉ କେହି ତାହା ଦେଇନଥିଲେ । ଏହି ଅସ୍ତ୍ର ସାହାଯ୍ୟରେ ଯୁଦ୍ଧ ନ କରି ମଧ୍ୟ ମନୁଷ୍ୟ ଯେ ପ୍ରବଳ ଶତ୍ରୁକୁ ଜୟ କରିପାରେ, ତାହା ଗାନ୍ଧୀ ଜୀବନରେ ହିଁ ପ୍ରମାଣିତ ହେଲା ।'' (ତତ୍ରୈବ - ପୃଷ୍ଠା - ୧୫) ପ୍ରାବନ୍ଧିକ ଗାନ୍ଧିଜୀଙ୍କ ମୃତ୍ୟୁକୁ ଏକ ତେଜୋଦୀପ୍ତ ଅସାଧାରଣ ତିରୋଧାନ ବୋଲି ବର୍ଣ୍ଣନା କରିଛନ୍ତି । ଅହିଂସା ନୀତିର ପ୍ରତିଷ୍ଠା ପାଇଁ ଧର୍ମପଦ ସାଜିଥିବା ଗାନ୍ଧୀ ''ଆଜୀବନ ଭାରତ ପାଇଁ ଆତ୍ମୋତ୍ସର୍ଗ କରିଥିଲେ, କିନ୍ତୁ ଶେଷରେ ସେ ଯେଉଁ ମୃତ୍ୟୁ ବରଣ କଲେ, ତାହା ଯେମିତି ସମଗ୍ର ପୃଥିବୀ ପାଇଁ ।'' ପରିଶେଷରେ ଗାନ୍ଧୀଙ୍କ ପ୍ରଚାରିତ ଅହିଂସାର ନୀତିକୁ ଉତ୍ତରାଧିକାର ସୂତ୍ରରେ ସମଗ୍ର ବିଶ୍ୱବାସୀ ଅବଲମ୍ବନ କରିବା ପାଇଁ ଆହ୍ୱାନ ଜଣାଇ ସେ କହିଛନ୍ତି – ''ଗାନ୍ଧୀ-ଜୀବନଠାରୁ ଗାନ୍ଧୀ-ମରଣ ଅଳ୍ପ ଗୌରବମୟ ହୋଇନାହିଁ । ଗାନ୍ଧୀ-ଜୀବନର ଆଲୋକ ପ୍ରଧାନତଃ ଭାରତକୁ ଆଲୋକିତ କରୁଥିଲା । ଗାନ୍ଧୀ-ମରଣ ଆଜି ସମଗ୍ର ପୃଥିବୀକୁ ପ୍ରତିଭାତ କଲା । ସେ ଆଲୋକକୁ ଅଧିକ ସ୍ଥାୟୀ ଓ ଉଜ୍ଜ୍ୱଳତର କରିବାର ଭାର କୋଟି କୋଟି ଗାନ୍ଧୀ ଦାୟାଦଙ୍କ ହାତରେ ଉତ୍ତରାଧିକାର ସୂତ୍ରରେ ନ୍ୟସ୍ତ ରହିଲା ।'' (ତତ୍ରୈବ ପୃ- ୧୫-୧୬)

'ବେଗ ହିଁ ଉନ୍ନତିର ଲକ୍ଷଣ' ପ୍ରବନ୍ଧରେ କେତେକ ବୈଜ୍ଞାନିକ ପରିସଂଖ୍ୟାନ (Statistics) ଦିଆଯାଇଥିଲେ ହେଁ ପ୍ରବନ୍ଧର ଅନ୍ତଃସ୍ୱର ଖୁବ୍ ତାତ୍ତ୍ୱିକ ମନେହୁଏ । ଯେଉଁ ବ୍ୟକ୍ତି ବା ବସ୍ତୁ ଯେତେ ଅଧିକ ବେଗରେ ଗତିକରେ ସେ ସେତିକି ଉନ୍ନତ ବୋଲି ବିବେଚିତ ହୋଇଥାଏ । ବସ୍ତୁ ଜଗତର ଏହି ସତ୍ୟଟି ଜ୍ଞାନ ଜଗତରେ ମଧ୍ୟ ସତ୍ୟ । ବ୍ୟକ୍ତି ବା ବସ୍ତୁ ଅଧିକ ବେଗରେ ଗତିକରିବାକୁ ହେଲେ ତାହାର ଗତିପଥ ଯେପରି ପ୍ରତିବାଧାହୀନ ହେବା ଦରକାର ସେହିପରି ଜ୍ଞାନ ରାଜ୍ୟରେ ଯେଉଁମାନେ ଦ୍ରୁତ ବେଗରେ ଧାବମାନ ସେମାନଙ୍କର ପ୍ରକୃତି ଓ ଆଚରଣ ସରଳ ଓ ଋଜୁ ହେବା ନିହାତି ବିଧେୟ । ''କୁଟିଳତା ସବୁପ୍ରକାର ବେଗ ଉନ୍ନତିର ପଥରୋଧ କରେ'' ବୋଲି ପ୍ରାବନ୍ଧିକ ମତବ୍ୟକ୍ତ କରିଛନ୍ତି ।

'କହି ପୁଛି ଜାଣେ ଯେ' ପ୍ରବନ୍ଧଟିରେ ପ୍ରାବନ୍ଧିକ କଥା କହିବାର ଢ଼ଙ୍ଗ ଉପରେ ଗୁରୁତ୍ୱାରୋପ କରିଛନ୍ତି । କହି ଜାଣିଲେ କଥା ସୁନ୍ଦର, ବାନ୍ଧି ଜାଣିଲେ ମଥା ସୁନ୍ଦର ।

ଜଗତରେ ଦୁଇଗୋଷ୍ଠୀର ଲୋକ ଦେଖାଯାଆନ୍ତି - କରିବା ଲୋକ, କହିବା ଲୋକ । 'Activist ଓ Propagondist' ମଧ୍ୟରେ ଯାହା ପ୍ରଭେଦ, କରିବା ଲୋକ ଓ କହିବା ଲୋକ ମଧ୍ୟରେ ଠିକ୍ ସେହି ପ୍ରଭେଦ । କହିବା ଲୋକ ଅପେକ୍ଷା କରିବା ଲୋକର ସ୍ଥାନ ନିଶ୍ଚୟ ଉଚ୍ଚରେ । କିନ୍ତୁ କହିବା ଲୋକମାନେ ନିଜ କହିବାର ଢ଼ଙ୍ଗ ବଳରେ ନିଜେ କିଛି କରିବା ଅପେକ୍ଷା ଅନ୍ୟଦ୍ୱାରା କରାଇନେବାକୁ ସମର୍ଥ ହୋଇଥାନ୍ତି । ଏକ ଅର୍ଥରେ ଏମାନେ ପରାଙ୍ଗପୁଷ୍ଟ । ଲେଖକ ଏମାନଙ୍କୁ 'ପଚା ଚିଙ୍ଗୁଡ଼ି ବିକିବା ବାଲା' ବୋଲି କହିଛନ୍ତି । ଏଥିରୁ ଲେଖକଙ୍କର ସାମ୍ୟବାଦୀ ଦୃଷ୍ଟିଭଙ୍ଗୀର ପରିଚ୍ଚୟ ମିଳେ । କିନ୍ତୁ ଅନେକ ସମୟରେ ଦେଖାଯାଇଛି ଭଲଭାବରେ କହି ପୁଛି ନ ଜାଣି କେବଳ କାମ କରି ଚାଲିଲେ ସମସ୍ୟାର ସମାଧନ ହୁଏ ନାହିଁ କିମ୍ବା ସମୃଦ୍ଧି ମଧ୍ୟ ଆସେ ନାହିଁ । ଭାରତ ବିଶ୍ୱଦରବାରରେ ଉପଯୁକ୍ତ ଆସନ ପାଇ ନପାରିବାର କାରଣ ଏଇଆ । ଭାରତରେ ଡାକ୍ତର, ଇଞ୍ଜିନିୟର, ଶିକ୍ଷାବିତ୍, ଦାର୍ଶନିକ ଓ କଳାକାରଙ୍କର ଅଭାବ ନାହିଁ । କିନ୍ତୁ ଅଭାବ ଅଛି ଭଲ ଭାବରେ କହିପୁଛି ଜାଣିବାର କଳାକୌଶଳ । ଠିକ୍ ଏହି କୌଶଳର ଅଭାବ ଥିବାରୁ ଓଡ଼ିଶା ମଧ୍ୟ ଅନ୍ୟ ପ୍ରଦେଶ ମାନଙ୍କ ତୁଳନାରେ ପଛରେ ପଡ଼ିଯାଇଛି । ଓଡ଼ିଶାର ଅନ୍ୟ ଅଭାବଯାକ ବୋଧହୁଏ ଗୌଣ ହୋଇ ପଡ଼ନ୍ତା; ସେ ଯେବେ ମାନ୍ଦ୍ରାଜ, ବଙ୍ଗ, ବିହାର ପ୍ରଭୃତି ପ୍ରଦେଶମାନଙ୍କ ସଂଗେ ଖାଲି ଟିକିଏ ଚତୁରତାର ସହିତ କହି ପୁଛି ଜାଣନ୍ତା ।''

'ନାରୀ ଏବଂ ସୃଷ୍ଟି ସ୍ଥିତି' ଏକ ମନନଶୀଳ ଚିନ୍ତାଦ୍ୟୋତକ ପ୍ରବନ୍ଧ । ଏଥିରେ ଭାରତ ସମେତ ଫ୍ରାନ୍ସ୍, ଜାପାନ, ରୁଷ ଏବଂ ଆମେରିକା ପ୍ରଭୃତି ଦେଶମାନଙ୍କରେ ନାରୀର ଆଚ୍ରଣ ଓ ଅବସ୍ଥା ସଂପର୍କରେ ଆଲୋଚ୍ନା କରାଯାଇଛି । ନାରୀମାନେ ପୂରାପୂରି ଆବରଣ ଭିତରେ ରହି ପୁରୁଷ ଆଖିରେ ପ୍ରହେଳିକା ସୃଷ୍ଟି କରିବା ଯେଉଁ ଭଳି ଅବାଞ୍ଛିତ, ସେମାନେ ମଧ୍ୟ ସଂପୂର୍ଣ୍ଣ ଅନାବୃତ ଓ ଉଲଗ୍ନ ହୋଇ ଏକ ବିକୃତ ମାନସିକତାର ପରିଚୟ ପ୍ରଦାନ କରିବା ସେହିପରି ଅସମୀଚୀନ । ଆବରଣକୁ କୃତ୍ରିମତା ଏବଂ ନଗ୍ନତାକୁ ସ୍ୱାଭାବିକତା କହି ସଭ୍ୟତାର ଯେଉଁ ଯଥେଚ୍ଛାଚାର କରାଯାଉଛି ଲେଖକ ତାକୁ ଘୋର ବିରୋଧ କରିଛନ୍ତି । ଅନ୍ୟ ପକ୍ଷରେ ଏ ଦ୍ୱୟର ଏକ ମଧ୍ୟମ ପନ୍ଥା ପାଇଁ ସେ ପରାମର୍ଶ ଦେଇଛନ୍ତି । କାରଣ 'ଭାରତବର୍ଷରେ ଯେତେବେଳେ ସଂଯମର ଚର୍ଚ୍ଚା ବେଶି ହୋଇଛି, ସେତେବେଳେ ହିଁ ନିରୁପାୟ ହୋଇ ବେଶ୍ୟାର ଆଶ୍ରୟ ନେବାକୁ ହୋଇଛି ।'' (ତତ୍ରୈବ ପୃ-୧୩୨) ସଂଯମ ଭିତରେ ପ୍ରେମ ଯେତିକି କାମ୍ୟ, ପ୍ରେମ ଭିତରେ ସଂଯମ ମଧ୍ୟ ସେତିକି ସ୍ପୃହଣୀୟ । ନାରୀ କେବଳ 'ପୁତ୍ରାର୍ଥେ କ୍ରିୟତେ ଭାର୍ଯ୍ୟା' ପାଇଁ ଉଦ୍ଦିଷ୍ଟ ନୁହେଁ, ଏକ ଉନ୍ନତ ରାଷ୍ଟ୍ର ଗଠନ ଓ ଏହାର କଲ୍ୟାଣ ପାଇଁ ନାରୀ ମଧ୍ୟ ଏକ ଅପରିହାର୍ଯ୍ୟ ଉପକରଣ ବୋଲି ବିବେଚ୍ଚିତ ହେବାପାଇଁ ପ୍ରାବନ୍ଧିକ ଏହି ପ୍ରବନ୍ଧରେ ଆହ୍ୱାନ ଜଣାଇଛନ୍ତି ।

'ବିରୋଧାଭାସ' ପ୍ରବନ୍ଧରେ ତ୍ୟାଗ ଓ ଭୋଗର ସମନ୍ୱୟରେ କିଭଳି ହୃଦୟର ନିଭୃତ କୋଣରେ ମାନବିକତାର ମୁଗ୍‌ଧ ମୁକୁଳ ବିକଶିତ ହୋଇଉଠେ, ତା'ରି କଥା କୁହାଯାଇଛି ।

ଗାନ୍ଧି, ନେହେରୁ ଏବଂ ଲିଓ ଟଲଷ୍ଟୟଙ୍କ ଚରିତ୍ରାୟନ ମାଧ୍ୟମରେ ଏହି ସତ୍ୟକୁ ସେ ପ୍ରତିପାଦିତ କରିଛନ୍ତି । ସମ୍ଭ୍ରାନ୍ତ ପରିବାରର ଦାୟାଦ ଏବଂ ' War and peace' ଓ 'ଆନା କରେନିନା' ଭଳି ବିଶ୍ୱ ବିଶ୍ରୁତ ଗ୍ରନ୍ଥର ଲେଖକ ଲିଓ ଟଲଷ୍ଟୟ ଆପଣାହସ୍ତରେ ଜୋତା ସିଲେଇକରି, କଲମ ଛାଡ଼ି ଚାଷୀମାନଙ୍କ ସହିତ ହଳକରି ନିଜ ଜୀବିକା ଅର୍ଜନ କରିଥିଲେ । ତାଙ୍କ ବ୍ୟକ୍ତିଗତ-ଜୀବନ ଧନିକତନ୍ତ୍ର ଏବଂ ମୂଲିଆ ଗୋଷ୍ଠୀ ଭିତରେ ଥିବା ବିରୋଧାଭାସର ଏକ ସଫଳ ନିଦର୍ଶନ ।

ସାହିତ୍ୟ କାଳେ କାଳେ ମଣିଷ ସମାଜର କଲ୍ୟାଣ ପାଇଁ ଉତ୍ସର୍ଗୀକୃତ । କେବଳ ମନୋରଞ୍ଜନ ନୁହେଁ, ସମାଜ ଗଠନ ଏବଂ ଉପଯୁକ୍ତ ଦିଗ୍‌ଦର୍ଶନ କ୍ଷେତ୍ରରେ ମଧ୍ୟ ସାହିତ୍ୟ ଅଗ୍ରଣୀ ଭୂମିକା ଗ୍ରହଣ କରିଆସିଛି । କେତେବେଳେ ଧର୍ମ ବିପ୍ଳବ ପାଇଁ ତ ଆଉ କେତେବେଳେ ରାଷ୍ଟ୍ର ବିପ୍ଳବ ପାଇଁ ସାହିତ୍ୟର ଯୁଗାନ୍ତକାରୀ ଭୂମିକାକୁ 'ସାହିତ୍ୟର କାଉଁରୀ କାଠି' ପ୍ରବନ୍ଧରେ ଆଲୋଚନା କରାଯାଇଅଛି ।

## (୩) ଦାର୍ଶନିକ ପ୍ରବନ୍ଧ (Philosophical Essays)

ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି ହିଁ ଦର୍ଶନାନୁପ୍ରେରିତ । ସାହିତ୍ୟ ରଚିବାର କେଉଁ ସ୍ମରଣାତୀତ କାଳରୁ ଦର୍ଶନ ତାହାର ସହଗାମୀ ହୋଇଆସିଛି । ସାହିତ୍ୟ ସହିତ ଦର୍ଶନରେ ସମ୍ପର୍କ ଅତି ନିବିଡ଼ ଓ ପରସ୍ପରାଶ୍ରୟୀ (Symbiotic) । ତେଣୁ ସାହିତ୍ୟର ଉଚ୍ଚତମ ଆଶ୍ରୟ ଦର୍ଶନ ହୋଇଥିବାବେଳେ ଦର୍ଶନର ଗୂଢ଼ତମ ରହସ୍ୟ ସାହିତ୍ୟରେ ପ୍ରକାଶିତ ହେବାପାଇଁ ଅବଲମ୍ବନ ଖୋଜିଛି । ସାହିତ୍ୟ ଓ ଦର୍ଶନର ସମ୍ପର୍କ ଏତେ ଅନ୍ତରଙ୍ଗ ଯେ ବେଳେ ବେଳେ କେଉଁଟି ସାହିତ୍ୟ ଓ କେଉଁଟି ଦର୍ଶନ ଅଲଗା କରି ଦେଖେଇବା ଭାରି ଦୁରୂହ ହୋଇପଡ଼େ । ସେମାନଙ୍କର ଏହି ପରସ୍ପର ସମ୍ବନ୍ଧାଶ୍ରୟୀ ପଟ୍ଟଭୂମିରେ କାଳିନ୍ଦୀଚରଣଙ୍କ ପ୍ରବନ୍ଧ ସାହିତ୍ୟର ଯେଉଁ ସାରସ୍ୱତ ମୂଲ୍ୟବୋଧ ନିହିତ ତାହା ବାସ୍ତବରେ ପ୍ରଣିଧାନ ଯୋଗ୍ୟ ।

'ସତ୍ୟ ଶିବ ସୁନ୍ଦର' ପ୍ରବନ୍ଧରେ ପ୍ରାବନ୍ଧିକ ସତ୍ୟର ସ୍ୱରୂପ ନିର୍ଣ୍ଣୟ କରିଛନ୍ତି । ସତ୍ୟ ହିଁ ଚିରନ୍ତନତା (eternity)ର ନାମାନ୍ତର । ସୂର୍ଯ୍ୟଚନ୍ଦ୍ରର ସତ୍ୟତା-ଆଲୋକ, ସେହିପରି ସତ୍ୟର ପରିଚୟ ହେଉଛି ଯାହା ଶିବ (ମଙ୍ଗଳମୟ) ଓ ଯାହା ସୁନ୍ଦର । ପ୍ରାଚ୍ୟ ଓ ପାଶ୍ଚାତ୍ୟ ଉଭୟ ଜଗତରେ ଏହି ତତ୍ତ୍ୱକୁ ନିଃସର୍ତ୍ତ ସମର୍ଥନ ମିଳିସାରିଛି । ଭଗବାନଙ୍କ ରାଜ୍ୟ ବୋଲି ଯଦି କିଛି କେଉଁଠି ଥାଏ ତେବେ ତାହା ହେଉଛି ଏହି 'ସତ୍ୟ ଶିବ ସୁନ୍ଦର'ର ବିହାର ସ୍ଥଳ । ଏ ପ୍ରସଙ୍ଗରେ ଜର୍ମାନ ଦାର୍ଶନିକ ସ୍ପିନୋଜାଙ୍କର ମତ ହେଉଛି - "Religion is universal to the human race; wherever justice and charity have the force of law and ordinance, there is God's kindness." ଏପରି ଏକ ରାଜ୍ୟର ଅଧିବାସୀ ହେବାକୁ ହେଲେ ନିଜର ସଂକୀର୍ଣ୍ଣ ସ୍ୱାର୍ଥରୁ ମୁକ୍ତ ହେବାକୁ ପଡ଼ିବ । ଲେଖକ ଏହାର ନଜିର ଦେବାକୁ

ଯାଇ ମହାଭାରତ ଯୁଦ୍ଧରେ 'ଅର୍ଜ୍ଜୁନଙ୍କ ବିଷାଦ ଯୋଗ' କଥା କହିଛନ୍ତି । ଅର୍ଜ୍ଜୁନ ଯେ ପର୍ଯ୍ୟନ୍ତ ନିଜର ସଂକୀର୍ଣ୍ଣ ଗଣ୍ଡି ଭିତରୁ ମୁକ୍ତି ଲାଭ କରିନଥିଲେ ସେ ପର୍ଯ୍ୟନ୍ତ ସେ ଗାଣ୍ଡୀବ ଧରି ପାରୁନଥିଲେ । କିନ୍ତୁ ଯେଉଁ ମୁହୂର୍ତ୍ତରେ ସେ ସଂକୀର୍ଣ୍ଣତାର ନିର୍ମୋକରୁ ମୁକ୍ତିଲାଭ କଲେ ସେତେବେଳେ ସେ ଯେଉଁ ରୂପ ସନ୍ଦର୍ଶନ କଲେ ତାହା ନିକଟରେ ସିଂହାସନ, ରାଜ୍ୟ, ଭୋଗ ବିଳାସ, ଜୟ ପରାଜୟ ସମସ୍ତ ତୁଚ୍ଛ ହୋଇପଡ଼ିଲା । ସେ ଯୁଦ୍ଧରେ ନିଜକୁ ବ୍ୟାପୃତ କରିଦେଲେ । କାରଣ ଯୁଦ୍ଧ ତାଙ୍କ ବ୍ୟକ୍ତିଗତ ସ୍ୱାର୍ଥର ପରିପୂରକ ନୁହେଁ, ବରଂ ବିଶ୍ୱକଲ୍ୟାଣର ଅନୁପୂରକ । ସୁତରାଂ ସତ୍ୟ କେବେହେଲେ ବ୍ୟକ୍ତିଗତ ନୁହେଁ, ଏହା ସର୍ବଦା ସାର୍ବଜନୀନ ।

'ତ୍ୟାଗ ଓ ପ୍ରେମ' ତାଙ୍କର ଅନ୍ୟ ଏକ ଦର୍ଶନ ଭିତ୍ତିକ ପ୍ରବନ୍ଧ । ଏଥିରେ ଭୋଗ ନୁହେଁ, ତ୍ୟାଗର ମହତ୍ତ୍ୱ ପ୍ରତିଷ୍ଠିତ ହୋଇଛି । ତ୍ୟାଗର ବେଦୀ ଉପରେ ଭୋଗର ଯେଉଁ ଦେହାତୀତ ସମ୍ଭୋଗ ମିଳେ ତାକୁ କାଳିନ୍ଦୀ ଚ଼ରଣ ତାଙ୍କ ଭାଷାରେ କହିଛନ୍ତି ପ୍ରେମ । ''ତ୍ୟାଗ ଓ ପ୍ରେମ ଦୁଇଟା ଅଭେଦ ବସ୍ତୁ । ଯେଉଁଠାରେ ପ୍ରେମ ନାହିଁ, ସେଠାରେ ତ୍ୟାଗ ନାହିଁ । ବିପରୀତ ଦିଗରୁ ଦେଖିଲେ ମଧ୍ୟ ଠିକ୍ ସେହିପରି ।'' (ପୃ.- ୭) ତ୍ୟାଗ ମାଧ୍ୟମରେ ପ୍ରେମର ଯେଉଁ ବିଚିତ୍ର ବିଭୂତି ପ୍ରକଟିତ ହୁଏ ତାକୁ ପ୍ରାବନ୍ଧିକ Johan Bojer ଙ୍କ Peer ଚରିତ୍ର ମାଧ୍ୟମରେ ଦେଖାଇବାକୁ ଚେଷ୍ଟା କରିଛନ୍ତି । ପାଶ୍ଚାତ୍ୟ ସାହିତ୍ୟର ଏ ଉଦାହରଣ ଛଡ଼ା ପ୍ରାବନ୍ଧିକ ଭାରତୀୟ ପୁରାଣରୁ ମଧ୍ୟ ଆଉ ଏକ ପ୍ରମାଣ ଦର୍ଶାଇଛନ୍ତି । ସତୀ ଅନସୂୟାର ସ୍ୱାମୀଭକ୍ତି ଓ ତ୍ୟାଗ ମାଧ୍ୟମରେ ପ୍ରେମର ମହନୀୟ ରୂପ ପ୍ରକାଶିତ ହୋଇପାରିଛି । ଅନସୂୟା ନିଜ କୁଷ୍ଠାରୋଗାକ୍ରାନ୍ତ ସ୍ୱାମୀର ଆକାଙ୍କ୍ଷା ପୂରଣ ଲାଗି ତାକୁ ସ୍କନ୍ଧରେ ବସାଇ ବେଶ୍ୟାଭବନକୁ ଘେନିଯାଇଛି । ନିଜର ସୁଖକୁ ସେ ନିର୍ବିକାର ଚିତ୍ତରେ ଜଳାଞ୍ଜଳି ଦେଇଛି ସ୍ୱାମୀଙ୍କ ମନୋବାସନାର ପରିପୂର୍ତ୍ତି ପାଇଁ । ଦାନର ଐଶ୍ୱର୍ଯ୍ୟରେ ଯେଉଁ ପ୍ରେମ ଉଦ୍ଭାସିତ, ତାହା ପ୍ରତ୍ୟାଶାର ଦୀନତାରେ ମଳିନ ହୋଇଯାଏ । ତ୍ୟାଗର ଦୀପ୍ତିମାନ ଶିଖା ନିକଟରେ ପ୍ରତ୍ୟାଶାର ଆସକ୍ତି ଟି କେଡ଼େ ନିଷ୍ପ୍ରଭ ସତେ ! ନାରୀ ଯେଉଁଠି ପୁରୁଷକୁ ଅସୀମକରି ଦେଖିଛି, ବିଶ୍ୱମୟ କରିପାରିଛି, ସେଠାରେ ନାରୀର ଶ୍ରେଷ୍ଠତମ ଅର୍ଘ୍ୟ ହେଉଛି ତ୍ୟାଗ ଏବଂ ଏହି ତ୍ୟାଗ ହିଁ ପ୍ରେମପୁଷ୍ପଟିଏ ଭଳି ପ୍ରସ୍ଫୁଟିତ ହୋଇ ତାର ମଧୁଗନ୍ଧାମୋଦରେ ଜଗତକୁ ବିହ୍ୱଳିତ କରିଦେଉଛି ।

'ବିଶ୍ୱରୂପ ଦର୍ଶନ' ପ୍ରବନ୍ଧଟି ପୌରାଣିକ ଆଖ୍ୟାନଭାଗକୁ ଆଧାର କରି କେବଳ ରଚିତ ହୋଇ ନାହିଁ, ଏହାର ଅଭ୍ୟନ୍ତରରେ ଏକ ବିରାଟ ଦର୍ଶନ ଓ ମାନବୀୟ ମୂଲ୍ୟବୋଧ ସୁରକ୍ଷିତ ହୋଇପାରିଛି । ସେ ସାହିତ୍ୟ ନିଶ୍ଚୟ ଅସାମାନ୍ୟ ଯେଉଁ ସାହିତ୍ୟରେ ସମଗ୍ର ବିଶ୍ୱର ଓ ଭବିଷ୍ୟତ ସମାଜର ପ୍ରତିବିମ୍ବ ଅଙ୍କିତ । ଶିଶୁଭିତରେ ବିଶ୍ୱରୂପ ଦର୍ଶନ କଳ୍ପନା ସମ୍ଭବ ହୋଇଥିଲା । ନବ ଯୁଗର ପ୍ରତୀକ ଶିଶୁ - ଅମୃତର ଅଧିକାରୀ ସେ - କୌଣସି କଂସ ନିଧନ କରିବା ଅସମ୍ଭବ - ସେହି ଚିତ୍ର ଶିଶୁକୃଷ୍ଣଙ୍କ ମୁଖଗହ୍ୱର ଭିତରେ ଦର୍ଶନ କରିଥିଲେ ମା

ଯଶୋଦା - ସେହି ଚିତ୍ର ଦର୍ଶନ କରିଥିଲା ମହିଷାସୁର - ନାରୀ ଦୁର୍ବଳ ନୁହେଁ....ନିଖିଳ ସମ୍ଭାବନାର ଜନନୀ ସେ....ତାହାର ଗୋଟିଏ ହାତରେ ବରାଭୟ ଓ ଅନ୍ୟ ହାତରେ ଖଡ୍‌ଗ -ଖର୍ପର । ମନୁଷ୍ୟ କ୍ଷୁଦ୍ର ନୁହେଁ; ବିରାଟର ଏକ ଅଂଶ; ବିଶ୍ୱରୂପ ଦର୍ଶନର ଏହା ହେଉଛି ମୌଳିକ ତାତ୍ପର୍ଯ୍ୟ ଓ ତାହା ଏହି ପ୍ରବନ୍ଧରେ ପ୍ରତିପାଦ୍ୟ ବିଷୟବସ୍ତୁ ।

## (୪) ଜୀବନୀମୂଳକ ପ୍ରବନ୍ଧ (Biographical Essays) :

ଗୀତାରେ ସେଦିନ ଭଗବାନ୍ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ କହିଥିଲେ -

''ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ
ଅଭ୍ୟୁତ୍‌ଥାନମଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍
ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍
ଧର୍ମସଂସ୍ଥାପନାର୍ଥାୟ ସମ୍ଭବାମି ଯୁଗେ ଯୁଗେ ।''

ପୁରାଣ ଯୁଗରେ ଭଗବାନ ଶ୍ରୀକୃଷ୍ଣଙ୍କ ଅବତାର ଗ୍ରହଣର ଆବଶ୍ୟକତା ଓ ଅନିବାର୍ଯ୍ୟତା ଏ ଉକ୍ତିରେ ପ୍ରବକ୍ଷିତ । ଆଧୁନିକ ଯୁଗରେ ମହାମନୀଷୀମାନଙ୍କର ଜନ୍ମ ଓ ଜୀବନର ଉପାଦେୟତା ଊଣା ଅଧିକେ ଏଇ ଦର୍ଶନ ଉପରେ ଆଧାରିତ । ଜାତୀୟ ଚରିତ୍ର ଯେତେବେଳେ ଅଧୋଗତିପନ୍ନ ବ୍ୟକ୍ତିଜୀବନ ଯେତେବେଳେ ଦିଗ୍‌ଭ୍ରାନ୍ତ ଏବଂ ଜୀବନ ବଞ୍ଚିବା ଯେତେବେଳେ ପ୍ରଚୋଦନାହୀନ, ସେତେବେଳେ ଆମକୁ ଇନ୍ଧନ ଯୋଗାଇଥାନ୍ତି ଆମ ପୂର୍ବପୁରୁଷ, ଯୋଗଜନ୍ମା, ମୁନି, ଋଷି ଆଦି ସିଦ୍ଧ ସାଧକମାନେ । ସେମାନଙ୍କ ଜୀବନ ତତ୍‌କାଳୀନ ସମାଜ ପାଇଁ ଯେତିକି ମୂଲ୍ୟବାନ ଥିଲା, ତାଙ୍କ ଜୀବନୀ ପ୍ରଚଳିତ ସମାଜ ପାଇଁ ତତୋଽଧିକ ପ୍ରେରଣା ପ୍ରଦାୟକ ହୋଇଛି । ଜୀବନୀ ସାହିତ୍ୟ ରଚନା ଓ ଅଧ୍ୟୟନର ଏହି ଦାୟବୋଧକୁ ଆଖିଆଗରେ ରଖି ପ୍ରାବନ୍ଧିକ କାଳିନ୍ଦୀଚରଣ ରଚନା କରିଛନ୍ତି ରାଶି ରାଶି ଜୀବନୀମୂଳକ ପ୍ରବନ୍ଧ ଯାହାର ଦୀପ୍ତିରେ ତାଙ୍କର ସାରସ୍ୱତ ବ୍ୟକ୍ତିତ୍ୱ ଯେତିକି ଉଦ୍‌ଭାସିତ, ଆମର ସାମାଜିକ ଜୀବନ ପ୍ରବାହ ସେତିକି ଆଲୋକିତ ।

କୌଣସି ଦେଶକୁ ବୁଝିବାକୁ ହେଲେ ତାହାର ବର୍ତ୍ତମାନ ଅବସ୍ଥା ଆଲୋଚନା କରିବା ଯେପରି ଅପରିହାର୍ଯ୍ୟ, ସେହିପରି ତାହାର ଅତୀତ ସଂଗେ ପରିଚିତ ହେବା ଆବଶ୍ୟକ । ପ୍ରତି ମନୁଷ୍ୟର ଜୀବନ ତାହାର ବାଲ୍ୟ ଏବଂ ଯୌବନର ଅବସ୍ଥା କାର୍ଯ୍ୟ ସଂଗେ ଜଡ଼ିତ, ପ୍ରତି ସମାଜ ମଧ୍ୟ ସେହିପରି ଅତୀତ ଉପରେ ଗଢ଼ା ହୋଇଥାଏ ।

ତାମିଲ ସାହିତ୍ୟର ଶ୍ରେଷ୍ଠକବି 'ତିରୁଭଲ୍ଲୁଭର' ଖ୍ରୀଷ୍ଟୀୟ ୪ର୍ଥ ଶତାବ୍ଦୀର ପ୍ରାରମ୍ଭରେ ତାମିଲ ସାହିତ୍ୟ ନବଜାଗରଣ ସମୟରେ ଉଭୟ ପଣ୍ଡିତ ଓ ମୂର୍ଖମାନଙ୍କର ଆନନ୍ଦବର୍ଦ୍ଧନ କରିଥିଲେ । ଜୈନ ମତାବଲମ୍ବୀ ତିରୁଭଲ୍ଲୁଭରଙ୍କ ପ୍ରସିଦ୍ଧ ରଚନା 'କୁରାଲ' । ଏହି ଗ୍ରନ୍ଥର

ପ୍ରଥମ ଦୁଇଭାଗକୁ ଲାଟିନ୍ ଭାଷାରେ ଅନୁବାଦ କରିଥିବା ଜଣେ ୟୁରୋପୀୟ ତାଙ୍କୁ ପ୍ଲେଟୋଙ୍କ ସହିତ ତୁଳନା କରିଛନ୍ତି । ନୈତିକ ବିଚାରବୋଧକୁ ଆଧାରକରି ରଚିତ ହୋଇଥିବା ତାଙ୍କର ଅନ୍ୟତମ ରଚନା ହେଉଛି 'ତିରୁକୁରଲ' (ଯାହାର ଅର୍ଥ 'ପବିତ୍ର କବିତା') । ପ୍ରେମ ଓ ଦୟା କ୍ଷମାକୁ ସମାଜର ସୁଦୃଢ଼ ଭିତ୍ତିରୂପେ ବର୍ଣ୍ଣନା କରିଥିବା ତିରୁଭଲ୍ଲୁଭରଙ୍କ ବ୍ୟକ୍ତିଗତ ଜୀବନ ଅପେକ୍ଷା ତାଙ୍କ ସାହିତ୍ୟିକ କୃତିର ମହନୀୟତା ଏ ପ୍ରବନ୍ଧର ଭିତ୍ତିଭୂମି ।

'ପୁରାଣର ବିଦୂଷୀ' ପ୍ରବନ୍ଧରେ କେତେଗୁଡ଼ିଏ ପୌରାଣିକ ଚରିତ୍ରର ଚରିତାନୁଶୀଳନ କରାଯାଇଛି । ଏକ ସୁସ୍ଥ, ଶୃଙ୍ଖଳିତ ଏବଂ ଉନ୍ନତ ଜୀବନଯାପନ ସହିତ ସମୃଦ୍ଧ ରାଷ୍ଟ୍ର ଗଠନରେ ଏହି ଚରିତ୍ରଗୁଡ଼ିକର ଯଥେଷ୍ଟ ଅବଦାନ ଥିବାରୁ ପ୍ରାବନ୍ଧିକ ଏମାନଙ୍କୁ ତାଙ୍କ ପ୍ରବନ୍ଧ ସାହିତ୍ୟର ପରିସରଭୁକ୍ତ କରିଛନ୍ତି । କାଳିନ୍ଦୀଚରଣ ଥିଲେ ସବୁଜ ସାହିତ୍ୟର ଋତ୍ୱିକ । ସବୁଜ ସାହିତ୍ୟ ଗୋଷ୍ଠୀର ଦୃଷ୍ଟିଭଙ୍ଗୀ ଥିଲା ସ୍ୱପ୍ନବିଳାସୀ ଏବଂ ଏମାନେ ସମସ୍ତେ ତାରୁଣ୍ୟର ଉତ୍ତରଳ ଆହ୍ୱାନରେ ଜୀବନର ଅନ୍ୟ ଦାବୀ ଗୁଡ଼ିକ ପ୍ରତି ଉପେକ୍ଷା ପ୍ରଦର୍ଶନ କରିଛନ୍ତି ବୋଲି ପ୍ରାୟତଃ ସମାଲୋଚନା ହୁଏ । କିନ୍ତୁ 'ପୁରାଣର ବିଦୂଷୀ' ପ୍ରବନ୍ଧରେ ଭାରତୀୟ ସଂସ୍କୃତି ଓ ଜୀବନ ବୋଧର ଯେଉଁ ବାଙ୍ମୟ ପ୍ରକାଶ ଘଟିଛି ତାହା ବିଚାରକୁ ନେଲେ ସବୁଜ ଗୋଷ୍ଠୀଙ୍କ ଏତାଦୃଶ ସମାଲୋଚନା ଅଯୌକ୍ତିକ ମନେହେବ । ଏହି ପ୍ରବନ୍ଧରେ ମହାପଣ୍ଡିତ ଯାଜ୍ଞବଲ୍କ୍ୟ ଓ ତାଙ୍କ ବିଦୂଷୀପତ୍ନୀ ମୈତ୍ରେୟୀ; ଋତୁଧ୍ୱଜ ଓ ତାଙ୍କ ପଣ୍ଡିତାପତ୍ନୀ ମଦାଳସା ସମେତ ବେଦଶାସ୍ତ୍ରରେ ଅଭିଜ୍ଞା ଗାର୍ଗୀ ଇତ୍ୟାଦିଙ୍କ ଚରିତ୍ର ଓ ଜୀବନୀର ଯେଉଁ ଦିବ୍ୟ ଅଂଶଗୁଡ଼ିକ ପ୍ରାବନ୍ଧିକ ଏଠାରେ ଅବତାରଣା କରିଛନ୍ତି ତାହା ଆମ ସାମାଜିକ ଜୀବନର ଅନ୍ଧଦିଗନ୍ତକୁ ଇନ୍ଦ୍ରଧନୁର ସାତରଂଗରେ ଆଲୋକାପ୍ଳୁତ କରିଦେଉଛି । ସବୁଜ ସ୍ରଷ୍ଟା କାଳିନ୍ଦୀଚରଣଙ୍କ ଲେଖନୀ ଯେ କେତେ ପ୍ରତିଶ୍ରୁତିପୂର୍ଣ୍ଣ ତାହା ଏହି ପ୍ରବନ୍ଧରୁ ସହଜରେ ଅନୁମାନ କରିହୁଏ ।

'କେମାଲପାଶା ଓ ତୁର୍କ ସମାଜ' ପ୍ରବନ୍ଧରେ ତୁର୍କ ସମାଜ ପାଇଁ କେମାଲ ପାଶାଙ୍କ ସଂସ୍କାରମୁଖୀ ଦୃଷ୍ଟିଭଂଗୀ ଏବଂ ନବୀନ ଜୀବନବୋଧର ପରିଚୟ ପ୍ରଦାନ କରାଯାଇଛି । କେମାଲ ପାଶା ଏକ ଐତିହାସିକ ଚରିତ୍ର । କୁସଂସ୍କାରାଚ୍ଛନ୍ନ ତୁର୍କ ସମାଜ ମୁସ୍ତାଫା କେମାଲ ପାଶାଙ୍କ ଅକ୍ଳାନ୍ତ ଉଦ୍ୟମ ଓ ନିରବଚ୍ଛିନ୍ନ କର୍ମତତ୍ପରତା ପାଇଁ ବିଶ୍ୱ ସମୁଦାୟ ଆଗରେ ଆଜି ତା'ର ସ୍ୱାତନ୍ତ୍ର୍ୟ ବଜାୟ ରଖି ପାରିଛି ।

'ମାର୍କଟ୍ୱେନ୍' ଥିଲେ ଆମେରିକାର ଜଣେ କୃତବିଦ୍ୟ ଲେଖକ ଏବଂ ଆମେରିକା ଗଦ୍ୟ ସାହିତ୍ୟର ପ୍ରାଣ ପ୍ରତିଷ୍ଠାତା । ସଭ୍ୟତା ବିକାଶର ବହୁ ବିଳମ୍ବରେ ଅର୍ଥାତ୍ ଅଷ୍ଟାଦଶ ଶତାବ୍ଦୀରେ ସାହିତ୍ୟ ରଚନା କ୍ଷେତ୍ରରେ ପାଦ ଥାପି ଥିବା ଆମେରିକା ଯେଉଁମାନଙ୍କ ସାଧନାବଳରେ ବିଂଶ ଶତାବ୍ଦୀ ବେଳକୁ ଏକ ବିପୁଳ ସାହିତ୍ୟର ଅଧିକାରୀ ହୋଇପାରିଲା ସେମାନଙ୍କ ମଧ୍ୟରେ 'ମାର୍କଟ୍ୱେନ୍' ଥିଲେ ଅନ୍ୟତମ । ତାଙ୍କର ପ୍ରକୃତ ନାମ ହେଉଛି ସାମୁଏଲ ଲ୍ୟାଙ୍ଗହର୍ନ

କ୍ଲିମେନ୍‌ସ । ସାହିତ୍ୟିକ ଅବଦାନ, ବିଶେଷକରି ହାସ୍ୟରସ, ବ୍ୟଙ୍ଗ ଓ ଦୁଃସାହସିକ ଅଭିଜ୍ଞତା (Adventures) ରଚନାରେ ମାର୍କଟ୍ୱେନ୍ ଯେଉଁ ଦକ୍ଷତା ଦେଖାଇଛନ୍ତି ସେଥିପାଇଁ କାଳିନ୍ଦୀଚରଣ ତାଙ୍କ ପ୍ରବନ୍ଧ ସାହିତ୍ୟରେ ଏହି ଚରିତ୍ରଟିକୁ ସ୍ଥାନ ଦେଇଛନ୍ତି ।

ରୁଷୀୟ ସାହିତ୍ୟର ବିଖ୍ୟାତ କଥାକାର ଟଲଷ୍ଟୟ ଏବଂ ଗର୍କିଙ୍କ ସହିତ ତୁଳନୀୟ ଭାରତୀୟ କଥାକାର ପ୍ରେମଚନ୍ଦଙ୍କ ମହାନ୍ ଚରିତ୍ରର ଅନୁଶୀଳନରେ ରଚିତ ହୋଇଛି ଜୀବନୀ ମୂଳକ ପ୍ରବନ୍ଧ ''ହିନ୍ଦୀ ସାହିତ୍ୟର କଥା ସମ୍ରାଟ ପ୍ରେମଚନ୍ଦ'' । ୧୯୧୪ ଖ୍ରୀଷ୍ଟାବ୍ଦରେ ଗତ ୟୁରୋପୀୟ ମହାଯୁଦ୍ଧ ସମୟରୁ ହିନ୍ଦୀ ସାହିତ୍ୟରେ ନବଜାଗରଣ ଦେଖାଦେଲା । ଅନ୍ୟ ସାହିତ୍ୟର ଅନୁକରଣ ପ୍ରଭାବରୁ ମୁକ୍ତ ହୋଇ ଏହା ନିଜ ଗୋଡ଼ରେ ଠିଆହୋଇ ଶିଖିଲା ଏବଂ ଏହି ମୁକ୍ତିବାର୍ତ୍ତାର ସର୍ବପ୍ରଥମ ଅଗ୍ରଦୂତ ଥିଲେ ମୁନସୀ ପ୍ରେମଚନ୍ଦ । ସର୍ବୋତ୍କୃଷ୍ଟ ପ୍ରଥମ ମୌଳିକ ଲେଖକ ରୂପେ ସେ ହିନ୍ଦୀ ସାହିତ୍ୟର ପ୍ରାଣ ପ୍ରତିଷ୍ଠା କରିଥିଲେ । ହିନ୍ଦୁସ୍ଥାନର ସ୍ୱରୂପ କଣ, ତାହାର ସୁଖ ଦୁଃଖ କେଉଁଠି, ତାହାର ପୁରୁଷ ଏବଂ ନାରୀ, ତାହାର କୃଷକ, କୁଲି ମଜୁରିଆ, ତାହାର କିରାନି, ତାହାର ଧନୀ ଜମିଦାର ବା ସାହୁକାରଙ୍କର ସହଜ ସତ୍ୟ ଜୀବନ ଚରିତ୍ର ହିଁ ପ୍ରେମଚନ୍ଦ ସାହିତ୍ୟର ପ୍ରଧାନ କଥାବସ୍ତୁ । ସାହିତ୍ୟିକ - ପ୍ରଭାବ ଓ ପ୍ରତିଷ୍ଠା ଦିଗରୁ ପ୍ରେମଚନ୍ଦ ଜଣେ ଅତ୍ୟୁଚ୍ଚ ବ୍ୟକ୍ତିତ୍ୱ ହୋଇଥିବାରୁ ତାଙ୍କ ଜୀବନୀକୁ ଆଧାର କରି କାଳିନ୍ଦୀଚରଣ ଏହି ପ୍ରବନ୍ଧଟି ରଚନା କରିଛନ୍ତି ।

ପ୍ରସିଦ୍ଧ ରୁଷକବି 'ବରିସ୍ ପାସ୍ତରନାକ୍' ତାଙ୍କର ସୁବିଖ୍ୟାତ ଉପନ୍ୟାସ 'ଡକ୍ଟର ଜିଭାଗୋ' ପାଇଁ ୧୯୫୮ ମସିହାରେ ନୋବେଲ ପୁରସ୍କାର ପାଇବା ପାଇଁ ଯୋଗ୍ୟ ବିବେଚିତ ହୋଇଥିଲେ । ସେ ଅବଶ୍ୟ ଏ ପୁରସ୍କାର ଗ୍ରହଣ କରିବା ପାଇଁ ପ୍ରତ୍ୟାଖାନ କରିଥିଲେ । ଦୈନ୍ୟ ଓ ଅଭାବ ପ୍ରପୀଡ଼ିତ ଜୀବନ ସହିତ ସଂଗ୍ରାମ କରି ପ୍ରତୁଳ ସାହିତ୍ୟିକ-ଖ୍ୟାତିର ଅଧିକାରୀ ହୋଇଥିବା ବରିସ୍ ପାସ୍ତରନାକ୍‌ଙ୍କ ବ୍ୟକ୍ତିଗତ ଜୀବନ ସଂପର୍କରେ ପ୍ରାବନ୍ଧିକ ଆମକୁ ଅନେକ ସୂଚନା ଦେଇଛନ୍ତି ଏହି ପ୍ରବନ୍ଧଟିରେ ।

'ଗୋପବନ୍ଧୁ ସ୍ମୃତି' ପ୍ରବନ୍ଧଟିରେ ଗୋପବନ୍ଧୁଙ୍କ ତ୍ୟାଗଦୀପ୍ତ ସେବାମୟ ଜୀବନ ଉପରେ ଯେ କେବଳ ଆଲୋକପାତ କରାଯାଇଛି ତା' ନୁହେଁ, ବରଂ ଓଡ଼ିଶାର ଶିକ୍ଷା, ରାଜନୀତି, ଅର୍ଥନୀତି ଓ ସମାଜନୀତି-ନୀତି ଉପରେ ଏହା ଏକ ସୁଚିନ୍ତିତ ଖସଡ଼ା । ସତ୍ୟବାଦୀ ଯୁଗର ବିପୁଳ ପ୍ରେରଣା ଓ ପ୍ରଚଣ୍ଡ ଜାତୀୟତାବୋଧର ଶିଖା ନିଷ୍ପ୍ରଭ ହେବା ପୂର୍ବରୁ ଓଡ଼ିଆ ସାହିତ୍ୟରେ ଆତ୍ମପ୍ରକାଶ କରିଥିଲେ ସବୁଜଗୋଷ୍ଠୀ । ସୁତରାଂ କାଳିନ୍ଦୀଚରଣ ଗୋପବନ୍ଧୁଙ୍କ ବ୍ୟକ୍ତିତ୍ୱ ପ୍ରତି ସଶ୍ରଦ୍ଧ ହେବା ନିହାତି ସ୍ୱାଭାବିକ । ଓଡ଼ିଶାର ସାମାଜିକ ଦୁର୍ବିପାକ ଓ ରାଜନୀତିକ ଘନଘଟାର ମୁକାବିଲା ପାଇଁ ସତେଯେମିତି ଗୋପବନ୍ଧୁ ଥିଲେ ଜଣେ ଦେବଦୂତ । ଜାତିପାଇଁ ଜେଲ ଯିବାର ସମସ୍ତ ଯୋଗ୍ୟତା ତାଙ୍କଠାରେ ଥିଲା କିନ୍ତୁ ଜେଲରୁ

ଫେରି ଶାସନ ଗାଦିରେ ବସିବାର ଲକ୍ଷଣ ତାଙ୍କଠାରେ ଅଭାବ ଥିଲା । ଗୋପବନ୍ଧୁଙ୍କ ମୃତ୍ୟୁପରେ ତାଙ୍କ ମହନୀୟ ଗୁଣରାଜିକୁ ଆଜିକାଲିର ନେତାମାନେ ଯେଉଁଭଳି କପଟାନୁକରଣ କରୁଛନ୍ତି ସେଥିରେ ପ୍ରାବନ୍ଧିକ କାଳିନ୍ଦୀଚରଣଙ୍କ ଲେଖନୀ ତାଚ୍ଛଲ୍ୟରେ ପ୍ରଗଳ୍ଭ ହୋଇଉଠିଛି – ''ଜଣେ ଗୋପବନ୍ଧୁ ନଥିଲେ କ'ଣ ହେଲା, ଓଡ଼ିଶାରେ ବହୁନେତାଙ୍କର ଆଜି ଦର୍ଶନ ମିଳେ – ଯେଉଁ ମାନଙ୍କ ଭିତରୁ କାହାଠାରେ ଗୋପବନ୍ଧୁଙ୍କ ହୃଦୟ, କାହାଠାରେ ତାଙ୍କ ମସ୍ତିଷ୍କ, କାହାଠାରେ ତାଙ୍କ ସାହସ, କାହାଠାରେ ତାଙ୍କ ତ୍ୟାଗ, କାହାଠାରେ ତାଙ୍କ ସ୍ନେହ, କାହାଠାରେ ତାଙ୍କ କ୍ରୋଧ, ପୁଣି କାହାଠାରେ ତାଙ୍କ ହସକାନ୍ଦ ମାତ୍ର ଅବଶିଷ୍ଟ ରହିଯାଇଛି । ଜଣକ ବଦଳରେ ବହୁନେତା ବାହରିଛନ୍ତି; ଗୋପବନ୍ଧୁ ଆଜି ବହୁ ମଧ୍ୟରେ ନିଜକୁ ବାଣ୍ଟିଦେଇ ପାରିଛନ୍ତି ।'' ଏହି ପ୍ରବନ୍ଧରେ କାଳିନ୍ଦୀ ଚରଣ ଗୋପସ୍ମୃତି ତର୍ପଣ କରିବା ସଂଗେ ସଂଗେ ଓଡ଼ିଶା ପାଇଁ ଗୋପବନ୍ଧୁଙ୍କ ଅତୁଳନୀୟ ତ୍ୟାଗର ସ୍ୱରୂପ ନିର୍ଣ୍ଣୟ କରିଛନ୍ତି ।

'ଜଣେ ମଣିଷ' ପ୍ରବନ୍ଧରେ ଲେଖକ ଆଚାର୍ଯ୍ୟ ହରିହରଙ୍କ ନିଷ୍କପଟ ଓ ସନ୍ଧାନୀ ବ୍ୟକ୍ତିତ୍ୱର ଆକଳନ କରିଛନ୍ତି । ଗ୍ରୀସ୍ ଦେଶର ଏଥେନ୍ସ ନଗରୀରେ ଦିନ ଦିପହରେ ମଶାଲ ଧରି ମଣିଷ ଖୋଜୁଥିବା ସକ୍ରେଟିସ୍‌ଙ୍କ ସହିତ ଆଚାର୍ଯ୍ୟ ହରିହରଙ୍କୁ ସେ ତୁଳନା କରିଛନ୍ତି । ନିରୁତା ମଣିଷ ପଣିଆରେ ଗଢ଼ା ଏଇ ଶ୍ରଦ୍ଧାଶୀଳ ବ୍ୟକ୍ତି ଜଣକ ଥିଲେ କେବଳ ଓଡ଼ିଶା କାହିଁକି ସମଗ୍ର ମଣିଷ ଜାତି ପାଇଁ ଗୋଟିଏ ଦରଦୀ ସମ୍ବେଦନଶୀଳ ହୃଦୟ । ହିସାବ ଶାସ୍ତ୍ର (ଅଙ୍କ)ରେ ଦୋରସ୍ତ ଥିବା ହରିହର ଥିଲେ ତେଲ ଲୁଣ ଓ ଲାଭକ୍ଷତିର ଅଙ୍କ କଷା ଜୀବନରେ ନିହାତି ଅପାରଗ । ଆଚାର୍ଯ୍ୟ ହରିହରଙ୍କ ବ୍ୟକ୍ତିତ୍ୱ ଓ ଜୀବନ ପ୍ରବାହର ଆକଳନ ପ୍ରାବନ୍ଧିକ ଯେଉଁ ଭାଷାରେ କରିଛନ୍ତି ତାହା ବେଶ୍ ପ୍ରଣିଧାନ ଯୋଗ୍ୟ – ''ସେ କିନ୍ତୁ ଏ ସବୁ ହିସାବ ବାଟରେ ନ ଯାଇ ଅନ୍ୟରାସ୍ତା ଧରିଛନ୍ତି – ଯୁଆଡ଼ିକି ଜମା ବାଟ ନାହିଁ କିମ୍ବା ନିକଟରେ ରାଜପଥଯିବାର ସମ୍ଭାବନା ନାହିଁ । ସେହିସବୁ ଅଗମ୍ୟ ନଈ, ନାଳ, ବନ ପାହାଡ଼ତଳେ ଲୁଚି ଯାଇଥିବା ଅଜଣା ଅଶୁଣା ମଣିଷ ବସ୍ତି ଭିତରକୁ ସେ ପାଦରେ ଚାଲି ଚାଲି ବାଟ ଫିଟାଇଛନ୍ତି । ସେଇଠି ସେ ଇଞ୍ଜିନିଅର, ମିସ୍ତ୍ରୀ, କୁଲି, କାରିଗର ହୋଇଛନ୍ତି ।'' (ତତ୍ରୈବ ପୃ-୨୧୩) ।

ଜୀବନୀମୂଳକ ପ୍ରବନ୍ଧ ଭାବରେ ଆଉ ଯେଉଁ ସାରସ୍ୱତ ପ୍ରତିଭାମାନଙ୍କର ଜୀବନୀ ଓ ସାଧନା ସଂପର୍କରେ କାଳିନ୍ଦୀଚରଣ ସ୍ମୃତି ଚାରଣ କରିଛନ୍ତି ସେ ଗୁଡ଼ିକ ହେଲା - 'ସାହିତ୍ୟ ବଲ୍ଲଭ ଆର୍ତ୍ତବଲ୍ଲଭ' 'କବି ଗଙ୍ଗାଧର', 'ଲେଖକର ଆଶ୍ଚର୍ଯ୍ୟ ଟଲଷ୍ଟୟ' ଇତ୍ୟାଦି । ଏହି ପ୍ରବନ୍ଧ ଗୁଡ଼ିକରେ କାଳିନ୍ଦୀଚରଣ ଲେଖକମାନଙ୍କର ବ୍ୟକ୍ତିଗତ ଜୀବନ ସମ୍ପର୍କରେ କିଛି ଧାରଣା ଦେବା ସଙ୍ଗେ ସଙ୍ଗେ ସେମାନଙ୍କ ଅମରତ୍ୱର କାରଣ ଆକଳନ କରିଛନ୍ତି । କାରଣ ସେ ବିଶ୍ୱାସ କରୁଥିଲେ – ''ପୃଥିବୀରେ ସବୁ କାମକୁ ମଣିଷ ଭୁଲିଯାଏ, ଏକମାତ୍ର ତା' ମନରେ ପ୍ରଭାବ ସୃଷ୍ଟି କରିଥିବା ଲେଖକଟିଏ ଜୀବନ୍ତ, ପ୍ରିୟ ଓ ଶ୍ରଦ୍ଧାସ୍ପଦ ହୋଇ ରହେ । ରାମାୟଣ, ମହାଭାରତ, ଭଗବଦ୍ ଗୀତା – ଯୁଗ ଯୁଗ ଧରି କୋଟି କୋଟି ମଣିଷକୁ ପ୍ରଭାବିତ

କରିଆସୁଛି । ଭଲ ଲେଖାଟିଏ ମଣିଷ ମନରେ ଯେତେ ପ୍ରଭାବ ସୃଷ୍ଟି କରେ ଏବଂ ଜୀବନଧାରାକୁ ବଦଳାଇପାରେ, ସେପରି ଅନ୍ୟ କିଛି କରିପାରେ ନାହିଁ ।'' (ବିଜୟା - ଜାନୁୟାରୀ, ୧୯୯୫, ପୃ- ୧୩)

## (୫) ସାମାଜିକ ପ୍ରବନ୍ଧ (Social Essays) :

'ମାଟିର ମଣିଷ' ର ସ୍ରଷ୍ଟା କାଳିନ୍ଦୀଚରଣଙ୍କ ଦୃଷ୍ଟି ଅହରହ ନିବଦ୍ଧଥିଲା ମାଟି ଉପରେ ଓ ମଣିଷ ଉପରେ । ମାଟି ସହିତ ମଣିଷର ସଂପର୍କକୁ ସେ ସବୁବେଳେ ପ୍ରାଧାନ୍ୟ ଦେଇଛନ୍ତି । ତେଣୁ ତାଙ୍କ ଚରିତ୍ରମାନେ କସ୍ମିନ୍‌କାଳେ ବାୟବୀୟ (airy) ହୋଇନାହାନ୍ତି; ବରଂ ସେମାନେ ସବୁବେଳେ ନିଦା ଏବଂ ଶକ୍ତ (Concrete) । କାଳିନ୍ଦୀଚରଣ ମାଟି ଓ ମଣିଷକୁ କେବଳ ଯେ ତାଙ୍କ ଗଳ୍ପ, ଉପନ୍ୟାସ ଓ କବିତା ମାନଙ୍କରେ ପ୍ରାଧାନ୍ୟ ଦେଇଛନ୍ତି ତା' ନୁହେଁ, ତାଙ୍କ ପ୍ରବନ୍ଧ ମାନଙ୍କରେ ମଧ ଏହା ଅନୁସୃତ ହୋଇଛି । ସୁତରାଂ ତାଙ୍କର ଅନେକ ପ୍ରବନ୍ଧରେ ଯେଉଁ ସାମାଜିକ ଆଭିମୁଖ୍ୟ, ସମସ୍ୟା ଓ ଅନେକ ସ୍ଥଳରେ ତାର ସମାଧାନ ଉପସ୍ଥାପିତ ହୋଇଛି, ସେଗୁଡ଼ିକର କଳାତ୍ମକ ମୂଲ୍ୟ କିଛି କମ୍ ନୁହେଁ ।

ଯାଯାବର ଜୀବନଠାରୁ ଯନ୍ତ୍ର ସଭ୍ୟତା ମଣିଷର ଯେଉଁ ସୁଦୀର୍ଘ ଯାତ୍ରାପଥ ତା' ଭିତରେ କୃଷି ଏକ ମୂଲ୍ୟବାନ ଅର୍ଜନ । କାଳିନ୍ଦୀଚରଣ ତାଙ୍କର 'ସଭ୍ୟତାର ପହିଲି ପେଶା' ପ୍ରବନ୍ଧରେ ଏହି କୃଷିକୁ ହିଁ ଅଗ୍ରପ୍ରାଧାନ୍ୟ ଦେଇଛନ୍ତି । ତାଙ୍କର ବିଖ୍ୟାତ ଉପନ୍ୟାସ 'ମାଟିର ମଣିଷ' ହିଁ ଏହିଭଳି ଏକ କୃଷି ଭିତ୍ତିକ ଏକାନ୍ନବର୍ତ୍ତୀ ପରିବାରକୁ ଆଧାର କରି ରଚିତ ହୋଇଥିଲା । ଏ ଯାବତ୍ ମଣିଷ ତାର ଜୀବିକା ପାଇଁ ଯେତେ ଯେତେ ଅବଲମ୍ବନ ଗ୍ରହଣ କରିଛି ତନ୍ମଧ୍ୟରେ କୃଷି ହିଁ ସର୍ବପ୍ରାଚୀନ ଓ ସର୍ବବୃହତ୍ । ଭାରତ ଏକ କୃଷିପ୍ରଧାନ ଦେଶ ଏବଂ ଏହା ପାଶ୍ଚାତ୍ୟ ଦେଶମାନଙ୍କ ତୁଳନାରେ ବେଶି ଉନ୍ନତି ସାଧନ କରିପାରିନାହିଁ । ଏହାର କାରଣ ସ୍ୱରୂପ ଲେଖକ ଶିଳ୍ପକୁ ଦାୟୀ କରିଛନ୍ତି । ଭାରତ ଶିଳ୍ପ ପ୍ରଧାନ ନୁହେଁ । ଭାରତବର୍ଷର ମୃତ୍ତିକା ଉର୍ବର, କୃଷି ଉପଯୋଗୀ ଏବଂ ବହୁ ନଦୀସେଚିତ ହୋଇଥିବାରୁ ଏଠାରେ କୃଷି ଅପେକ୍ଷା ଶିଳ୍ପକୁ ଅଧିକ ପ୍ରାଧାନ୍ୟ ଦିଆଯାଇନାହିଁ । ମନୁଷ୍ୟ ଜାତିର ପହିଲି ପେଶା କୃଷି ହିଁ ଏ ଦେଶର ଜୀବିକା ପାଇଁ ପ୍ରଧାନ ଅବଲମ୍ବନ ହୋଇଥିବାରୁ ଭାରତର ଧର୍ମ, ଦର୍ଶନ, ସାହିତ୍ୟ, ରାଜନୀତି ଆଦି ସମାଜର ସକଳ ବିଭାଗର ଉନ୍ନତି ବା ଅବନତି କୃଷି ଉପରେ ନିର୍ଭର କରୁଅଛି । କୃଷିପାଇଁ ଭାରତରେ ବ୍ୟାପକ ଭିତ୍ତିଭୂମି ଓ ପର୍ଯ୍ୟାପ୍ତ ଅନୁକୂଳ ବାତାବରଣ ଥିବା ସତ୍ତ୍ୱେ ଭାରତ କୃଷି କ୍ଷେତ୍ରରେ ଆଶାଜନକ ଅଗ୍ରଗତି କରି ପାରି ନାହିଁ। ଏହାର କାରଣ ନିର୍ଦ୍ଦେଶ କରି ପ୍ରାବନ୍ଧିକ କହନ୍ତି ''ନିଜ ଚତୁଃସୀମା ମଧ୍ୟରେ ଆବଦ୍ଧ ରହି ଏ ଦେଶର ଦୃଷ୍ଟି ବାହାର ଅପେକ୍ଷା ଭିତରେ ହିଁ ଅଧିକ ନିବଦ୍ଧ ରହିଅଛି । ବିଦେଶୀ ଆକ୍ରମଣକାରୀ ଅପେକ୍ଷା ପଡ଼ୋଶୀ ହିଁ ବେଶି ଭୟ ଓ ଈର୍ଷାର କାରଣ ହୋଇଛନ୍ତି । ବାହାରର ଶତ୍ରୁ ଅପେକ୍ଷା ଭିତରର ଷଡ଼ରିପୁ ଦମନ ପାଇଁ ତାହାର ଉଦ୍ୟମ ପ୍ରବଳତର ହୋଇପଡ଼ିଅଛି । ଦେହର ସ୍ୱାସ୍ଥ୍ୟଠାରୁ ଅନ୍ତରର ଶୌଚପ୍ରତି ବେଶି

ଦୃଷ୍ଟି ଦିଆଯାଇଅଛି । ବୈଷୟିକ ଉନ୍ନତି ଛାଡ଼ି ଆଧ୍ୟାତ୍ମିକ ଉନ୍ନତିରେ ତାହାର ମୁକ୍ତିବୋଲି ଧାରଣା କରିଅଛି । ସେଥିପାଇଁ ଚାରିମାଣ ଜମି ଚାଳିଶ ଖଣ୍ଡରେ ବିଭକ୍ତ ହୋଇଅଛି । ଚାରିଟି ଜାତି ଚାରିଶହ ଜାତିରେ ପରିଣତ ଏବଂ ଗୋଟିଏ ଦେବତା କୋଟିଏ ହୋଇଛନ୍ତି ।'' କୃଷି ଉପରେ ହିଁ ଏ ଦେଶର ଶିକ୍ଷା, ସଭ୍ୟତା ନିହିତ ଏବଂ ଦେଶର ଶତ୍ରୁତା ବା ମିତ୍ରତା, ଦୁଃଖ ଅଥବା ସୁଖ କୃଷି ଦ୍ୱାରା ହିଁ ନିୟନ୍ତ୍ରିତ । ଅତଏବ କୃଷିର ଉନ୍ନତି ବିଧାନ ଏବଂ କୃଷକର ଅବସ୍ଥା ସୁଧାରିବା ପାଇଁ ପ୍ରତ୍ୟେକ ବ୍ୟକ୍ତିର ଚିନ୍ତାକରିବା ଉଚିତ ବୋଲି ପ୍ରାବନ୍ଧିକ ଆହ୍ୱାନ ଜଣାଇଛନ୍ତି ।

ସମଗ୍ର ମନୁଷ୍ୟ ଜୀବନକୁ ଶୈଶବ, କୈଶୋର, ଯୌବନ, ପ୍ରୌଢ଼ ଓ ଜରା ଏହିପରି ପାଞ୍ଚଭାଗରେ ବିଭକ୍ତ କରାଯାଇଛି । ଏହିସବୁ ଅବସ୍ଥା ମଧ୍ୟରୁ କୈଶୋର ମନୁଷ୍ୟ ଜୀବନର ପ୍ରଥମ ବିକାଶକାଳ । ଏଗାର ବର୍ଷଠାରୁ ଅଠରବର୍ଷ ପର୍ଯ୍ୟନ୍ତ ମାନବଜୀବନର ବୟଃସନ୍ଧିକୁ କୈଶୋର କୁହାଯାଏ । ଆର୍ଯ୍ୟ ଜୀବନର ବ୍ରହ୍ମଚର୍ଯ୍ୟ, ଗାର୍ହସ୍ଥ୍ୟ, ବାନପ୍ରସ୍ଥ ଓ ଯତିବ୍ରତ ନାମରେ ଯେଉଁ ଚାରିଗୋଟି ଆଶ୍ରମ ଥିଲା ତନ୍ମଧ୍ୟରୁ ବ୍ରହ୍ମଚର୍ଯ୍ୟ । ଶ୍ରମର ଅନ୍ତର୍ଭୁକ୍ତ ହେଉଛି କୈଶୋର । ଏହା ବ୍ରହ୍ମଚର୍ଯ୍ୟ ଆଚରଣର ସମୟ ହୋଇଥିଲେ ହେଁ ସ୍ଖଳନର ସମ୍ଭାବନା ଏହି ସମୟରେ ହିଁ ବେଶି । ଇଂରାଜୀରେ ଏହି ସମୟକୁ adolescent period ବୋଲି କୁହାଯାଇଥାଏ । ଜୀବନ ଗଠନରେ ଏହି ସମୟର ଯଥେଷ୍ଟ ଉପଯୋଗିତା ଥିବାରୁ ପ୍ରାବନ୍ଧିକ ଏହାର ସମାଜତାତ୍ତ୍ୱିକ ଦିଗ ଉପରେ ଆଲୋକପାତ କରି 'କୈଶୋର ଜ୍ଞାନ' ପ୍ରବନ୍ଧ ରଚନା କରିଛନ୍ତି । କିନ୍ତୁ ଆଧୁନିକ ମନୋବିଜ୍ଞାନୀ ଓ ଗବେଷକମାନଙ୍କ ମତଠାରୁ ପ୍ରାବନ୍ଧିକଙ୍କ ମତର କେତକାଂଶରେ ପାର୍ଥକ୍ୟ ଥିବା ଏହି ପ୍ରବନ୍ଧରୁ ଜଣାଯାଏ ।

''ମୋହେନ୍-ଜୋ-ଦାରୋ' ପ୍ରବନ୍ଧରେ ପ୍ରାବନ୍ଧିକଙ୍କର ଐତିହାସିକ ଓ ପ୍ରତ୍ନତାତ୍ତ୍ୱିକ ଜ୍ଞାନର ପରିଚୟ ନିହିତ । ସିନ୍ଧୁ ଭାଷାରେ 'ମୋହେନ୍-ଜୋ-ଦାରୋ' ଶବ୍ଦର ଅର୍ଥ ମୃତର ସ୍ତୂପ । ସିନ୍ଧୁ ପ୍ରଦେଶର ଲାରକାନା ଜିଲ୍ଲାର ପ୍ରାୟ ୨୪୦ ଏକର ବ୍ୟାପୀ ଏକ ଉଷର ଭୂମି ଉପରେ ଲୌହ ସଭ୍ୟତାର ଯଥେଷ୍ଟ ପୂର୍ବେ ତାମ୍ର ଯୁଗରେ ପ୍ରତିଷ୍ଠିତ ଏହି ନଗର ସଂପର୍କରେ ପ୍ରାବନ୍ଧିକ ଯେଉଁ ଭଳି ପୁଙ୍ଖାନୁପୁଙ୍ଖ ଆଲୋଚନା କରିଛନ୍ତି, ତାହା ତାଙ୍କ ପ୍ରତ୍ନତାତ୍ତ୍ୱିକ ଦୃଷ୍ଟିଭଙ୍ଗୀର ପରିଚୟ ଦେବା ସଂଗେ ସଂଗେ ସାଧାରଣ ପାଠକ ବର୍ଗର ସିନ୍ଧୁ ସଭ୍ୟତା ସଂପର୍କିତ ଧାରଣାକୁ ଅଧିକ ସ୍ପଷ୍ଟ ପ୍ରାଞ୍ଜଳ କରିଦେଉଛି ।

ନାରୀ ସମାଜର ଯଥୋଚିତ ଉନ୍ନତି ସାଧିତ ହେଲେ ମାନବ ସମାଜର ଉନ୍ନତି ସାଧିତ ହେବ । ସମାଜ ଗଠନ ପାଇଁ ନାରୀ ଓ ପୁରୁଷ ଦୁଇଟି ଅଙ୍ଗ । କେବଳ ଗୋଟିଏର ଉନ୍ନତି ସାଧିତ ହୋଇ ଅନ୍ୟଟି ଅବହେଳିତ ହେଲେ ସୁସ୍ଥ ସମାଜ ଗଠିତ ହୋଇପାରେ ନାହିଁ । ସେଥିପାଇଁ ନାରୀକୁ ପ୍ରାଚୀନତାର ବନ୍ଦୀଶାଳାରୁ ମୁକ୍ତିଲାଭ କରି ଆଧୁନିକା ହେବାକୁ ହେବ । ନାରୀ କିପରି ଉଚିତ ଶିକ୍ଷା ଲାଭ କରି ବର୍ତ୍ତମାନର କଳଙ୍କଗୁଡ଼ିକରୁ ମୁକ୍ତ ହୋଇପାରିବ ଏବଂ ପ୍ରଚଳିତ ଦୁରବସ୍ଥାରୁ ଉଦ୍ଧାର ପାଇବା ପାଇଁ ତାକୁ ଅଧିକ ସାହସୀ, ଶକ୍ତିମତୀ, ବୁଦ୍ଧିମତୀ ଓ

ନିର୍ଭୀକା ହେବା ଆବଶ୍ୟକ ତତ୍ ସମ୍ବନ୍ଧେ ପ୍ରାବନ୍ଧିକ 'ଆଧୁନିକ ନାରୀ' ପ୍ରବନ୍ଧରେ ପ୍ରସ୍ତାବନା ଦେଇଛନ୍ତି ।

୧୯୩୫ ମସିହାରେ କଟକଠାରେ ଅନୁଷ୍ଠିତ 'ନବଯୁଗ ସାହିତ୍ୟ ସଂସଦ'ର ଆଦ୍ୟଉତ୍ସବର ମୁଖ୍ୟ ପୁରୋଧାରୂପେ କାଳିନ୍ଦୀ ଚରଣ ଯେଉଁ ଉଦ୍‌ବୋଧନ ଦେଇଥିଲେ ତାହାର ସାମାଜିକ ମୂଲ୍ୟବୋଧ ଓ ସାହିତ୍ୟିକ ଆବେଦନ ବେଶ୍ ଉଚ୍ଚକୋଟୀର । 'ନବଯୁଗ ସାହିତ୍ୟ ସଂସଦ ଉଦ୍‌ବୋଧନ' ନାମରେ ସଂକଳିତ ଏହି ଲେଖାଟି ଏକ ସାମାଜିକ-. ରାଜନୀତିକ (Socio-Political essay) ପ୍ରବନ୍ଧର ମହତ୍ତ୍ୱ ଦାବୀ କରେ । ଶିଶୁର ହକ୍, ଶୈଶବରୁ ଧର୍ମ ଦାସତ୍ୱ ଓ ଯୌନ ଦାସତ୍ୱ ଶିକ୍ଷା, ଶିକ୍ଷା ପଦ୍ଧତିର ତ୍ରୁଟି, ବିବାହର ବିଭିନ୍ନ ରୀତି ଓ ତାହାର ସଫଳତା, ପାଶ୍ଚାତ୍ୟ ବିବାହର ସ୍ୱାଧୀନତା, ବୟସ୍କ ବିବାହର ସୁବିଧା, ତରୁଣର ଅର୍ଥ ସମସ୍ୟା, ଯୁବକର ହେତୁହୀନ ଭୀରୁତା ଇତ୍ୟାଦି ଅନେକ ସାମାଜିକ ପ୍ରସଙ୍ଗ (Social issue) ଏଥିରେ ସ୍ଥାନ ପାଇଥିବା ସହିତ 'ଭାରତରେ ସ୍ୱାଦେଶିକତା କାହିଁ ?' ନୂଆ ଓଡ଼ିଶା ପ୍ରଦେଶ, ରାଜନୀତିରେ ଯୁବକର ସମ୍ଭାବନା, ଦେଶର ତରୁଣୀ, ଦେଶପାଇଁ ଜେଲ କିମ୍ୱା ପ୍ରାଣବଳି ଭଳି କେତେକ ରାଜନୀତିକ ପ୍ରସଙ୍ଗ (Political issue) ସ୍ଥାନ ପାଇଛି । ଏଥିରେ ପ୍ରାବନ୍ଧିକଙ୍କ ଉଚ୍ଚ ଚିନ୍ତାଶକ୍ତି ଓ ସମସ୍ୟା-ଆକଳନ-ଶକ୍ତିର ପରିଚୟ ମିଳେ ।

'ଆମର ସାଂସ୍କୃତିକ ଜିଜ୍ଞାସା' ପ୍ରବନ୍ଧରେ ପ୍ରାବନ୍ଧିକ ସାଂସ୍କୃତିକ ଅନୁଷ୍ଠାନ ଗୁଡ଼ିକର ମହତ୍ତ୍ୱ ନିର୍ଣ୍ଣୟ କରି ''ଦେଶରେ ଯେତେ ବେଶି ସଂଖ୍ୟାରେ ସାଂସ୍କୃତିକ ଅନୁଷ୍ଠାନ ଗଠିତ ହୁଏ ପୁଣି ସେ ସବୁ ଅନୁଷ୍ଠାନ ଯେତେ ବେଶି ସୁନିୟନ୍ତ୍ରିତ ହୋଇ ଆମ ଗୌରବମୟ ଐତିହ୍ୟର ଉପଯୁକ୍ତ ହୁଏ ଓ ସୁସ୍ଥ ସୁନ୍ଦର ବଳିଷ୍ଠ ଚରିତ୍ର ଗଠନରେ ସାହାଯ୍ୟ କରେ, ଉତ୍କଳ ତଥା ଭାରତ ପକ୍ଷରେ ତାହା ତେତିକି ଶୁଭ ସଙ୍କେତ ଓ ସ୍ପୃହଣୀୟ'' ବୋଲି ମତ ପ୍ରକାଶ କରିଛନ୍ତି ।

## (୪) ରାଜନୀତିକ ପ୍ରବନ୍ଧ (Political Essays)

କାଳିନ୍ଦୀ ଚରଣଙ୍କ ଲେଖକ ଜୀବନର ମଧ୍ୟାହ୍ନ ଥିଲା ଭାରତୀୟ ରାଜନୀତିର ଏକ ଘଡ଼ିସନ୍ଧି ମୁହୂର୍ତ୍ତ । ତେଣୁ ସାହିତ୍ୟ ମାଧମରେ ରାଜନୀତି ଚର୍ଚ୍ଚା କରିବାର ଆବଶ୍ୟକତା ବେଶୀ ଜରୁରୀ ଥିଲା । 'ବଙ୍ଗ ଉତ୍କଳ ଦୁଇଟି ଭଗିନୀ' ତାଙ୍କର ଏକ ଦୀର୍ଘ ପ୍ରବନ୍ଧ । ଏହି ପ୍ରବନ୍ଧରେ ସେ ସ୍ୱଦେଶକୁ ନାରୀ ଭାବରେ କଳ୍ପନା କରିବା ଅପେକ୍ଷା ପୁରୁଷ ଭାବରେ କଳ୍ପନା କରିବା ପାଇଁ ଯୁକ୍ତି ଦର୍ଶାଇଛନ୍ତି । ପୃଥିବୀ ଶବ୍ଦଟି ସ୍ତ୍ରୀଲିଙ୍ଗବାଚକ ହୋଇଥିବାରୁ ତାକୁ ଜନନୀ କହିବା ଯୁକ୍ତିଯୁକ୍ତ । କିନ୍ତୁ ଭାରତବର୍ଷ, ବଙ୍ଗ କିମ୍ୱା ଉତ୍କଳ ଶବ୍ଦଗୁଡ଼ିକ ଆଦୌ ସ୍ତ୍ରୀଲିଙ୍ଗ ବାଚକ ହୋଇନଥିବା ବେଳେ ଏହାକୁ ମାତା ନକହି ପିତା କହିବା ଅଧିକ ସମୀଚୀନ ନୁହେଁ କି ? ବର୍ତ୍ତମାନର ଓଡ଼ିଶା ସହିତ ଯଦି ପ୍ରାଚୀନ କଳିଙ୍ଗ କିମ୍ୱା ଉତ୍କଳର କିଛି ମାତ୍ର ସଂପର୍କ ଥାଏ, ତେବେ ମନୁଙ୍କ ଜ୍ୟେଷ୍ଠପୁତ୍ର ଇଳାଙ୍କ ନାମାନୁସାରେ ଉତ୍କଳ ନାମ ସମ୍ଭୂତ ହୋଇଥିବା କାରଣରୁ

ଏହାକୁ ପୁରୁଷବାଚକ ସମ୍ବୋଧନରେ ସମ୍ବୋଧିତ କରିବା ଅଧିକ ଯୁକ୍ତି ସଙ୍ଗତ ହେବ । ତେବେ ବଙ୍ଗ ଓ ଉତ୍କଳ ଦୁଇ ଭାଇ ଭାବରେ ଗୃହୀତ ନ ହୋଇ ଦୁଇ ଭଉଣୀ ଭାବରେ ଗୃହୀତ ହୋଇଛନ୍ତି କାହିଁକି ? ଏହାର କାରଣ ହେଉଚି ଚୈତନ୍ୟ ପ୍ରଚାରିତ ବୈଷ୍ଣବଧର୍ମର ପୌରୁଷହୀନତା । ରାଧାଭାବ ବଙ୍ଗ ଓ ଓଡ଼ିଶାରେ ଯେଉଁ ଧାର୍ମିକ ପ୍ଲାବନ ସୃଷ୍ଟି କରିଥିଲା ତା'ର ପ୍ରକୃଷ୍ଟ ପ୍ରତିଫଳନ ହେଉଛି ଏ ଦୁଇ ରାଜ୍ୟକୁ ଦୁଇ ଭଉଣୀ ଭାବରେ ଗ୍ରହଣ କରିନେବାର ମାନସିକତା । ଏହାଦ୍ୱାରା ଚୈତନ୍ୟ ଓଡ଼ିଶାର ଯେଉଁ ବିପୁଳ କ୍ଷତି ଘଟାଇଲେ ତାହା କଳାପାହାଡ଼ର ଧର୍ମ ବିଧ୍ୱଂସୀ କାର୍ଯ୍ୟକଳାପ ଅପେକ୍ଷା ଢ଼େର ଗୁଣରେ କ୍ଷତିକାରକ । ବାସ୍ତବିକ ଦେଖିବାକୁ ଗଲେ ଚୈତନ୍ୟଙ୍କ ଦ୍ୱାରା ଓଡ଼ିଶାର ସାମରିକ ଶକ୍ତିର ଯେଉଁ ବିପୁଳ କ୍ଷତି ହୋଇଛି ସେଥିରେ କଳାପାହାଡ଼ ଅପେକ୍ଷା ତାଙ୍କୁ ବେଶି ଘୃଣା କରିବା ଉଚିତ । କଳାପାହାଡ କେବଳ ଓଡ଼ିଶାର ମନ୍ଦିର ଓ ଦେବଦେବୀଙ୍କୁ ଭାଙ୍ଗିଦେଇଗଲେ । ଏବେ ମଧ୍ୟ ଏ ଦେଶରେ ଯେତେ ମନ୍ଦିର ଓ ଦେବଦେବୀ ଅଛନ୍ତି, ସେଥି ଭିତରୁ ଆହୁରି ଅଧେ ଭାଙ୍ଗି ଲୋପ କରିଦେଲେ ଏ ଭୂମିରୁ ଦେବପୂଜା ଲୋପ ହେବାର ନୁହେଁ । କନ୍ତୁ ଚୈତନ୍ୟ ଯାହା ଭାଙ୍ଗିଦେଇଗଲେ ତାହାର ମୂଲ୍ୟ ଓଡ଼ିଶାର ସହସ୍ର ଦେବପ୍ରତିମା ଓ ମନ୍ଦିରଠାରୁ ଯଥେଷ୍ଟ ବେଶି । ତାହା ହେଉଛି ଗୋଟାଏ ଜାତିର ପୌରୁଷ ଓ ବିରାଟ ସାମରିକ ଶକ୍ତି । କଳାପାହାଡ଼ ଭାଙ୍ଗିଲେ ପଥରର ପିତୁଳା ଓ ପଥରର ଦେଉଳ; ଚୈତନ୍ୟ ଭାଙ୍ଗିଲେ ଜୀଅନ୍ତା ମଣିଷର ବିଗ୍ରହ ଓ ତାହାର ବାସଗୃହ ।

ଏହି ପ୍ରବନ୍ଧରେ କାଳିନ୍ଦୀଚରଣ ଚୈତନ୍ୟଙ୍କ ଓଡ଼ିଶା ଆଗମନ ଓ ତଦୀୟ ଧର୍ମପ୍ରଚାରର ଆଭିମୁଖ୍ୟ ବିରୋଧରେ ଯେଉଁ ଅଭିଯୋଗ ଉଠାଇଛନ୍ତି ତାହା ଖୁବ୍ ଯଥାର୍ଥ ଓ ଯୁକ୍ତିଯୁକ୍ତ ମନେହୁଏ । ଏହି ଦୀର୍ଘ ପ୍ରବନ୍ଧରେ ଆଉ ଯେଉଁ ପ୍ରସଙ୍ଗ ଗୁଡ଼ିକ ଆଲୋଚିତ ହୋଇଛି ସେଗୁଡ଼ିକ ହେଲା – ଭାରତର ରାଷ୍ଟ୍ରୀୟ ପଙ୍କୁତାରେ ଧର୍ମର ଦାୟିତ୍ୱ ଓ ଓଡ଼ିଆ ଜଗନ୍ନାଥ ଧର୍ମର ଅସାରତା, ଗଞ୍ଜାମ ଓ ମେଦିନୀପୁର, ବଂଗରେ ଓଡ଼ିଆ ଓ ଓଡ଼ିଶାରେ ବଂଗାଳି ଅଧିବାସୀ ଦୁଇ ପ୍ରଦେଶ ଭିତରେ ଆଦାନ ପ୍ରଦାନରେ ସାମଞ୍ଜସ୍ୟ, ବଂଗ ଓ ଉତ୍କଳ ଦୁଇଟି ଭଉଣୀ ହୋଇ ମଧ୍ୟ ଦୁଇଟି ସଉତୁଣୀ ଓ ସାହଚର୍ଯ୍ୟରେ ପରସ୍ପରର ଉପକାର ଇତ୍ୟାଦି । ଏହି ପ୍ରବନ୍ଧ ପ୍ରକାଶିତ ହେବା ପରେ ଅନେକ ପ୍ରତିକ୍ରିୟା ପ୍ରକାଶ ପାଇଥିଲା, ବିଶେଷକରି ଓଡ଼ିଶାର ଚୈତନ୍ୟ-ସମ୍ପ୍ରଦାୟ ତରଫରୁ । ଏପରିକି ବିଶ୍ୱକବି ରବୀନ୍ଦ୍ରନାଥ ଏ ସମ୍ପର୍କରେ ମାଳତୀ ଦେବୀଙ୍କୁ ଚିଠି ଲେଖି ତାଙ୍କର ପ୍ରତିକ୍ରିୟା ଜଣାଇଥିଲେ । ଏସବୁ ପ୍ରତିବାଦର ଏକ ବିନମ୍ର ଉତ୍ତର ମଧ୍ୟ କାଳିନ୍ଦୀବାବୁ ଲେଖିଥିଲେ, ଯାହା 'ପ୍ରତିବାଦର ଉତ୍ତର' ଶିରୋନାମାରେ ଏକ ସ୍ୱତନ୍ତ୍ର ପ୍ରବନ୍ଧ ଭାବରେ ମଧ୍ୟ ସ୍ଥାନୀତ ହୋଇଛି । ଏଥିରେ ସେ ଚୈତନ୍ୟ ଅଥବା ଇତିହାସ ସିଦ୍ଧ ଅନ୍ୟାନ୍ୟ ବ୍ୟକ୍ତିବିଶେଷଙ୍କୁ 'ମହାପ୍ରଭୁ' ବା 'ଭଗବାନ' ପ୍ରଭୃତି ଆଖ୍ୟା ଦେବାର ଅସାରତା ଦର୍ଶାଇଛନ୍ତି । କାରଣ ଐତିହାସିକ ଚରିତ୍ର ରୂପେ ଦେଖିବା ଦ୍ୱାରା ଏ ଚରିତ୍ରଗୁଡ଼ିକର ଅସ୍ତିତ୍ୱ

ଓ ସତ୍ୟତା ସମ୍ବନ୍ଧରେ କୌଣସି ସଂଶୟ ଆସେ ନାହିଁ । ଅଥଚ ଭଗବାନ ଓ ମହାପ୍ରଭୁଙ୍କର କାୟିକ ଅସ୍ତିତ୍ୱ ବିରୁଦ୍ଧରେ ପୃଥିବୀରେ ବହୁ ସୁଯୁକ୍ତିପୂର୍ଣ୍ଣ ପ୍ରମାଣ ରହିଛି । ଓଡ଼ିଶାର ସାମାଜିକ ସ୍ଥିତି, ରାଜନୀତିକ ଅବସ୍ଥା ଓ ଧାର୍ମିକ ପରଂପରା ଇତ୍ୟାଦି ବିଷୟରେ କାଳିନ୍ଦୀବାବୁଙ୍କ ଏହି ପ୍ରବନ୍ଧଟି ଅତ୍ୟଧିକ ତାତ୍ପର୍ଯ୍ୟପୂର୍ଣ୍ଣ ।

'ଦୁଃଖ କହିବି କି ସୁଖ କହିବି' ତାଙ୍କର ଏକ ସଫଳ ରାଜନୀତିକ ପ୍ରବନ୍ଧ । ଏଥିରେ ଦେଶ ବିଦେଶର ରାଜନୀତିକ ସ୍ଥିତି ଓ ଭବିଷ୍ୟତ ସମ୍ପର୍କରେ ସେ ଆଲୋଚନା କରିଛନ୍ତି । ଫ୍ରାନ୍ସର କୌଳିନ୍ୟ, ମହାଯୁଦ୍ଧ ପରବର୍ତ୍ତୀ ଅବସ୍ଥା, ଏକତନ୍ତ୍ର ଓ ସାମ୍ୟବାଦ, ସାମ୍ୟବାଦର ତ୍ରୁଟି, ଏକତନ୍ତ୍ରବାଦର ବିଜୟ ଓ ଭାରତରେ ଫ୍ୟାସିଜିମ୍ ଇତ୍ୟାଦି ପ୍ରସଙ୍ଗ ଏଥିରେ ଆଲୋଚିତ ହୋଇଥିବାରୁ ଏହା ପ୍ରାବନ୍ଧିକଙ୍କ ଆନ୍ତର୍ଜାତିକ ରାଜନୀତିର ପ୍ରାଞ୍ଜଳ ଅବବୋଧ ସଂପର୍କରେ ପରିଚୟ ପ୍ରଦାନକରିଥାଏ ।

'ମେଧାଶକ୍ତି ମାପିବାପାଇଁ' ଏକ ରାଜନୀତିକ-ବ୍ୟଙ୍ଗ (Political-satire) । ରାଜନୀତିକ କଏଦୀ Political prisoner ମାନେ କିପରି କ୍ଷମତା ପାଇଁ କାରାବାସକୁ ଏକ ଭବ୍ୟ ଆଶ୍ରୟ ଭାବରେ ଗ୍ରହଣ କରିନିଅନ୍ତି ତାକୁ ଲେଖକ ଏ ପ୍ରବନ୍ଧରେ ଆକ୍ଷେପ କରିଛନ୍ତି ।

## (୫) ଅନ୍ୟାନ୍ୟ ପ୍ରବନ୍ଧ (Miscellaneous Essays)

ଏତଦ୍‌ବ୍ୟତୀତ 'ଦକ୍ଷିଣାୟନ' ପ୍ରବନ୍ଧରେ କାଳିନ୍ଦୀଚରଣ ତାଙ୍କ ଦକ୍ଷିଣ ଭାରତ ଭ୍ରମଣର ଯେଉଁ ପୁଙ୍ଖାନୁପୁଙ୍ଖ ପର୍ଯ୍ୟବେକ୍ଷଣ ଉପସ୍ଥାପନ କରିଛନ୍ତି ତାହା ତାଙ୍କ ପର୍ଯ୍ୟଟନ ସାହିତ୍ୟର ସ୍ୱାକ୍ଷର ବହନ କରେ । 'ବୌଦ୍ଧଯୁଗର ଚିତ୍ରକଳା' ପ୍ରବନ୍ଧରେ ସେ ବୌଦ୍ଧଧର୍ମ ପ୍ରଚାରିତ ଓ ପ୍ରଭାବିତ ରାଷ୍ଟ୍ରମାନଙ୍କ ମଧ୍ୟରେ ଥିବା ସଂସ୍କୃତିଗତ ସଂପର୍କ ନିର୍ଣ୍ଣନ କରିଛନ୍ତି । 'ସିଂହଭୂମିରେ ଶୃଗାଳ' ତାଙ୍କର ଏକ ଜାତୀୟତାବୋଧ ମୂଳକ ପ୍ରବନ୍ଧ । ବିହାର ଓ ବେଙ୍ଗଲ ଦୁଇ ପଡ଼ୋଶୀ ରାଜ୍ୟଙ୍କ ଦୌରାତ୍ମ୍ୟ ଓ ଅବିଚାରରେ ଓଡ଼ିଶାର କଳେବର ଯେଉଁ ଭଳି ଭାବରେ ଖଣ୍ଡିତ ଓ ବିକୃତ ହୋଇଛି ସେଥିରେ ଲେଖକ ଅତିଶୟ ବ୍ୟଥିତ ହୋଇଛନ୍ତି । ସେ କହିଛନ୍ତି – ''ମୁଁ ଯଦି ବ୍ୟଙ୍ଗ ଶିଳ୍ପୀ ହୋଇଥାନ୍ତି ତା' ହେଲେ ଆଗ ଓଡ଼ିଶାକୁ ମୁଣ୍ଡହୀନ କରି ତାହାର ବେକ ଉପରେ ଏକ ଗାନ୍ଧି ଟୋପି ଏବଂ ତାହାର କଙ୍କାଳ ଉପରେ ଏକ ଜବାହରଲାଲି ଫତୁଆ ପିନ୍ଧାଇ ଦିଅନ୍ତି । ତାହାର ଉତ୍ତରପଟେ ଯେଉଁଠି ସିଂହଭୂମି, ସେଠାରେ ଗୋଟେ ମଶାଣିର ଚିତ୍ର ଆଙ୍କି ଦିଟା ମଣି ଦେହରେ ବିଲୁଆ ଶାଗୁଣାଙ୍କ ମୁହଁ ଯୋଡ଼ିଦିଅନ୍ତି ଏବଂ ମେଦିନୀପୁର କଣ୍ଟାଇ ସବ୍‌ଡ଼ିଭିଜନ ଉପରେ ଖାଲି ଦରପୋଡ଼ା କାଠ ଓ ଯୂଇ ଗାତ ଛଡ଼ା ଆଉ କିଛି ରଖନ୍ତି ନାହିଁ । କାରଣ ଓଡ଼ିଶା ପ୍ରଦେଶର ବର୍ତ୍ତମାନ ଚିତ୍ର ମନେପକାଇଲେ, ତାର ଚୌହଦି ମନେପଡ଼େ ଏବଂ ଏହି ଚୌହଦିରେ ଓଡ଼ିଆ ଜାତୀୟତାର ଯେଉଁ ମଶାଣି ପଡ଼ିଛି, ତାହା ବାହାରି ଆଖିକୁ ସହଜରେ ଏଡ଼ିଯିବ ନାହିଁ ।'' (ତତ୍ରୈବ ପୃ.- ୧୨୬)

'ମୋହର ଜ୍ୟୋତିଷ ଚର୍ଚ୍ଚା' ଶିରୋନାମାରେ ସେ ଏକ ପ୍ରବନ୍ଧ ଲେଖିଥିବାର ପ୍ରମାଣ ତାଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥରୁ ମିଳିଥାଏ ।'' ସେତେବେଳେ ଉତ୍କଳ ସାହିତ୍ୟ ପତ୍ରିକାରେ ଧାରାବାହିକ ଭାବରେ 'ମୋହର ଜ୍ୟୋତିଷ ଚର୍ଚ୍ଚା' ନାମକ ପ୍ରବନ୍ଧ ଲେଖକ ଶ୍ୟାମଚରଣ ବନ୍ଦୋପାଧ୍ୟାୟଙ୍କ ସହିତ ।'' (ଅଙ୍ଗେ ଯାହା ନିଭାଇଛି' ପୃ. - ୩୮୫)

ଆଉ ଏକ ପ୍ରବନ୍ଧ ତାଙ୍କର 'ଏକ ବାଲ୍ୟ ବିଧବାର କାହାଣୀ' । 'କର୍ମବୀର ଗୌରୀ ଶଙ୍କର ରାୟ ସ୍ମୃତି - ସଂସଦ' ତରଫରୁ ତା ୩୦-୧-୧୯୮୦ ରିଖରେ ତାଙ୍କୁ ଦିଆଯାଇଥିବା ମାନପତ୍ରରୁ ଏ ସମ୍ବନ୍ଧରେ ସୂଚନା ମିଳେ । ''ତତ୍କାଳୀନ ସାମାଜିକ କୁସଂସ୍କାର ଏବଂ ଜାତି ଭେଦ ପ୍ରଥା ଆପଣଙ୍କ କିଶୋର ପ୍ରାଣରେ ବିଦ୍ରୋହାଗ୍ନି ଜାଳିଥିଲା । ଆଉ ତାହା ରୂପ ନେଲା ଆପଣଙ୍କ ରଚିତ ପ୍ରଥମ ପ୍ରବନ୍ଧ 'ଏକ ବାଲ୍ୟ ବିଧବାର କାହାଣୀ'ରେ - ଯେଉଁଟି ସ୍ୱର୍ଗତ ବିଶ୍ୱନାଥ କରଙ୍କ ଦ୍ୱାରା ସମ୍ପାଦିତ 'ଉତ୍କଳ ସାହିତ୍ୟ'ରେ ପ୍ରକାଶ ଲାଭ କରିଥିଲା ।'' (ସବୁଜ ସାହିତ୍ୟ ପରିକ୍ରମା - ଦ୍ୱିତୀୟ ଭାଗ ଶ୍ରୀ ଶରଦ ଚନ୍ଦ୍ର ମୁଖାର୍ଜୀ - ପୃ -୧୭୬) ଏହି ପ୍ରବନ୍ଧଟି ତାଙ୍କର ସର୍ବପ୍ରଥମ ପ୍ରବନ୍ଧ ରଚନା ବୋଲି ଏଥିରେ ଦାବୀ କରାଯାଇଛି ।

'ରାଷ୍ଟ୍ର ଓ ସାହିତ୍ୟ' ବିଷୟକ ଅନ୍ୟ ଏକ ଉଚ୍ଚକୋଟୀର ପ୍ରବନ୍ଧ ସେ ରଚନା କରିଥିଲେ । ଏହାର ଉଲ୍ଲେଖ ତାଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି'ରୁ ମିଳିଥାଏ । ଲେଖକ କାଳିନ୍ଦୀଚରଣ କଟକ ରେଡ଼ିଓ ଷ୍ଟେସନ୍‌ରେ କାର୍ଯ୍ୟକରୁଥିବା ସମୟରେ କେନ୍ଦ୍ର ଶିକ୍ଷା ସାଂସ୍କୃତିକ ମନ୍ତ୍ରୀ 'ହୁମାୟୁନ କବୀର'ଙ୍କ ଠାରୁ ପତ୍ର ପାଆନ୍ତି କଲିକତାର 'ମହାଜାତି-ସଦନ'ରେ ଅନୁଷ୍ଠିତ ହେବାକୁ ଥିବା ଅଖିଳଭାରତ ଲେଖକ ସମ୍ମିଳନୀରେ 'State and literature' ବିଷୟକ ଆଲୋଚନାରେ ଭାଗନେବା ପାଇଁ । ''ରାଷ୍ଟ୍ର ଓ ସାହିତ୍ୟ' ବିଷୟରେ ସେଦିନ ମୋର ଇଂରାଜୀ ପ୍ରବନ୍ଧ ପାଠକରେଁ । କେନ୍ଦ୍ର ଶିକ୍ଷାମନ୍ତ୍ରୀ ଓ କଲିକତା ସର୍ବଭାରତୀୟ ଲେଖକ ସମ୍ମିଳନୀର ଅଭ୍ୟର୍ଥନା ସଭାପତି ସ୍ୱର୍ଗତ୍ ହୁମାୟୁନ୍ କବୀର ଉଚ୍ଚ ପ୍ରଶଂସା ଜଣାନ୍ତି ମୋ ପ୍ରବନ୍ଧର । ତହୁଁ ଆରମ୍ଭ ହୁଏ ଆଲୋଚନା । ଆଲୋଚନାର ମଧ୍ୟ ସ୍ଥଳରେ ପହଞ୍ଚନ୍ତି ଆସି ଜବାହରଲାଲ ।'' (ଅଙ୍ଗେ ଯାହା ନିଭାଇଛି - ପୃ. - ୫୪୨) । ଆବହମାନ କାଳରୁ ରାଷ୍ଟ୍ର ସହିତ ସାହିତ୍ୟ କିଭଳି ଅଙ୍ଗାଙ୍ଗୀ ରୂପେ ଜଡ଼ିତ ହୋଇ ରହି ଆସିଛି; ପୁଣି ରାଷ୍ଟ୍ର ଶାସନର ସୁପରିଚାଳନା ଦିଗରେ ସାହିତ୍ୟର ନିର୍ଦ୍ଦେଶ ପରୋକ୍ଷ ଭାବରେ କିଭଳି ପ୍ରଭାବିତ କରିଆସିଛି, ସେ ବିଷୟରେ ଦେଶ ବିଦେଶର ପ୍ରାଚୀନ ଯୁଗରୁ ଆରମ୍ଭ କରି ଆଧୁନିକ ଯୁଗ ପର୍ଯ୍ୟନ୍ତ, ବିଭିନ୍ନ ଉଦାହରଣ ଦେଇ ସେ ଉକ୍ତ ପ୍ରବନ୍ଧରେ ବ୍ୟାଖ୍ୟା କରିଥିବାର ପ୍ରମାଣ 'ଅଙ୍ଗେ ଯାହା ନିଭାଇଛି' ଗ୍ରନ୍ଥରୁ ମିଳିଥାଏ । କିନ୍ତୁ 'କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର' ଗ୍ରନ୍ଥରେ ଉପର୍ଯ୍ୟୁକ୍ତ ପ୍ରବନ୍ଧତ୍ରୟ ସନ୍ନିବିଷ୍ଟ ହୋଇ ନଥିବାରୁ ଏବଂ ମୋ ପକ୍ଷରେ ସେ ଗୁଡ଼ିକ ଦୁଷ୍ପ୍ରାପ୍ୟ ହୋଇଥିବାରୁ ସେ ସମ୍ପର୍କରେ ବିଶେଷ ଆଲୋଚନା କରାଯାଇ ପାରିନାହିଁ ।

**ଉପସଂହାର :**

ସାହିତ୍ୟ ରଚ଼ନାର ଆବଶ୍ୟକତା ଓ ଅନିବାର୍ଯ୍ୟତା ଦୃଷ୍ଟିରୁ କାଳିନ୍ଦୀ ଚ଼ରଣ ଥିଲେ ଫକୀରମୋହନ ଓ ରାଧାନାଥଙ୍କର ଯୋଗ୍ୟ ଉତ୍ତରାଧିକାରୀ । ମାଟି ପିତୁଳାର କାରିଗର କାଳିନ୍ଦୀ ଦୁନିଆଁର ହାଟ ବଜାରରେ ତାଙ୍କ ମାଟି ମଣିଷର ମୂଲ ମାଗିବାକୁ ଯାଇ ତାର ସମସ୍ତ ଦାବୀ, ଦାୟିତ୍ୱ ହସ, କାନ୍ଦ, ସୁଖ ଦୁଃଖ, ଅଭାବ ଓ ଅନଟନକୁ ମର୍ମେ ମର୍ମେ ଅନୁଭବ କରିଛନ୍ତି । ସେ ଥିଲେ ସବୁଜ ଗୋଷ୍ଠୀର ମୁଖ୍ୟ ପୁରୋଧା; ନାନାଦି ସାମାଜିକ, ରାଜନୀତିକ ଓ ସାହିତ୍ୟିକ ଆନ୍ଦୋଳନର ଯଥାର୍ଥ ରୂପକାର । ତେଣୁ ତାଙ୍କ ସୃଷ୍ଟିଶୀଳତାର ପରିଧି ଗଳ୍ପ, ଉପନ୍ୟାସ ଓ କବିତା ଇତ୍ୟାଦିରେ ସୀମିତ ନରହି ତାହା ପ୍ରବନ୍ଧ ବିଭାଗ ପର୍ଯ୍ୟନ୍ତ ମଧ ପରିବ୍ୟାପ୍ତ ହୋଇପାରିଛି । ତାଙ୍କ ସାହିତ୍ୟର ସାମାଜିକ ଅଙ୍ଗୀକାରବଦ୍ଧତା ଓ ସାର୍ବଜନୀନତା ଅବିସମ୍ବାଦିତ । ଏ ପ୍ରସଙ୍ଗରେ ରାମକୃଷ୍ଣ ପତିଙ୍କ ମନ୍ତବ୍ୟ ଖୁବ୍ ଉପାଦେୟ ମନେହୁଏ – "Though he followed the legacy of the noble tradition that Radhanath and Fakirmohan had left and this being the link between the old and the new, he was quick to understand the volatile changes that were daily taking place in society. He did not grope in the dark in helplessness to find out what was happening to society, and to the world at large. He is neither a visionary nor a utopian evangelist. Realist as he is, the silent yearnings of the downtrodden human heart find expression in his writings." (quoted in 'ଅଙ୍କେ ଯାହା ନିଭାଇଛି' ପୃ- ୫୮୦)

ଓଡ଼ିଆ ସାହିତ୍ୟରେ ସବୁଜ ସାହିତ୍ୟର ଅବଦାନ ସମ୍ପର୍କରେ ଆଲୋଚ଼ନା କଲାବେଳେ ଏହାର ସଫଳତା ଓ ବିଫଳତା ଉଭୟକୁ ନିରପେକ୍ଷ ଭାବରେ ଆକଳନ କରାଯିବା ସମୀଚୀନ। କିନ୍ତୁ ଦେଖାଯାଇଛି, ଅନେକ ସମାଲୋଚ଼କ ଏହାର ସଫଳତା ଅପେକ୍ଷା ବିଫଳତାର ନାଗରା ବେଶି ପିଟିଛନ୍ତି । ସମାଲୋଚ଼ନା ଏକ ନିରପେକ୍ଷ ସାରସ୍ୱତ ଦୃଷ୍ଟିଭଙ୍ଗୀ । ଏହା ଆମୂଳାନ୍ତ ସ୍ତବଗାନ (Panegyre) ହେବା ଯେତିକି ଅବାଞ୍ଛିତ, ପୂରାପୂରି ନିରୁତା ନିନ୍ଦା (total vilification)ରେ ପରିଣତ ହେବା ମଧ ସେତିକି ଅସମୀଚ଼ୀନ । ମୋର ମନେହୁଏ ସବୁଜ ସାହିତ୍ୟ ଏକଦେଶଦର୍ଶୀ ଓ ପ୍ରତ୍ୟୟହୀନ ଥିଲା ବୋଲି ଯେଉଁମାନେ ଯୁକ୍ତି ବାଢ଼ନ୍ତି ତାଙ୍କ ପାଇଁ କାଳିନ୍ଦୀଚରଣଙ୍କ ସାହିତ୍ୟ ସମଗ୍ର ହିଁ ଖୁବ୍ ଏକ ମୂଲ୍ୟବାନ ଏବଂ ପ୍ରତିସ୍ପର୍ଦ୍ଧୀ ଉତ୍ତର । ଜୀବନକୁ କେବଳ 'ଗୋଲାପ ଫୁଲର ଶଯ୍ୟା' କୁହା ନଯାଉ; କିମ୍ବା 'ଯନ୍ତ୍ରଣାର ଜଉଘର' ବୋଲି ମଧ ଧରିନିଆ ନ ଯାଉ । ସୁଖର ପ୍ରତିଶ୍ରୁତି ଓ ଦୁଃଖର ପ୍ରତିବାର୍ତ୍ତା ଉଭୟର ପ୍ରୀତିକ୍ଷରରେ ଲେଖାହୁଏ ଜୀବନ-ସନନ୍ଦ । ସାହିତ୍ୟ ଜୀବନର ଅନୁକୃତି ହୋଇଥିବାରୁ ଏହା ସଫଳତା ଓ ବିଫଳତାର

ମୁଗ୍ଧ ସମବାୟ ହେବା କିଛି ବିଚିତ୍ର ନୁହେଁ । ପୁଣି ସାମଗ୍ରିକ ଦୃଷ୍ଟିକୋଣରୁ ଦେଖିଲେ ବୁଝିହେବ ଯେ ବିଫଳତାର କ୍ଷେତରେ ହିଁ ସଫଳତାର ବୀଜଟି ଅଙ୍କୁରିତ ହେଉଥାଏ । ଅତଏବ କାଳିନ୍ଦୀ ଚରଣଙ୍କ ପ୍ରବନ୍ଧଗୁଡ଼ିକ ଯଦି ସିଦ୍ଧିର ସ୍ୱାକ୍ଷରରେ ଦୀପ୍ତ ତେବେ ତାହା ଆମ ସାହିତ୍ୟ ପାଇଁ ଆଶୀର୍ବାଦ; ଆଉ ଯଦି ସେଗୁଡ଼ିକ ତାଙ୍କ ଗଳ୍ପ, ଉପନ୍ୟାସ ଓ କବିତା ଆଗରେ ପ୍ରଭାହୀନ ତେବେ ଚନ୍ଦ୍ରମାର ଔଜ୍ଜ୍ୱଲ୍ୟ ପାଇଁ ସେଗୁଡ଼ିକୁ ତାରକାଙ୍କ ଭୂମିକା ନିଭାଇବାକୁ ପଡ଼ିଛି ବୋଲି ଧରିନେଲେ ତାହାହିଁ ହେବ ସବୁଜ ସାହିତ୍ୟର ଋତ୍ୱିକ ପ୍ରବର କାଳିନ୍ଦୀଚରଣଙ୍କ ପ୍ରତି ଜଣେ ସଚେତନ ପାଠକର ବିନମ୍ର ଶ୍ରଦ୍ଧାଞ୍ଜଳି ।

ସହାୟକ ଗ୍ରନ୍ଥସୂଚୀ :


୧. History of Oriya Literature - Mayadhar Mansingh, Sahitya Akademi, New Delhi-1962

୨. ଓଡ଼ିଆ ସାହିତ୍ୟର ଇତିହାସ - ମାୟାଧର ମାନସିଂହ, ଗ୍ରନ୍ଥ ମନ୍ଦିର, କଟକ, ୧୯୭୬

୩. କାଳିନ୍ଦୀ ରଚନାଚୟ (ଗ୍ରନ୍ଥାବଳୀ) ଦ୍ୱିତୀୟ ଖଣ୍ଡ - ନିଉ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ ୧୯୭୪

୪. କାଳିନ୍ଦୀ ଚରଣ ପ୍ରବନ୍ଧ ସମଗ୍ର - କାଳିନ୍ଦୀ ଚରଣ ପ୍ରାଣିଗ୍ରାହୀ, କଟକ ଷ୍ଟୁଡେଣ୍ଟସ୍ ଷ୍ଟୋର, କଟକ, ୧୯୮୬

୫. ଅଙ୍ଗେ ଯାହା ନିଭାଇଛି - କାଳିନ୍ଦୀ ଚରଣ ପାଣିଗ୍ରାହୀ, କଟକ, ଷ୍ଟୁଡ଼େଣ୍ଟସ୍ ଷ୍ଟୋର, ୧୯୭୩

୬. ସାହିତ୍ୟ ସନ୍ଧାନ - ଦାଶରଥି ଦାସ - ଅଗ୍ରଦୂତ, କଟକ, ୧୯୭୫

୭. ସବୁଜ ସାହିତ୍ୟ ପରିକ୍ରମା (ଦ୍ୱିତୀୟ ଭାଗ) - ଶରତ ଚନ୍ଦ୍ର ମୁଖାର୍ଜୀ, କଟକ ୧୯୮୫

୮. A Background to the study of English Literature - B. Prasad, MacMillan 1978.

୯. The Making of Literature - R.A.Scott - James - Allied Publishers, 1978.

୧୦. A man without mask (Ed) N.K. Behura (ପ୍ରଫେସର ଖଗେଶ୍ୱର ମହାପାତ୍ର - ଅଭିନନ୍ଦନ ଗ୍ରନ୍ଥ)

୧୧. ସବୁଜ ଅକ୍ଷର - ଅନ୍ନଦାଶଙ୍କର ରାୟ - କଟକ ୧୯୨୬

୧୨. ବିଜୟା - ଜାନୁଆରୀ - ୧୯୯୫

୧୩. ଚିତ୍ର ଓ ଚରିତ୍ର - ଚିନ୍ତାମଣି ବେହେରା - ଆର୍ଯ୍ୟପ୍ରକାଶକ, କଟକ, ୧୯୯୭.




# ବିଷାଦ ବୃତ୍ତରେ କାଳିନ୍ଦୀଚରଣଙ୍କ ନାଟକ

**ଡକ୍ଟର ହେମନ୍ତକୁମାର ଦାସ**

ଓଡ଼ିଆ ସାହିତ୍ୟର ଚର୍ଚ୍ଚିତ କବି ଓ କଥାକାର କାଳିନ୍ଦୀଚରଣଙ୍କ ସାହିତ୍ୟିକ ପ୍ରତିଭାର କଳନା କରିବା ବଡ଼ ସହଜ କଥା ନୁହେଁ । ଜୀବନାନୁଭୂତିର ରୂପ ତାଙ୍କ ସୃଷ୍ଟିରେ ଏତେ ବିସ୍ତୃତ ଏବଂ ବିଚିତ୍ର ଯେ, ସ୍ରଷ୍ଟାଙ୍କ ଗଭୀର ଅନ୍ତର୍ଦୃଷ୍ଟି ନିକଟରେ ବାରମ୍ବାର ମଥାନତ କରିବାକୁ ମନହୁଏ । ସାହିତ୍ୟ ଚର୍ଚ୍ଚା ଯେ ତାଙ୍କ ପାଇଁ କେବଳମାତ୍ର ଏକ ସଉକ ନଥିଲା, ତାହା ସ୍ପଷ୍ଟ ହୋଇଯାଏ । ସୃଷ୍ଟିରେ ପ୍ରକାଶ ପାଏ କବିଙ୍କର ଜୀବନଦୃଷ୍ଟି । ଜୀବନ ଚାଲେ ଆଶା ଆଉ ନିରାଶାର ଛାଇ ଆଲୁଅ ତଳେ । କେତେବେଳେ ଜୀବନ ଦେବତାର କୃପଣ-କୃପା-କଟାକ୍ଷର ସ୍ପର୍ଶରେ ନିଜକୁ ଧନ୍ୟ ମନେକରି ତ ଆଉ କେତେବେଳେ ତା'ର କୁଟିଳ ଭ୍ରୂକୁଟୀର ତୀବ୍ର ଆଘାତରେ ଜର୍ଜରିତ ହୋଇ ମଥାନତ କରି । ଏଇ ଜୀବନ ସହିତ କାଳିନ୍ଦୀଚରଣଙ୍କର ପରିଚୟ । ସେଠି ଦୁଃଖ ଆଉ କଷ୍ଟର ଡହକ ନିଆଁରେ ମଣିଷର କୁଣ୍ଠିତ ଆତ୍ମାଟି ପ୍ରତିନିୟତ ପୋଡୁ ପୋଡୁ ନିଜର ସ୍ରଷ୍ଟାଙ୍କୁ ଅଭିଶାପ ଦେଉଥାଏ । ନିଜର ନିରୁପାୟତାକୁ ନିନ୍ଦୁଥାଏ । ସୁଖର କେନ୍ଦ୍ରବିନ୍ଦୁରେ ପୌଷ ସକାଳର ଉଷୁମ ଖରା ଭଳି ସ୍ପର୍ଶରେ କାହାରି ଜୀବନ କଟେ ନାହିଁ । କବିବର ରାଧାନାଥଙ୍କୁ ଏଇଥିପାଇଁ ସମାଲୋଚନା କରାଯାଏ ଯେ, ସେ କେବଳ ନୈରାଶ୍ୟ ଓ ବିଷାଦର କଥା କହି 'ନିଜର ଓ ସମଗ୍ର ସଂସାରର ଭାରତୁଲ୍ୟ' ହୋଇଥିଲେ । ଏଭଳି ମନ୍ତବ୍ୟର ଯଥାର୍ଥତା ବିଚାର କରିବାର ଲକ୍ଷ୍ୟ ଆମର ଆଦୌ ନାହିଁ । ଏ ସମ୍ପର୍କରେ କେବଳ ଏତିକି କହିଲେ ଯଥେଷ୍ଟ ହେବ, ଜୀବନ ସମ୍ପର୍କୀୟ ଅନୁଭବ ବ୍ୟକ୍ତ କରିବାର ଅଧିକାର ସମସ୍ତଙ୍କର ଅଛି । ରାଧାନାଥ ଯଦି ସୁଖକୁ ଏକ ଧୂମ ଏବଂ ଆକାଶକୁସୁମ ରୂପେ ଦେଖିଥାନ୍ତି, ତେବେ ସେ ତାଙ୍କର ଦୃଷ୍ଟିକୋଣ । ଆଉ ଯଦି କେହି 'ମରିତେ ଚାଇନା ଆମି ସୁନ୍ଦର ଭୁବନେ / ମାନୁଷେର ମାଝେ ଆମି ବାଁଚିବାରେ ଚାଇ' ବୋଲି କହି ସୃଷ୍ଟିର ପଙ୍କକୁ ଚନ୍ଦନ ରୂପେ ଦେହରେ ବୋଳି ହେବାକୁ ଚାହେଁ, ତେବେ ସେ ମଧ୍ୟ ତା'ର ବ୍ୟକ୍ତିଗତ କଥା ।

କାଳିନ୍ଦୀଚରଣଙ୍କ ଜୀବନ ସମ୍ପର୍କୀୟ ଅନୁଭବ ଯଥାରୀତି ତାଙ୍କ ସୃଷ୍ଟିରୁ ଅନୁଭବ କରାଯାଇ ପାରୁଛି । 'ମାଟିର ମଣିଷ'ର ସୃଷ୍ଟିର ତର୍ଜମା କରିବାକୁ ଯାଇ ଠାଏ ସେ କହିଛନ୍ତି,

''ମାଟିର ମଣିଷ ମୋ ଜୀବନର ଅନୁଭୂତି । ସମାଜକୁ ବାରମ୍ବାର ଦେଖିସାରିଲା ପରେ, ପରଖି ସାରିଲା ପରେ ଯେଉଁ ଦୁଃଖ ମୁଁ ପାଇଲି ସେ ସବୁ ମୋ ବିକ୍ଷିପ୍ତ ଆତ୍ମାର ପରିପ୍ରକାଶ'' (ସମାବେଶ - ୧୯୮୫ ପୂଜାସଂଖ୍ୟା) । ଦୁଃଖର ହଳାହଳକୁ କିନ୍ତୁ ସ୍ରଷ୍ଟା ଏଠାରେ ମାନବିକତାର ଅମୃତରେ ପରିଣତ କରିଛନ୍ତି, ଆପେ ତାହାର କଟୁ ଅଂଶତକ ଢୋକିନେଇ । ତେବେ ଜୀବନ ସମ୍ପର୍କରେ ଏକ ବିଷାଦ-ବାଦୀ ଦୃଷ୍ଟିକୋଣ ଉପନ୍ୟାସଟିରେ ଆମୂଳ ପ୍ରକାଶ ପାଇଛି । ହୋଇପାରେ ତାହା ରୋମାଣ୍ଟିକ୍ । ତେବେ କ'ଣ କାଳିନ୍ଦୀଚରଣ ବିଷାଦବାଦୀ ଥିଲେ ? ବିପ୍ଳବ-ଚେତନା (ତାକୁ ମାର୍କସ୍‌ବାଦର ପ୍ରଭାବ ବୋଲି କୁହାଯାଇ ପାରିବ କି ?) ଯେତିକି ଯାହା ତାଙ୍କ ସୃଷ୍ଟିରେ ପ୍ରକାଶ ପାଇଛି, ତାହାକୁ ଏହାରି ଏକ ପ୍ରସାରିତ ରୂପ କୁହାଯାଇ ପାରିବ କି ? ଏଇ ପ୍ରଶ୍ନ ଆମର ମାନନୀୟ ପାଠକମାନଙ୍କୁ ନିବେଦନ କରି ଆମେ ତାଙ୍କର ନାଟ୍ୟ ସୃଷ୍ଟି ନିକଟକୁ ଚାଲିଯିବା ।

କାଳିନ୍ଦୀଚରଣ ନାଟ୍ୟକାର ନଥିଲେ । ନାଟ୍ୟକାର ପରିଚିତି ତାଙ୍କ ପାଇଁ ଗୌରବାବହ ମଧ ନୁହେଁ । ତାଙ୍କର ସମସାମୟିକ କବିମାନଙ୍କ ମଧ୍ୟରୁ ସତୀର୍ଥ ବୈକୁଣ୍ଠନାଥ ପଟ୍ଟନାୟକ ଏବଂ ସମଧର୍ମା ମାୟାଧର ମାନସିଂ ମଧ ନାଟକ ଲେଖିଛନ୍ତି । ନାଟକର ରଚନା ସହିତ କବିତ୍ୱର ସମ୍ପର୍କ ରହୁଥିଲେ ମଧ ସବୁ କବି ନାଟ୍ୟକାର ରୂପେ ସଫଳ ହୋଇପାରନ୍ତି ନାହିଁ । କାଳିଦାସ ଓ ସେକ୍‌ସ୍‌ପିୟରଙ୍କ ଭଳି କେତେକ ବିରଳ ପ୍ରତିଭା ହିଁ ଉଭୟ କ୍ଷେତ୍ରରେ ନିଜର ଦକ୍ଷତା ପ୍ରମାଣ କରିପାରନ୍ତି । କାଳିନ୍ଦୀଚରଣଙ୍କର ସାଫଲ୍ୟ ଓ କୃତିତ୍ୱର ସୂଚୀ ଏତେ ଦୀର୍ଘ ଯେ ନାଟ୍ୟକାର ଆଖ୍ୟାଟି ତହିଁରେ ଯୁକ୍ତ ନ ହେଲେ, ତାଙ୍କ ପ୍ରତିଭାର ତୁଙ୍ଗ ଶିଖର ଦୋହଲିଯିବ । ସ୍ୱୟଂ କବି ଏହା ଜାଣିଥିଲେ ଏବଂ ଏହି ଲେଖକ ନିକଟରେ ତାହା ସ୍ୱୀକାର କରିଛନ୍ତି ମଧ । ତାଙ୍କର ଅନୁବାଦ ନାଟକଟିକୁ ଛାଡ଼ିଦେଲେ, ଅନ୍ୟ ତିନୋଟିଯାକ ହେଉଛି ନାଟ୍ୟ-କାବ୍ୟ-ପାଠ୍ୟ-ନାଟକ ମାତ୍ର । ଯଦିଓ ତାଙ୍କ ସୃଷ୍ଟିରୁ 'ପଦ୍ମିନୀ'ଟି ଲେଡ଼ି ଫ୍ରେଜର୍ ବାଳିକା ବିଦ୍ୟାଳୟର ଛାତ୍ରୀମାନଙ୍କ ଦ୍ୱାରା ମଞ୍ଚସ୍ଥ ହୋଇଥିବାର ସୂଚନା ମିଳୁଛି । ତଥାପି ଏହାର ମଞ୍ଚସଫଳତା ପ୍ରମାଣିତ ହେଉନାହିଁ । ଯାହାହେଉ, ପ୍ରସ୍ତୁତ ପ୍ରବନ୍ଧରେ କାଳିନ୍ଦୀଚରଣଙ୍କର ନାଟ୍ୟ-ପ୍ରତିଭାର ମୂଲ୍ୟାୟନ କରାଯିବ ନାହିଁ । ତାହାର କାରଣ ପୂର୍ବରୁ ସୂଚିତ ହୋଇସାରିଛି ।

କାଳିନ୍ଦୀଚରଣ ସର୍ବମୋଟ ୩ ଖଣ୍ଡି ନାଟ୍ୟକାବ୍ୟ ଲେଖିଛନ୍ତି ଓ ଗୋଟିଏ ରୁଷୀୟ ନାଟକର ଅନୁବାଦ କରିଛନ୍ତି । ସୌମ୍ୟା (୧୯୩୨), ପଦ୍ମିନୀ (୧୯୩୪) ଏବଂ ପ୍ରିୟଦର୍ଶୀ (୧୯୩୩) ତଥା ସୁଦୂର ସଂକେତ (୧୯୬୫) ନାଟ୍ୟକାର କାଳିନ୍ଦୀଚରଣଙ୍କର ଏତିକି ହେଉଛି ଓଡ଼ିଆ ନାଟ୍ୟ ସାହିତ୍ୟକୁ ଅବଦାନ । ସେତେବେଳେ ନାଟ୍ୟ-କାବ୍ୟ ରଚନାର ଯେଉଁ ପରମ୍ପରା ଆରମ୍ଭ ହେଉଥିଲା, ତାହାକୁ କାଳିନ୍ଦୀଚରଣ ପୁଷ୍ଟ କରିଛନ୍ତି ମାତ୍ର । ଏଇ

ଚାରିଖଣ୍ଡଯାକ ନାଟ୍ୟ-କାବ୍ୟ ମଧ୍ୟରେ ଆଶ୍ଚର୍ଯ୍ୟଜନକ ଏକ ସାମଞ୍ଜସ୍ୟ ରହିଛି । ପ୍ରତ୍ୟେକଟିର ଭାବ-ବସ୍ତୁ (Theme) ଏକପ୍ରକାରର କରୁଣ ଭାବ ଚେତନାରେ ଆଚ୍ଛନ୍ନ । କାରୁଣ୍ୟ ଯେ ଜୀବନ ପାଇଁ ଏକାନ୍ତ ସତ୍ୟ – ସ୍ରଷ୍ଟାଙ୍କର ଅନୁଭବରୁ ବାହାରି ତାହା ଜାଗତିକ ଘଟଣା ଓ ଚରିତ୍ର ମାଧ୍ୟମରେ ଆତ୍ମପ୍ରକାଶ କରିଛି । ସୌମ୍ୟାର ବିଷୟବସ୍ତୁ ସଂଗୃହୀତ ହୋଇଛି ଓଡ଼ିଶାର ଏକ ଅତ୍ୟନ୍ତ ଲୋକପ୍ରିୟ ଲୋକଗାଥାରୁ । ପରେ ଜ୍ଞାନୀନ୍ଦ୍ର ବର୍ମା ଏଇ କାହାଣୀର ଅବଲମ୍ବନରେ ନୃତ୍ୟନାଟ୍ୟ ତଥା ଗୋପାଳ ଛୋଟରାୟ ଗୀତିନାଟ୍ୟମାନ ଲେଖିଛନ୍ତି । ଆଜିକାଲି ଆଉ କାହାଣୀ ଶୁଣିବାର ଯୁଗ ନାହିଁ । ନଚେତ୍ ସେ ଯୁଗର ଅଯୁତ ଶିଶୁ 'ବାଡ଼ିରେ ପୋଖରୀ ଖୋଳିଛି, ବୋଲେ ହୁଁଟି, ନଈକି ଗାଧୋଇ ନଯିବୁ, ବୋଲେ ହୁଁ ଟି'ର କାରୁଣ୍ୟ ମଧ୍ୟରେ କେତେ ସଂଧ୍ୟା ଯେ ଲୋତକାପ୍ଳୁତ କରିପକାଉଥିଲେ, ତାହାର ହିସାବ ନାହିଁ । ସୁନ୍ଦରୀ ନାରୀର ଅସହାୟତା, ସାମନ୍ତ ତନ୍ତ୍ରର ସ୍ୱେଚ୍ଛାଚାରିତା ସହିତ ବିଶ୍ୱାସଘାତକତା ଏବଂ ନାରୀର ପାତିବ୍ରତ୍ୟ ସମ୍ପର୍କରେ ଏହି ଶୋକଗାଥାଟିରେ ଏତେ ଉପାଦାନ ରହିଛି ଯେ, ଏହା ଅନାୟାସରେ ମଣିଷର ମନରେ ସ୍ଥାୟୀ ଭାବରେ ବସିଯାଏ । ସୁନ୍ଦରୀ ପତ୍ନୀକୁ ଛାଡ଼ି ଯୁବକର ବିଦେଶ ଯାତ୍ରା, ତାହାର ଅନୁପସ୍ଥିତିରେ ରୂପ-କାଙ୍ଗାଳ ଏକ ଉଚ୍ଛୃଙ୍ଖଳ ଯୁବକଦ୍ୱାରା ନାରୀହରଣ, ବିଦେଶରୁ ଫେରି ଆସିବା ପରେ ଏହା ଜାଣି ହତହୃଦୟ ହୋଇ ଯୁବକର ମୃତ୍ୟୁ - ଆମୂଳ କୋଡୋଟି ଟ୍ରାଜିକ୍ ଘଟଣାକୁ ଗୁନ୍ଥି ଏହି ମାଳଟି ପ୍ରସ୍ତୁତ ହୋଇଛି । କୁହାଯାଇପାରେ ଯେ, ଲୋକ କାହାଣୀର ମାନବିକ-ଆବେଦନ ହିଁ କାଳିନ୍ଦୀଚରଣଙ୍କୁ ତାହାର ନାଟ୍ୟରୂପ ଦେବା ନିମନ୍ତେ ପ୍ରେରିତ କରିଥିଲା ।

ଦ୍ୱିତୀୟ ସୃଷ୍ଟି 'ପଦ୍ମିନୀ'ର ଅନ୍ତଃସ୍ୱରରେ ସେଇ ବିଷାଦ-ଚେତନା । ଚିତୋର ରାଣୀ ପଦ୍ମିନୀ ଯବନ-ନରାଧମ ଆଲ୍ଲାଉଦ୍ଦିନର ରୂପତୃଷ୍ଣାକୁ ଯେଉଁ ଚମକପ୍ରଦ ଉପାୟରେ ନିବାରିତ କରିଥିଲେ, ତାହା ଇତିହାସରୁ ସଂଗୃହୀତ ହୋଇ ଏଥିରେ ସ୍ଥାନ ପାଇଛି । ମୂଳରୁ ଶେଷ ପର୍ଯ୍ୟନ୍ତ ଏହି ନାଟିକାଟି କାରୁଣ୍ୟରେ ପୂର୍ଣ୍ଣ ହୋଇଛି । ପଦ୍ମିନୀଙ୍କର ରୂପ-ସାଗରରେ ନିମଜ୍ଜିତ ହେବା ନିମନ୍ତେ ଆଲ୍ଲାଉଦ୍ଦିନ୍‌ର ଆଗମନରୁ ଯେଉଁ ଟ୍ରାଜିକ୍ ଭାବର ସୂଚନା ମିଳିଥିଲା, ତାହା ସମ୍ପୂର୍ଣ୍ଣ ହୋଇଥିଲା ଚିତୋରଗଡ଼ର ଧ୍ୱଂସ ସାଧନରେ । ତା' ସହିତ ଏଥିରେ ବୀରତ୍ୱ, ବନ୍ଧୁବତ୍ସଳତା, ବିଶ୍ୱାସଘାତକତା, ଚକ୍ରାନ୍ତ, ପ୍ରଭୃତିର ଅତି-ରୂପଟିକୁ ଦେଖିବାକୁ ମିଳେ, ପରିଣତିରେ ଯାହା ଦୁଃଖର ହିଁ ସୂଚକ । ରୋମାଣ୍ଟିକ୍ କବି ସେଲୀଙ୍କ ମତରେ 'ଦୁଃଖର ଗୀତି ହିଁ ହେଉଛି ମଧୁରତମ ଗୀତି' – ଯେଉଁଠି ଆମର କାରୁଣ୍ୟ-ଜର୍ଜରିତ ମର୍ମବାଣୀ ବିଶ୍ଲେଷିତ ହୁଏ, ତାହା ହିଁ ହୋଇଯାଏ ଆମ ପାଇଁ ସ୍ମରଣୀୟ, ବରଣୀୟ ଏବଂ ଆଦରଣୀୟ । ରୋମାଣ୍ଟିକ୍ କବି ଚେତନା ସହିତ, ଏହି ବିଷାଦ ଚେତନାଟି ବେଶ୍ ଭଲଭାବରେ ମିଶିଯାଇ ପାରୁଥିବାରୁ ହିଁ କାଳିନ୍ଦୀଚରଣ ଏ ବିଷୟଟିକୁ ବାଛିଥିବାର ବିଶ୍ୱାସ କରାଯାଇପାରେ ।

ସେହିଭଳି ନାଟକ ପ୍ରିୟଦର୍ଶୀ । ଚଣ୍ଡାଶୋକ ଧର୍ମାଶୋକରେ ପରିଣତ ହେବା ଭିତରେ ଯେଉଁ ଅଶ୍ରୁ, ବେଦନାର ଅକୁହା କାହାଣୀ ରହିଯାଇଛି, କାଳିନ୍ଦୀଚରଣ ତାକୁହିଁ ଅନ୍ୱେଷଣ କରିଛନ୍ତି ସୂଚିତ ନାଟକରେ । ଅଶୋକ ଏକ ବ୍ୟର୍ଥ ଜୀବନର ନାୟକ କହିଲେ ଅତ୍ୟୁକ୍ତି ହେବ ନାହିଁ । ସିଂହାସନ ଲାଭ ନିମନ୍ତେ ଘୋର ଚକ୍ରାନ୍ତ, ରାଜ୍ୟ ବିସ୍ତାର ନିମନ୍ତେ ଅମାପ ରକ୍ତ, ରାଜପଣ ବଜାୟ ରଖିବା ନିମନ୍ତେ ପ୍ରତିନିୟତ ଅସ୍ଥିରତା – ଏ ସବୁ ଥିଲା ତାଙ୍କ ରାଜତ୍ୱର ନିତ୍ୟ ସଙ୍ଗୀ । ପୁଣି ଆକାଶସ୍ପର୍ଶୀ ଉଚ୍ଚାକାଂକ୍ଷାଜନିତ ବ୍ୟକ୍ତି କୈନ୍ଦ୍ରିକତା, ବ୍ୟର୍ଥ ପାରିବାରିକ ଜୀବନ – ଏସବୁ ମଣିଷ ରୂପରେ ତାଙ୍କର ଅସଫଳତାର ପରିଚୟ ଦିଏ । ବିମାତାଙ୍କ ଚକ୍ରାନ୍ତରେ ଅଶୋକଙ୍କ ପ୍ରିୟପୁତ୍ର କୁନାଳ ନିଜର ଚକ୍ଷୁ ହରାଇ ବୌଦ୍ଧଧର୍ମ ଗ୍ରହଣ କରୁଛି । ପିତାଙ୍କର ଉଚ୍ଚାକାଂକ୍ଷା ଏବଂ ତା'ର ଭୟଙ୍କର ପରିଣତିର ଗୋଟିଏ ରୂପ ନିଜ ତରୁଣ ଜୀବନରେ ପ୍ରତ୍ୟକ୍ଷ କରିବା ପରେ ଜୀବନ ପ୍ରତି ତା'ର ବୀତସ୍ପୃହତା ଆସିଯାଇଛି । ସୀମାହୀନ କାମନାର ଲେଲିହାନ୍ ଶିଖା ନିକଟରୁ ଦୂରକୁ ପଳାଇଯାଇ ସମ୍ପୂର୍ଣ୍ଣ ନିଷ୍କାମ ମନୋଭାବ ମଧ୍ୟରେ ଶାନ୍ତିର ଅନ୍ୱେଷଣ ହୋଇଛି, ତାହାର ତାରୁଣ୍ୟର କଷଟି । ଅଶୋକଙ୍କ ସମ୍ପର୍କରେ ନାଟ୍ୟକାର ଯେଉଁ ସୂଚନା ଦେଇଛନ୍ତି ତାହା ହେଉଛି, "ବିଜୟ ଓ ବିଭୂତିର ଲାଳସାରେ ଏବେ ମଧ୍ୟ ତାଙ୍କର ଦୁଇଚକ୍ଷୁ କ୍ଷୁଧାର୍ତ୍ତ ଏବଂ ଯଶ ଆଶାରେ ହତ୍ୟା ଓ କ୍ରୂରତାକୁ ଯେପରି ଖେଳଣା କରି ସେ ଭାବନ୍ତି ଦୟା ଓ କୋମଳତାକୁ ମଧ୍ୟ ସେହିପରି ଅସମ୍ଭବ ମନେକରନ୍ତି ନାହିଁ । ଦୁଇବାହୁ ପରି ସମସ୍ତ ସୌର ଜଗତକୁ ଆବଦ୍ଧ ରଖିବାକୁ ଚାହେଁ ।

ବିଶ୍ୱର ରଙ୍ଗମଞ୍ଚରେ ଯେ କେତୋଟି ଚରିତ୍ର ବାହୁ କିମ୍ବା ମସ୍ତିଷ୍କର ପ୍ରାଧାନ୍ୟ ପ୍ରତିଷ୍ଠା ଦ୍ୱାରା ଦୀର୍ଘକାଳ ସ୍ଥାୟୀ ହେବାକୁ ଇଚ୍ଛା କରନ୍ତି, ସେହିମାନଙ୍କ ପରି ଅଶୋକ ମଧ୍ୟ ପୃଥିବୀ ପକ୍ଷରେ ଭୟାବହ ଏବଂ ସେହିମାନଙ୍କ ପରି ଦାରୁଣ ସ୍ୱାର୍ଥପର ଓ ସେ ସ୍ୱାର୍ଥ ଯେପରି ଉତ୍କଟ-ଶ୍ରାବଣର କଳାମେଘ ପରି ପ୍ରଳୟାଗ୍ନି-ଉଦ୍‌ଗିରଣ କରିପାରେ, ଜଳସେଚନଦ୍ୱାରା ସୃଷ୍ଟି ମଧ୍ୟ ଆଣିପାରେ – ସବୁ ଅବଶ୍ୟ ନିଜର ଖ୍ୟାତି ଓ କଲ୍ୟାଣ ଉଦ୍ଦେଶ୍ୟରେ ।" ନାଟ୍ୟକାର ଅଶୋକଙ୍କୁ ଯେଉଁ ଦୃଷ୍ଟିରେ ଦେଖିଥିଲେ, ତାହାର ଏକ ସ୍ପଷ୍ଟଚିତ୍ର ଏହି ଉଦ୍ଧୃତିରୁ ମିଳିଯିବ । ଇତିହାସର ଚଣ୍ଡାଶୋକ ଏହିଭଳି ଥିଲେ କିମ୍ବା ନାହିଁ, ତାହା ସ୍ୱତନ୍ତ୍ର କଥା । ମନେ ହେଉଛି ନାଟ୍ୟକାର ତାଙ୍କୁ କାମ୍ୟୁଙ୍କର କାଲିଗୁଲା କିମ୍ବା ସେକ୍ସପିୟରଙ୍କର ଜୁଲିଅସ୍ ସିଜର୍ କି ମ୍ୟାକ୍‌ବେଥଙ୍କ ଆଦର୍ଶରେ ଗଢ଼ିବାକୁ ଚାହିଁଛନ୍ତି ।

ପୁଷ୍ପ ବାଟିକାର ଅଶୋକ ବୃକ୍ଷରୁ ଦୁଇ ଚାରିଟା ଡାଳପତ୍ର ଛିଣ୍ଡାଇଥିବାର ଅପରାଧରେ ଅଶୋକ କେତେଜଣ ତରୁଣୀଙ୍କୁ ଜୀବନ୍ତ ଦଗ୍ଧ କରିବାର ଆଦେଶ ଦେଉଛନ୍ତି (ହାୟ ! ସମାନ ଅପରାଧ ନିମନ୍ତେ ମହାକ୍ରୋଧୀ ବିଶ୍ୱାମିତ୍ର କେବଳ ସେମାନଙ୍କୁ ବନ୍ଦୀ କରି ରଖୁଛନ୍ତି) କେବଳ ସେତିକି ନୁହେଁ, ବିଦ୍ରୋହୀ କୁଞ୍ଜରକର୍ଣ୍ଣର ପରାଜୟର ସମ୍ବାଦ ପାଇ ନଥିଲେ, ସେ ସେଇଦିନ

ପ୍ରିୟ ବୟସ୍ୟ ଗଣଭଟ୍ଟ ଓ ରାଜ୍ୟସଭାର ସମସ୍ତ ସଦସ୍ୟଙ୍କର ମୁଣ୍ଡକାଟ ନିମନ୍ତେ ଆଦେଶ ଦେବାର ସାଧୁ ଇଚ୍ଛା ମଧ୍ୟ ପ୍ରକାଶ କରୁଛନ୍ତି ।

ଏଥିରୁ ଗୋଟିଏ କଥା ଅତ୍ୟନ୍ତ ସ୍ପଷ୍ଟ ହୋଇଯାଉଛି । ଅଶୋକ ହେଉଛନ୍ତି ଏକ ବିଷାଦବାଦୀ ଚରିତ୍ର । ସେ ନିଜ ଖିଆଲର ପରିତୃପ୍ତି ନିମନ୍ତେ, ନିଜର ଅଧିକାର ପ୍ରତିଷ୍ଠା ପାଇଁ ନିର୍ବିକାର ଭାବରେ ନରହତ୍ୟା ମଧ୍ୟ କରିପାରନ୍ତି । ନିଜକୁ ସେ ମନେକରନ୍ତି ନିରଙ୍କୁଶ, ମହାମହିମ ଏବଂ ସାର୍ବଭୌମ । କଳିଙ୍ଗ ସହିତ ଯୁଦ୍ଧ କରିବା ନିମନ୍ତେ ପ୍ରସ୍ତୁତ ରହିବାକୁ ଆଦେଶ ଦିଅନ୍ତି ଶାନ୍ତି ଓ ସଦ୍‌ଭାବନାର ବାର୍ତ୍ତା ନେଇ ମଗଧ-ସମ୍ରାଟଙ୍କୁ ନିମନ୍ତ୍ରଣ ଜଣାଇବାକୁ ଆସିଥିବା ଧର୍ମପାଳ ସମ୍ମୁଖରେ । ସୌଜନ୍ୟର କି ଚମତ୍କାର ନମୁନା !

ଚଣ୍ଡାଶୋକଙ୍କର ଧର୍ମାଶୋକରେ ପରିବର୍ତ୍ତନର ଚିତ୍ର ନାଟ୍ୟକାର ଯେଉଁଭଳି ଭାବରେ ଦେଖାଇଛନ୍ତି, ସେଥିରୁ ଏକ କ୍ଳାନ୍ତ ଅବସନ୍ନତା ଅଶୋକଙ୍କର ସର୍ବସତ୍ତାକୁ ଗ୍ରାସ କରିଥିବାର ସ୍ପଷ୍ଟ ସୂଚନା ମିଳୁଛି । କଳିଙ୍ଗ ଯୁଦ୍ଧପରେ ମନ୍ତ୍ରୀ ରାଧାଗୁପ୍ତଙ୍କୁ ନିର୍ଦ୍ଦେଶ ଦେଇ ସେ କହିଛନ୍ତି, ''କଳିଙ୍ଗ ସମରର ଆହତମାନଙ୍କର ରକ୍ତ ଭାରତ ସମ୍ରାଟର ଛାତିରୁ ଅହରହ ଝରୁଛି ଓ ନିହତମାନଙ୍କ ଯନ୍ତ୍ରଣା ତାହାର ମରଣକୁ ବଳି ବ୍ୟାପିଯାଇଛି । ଯେଉଁ ନାରୀ ସନ୍ତାନ ହରାଇଛି, ତାହାର ହାନି ମଗଧ ରାଜାର ହାନିଠାରୁ ବେଶି ନୁହେଁ ଏବଂ ଯେଉଁମାନେ ବିଧବା ହୋଇଛନ୍ତି, ଅଶୋକର ବୈଧବ୍ୟ ସେମାନଙ୍କଠାରୁ ବହୁ ଗୁଣରେ ବିକଳ ।'' ଏଠି ମଧ୍ୟ ସେହି ଆତ୍ମବଡ଼ିମା ପ୍ରଚାରର କାମନା – ସକରୁଣ ସମବେଦନା ପ୍ରକାଶର ଆବରଣ ତଳୁ ଉଦ୍ଧତ ଅହଙ୍କାରର କ୍ରୁଦ୍ଧ ହୁଙ୍କାର । ଅଶୋକ ଯଥାର୍ଥରେ ଏକ ଟ୍ରାଜିକ୍ ଚରିତ୍ର ।

ପୁଣି ରାଜ ବୟସ୍ୟ ଗଣଭଟ୍ଟ । ବିଦୂଷକ ହେଲେ ମଧ୍ୟ ସେ ନୈୟାୟିକ । ଯଦିଓ ଅଶୋକ ଚରିତ୍ରର ତାମସିକ ପଟ୍ଟଭୂମିରେ ଏହାଙ୍କ ଚରିତ୍ରର ଉଜ୍ଜ୍ୱଳତା ଯଥାଯଥ ଭାବରେ ଫୁଟିଉଠିନାହିଁ, ତଥାପି ଆଚାର ଆଚରଣରେ ତାଙ୍କୁ ସ୍ୱତନ୍ତ୍ର ରୂପେ ଦେଖାଇବା ପାଇଁ ନାଟ୍ୟକାରଙ୍କର ଉଦ୍ୟମ ସ୍ପଷ୍ଟ ଦେଖାଯାଉଛି । ଗଣଭଟ୍ଟ ରାଜକନ୍ୟାଙ୍କ କିଶୋରୀ ସଖୀ ନୀହାରିକା ସହିତ କପଟ ପ୍ରେମଖେଳରେ ଯେମିତି ମାତି ପାରନ୍ତି, ରାଜମନ୍ତ୍ରୀ ରାଧାଗୁପ୍ତଙ୍କୁ ବକ୍ତବ୍ୟର ଚମତ୍କାର ଜାଲରେ ଆବଦ୍ଧକରି ତାଙ୍କୁ ଅସହାୟ କରି ଛାଡ଼ନ୍ତି । ଶେଷରେ ଯୁଦ୍ଧ କ୍ଷେତ୍ରରେ ତାଙ୍କର ମୃତ୍ୟୁ ହୁଏ (ଯୁଦ୍ଧ ପ୍ରତି ସଦାସଶଙ୍କ ପାରମ୍ପରିକ ବିଦୂଷକର ଏହା ଯଥାର୍ଥ ପରିଣତି ନୁହେଁ) ମୃତ୍ୟୁ ପୂର୍ବରୁ ସେ କହିଯାଆନ୍ତି, ''ଆଜିଯାଏ ଖାଲି କଥା ଗପିଲି ମହରାଜ । ଧନୁଶର ଧରି ନଜାଣିବାର ଯେଉଁ ଅପରାଧ କରିଚି ତାହାରି ପ୍ରତିଶୋଧ ଜଗତର ସବୁ ଗପୁଡ଼ିଙ୍କ ପାଇଁ ଏହି ପୁରସ୍କାର ହିଁ ଯୋଗ୍ୟ'' । ଏ ଚରିତ୍ରଟି ପ୍ରକୃତରେ ନାଟକ ପାଇଁ ଅପରିହାର୍ଯ୍ୟ କିମ୍ବା ନୁହେଁ, ତାହା ଭଲ ଭାବରେ ଚିନ୍ତା କରିବାକୁ ପଡ଼ିବ । ନାଟକସାରା ସେ

ଅଛନ୍ତି, ଅଥଚ ଶେଷ ବେଳକୁ ତାଙ୍କର ଅପଘାତରେ ମୃତ୍ୟୁ ହେଉଛି । ବଡ଼ ଅଜବ ତାଙ୍କର ଜୀବନଦର୍ଶନ । ତାଙ୍କ ମତରେ ଷଡ଼ରିପୁ ମଣିଷର ଉପକାରୀ ବନ୍ଧୁ – ମାତ୍ର ସପ୍ତମ ରିପୁ ଲଜ୍ଜା ହେଉଛି ମଣିଷର ଚରମ ଶତ୍ରୁ ଏବଂ ତାକୁ ତ୍ୟାଗ କଲେ ସମାଜରୁ ବହୁ ଅସୁବିଧା ଦୂର ହୋଇଯିବ । ସେ ଆହୁରି ଭାବନ୍ତି ଯେ ମଣିଷ ବାହା ହୁଏ କେବଳ କଜିଆ କରିବାକୁ । ଭଲ ପାଇବା ସେଠାରେ ନଥାଏ । ଏ ଚରିତ୍ର ଯେ ସାଧାରଣ ନୁହେଁ, ତାହା ଆମେ ପ୍ରଥମରୁ କହିଛୁଁ । ତଳେଇ କରି ବିଚାର କରି ଦେଖିଲେ – ଏହାର ଅନ୍ତଃସ୍ୱରରେ ଟ୍ରାଜିକ୍ ଚେତନାର ଏକ ସ୍ରୋତ ତୀବ୍ରଗତିରେ ପ୍ରବାହିତ । ଜୀବନ କ୍ଷେତ୍ରରେ ପ୍ରାୟ ଉପେକ୍ଷିତ ଏବଂ ବ୍ୟର୍ଥ ନିଜର ଅପୂର୍ଣ୍ଣତାକୁ ଢାଙ୍କିବାକୁ ସେ ଭାଷଣବାଜିର ଆଶ୍ରୟ ନେଇ ନିଜକୁ ଭୁଲାଇ ରଖିବାକୁ ଚେଷ୍ଟା କରୁଥିଲେ । ପାରମ୍ପରିକ ରାଜ-ବୟସ୍ୟ କିନ୍ତୁ ଏହାଙ୍କର ଠିକ୍ ବିପରୀତ । ଯାହାହେଉ ନାଟକର ବିଷାଦିତ ପରିବେଶ ସହିତ ଗଣଭଟଙ୍କର ଯେ ବେଶ୍ କିଛି ସମ୍ପର୍କ ରହିଛି, ଏହା ଦେଖାଇ ଦେବା ହେଉଛି ଆମର ଲକ୍ଷ୍ୟ ।

ଶେଷ ଦୁଇ ଚରିତ୍ର – ଯାହାଙ୍କ ସମ୍ପର୍କରେ ଆମେ ଆଲୋଚନା କରିବୁ, ସେ ଦୁହେଁ ହେଉଛନ୍ତି, ମଗଧ ରାଜ୍ୟକନ୍ୟା ସଙ୍ଘମିତ୍ରା ଏବଂ କଳିଙ୍ଗ ରାଜପୁତ୍ର ଜୟପାଳ । ସଙ୍ଘମିତ୍ରା ଏବଂ ଜୟପାଳଙ୍କ ମଧ୍ୟରେ ଏକ ଆବେଗିକ ସମ୍ପର୍କ ରହିଥିବାରୁ ସଙ୍ଘମିତ୍ରା ବନ୍ଦୀ ରାଜପୁତ୍ରଙ୍କର ମୁକ୍ତି ନିମନ୍ତେ ଉଦ୍ୟମ କରି ସେଥିରେ ସଫଳକାମ ହେଉଛନ୍ତି । ତେବେ ସ୍ୱାଭିମାନୀ ରାଜପୁତ୍ର ଏଭଳି ଅନୁଗ୍ରହର ମୁକ୍ତି ଅପେକ୍ଷା ଆତ୍ମହତ୍ୟାକୁ ଶ୍ରେୟସ୍କର ମଣୁଛନ୍ତି । ସଙ୍ଘମିତ୍ରା ବୈରାଗ୍ୟ ସାଧନାରେ ମୁକ୍ତି ଲୋଡୁଛନ୍ତି । ବିଷାଦ-ବୃତ୍ତର କେନ୍ଦ୍ରରେ ଥିବା ଏଇ ଚରିତ୍ର ମୃତ୍ୟୁ ପୂର୍ବରୁ ନିଜ ଜୀବନକୁ ଦୁର୍ବହ ଓ ଦୁଃସହ ମନେକରି ସଙ୍ଘମିତ୍ରାଙ୍କୁ କହିଛନ୍ତି, ''ବୋଇତଟିକୁ ପାଣିରେ ବୁଡ଼ାଇଦେଇ, ନାଉରୀ ଯେବେ ପଳାଇଯାଇ ନିଜକୁ ବଞ୍ଚାଏ, ସେ ତାହାର ଜୀବନ ? କଳିଙ୍ଗର ଆକାଶ ପୃଥିବୀ ଯେତେବେଳେ ବିକଳ ବିଳାପରେ ମଥିତ, କଳିଙ୍ଗର ସକଳ ପଥ ରୁଧିର-ରାଗରେ ରଞ୍ଜିତ, ସେତିକିବେଳେ କଳିଙ୍ଗର ରାଜକୁମାର ମଗଧଜେମାଙ୍କର ପାଣିଗ୍ରହଣ କରି ମଙ୍ଗଳ ଶଙ୍ଖମହୁରୀ ବଜାଇ ଯାତ୍ରା କରିବ, ଆଉ ସେ ତାହାର ଜୀବନ !'' ରୋମାଣ୍ଟିକ୍ ପ୍ରେମର ଏକ ବ୍ୟର୍ଥ ଚିତ୍ର ଦେଖାଇବା ନିମନ୍ତେ ଏହି ଚରିତ୍ରର ପରିକଳ୍ପନା । ତେଣୁ ଠିକ୍ ମୁହୂର୍ତ୍ତରେ ତାକୁ ନାଟକରୁ ବିଦାୟ କରିଦିଆଯାଉଛି । ତା'ର ସଂଳାପରେ ମଧ୍ୟ ରୋମାଣ୍ଟିକ୍-ଆବେଗ ଠିକ୍ ଭାବରେ ରୂପାୟିତ ହୋଇଛି । ସେ ଯୁଗର ନାଟକରେ ଏହି ଧରଣର ସଂଳାପ ହିଁ କଳ୍ପିତ ହେଉଥିଲା ।

ଫଳ କଥା ହେଉଛି, ଚରିତ୍ର, ଘଟଣା ଓ ପରିବେଶ ସୃଷ୍ଟିରେ ଏହି ନାଟକରେ ମଧ୍ୟ ନାଟ୍ୟକାର ଦୁଃଖାନ୍ତ-ଚେତନା ଉପରେ ପ୍ରାଧାନ୍ୟ ଦେଇଛନ୍ତି । ଦୃଶ୍ୟର ଆରମ୍ଭ ହେଉଛି ସେଇଥିରେ ଏବଂ ଶେଷ ମଧ୍ୟ ସେଇଠି । ଇତିହାସରେ ଅଶୋକଙ୍କର ଯେଉଁ ଚିତ୍ର ଦେଖିବାକୁ

ମିଳେ, ସେ ଜୀବନ ସାଧାରଣ ନୁହେଁ । ହୁଏତ ନାଟ୍ୟକାର ସେଇଥିପାଇଁ ଏହି ଉପାଖ୍ୟାନଟିକୁ ବାଛିଥାଇ ପାରନ୍ତି ।

'ପଦ୍ମିନୀ' ଉପାଖ୍ୟାନରେ ମଧ ଏହି ଭଳି ଦୃଶ୍ୟ କଳ୍ପନାର ଯଥେଷ୍ଟ ସୁଯୋଗ ଥିବାରୁ ନାଟ୍ୟକାର ସେଇ କାହାଣୀଟିକୁ ନାଟ୍ୟ-ବସ୍ତୁ ରୂପେ ଗ୍ରହଣ କରିଛନ୍ତି । ଜାତୀୟତାର ଅଗ୍ନି-ସଂକଳ୍ପରେ ଉଦ୍‌ବୁଦ୍ଧ ପଦ୍ମିନୀ ରାଣୀ ଭୀମସିଂହଙ୍କର ସମସ୍ତ ଆପତ୍ତିକୁ ଅସ୍ୱୀକାର କରି ସ୍ଥିର କରୁଛନ୍ତି, ସେ ଅଯଥା ରକ୍ତପାତ ଏଡ଼ାଇବା ପାଇଁ ନିଶ୍ଚୟ ଆଲ୍ଲାଉଦ୍ଦୀନ୍‌କୁ ଦର୍ପଣରେ ଦର୍ଶନ ଦେବେ । ତାଙ୍କର ବକ୍ତବ୍ୟ, ''ଶୁଣ ରାଣା, ଆଲ୍ଲାଉଦ୍ଦୀନ୍ ମୋର ରୂପକୁ ଦେଖି ଫେରିଯିବେ, ସେଥିରେ ଏ ରୂପ ମଳିନ ହେବ ନାହିଁ । ରାଜନବର ରସାତଳକୁ ଯିବ ନାହିଁ । କିନ୍ତୁ ଚିତୋରର ଭବିଷ୍ୟତ ବଂଶ ରହିବ'' ନାରୀତ୍ୱର ମର୍ଯ୍ୟାଦାରକ୍ଷା, ଉଗ୍ର ଦେଶପ୍ରେମବୋଧ ତଥା ଜନ୍ମଭୂମି ପ୍ରୀତି ଏବଂ ମାନବିକତା ପ୍ରଭୃତି ରୋମାଣ୍ଟିକ୍ ଚେତନାର ମୁଖ୍ୟ କେଇଟି ଗୁଣ ତାଙ୍କ ନିକଟରେ ଠୁଳ କରାଯାଇଛି । ସଙ୍ଘମିତ୍ରାଙ୍କ ଭଳି ସେ ମଧ ବିଷାଦବାଦିନୀ ।

ଏଥର ଆଲୋଚନା କରିବା ତାଙ୍କର ଶେଷ ଅନୁବାଦ-ନାଟକ 'ସୁଦୂର-ସଂକେତ' ସମ୍ପର୍କରେ । ଦୁଃଖାନ୍ତ ନାଟକଟିରେ ବିଷାଦର ରାଗିଣୀ ଆମୂଳାନ୍ତ ଶୁଣାଯାଉଥିବାରୁ ହୁଏତ ନାଟ୍ୟକାର ଏହାକୁ ଅନୁବାଦ କରିବାକୁ ସ୍ଥିର କରିଥିବେ । ତାଙ୍କର ନାଟ୍ୟଦର୍ଶନ ସହିତ ଏହାର ଦର୍ଶନ ମଧ ସମ୍ପୂର୍ଣ୍ଣ ମିଶିଯାଉଛି । ନାଟ୍ୟତତ୍ତ୍ୱ ଦୃଷ୍ଟିରୁ ମଧ ଏହା ଏକ ସମ୍ପୂର୍ଣ୍ଣ ତ୍ରୁଟିଶୂନ୍ୟ ନାଟକ ତଥା ଏହାର ମଞ୍ଚ ସଫଳତା ମଧ ଅବିସମ୍ବାଦିତ । ଏହାର କଥାବସ୍ତୁ ନିମ୍ନ ଭଳି ।

ଗ୍ରାମାଞ୍ଚଳର ଏକ ଛୋଟ ରେଳଷ୍ଟେସନ ହେଉଛି ସୁଦୂର ସଂକେତ । ଯାନ୍ତ୍ରିକ ତ୍ରୁଟି ହେତୁ ସେଠାରେ ଅଚାନକ ଅଟକିଯାଏ କମାଣ୍ଡର ମାଟ୍‌ଭେଲ୍‌ଙ୍କ ସ୍ୱତନ୍ତ୍ର ଟ୍ରେନ୍ । ଷ୍ଟେସନ୍‌କୁ କେନ୍ଦ୍ରକରି ଯେଉଁ କେତୋଟି ଚରିତ୍ର ଆତଯାତ ହୁଅନ୍ତି, ସେମାନେ ପ୍ରତ୍ୟେକେ ଅସ୍ୱାଭାବିକ । ଅଛନ୍ତି ଷ୍ଟେସନ ମାଷ୍ଟର ଆଲେକ୍‌ସି, ତାଙ୍କର ଶିକାର ପାଗଳ ପତ୍ନୀ ଲ୍ୟୁବା, ସେମାନଙ୍କ କନ୍ୟା ଜେନିଆ, ଲାଇନ୍‌ମ୍ୟାନ୍ ଲାଡେଣ୍ଟି, ତାଙ୍କ ପତ୍ନୀ ଶ୍ଳାସା, ଟେଲିଫୋନ୍ ଅପରେଟର ଜେନାଡ଼ି ଏବଂ କ୍ଲାସ୍ । କ୍ଷୁଦ୍ର ଏବଂ ବିଶୃଙ୍ଖଳ ଏଇ ଉପନିବେଶରେ ଶାନ୍ତି ଓ ସୌହାର୍ଦ୍ଦ୍ୟର ବାତାବରଣ ସ୍ଥାପନ କରିବା ନିମନ୍ତେ ଉଦ୍ୟମ କରନ୍ତି କମାଣ୍ଡର ଏବଂ ତାଙ୍କ ପତ୍ନୀ ଭେରା । ମାନବିକତାର ଯାଦୁଦଣ୍ଡ ବୁଲାଇ ଉଭୟେ ବିଦ୍ରୋହୀମାନଙ୍କୁ ମନ୍ତ୍ରମୁଗ୍ଧ କରିଦିଅନ୍ତି । ଲ୍ୟୁବା କମାଣ୍ଡରଙ୍କ ବନ୍ଧୁକଟି ଉପହାର ପାଇ ତାଙ୍କର ବଶ ହୋଇଯାଆନ୍ତି । କ୍ୟାମେରା, ବହିପତ୍ର ଆଦି ଯାହା କମାଣ୍ଡରଙ୍କ ପାଖରେ ଥାଏ, ସେ ସବୁ ଏମାନଙ୍କୁ ବାଣ୍ଟିଦିଅନ୍ତି । ଷ୍ଟେସନ୍‌ର ସାମୂହିକ ଉନ୍ନତି ନିମନ୍ତେ ତାଙ୍କର ପ୍ରସ୍ତାବ ସାଦରେ ଗୃହୀତ ହୁଏ । ଜୀବନ ହୋଇଯାଏ ସ୍ୱାଭାବିକ, ସୁନ୍ଦର ଓ ସ୍ୱଚ୍ଛନ୍ଦ । ଏତିକିବେଳେ ଜଣାଯାଏ କମାଣ୍ଡର ଦୁରାରୋଗ୍ୟ ବ୍ୟାଧିରେ ଆକ୍ରାନ୍ତ । ମିଆଦ ମାତ୍ର ତିନିମାସ । ଏ କଥା ଜାଣିବାପରେ ସେଇ ଅଜଣା ଷ୍ଟେସନର ଅରଣା ମଣିଷଗୁଡ଼ିକ ବିଷଣ୍ଣ

ହୋଇଉଠନ୍ତି । କମାଣ୍ଡର ସମସ୍ତଙ୍କୁ କର୍ତ୍ତବ୍ୟନିଷ୍ଠ ହେବା ନିମନ୍ତେ ଅନୁରୋଧ ଜଣାନ୍ତି । ଗୋଟିଏ ସମୟରେ ତାଙ୍କୁ ନେଇ ଟ୍ରେନ୍ ଷ୍ଟେସନ୍ ଛାଡ଼ି ଚାଲିଯାଏ । ପଛରେ ରହିଯାନ୍ତି ଅଶ୍ରୁ ଭାରାକ୍ରାନ୍ତ, ଅନୁତପ୍ତ, ପରିବର୍ତ୍ତିତ ମଣିଷଗୁଡ଼ିଏ । ନାଟକର କଥାବସ୍ତୁ ଏତିକି ଏବଂ ମାନବିକତାର ଆବେଦନକୁ ଅନୁବାଦକ ଯଥାଯଥ ଭାବରେ ଦର୍ଶକମାନଙ୍କ ନିକଟରେ ପହଞ୍ଚାଇ ଦେଇଛନ୍ତି ।

ନାଟ୍ୟକାର ଏଥିରେ ମାନବିକତାକୁ ନେଇ ଏକ ପରୀକ୍ଷା କରିଛନ୍ତି । ଗୁଡ଼ିଏ ଅବ୍ୟବସ୍ଥିତ ଚରିତ୍ର । ସମସ୍ତଙ୍କର କିଛି ନା କିଛି ବ୍ୟତିକ୍ରମ ରହିଛି । ଏଣେ ସମସ୍ତେ ଚଳନ୍ତି ନିଜ ଖିଆଲ ଖୁସିରେ । କେହି କାହାର ଶାସନ ମାନିବାକୁ ପ୍ରସ୍ତୁତ ନୁହନ୍ତି । ଆସୁଛନ୍ତି ମାନବିକତାର ବାର୍ତ୍ତା ନେଇ କମାଣ୍ଡର – ଯେ କି ମାତ୍ର ତିନିମାସର ଅତିଥି । ଅହଙ୍କାର ସହିତ ଔଦ୍ଧତ୍ୟର ସଂଘର୍ଷ ହୋଇପାରେ । ସ୍ୱେଚ୍ଛାଚାରିତା ଓ ଅନୁଶାସନହୀନତା ପରସ୍ପର ପ୍ରତି ସ୍ପର୍ଦ୍ଧା ପ୍ରକାଶ କରିପାରନ୍ତି । ମାତ୍ର ଯେ ମୁଣ୍ଡନୁଆଁଇ ପିଠିରେ ହାତ ଦେଇ ଛାତିକୁ ଆଉଁସି ତା' ଭିତରର ପଦାର୍ଥକୁ ଛୁଇଁଯାଏ, ସେ ପୁଣି ଯଦି ହୋଇଯାଏ ସୀମିତ ସମୟର ଅତିଥି, ତାକୁ କିଭଳି ଏଡ଼ାଇ ଦେଇ ହେବ ? କୋଳାହଳମୟ ପରିବେଶରେ ହଠାତ୍ ସକରୁଣ ବୈରାଗ୍ୟର ଖଣ୍ଡେ କଳା ବାଦଲ ଛାଇଯାଏ । ଲୋକଗୁଡ଼ିକର ମୁହଁରୁ ହସ ଚିରକାଳପାଇଁ ହଜିଯାଏ ।

କହିବାର କଥା, ଏଇ ନାଟକର ପ୍ରଥମରୁ ବିଷାଦର ଏକ କରୁଣ ଗାଥା ଅନ୍ତଃସଳିଳା ଫଲ୍ଗୁ ଭଳି ନିରବଚ୍ଛିନ୍ନ ଭାବରେ ବହି ଚାଲିଛି । ଚରିତ୍ରଗୁଡ଼ିକର ଅପୂର୍ଣ୍ଣତା ହିଁ ହେଉଛି ସେମାନଙ୍କର ଟ୍ରାଜେଡ଼ି । ବିଶୃଙ୍ଖଳିତ ଏବଂ ବିଷଣ୍ଣ ଏକ ଗ୍ରାମୀଣ ଷ୍ଟେସନ ଏହାର ପଟ୍ଟଭୂମି ନିମନ୍ତେ ଉପଯୁକ୍ତ ହୋଇଛି । ଏଇ ପରିବେଶ ହିଁ ଲୋକ ଚରିତ୍ରର ବୈଶିଷ୍ଟ୍ୟକୁ ଯଥାଯଥ ଭାବରେ ଫୁଟାଇ ପାରିଛି । କମାଣ୍ଡର ଏବଂ ବିଷଣ୍ଣ ମଣିଷଗୁଡ଼ିକଙ୍କର ଜୀବନବୋଧ ଗୋଟିଏ ବିନ୍ଦୁରେ ମିଳିମିଶି ଏକାକାର ହୋଇଯାଇଛି । ବିଷଣ୍ଣତାରେ ସାରା ସୃଷ୍ଟି ଭରିଯାଇଛି ।

କାଳିନ୍ଦୀଚରଣଙ୍କର ପ୍ରଥମ ନାଟକ 'ସୌମ୍ୟା' ସହକାରରେ ପ୍ରକାଶ ପାଇଥିଲା ୧୯୩୨ ମସିହାରେ । ପରେ ତାହା 'ସବୁଜ ସାହିତ୍ୟ ସମିତି' ଦ୍ୱାରା ପୁସ୍ତକାକାରରେ ମଧ୍ୟ ପ୍ରକାଶ ପାଇଛି । ଶେଷ ନାଟକ 'ସୁଦୂର ସଂକେତ' ପ୍ରକାଶ ପାଏ ୧୯୬୫ରେ । ଏଥି ମଧ୍ୟରେ ୩୩ ବର୍ଷର ବ୍ୟବଧାନ ରହୁଛି । ନାଟ୍ୟକାର ରୂପେ ପ୍ରତିଷ୍ଠା ଲୋଡ଼ିବାକୁ କାଳିନ୍ଦୀଚରଣ ଆଉ ଉଦ୍ୟମ କରି ନାହାନ୍ତି । ନିଜର ସାମର୍ଥ୍ୟ ତାଙ୍କ ଭଳି ଜଣେ ଦୂରଦୃଷ୍ଟି ସମ୍ପନ୍ନ ସ୍ରଷ୍ଟା ନ ବୁଝିବାର କଥା ନୁହେଁ । ତେଣୁ ସେ ନାଟକ କ୍ଷେତ୍ରରୁ ନିଜକୁ ଦୂରେଇ ରଖିଛନ୍ତି । ଏହା ହିଁ ହେଉଛି ନାଟ୍ୟକାର କାଳିନ୍ଦୀଚରଣଙ୍କ ସମ୍ପର୍କରେ ଶେଷ କଥା ।

ଏହି ଚାରୋଟି ନାଟକ ମଧ୍ୟରେ ଟ୍ରାଜିକ୍ ଚେତନାର ଯେଉଁ ସ୍ପଷ୍ଟ ଯୋଗସୂତ୍ର ରହିଛି, ତାହାରି ଭିତରୁ ସ୍ପଷ୍ଟ ଦେଖାଯାଉଛି ତାଙ୍କର ଜୀବନଦୃଷ୍ଟି । ଜୀବନ ସମ୍ପର୍କରେ ତାଙ୍କର ଅନୁଭବ ସତେ ଯେମିତି ବିନ୍ଦୁ ବିନ୍ଦୁ ବାରିଧାରା ରୂପରେ ଏଇ ସୃଷ୍ଟି ଉପରେ ଝରିପଡ଼ିଛି ।

ଏଥର ତେବେ ଆସନ୍ତୁ କାଳିନ୍ଦୀଚରଣଙ୍କର ବ୍ୟକ୍ତି ଜୀବନ ଭିତରକୁ ଟିକିଏ ଉଙ୍କିମାରିବା । ତେବେ ଏଥିରେ ସେଭଳି ବୈଚିତ୍ର୍ୟ ଖୋଜିଲେ ନିରାଶ ହେବାକୁ ପଡ଼ିବ । ତାଙ୍କର ଜୀବନକୁ ଅନ୍ୟ ଯେକୌଣସି ସାଧାରଣ ଲୋକର ଜୀବନ ଭଳି ଦୁଇଟି ପର୍ଯ୍ୟାୟରେ ବିଭକ୍ତ କରାଯାଇ ପାରିବ । ପ୍ରଥମ ପର୍ଯ୍ୟାୟର ତାରୁଣ୍ୟରେ ମନ ସମ୍ପୂର୍ଣ୍ଣ ସ୍ୱପ୍ନାଚ୍ଛନ୍ନ, ଜୀବନ ଆଉ ଜଗତ୍ ସବୁ ସୁନ୍ଦର । ସେଇ ସମୟର ଅନୁଭବ ରୂପାୟିତ ହୋଇଛି ତାଙ୍କ ନିଜ ଭାଷାରେ । ସେ ଲେଖିଛନ୍ତି, ''ସେତେବେଳେ ଦେଖେ ବିଶ୍ୱସ୍ତ ବନ୍ଧୁ ଲୋଡ଼ାଥିଲା ଅନେକ – ଏଭଳି ଅନେକ ବନ୍ଧୁ ଖୋଜି ସଂସାର ଭିତରୁ ବାହାର କରିବାକୁ ହୁଏତ ବେଳ ଆସି ନଥିଲା । ସେଥିପାଇଁ ସମଗ୍ର ଦୁନିଆଟାକୁ ଯୋଡୁଥିଲି ବନ୍ଧୁ ଭାବରେ – ନିରାଶ୍ରୟର ଆଶ୍ରୟ ରୂପରେ – କିନ୍ତୁ ନିରାଶ୍ରୟୀଙ୍କୁ ଆଶ୍ରୟ ଦେବା ତ ଦୂରର କଥା, ଆଶ୍ରୟକୁ ନିରାଶ୍ରୟ କରିବା ଉଦାହରଣ ଯେ ପ୍ରଚୁର ସେ ବୟସରେ ମୋ ଆଖି ଆଗକୁ ତାହା ଆସି ନଥିଲା – କାନକୁ ଶୁଣାଯାଇ ନଥିଲା – ନିରାଶ୍ରୟର ଆର୍ତ୍ତନାଦ, ସେତେବେଳେ ହୁଏତ ବେଶି ଶୁଭୁଥିଲା କୋଇଲିର କୁହୁ କିମ୍ବା ଗଉଡ଼ ପିଲାର ବଇଁଶୀ'' (ମୁଁ କାହିଁକି ଲେଖେ) ଆଦ୍ୟ ତାରୁଣ୍ୟର ଅପରିପକ୍ୱ ଚିନ୍ତାର କଥା ହିଁ ଏଥିରେ ପ୍ରକାଶ ପାଇଛି । ସେତେବେଳେ ଚାହିଁବା ଆଉ ପାଇବା ପାଇଁ ଜୀବନର ଅସରନ୍ତି ପଥ ସାପେଇ ସାପେଇ ଆଖି ଆଗରେ ଲମ୍ବିଯାଇଛି । ଚାଲିବା ପାଇଁ ଶକ୍ତିର ଅଭାବ ନାହିଁ । ଖାଲି ଢ଼ିପ, କଣ୍ଟାଝଣ୍ଟାର କଥା ମନକୁ ଆସୁନାହିଁ । ପ୍ରତ୍ୟୟ ଅଛି, ବାଟଚଲା ନିଶ୍ଚୟ କ୍ଲାନ୍ତି ଦାୟକ ହେବ ନାହିଁ । ଆଶା ଆଉ ନୈରାଶ୍ୟର ତିଳତଣ୍ଡୁଳିତ ଛାଇ ଆଉ ଅନ୍ଧକାର ଭିତରେ ଯାତ୍ରା ଆରମ୍ଭ ହେଉଛି । ଏ ହେଉଛି ଗୋଟିଏ ପର୍ଯ୍ୟାୟ ଜୀବନର ଯେଉଁଠି ରୋମାଣ୍ଟିକ୍-ବିଳାସ ହିଁ ଜୀବନ ପଥର ପାଥେୟ ହୋଇଛି । 'ମାଟିର ମଣିଷ' ଏହି ପର୍ଯ୍ୟାୟରେ ବାହାରି ଆସିଛି । ସେଇ ମଣିଷମାନଙ୍କୁ ସେ ଖୁବ୍ ପାଖରୁ ଦେଖିଛନ୍ତି । ସେମାନଙ୍କ ସହିତ ପାଦ ମିଳାଇ ଚାଲିଛନ୍ତି । ସେମାନଙ୍କ ସୁଖଦୁଃଖ ଆଉ ହସକାନ୍ଦର ସ୍ୱାଦ ଚାଖିଛନ୍ତି । ଜୀବନର ବ୍ୟର୍ଥତାର ଆଉ ନପାଇବାର ବେଦନାର ଚିତ୍ର ସମାଜ ଆଗରେ ବାଢ଼ିଦେବା ଭିତରେ ତାକୁ ଶୁଣାଇଛନ୍ତି ନିଜର ତୀବ୍ର ପ୍ରତିବାଦର ବିବରଣୀ – ବରଜୁର ଦ୍ୱନ୍ଦ୍ୱ ଭିତରେ ନିଜକୁ ଢାଳି ଦେଇଛନ୍ତି । ଦୁନିଆକୁ ନିଜ ବାଟରେ ଚଲାଇ ନପାରି ବରଜୁ ପ୍ରତିବାଦ ଜଣାଇଛି ଦୁନିଆକୁ ଛାଡ଼ି – ଏଇଠୁ ଆରମ୍ଭ ହେଉଛି କଳ୍ପନା-ବିଳାସ-ଏଡ଼େ ବଡ଼ ବିପ୍ଳବ ଯେ କରୁଛି, ତା' ପାଇଁ ପଥଧାରରେ ଆଉ ଏକ ସଜଡ଼ା ସଂସାର ଅପେକ୍ଷା କରୁଛି । ଯେଉଁଠୁ ସେ ପରାଜିତ ହୋଇ ମୁଣ୍ଡ ନୁଆଁଇ ଚାଲିଯାଇଥିଲା । ସେଇ ବିନ୍ଦୁଟି ଲମ୍ବିଆସିଛି ହରିପୁର ସେଣଘର ଦାଣ୍ଡପିଣ୍ଡାକୁ । ଚୁପଚାପ୍ ଆଣ୍ଠୁ ଭିତରେ ମୁହଁଗୁଞ୍ଜି ସେଠି ଅପେକ୍ଷା କରିଛି । ଜୀବନ ପାଇଁ ଏହା ଅପେକ୍ଷା ବଡ଼ ପୁରସ୍କାର ଆଉ କ'ଣ ହୋଇଥାଆନ୍ତା ? ଏହି ରୋମାଣ୍ଟିକ୍ କଳ୍ପନାର ଯାଥାର୍ଥ୍ୟ ସମ୍ପର୍କରେ ସ୍ୱୟଂ ଲେଖକଙ୍କର ପରିଣତ ବୟସର ସ୍ୱୀକାରୋକ୍ତି ଶୁଣନ୍ତୁ । ସେ ଲେଖିଛନ୍ତି,

''ମୋର ମାଟିର ମଣିଷ ଘର ସଂସାର ତ୍ୟାଗ କରି ଚାଲିଯାଏ । ହରି ମିଶ୍ର ଉପରେ ପ୍ରତିହିଂସା ନିଏ ନାହିଁ । ଏହାକୁ କେହି କେହି ଏକ ଅସ୍ୱାଭାବିକ ଘଟଣା ବୋଲି ବିଚାର କରନ୍ତି । ମୋତେ ମଧ ଆଜି ତାହା ଅସ୍ୱାଭାବିକ ବୋଲି ବୋଧ ହେଉଛି । ସେଇଥିପାଇଁ ଗ୍ରନ୍ଥ ଶେଷ କଲାବେଳେ ହରି ମିଶ୍ରଙ୍କୁ ହତ୍ୟା କରିବା ଉଚିତ୍ ବୋଲି କଳ୍ପନା କରୁଛି । କାରଣ ମୁଁ ଦେଖୁଛି ଗାନ୍ଧିଜୀଙ୍କର ଅହିଂସା ବୋଧହୁଏ ଅନେକ ହିଂସା ପରେ ସମ୍ଭବ ହେବ'' – (ମୁଁ କାହିଁକି ଲେଖେ) । ଜଣେ ଅଭିଜ୍ଞ ସଂସାରୀ ମଣିଷର ଅନୁଭୂତି ଏଠାରେ କିଭଳି ସ୍ପଷ୍ଟ ଭାଷାରେ ରୂପାୟିତ ହୋଇଛି, ତାହା ଲକ୍ଷ୍ୟ କରାଯାଇପାରେ । ହରି ମିଶ୍ରର ପରିଣତି ବାସ୍ତବରେ କ'ଣ ହୋଇପାରେ ? ତା'ର ଦୃଷ୍ଟାନ୍ତ ଆମେ ସେହି ସମୟରେ ଓଡ଼ିଶାରେ ଚହଳ ପକାଇଥିବା ବଙ୍କଡ଼ା ହତ୍ୟାକାଣ୍ଡକୁ ସ୍ମରଣ କରିପାରିବା । ବଙ୍କଡ଼ାର ନାଏବ ବନମାଳୀ ପତି ମହୋଦୟ – ଲୋକଙ୍କ କ୍ରୋଧର ଶିକାର ହୋଇ ମୃତ୍ୟୁବରଣ କରିଥିଲେ (୧୯୨୮) । ପତିଙ୍କ ବକ୍ଷ ବିଦାରି ତାଙ୍କ ଅନ୍ତବୁଜୁଳାକୁ ପଇତା କରି ପ୍ରକାଶ୍ୟ ଦିବାଲୋକରେ ଲୋକେ ଯେଉଁ ନାରକୀୟ କାଣ୍ଡ ଘଟାଇଥିଲେ, ସେଥିରୁ ସେମାନଙ୍କର ଘୃଣାର ପରିଚୟ ମିଳେ । କାରଣ – ପତି ମହାଶୟ ପ୍ରଜାପୀଡ଼କ ଥିଲେ । ହରି ମିଶ୍ର ବି ତ ପଧାନପଡ଼ାରେ ତାଙ୍କର ଏକ ସମାନ୍ତରାଳ ରୂପ । ୧୯୨୮ ମସିହାରେ ଯେତେବେଳେ ଏହି ବାସ୍ତବ ଘଟଣାଟି ଘଟୁଥିଲା, ହୁଏତ ହରି ମିଶ୍ର ସେତେବେଳେ ଲେଖକଙ୍କ କଳ୍ପନାରେ ଜନ୍ମ ନେଇସାରିବେଣି । କାରଣ ଏହାର ୩ ବର୍ଷ ପରେ 'ମାଟିର ମଣିଷ' (୧୯୩୧) ପ୍ରକାଶ ପାଇଛି । ସେଠି ତଥାପି ମାର୍କସ୍‌ଙ୍କ ବଦଳରେ ଗାନ୍ଧି ହିଁ ଆସିଛନ୍ତି । ଗାନ୍ଧିଙ୍କ ପ୍ରଭାବ ସମ୍ପର୍କରେ ଲେଖକଙ୍କ ବକ୍ତବ୍ୟ ଦେଖାଯାଉ । ସେ ଲେଖିଛନ୍ତି, ''ଅବଶ୍ୟ ଗାନ୍ଧିଜୀଙ୍କର ଅହିଂସା ଆନ୍ଦୋଳନର ବ୍ୟାଖ୍ୟା ମୋ ରଚନାଗୁଡ଼ିକୁ ଏକ ସମୟରେ ପ୍ରଭାବିତ କରିଥିଲେ ହେଁ, ଆଉ ମଧ ଜାତିର ଓ ଦେଶର ସ୍ୱାଧୀନତା ପାଇଁ ମୋତେ ଲେଖିବାକୁ ହେଉଥିଲେ ହେଁ, ସେ ଲେଖା ଆଜି ବି ମୋ ସପକ୍ଷରେ ଏକ ବିରାଟ ବିଫଳତା ରୂପେ ଛିଡ଼ା ହୋଇଛି । କାରଣ ମୁଁ ଦେଖୁଛି ଯେଉଁଠି ଅହିଂସାର ମନ୍ତ୍ର ଉଚ୍ଚାରିତ ହେଉଥିଲା, ସେହିଠାରେ ହିଁ ହିଂସାର କୁତ୍ସିତ ଦୃଶ୍ୟ ଚାଲିଛି'' – (ମୁଁ କାହିଁକି ଲେଖେ) । ଆଦର୍ଶ ହେଉ ବା ନୀତି ହେଉ, ବାଟ ଚାଲୁ ଚାଲୁ ମଣିଷ ଗୋଟିଏ ଜିନିଷକୁ ଅବଲମ୍ବନ କରି ଆଗକୁ ବଢୁଥାଏ । କ୍ରମେ ତା' ପ୍ରତି ମନରେ ଏକ ମୋହ ସୃଷ୍ଟି ହୁଏ । ଯେତେ ଯାହା ହେଲେ ବି ସେ ତାକୁ ଛାଡ଼େ ନାହିଁ । ଦୃଢ଼ମନା ବ୍ୟକ୍ତି ହୁଏତ ସେଇଥିପାଇଁ ପ୍ରାଣପାତ କରିଦିଏ । ତଥାପି ତା'ର ମୋହଭଙ୍ଗ ହୁଏ ନାହିଁ । ଗାନ୍ଧିଙ୍କ ଆଦର୍ଶ ଏ ଦେଶ ପାଇଁ କେତେ ଉପଯୋଗୀ, ତାଙ୍କର ନୀତି ଓ ଆଚରଣ ମଧ୍ୟରେ କୌଣସି ଫାଙ୍କ ଥିଲା କିମ୍ବା ନାହିଁ, ତାକୁ ନେଇ ଆମ ଦେଶରେ ଝୁଡ଼ି ଝୁଡ଼ି ଶାସ୍ତ୍ର ଲେଖା ହୋଇଛି ଏବଂ ଭବିଷ୍ୟତରେ ଆହୁରି ମଧ ହେବ । ଗୋଟିଏ କଥା କିନ୍ତୁ ଏହା ମଧ୍ୟରେ ଅତ୍ୟନ୍ତ ସ୍ପଷ୍ଟ ହୋଇଯାଇଛି । ଅହିଂସାର ଯେଉଁ ସ୍ୱରୂପ ସମ୍ପର୍କରେ ଗାନ୍ଧିଜୀ ସ୍ୱପ୍ନ ଦେଖୁଥିଲେ,

ସ୍ୱାଧୀନତା ସଂଗ୍ରାମ ପାଇଁ ତା'ର ଉପଯୋଗ ଫଳପ୍ରସୂ ହୋଇନାହିଁ । ଏଥିପାଇଁ ଗାନ୍ଧିଜୀଙ୍କୁ ଦୋଷ ଦେବା ଉଚିତ ହେବ ନାହିଁ । ସେ ସ୍ୱପ୍ନ ହିଁ ତ ଦେଖୁଥିଲେ । ଏଡ଼େ ବଡ଼ ଦେଶରେ, ଭିନ୍ନ ରୁଚିର ବିଭିନ୍ନ ଚିନ୍ତାଧାରାର ମଣିଷଙ୍କ ଦ୍ୱାରା ତାହାର ରୂପାୟନ ବଡ଼ ସହଜ କଥା ନଥିଲା । ତାହା ହୋଇପାରି ନାହିଁ ।

କାଳିନ୍ଦୀଚରଣ ପ୍ରଥମ ତାରୁଣ୍ୟରେ ମାର୍କସଙ୍କ ଆଦର୍ଶକୁ ଗ୍ରହଣ କଲେ । ଶୋଷିତ ଗୋଷ୍ଠୀର ଚେତନାରେ ବିଦ୍ରୋହର ଭାବନା ସୃଷ୍ଟି କରିବାକୁ ଉଦ୍ୟମ କଲେ । ସେଇଠୁ ଗାନ୍ଧିବାଦ ଆଡ଼କୁ ଢଳିଲେ । ୧୯୨୧ ରେ ଗାନ୍ଧିଙ୍କର ପ୍ରଭାବ ଭାରତର ରାଜନୀତିରେ ସ୍ପଷ୍ଟ ହେଲାବେଳକୁ ସେ କୋଡ଼ିଏ ଏକୋଇଶ ବର୍ଷର ତରୁଣ । ଗାନ୍ଧି ତାଙ୍କୁ ଆକୃଷ୍ଟ କଲେ । 'ମାଟିର ମଣିଷ' ଲେଖାହେଲା ବେଳକୁ ଗାନ୍ଧିଜୀ ସମ୍ପୂର୍ଣ୍ଣ ଭାବରେ କାଳିନ୍ଦୀଚରଣଙ୍କୁ ପ୍ରଭାବିତ କରିଛନ୍ତି । ବିନା କାରଣରେ ନଡ଼ିଆଗଛରେ ଲଙ୍ଗଳ ଦଉଡ଼ିରେ ବାନ୍ଧାହୋଇ ମାଡ଼ଖାଇଥିବା ଧରମା ଭୋଗ ହରିମିଶ୍ରଙ୍କ ବେକପାଇଁ ଚୁଆସିନ୍ଦୂର ଦିଆ କଟୁରୀ ସଜାଡ଼ିଲା ବେଳକୁ ବରଜୁ ପଧାନ ତାକୁ କୁଣ୍ଢେଇ ଧରି ଅହିଂସ ପ୍ରତିବାଦର ମନ୍ତ୍ର ଶୁଣାଉଛି । ସେଇ ନୀତିରେ ବରଜୁ ଘରଛାଡ଼ି ଚାଲିଯାଉଛି । ମଣିଷର ଶୁଭବୁଦ୍ଧି ଉପରେ ଲେଖକଙ୍କର ତଥାପି ଅତୁଟ ଭରସା ରହିଛି । ସେଇ ମଣିଷର ସ୍ନେହ, ପ୍ରେମ, ମାଧୁର୍ଯ୍ୟ, କୋମଳତା ଏବଂ ବନ୍ଧୁତାର ସ୍ୱର୍ଗୀୟ ଚେତନା ତାଙ୍କର ହୃଦୟକୁ ପୂର୍ଣ୍ଣ କରି ରଖିଛି । 'ଅମର ଚିତା', 'ମୁକ୍ତାଗଡ଼ର କ୍ଷୁଧା' ପ୍ରଭୃତି ଉପନ୍ୟାସରେ ମଣିଷର ହୃଦୟ ପରିବର୍ତ୍ତନର ଚିତ୍ର – ଅତ୍ୟାଚାରୀ ବୁର୍ଜୁଆ ଗୋଷ୍ଠୀର ଅନୁତାପ ଜନିତ ଜନସେବାରେ ଆତ୍ମ ନିୟୋଗ ମାଧ୍ୟମରେ ବର୍ଣ୍ଣିତ ହୋଇଛି । ତା'ର ଅର୍ଥ ହେଉଛି, ଚାଳିଶ ଦଶକ ପର୍ଯ୍ୟନ୍ତ ଆଦର୍ଶର ମୋହଭଙ୍ଗ ହୋଇନାହିଁ । ତାହା ହେବାକୁ ଆହୁରି ସମୟ ଲାଗିଛି । ସେଇ ସମୟ ଆସିଛି ଅନେକ ପରେ । ଏଇଠୁ ଆରମ୍ଭ ହେଉଛି ଲେଖକଙ୍କ ଜୀବନର ଦ୍ୱିତୀୟ ପର୍ଯ୍ୟାୟ – ମୋହଭଙ୍ଗର ପର୍ଯ୍ୟାୟ । ତାରୁଣ୍ୟର ସ୍ୱପ୍ନାଛନ୍ନତା ବଦଳରେ ପରିଣତ ଚିନ୍ତାର ବାସ୍ତବିକତା ଏଥର ଲେଖକଙ୍କର ଚିନ୍ତାରାଜ୍ୟକୁ ଗ୍ରସ୍ତ କରିଛି । ୧୯୨୦ରୁ ୧୯୩୧ – ଏହି କାଳରେ ପ୍ରଥମ ମହାଯୁଦ୍ଧ ପରବର୍ତ୍ତୀ ପୃଥିବୀର ରୁଗ୍ଣ ମାନସିକତା ଭିତରୁ ତଥାପି ଅମୃତର ସନ୍ଧାନ କରିବା ହୋଇଛି ଲେଖକଙ୍କର ଧ୍ୟେୟ । 'ମାଟିର ମଣିଷ' ହେଉଛି ଏହାର ଜ୍ୱଳନ୍ତ ଦୃଷ୍ଟାନ୍ତ । କାଳିନ୍ଦୀଚରଣ କୌଣସି ରାଜନୈତିକ ଗୋଷ୍ଠୀର ସମର୍ଥକ ଥିବାର ଜଣାନାହିଁ । ତେବେ ଦେଶର ରାଜନୈତିକ ସ୍ଥିତି ତାଙ୍କୁ ନିଶ୍ଚୟ ପ୍ରଭାବିତ କରିଥିଲା । ମାନବବାଦୀ ଭିତ୍ତିକ ଗାନ୍ଧି ଆଦର୍ଶ ତାଙ୍କ ଲେଖକସତ୍ତାକୁ ପ୍ରଥମ ପର୍ଯ୍ୟାୟରେ କିଭଳି ମୋହଗ୍ରସ୍ତ କରିଥିଲା, ତାହା ଇତି ପୂର୍ବରୁ ସୂଚିତ ହୋଇଛି । ପ୍ରଥମ ପର୍ଯ୍ୟାୟରେ କବି କାଳିନ୍ଦୀଚରଣ ତାରୁଣ୍ୟ ହେତୁକ, ରୋମାଣ୍ଟିକ୍ ଆଦର୍ଶ ଦ୍ୱାରା କିଭଳି ଗ୍ରସ୍ତ ହୋଇଥିଲେ, ତାହା ମଧ୍ୟ କୁହାଯାଇଛି । 'ଆଗାମୀ' ରଚିତ ହେଲାବେଳକୁ କବି ମନୀଷୀର ସ୍ପଷ୍ଟ ଉତ୍ତରଣ ଆଖିରେ

ପଡ଼େ । ଯାହାହେଉ ରୋମାଣ୍ଟିକ୍ ଭାବାଦର୍ଶ ଏବଂ ବାସ୍ତବବାଦୀ ଚେତନା – ତାଙ୍କର କବିସତ୍ତା ମଧ୍ୟରେ କୌଣସି ଦ୍ୱନ୍ଦ୍ୱ ନ ଘଟାଇ ବରଂ ଏ ଉଭୟର ସହାବସ୍ଥାନ ସେଠାରେ ଲକ୍ଷ୍ୟଣୀୟ ହୋଇଛି । ଜୀବନ ଓ ଜଗତ ପ୍ରତି ଏକ ନୈର୍ବ୍ୟକ୍ତିକ ବିଷଣ୍ଣ ମାନସିକତା ପୋଷଣ ହେଉଛି ରୋମାଣ୍ଟିକ୍ କବିସତ୍ତାର ଲକ୍ଷଣ । କାଳିନ୍ଦୀଚରଣ ଯେତେବେଳେ ଏହି ଚେତନାରୁ ତଥାପି ସମ୍ପୂର୍ଣ୍ଣ ଭାବରେ ମୁକ୍ତିଲାଭ କରିନାହାନ୍ତି, ତିନୋଟିଯାକ ନାଟକ ସେତିକିବେଳର ଲେଖା । ୧୯୩୨ରୁ ଆରମ୍ଭ କରି ୧୯୩୪ ମଧ୍ୟରେ ଅର୍ଥାତ୍ ସବୁଜ ଯୁଗର ପ୍ରଭାବ କାଳରେ ହିଁ ଏହାର ସୃଷ୍ଟି । ବାସ୍ତବତା ଆଡ଼କୁ ଆକର୍ଷଣ ରହିଛି; କିନ୍ତୁ ରୋମାଣ୍ଟିକ୍ ଆଦର୍ଶ ହିଁ କବିସତ୍ତାର ନିୟାମକ ହୋଇଛି । 'ମାଟିର ମଣିଷ' ହେଉଛି ଏହାର ଦୃଷ୍ଟାନ୍ତ ।

'ସୌମ୍ୟା' – ଏ ଦେଶର ବଂଚିତା ନାରୀର ଅସହାୟତାର ଆତ୍ମଲିପି । ପୁରୁଷର ଖିଆଲ ହିଁ ଯାହାର ଜୀବନକୁ ନିୟନ୍ତ୍ରଣ କରିଥାଏ । ଭାଗ୍ୟବାଦୀ ମଣିଷ ଏହି ସ୍ଥିତିରୁ ମୁକ୍ତି ପାଇବା ପାଇଁ ସତେ ଯେପରି ଉଦ୍ୟମ କରେ ନାହିଁ । ଯାହା ଘଟିବାର ଘଟିବ – ଏଇ ମନୋଭାବ ନେଇ ଜୀବନ ପଥରେ ଆଗାଏ । ପଦକ୍ଷେପ କୁଣ୍ଠିତ – ମନୋଜଗତ ବିଷଣ୍ଣ – କେତେବେଳେ କ'ଣ ଘଟିବ, ଏଇ ଆଶଙ୍କାରେ ମନ ଖୋଲି ହସିବା ମଧ୍ୟ ସମ୍ଭବ ହୁଏ ନାହିଁ । ଜୀବନ ସରିଯାଏ । 'ସୌମ୍ୟା' ନାଟିକାରେ ଏଇଭଳି ଏକ ବିଷଣ୍ଣ ମାନସିକତାର ସ୍ପର୍ଶ ମିଳେ । ଏହା ରୋମାଣ୍ଟିକ୍ ଭାବାଳୁତାର ନିଦର୍ଶନ ହୋଇପାରେ । ତେବେ 'ପଦ୍ମିନୀ' ନାଟିକାରେ ନାରୀର ଏକ ସ୍ୱତନ୍ତ୍ରରୂପ ଆମେ ଦେଖିବାକୁ ପାଉଁ । ସେଠି ସେ ପରିସ୍ଥିତି ଦ୍ୱାରା ନିୟନ୍ତ୍ରିତ ନୁହେଁ, ବରଂ ଦୃଢ଼ହସ୍ତରେ ଆପେ ପରିସ୍ଥିତିର ଲଗାମ୍ ଧରି ବସେ । ତାକୁ ଆୟତ୍ତରେ ରଖିବା ପାଇଁ ଚେଷ୍ଟା କରେ । ସେଥିରେ ତାକୁ ସଫଳତା ମିଳେ କିମ୍ୱା ନାହିଁ, ତାହା ସ୍ୱତନ୍ତ୍ର କଥା । ତେବେ ନିଜେ ନିୟନ୍ତା ହେବା ପାଇଁ ତାକୁ ଯେଉଁ ପ୍ରଚଣ୍ଡ ସଂଘର୍ଷ କରିବାକୁ ପଡ଼େ, ତହିଁରେ ଜୀବନର ସମସ୍ତ ସରସତା ଉଭେଇ ଯାଏ । ତାହା ହୋଇଯାଏ, ଯନ୍ତ୍ରଣାର - ପକ୍ଷାନ୍ତରେ ବିଷଣ୍ଣତାର ଏକ ଚରାଭୂଇଁ । ତୃତୀୟ ନାଟକ 'ପ୍ରିୟଦର୍ଶୀ'ର ଅବଲମ୍ୱନ ଇତିହାସ । ପରିବର୍ତ୍ତନର ଯେଉଁ ବିବରଣୀ ଇତିହାସ ସମର୍ଥିତ, ତାହାର ସମର୍ଥନ ନିମନ୍ତେ ନାଟ୍ୟକାର ଆଉ ଯେତେଗୁଡ଼ିଏ ଉପକାହାଣୀର କଳ୍ପନା କରିଛନ୍ତି, ସେଥିରେ ମଧ୍ୟ ସେହି ଗୋଟିଏ ପ୍ରକାର ରୋମାଣ୍ଟିକ୍ ବିଷଣ୍ଣତା କାମ କରିଛି । ଜୟପାଳ-ସଙ୍ଘମିତ୍ରା, ଗଣଭଟ୍ଟ-ନୀହାରିକା – ଏ ଉଭୟ ବୃତ୍ତାନ୍ତ ପଛରେ ରୋମାଣ୍ଟିକ୍ ଆବେଗ ହିଁ କାର୍ଯ୍ୟକାରୀ ହୋଇଛି । ନାଟକର ମୁଖ୍ୟ ସ୍ୱର ହେଉଛି ବିଷାଦ – ତେଣୁ ଏହାର ନାୟକ ଅଶୋକ ପ୍ରଥମରୁ ହିଁ ଜଣେ ସ୍ୱେଚ୍ଛାଚାରୀ, ମାନବବିଦ୍ୱେଷୀ, ବିଷାଦବାଦୀ ଚରିତ୍ର ରୂପରେ ଆବିର୍ଭୂତ ହୋଇଛନ୍ତି । ତାଙ୍କ ଅମଳରେ ଶାସନ କିମ୍ୱା ଶାସକଙ୍କ ସମ୍ପର୍କରେ ରାସ୍ତାଘାଟରେ କିଛି ମନ୍ତବ୍ୟ ଦେବା କିମ୍ୱା ଆଲୋଚନା କରିବାକୁ ନିଷେଧ କରିଦିଆଯାଇଛି । ଅଶୋକ ସମଗ୍ର ରାଜ୍ୟରେ ସତେ ଯେମିତି ଭୟ ଓ

ତ୍ରାସର ଏକ ଭୟଙ୍କର ବାତାବରଣ ସୃଷ୍ଟି କରିବା ନିମନ୍ତେ ବଦ୍ଧପରିକର । ପ୍ରଥମ ଦୃଶ୍ୟରେ ଦେଖିବାକୁ ମିଳେ ବିନାକାରଣରେ କଟୁଆଳ ଧର୍ମପାଳ, ସୋମନାଥ ଏବଂ ଜଣେ ଭିକାରିକୁ ବାନ୍ଧି ନେଉଛି । ଏହି ଦୃଶ୍ୟରେ ମୂକ ବାଳକ ଏବଂ ଖଞ୍ଜ ଭିକ୍ଷୁକ – ଏ ଦୁଇ ପ୍ରତୀକାତ୍ମକ ଚରିତ୍ର ସାହାଯ୍ୟରେ ହୁଏତ ନାଟ୍ୟକାର ସ୍ୱେଚ୍ଛାଚାରୀ ଶାସନରେ ସାଧାରଣ ଜନତାର ପଙ୍ଗୁତ୍ୱ ଏବଂ ମୌନତ୍ୱ ସମ୍ପର୍କରେ ସୂଚନା ଦେବାକୁ ଚାହିଁଛନ୍ତି । ଯାହା ହେଉ, ଆମୂଳ ଏକ ବିଷଣ୍ଣତା – ଏକ ଟ୍ରାଜିକ୍ ଚେତନା ସମଗ୍ର ନାଟକଟିକୁ ଘୋଡ଼ାଇ ରଖିଛି – ଏକଥା ଏହାର ବିଷୟ ବିନ୍ୟାସ, ଘଟଣା ଓ ଚରିତ୍ର ପରିକଳ୍ପନାରୁ ଅତ୍ୟନ୍ତ ସ୍ପଷ୍ଟ ହୋଇଥାଏ । ଚତୁର୍ଥ 'ସୁଦୂର ସଙ୍କେତ' ନାଟକ ସମ୍ପର୍କରେ ମଧ୍ୟ ଏଇ କଥା କୁହାଯାଇ ପାରିବ ଏବଂ ସିଦ୍ଧାନ୍ତ କରାଯାଇ ପାରିବ ଯେ, ଗୋଟିଏ କେନ୍ଦ୍ରୀୟ ଭାବ ବଳୟ ମଧ୍ୟରେ ଏ ଚାରୋଟିଯାକ ନାଟକ ଆବଦ୍ଧ ।

ପ୍ରଥମ ତିନୋଟିଯାକ ନାଟକ ପ୍ରାୟ ପାଖାପାଖି ସମୟରେ ରଚିତ (୧୯୩୨-୩୪) । ତେଣୁ ଏହି ସମୟରେ କାଳିନ୍ଦୀଚରଣଙ୍କର ମାନସିକତା ପ୍ରାୟ ଏକା ଭଳି ରହିଥିବା ସମ୍ଭବପର । ଯୁଦ୍ଧୋତ୍ତର କାଳର ପରିସ୍ଥିତି ତଥା ତାରୁଣ୍ୟର ସ୍ୱପ୍ନମୟତା – ଏ ଉଭୟର ସମନ୍ୱୟରେ ତାଙ୍କର ମାନସିକତା ନିର୍ମିତ ହୋଇଛି । ନାଟକ ତିନୋଟିରେ ସଂଘର୍ଷର ଏକ ପାରମ୍ପରିକ ରୂପ ହିଁ ଆମେ ଦେଖିବାକୁ ପାଉଁ – ଯେଉଁଥିରେ ପ୍ରବଳ ହିଁ ସବୁବେଳେ ବିଜୟୀ ହୁଏ । ଆଦର୍ଶବାଦୀମାନେ ତାକୁ ଶକ୍ତିଶାଳୀ ପକ୍ଷର ପରାଜୟ କହିପାରନ୍ତି, ମାତ୍ର ବାସ୍ତବ ଦୃଷ୍ଟିକୋଣରୁ ଦୁନିଆ ଯେ କାଳେ କାଳେ ଶକ୍ତିର ଭକ୍ତ, ତାହା ଏହି ସବୁ ନାଟକରେ ଦେଖାଇ ଦିଆଯାଇଛି । କ୍ଷମତା ହିଁ ଯୁଗେ ଯୁଗେ ବିଜୟୀ ହୋଇଥାଏ । ନାଟ୍ୟକାର ନାଟକଗୁଡ଼ିକରେ ଏଇ ବିଶ୍ୱାସର ପ୍ରତିଫଳନ ଘଟାଇଛନ୍ତି ଏବଂ କ୍ଷମତା ଆହରଣ ତଥା ଅଧିକାର ପ୍ରତିଷ୍ଠାର ପଥ ସର୍ବଦା ଦ୍ୱନ୍ଦ୍ୱପୂର୍ଣ୍ଣ ହୋଇଥିବାରୁ ତଥା ପରିଣାମରେ ଏହା ଦୁଃଖାତ୍ମକ ହୋଇଥିବାରୁ ନାଟକଗୁଡ଼ିକ ସ୍ୱାଭାବିକ ରୀତିରେ ଦୁଃଖାନ୍ତ ହୋଇଛି । ପରିଣତ ତାରୁଣ୍ୟରେ ଲେଖକଙ୍କର ଜୀବନ ସମ୍ପର୍କୀୟ ଅନୁଭବ ହେଉଛି, ଜୀବନ ନାମକ ବୃକ୍ଷ ସବୁବେଳେ ଦୁଃଖ ନାମକ ଫୁଲରେ ଭରି ରହିଥାଏ । ଫୁଲ ଫୁଟାଇବା ଯେପରି ବୃକ୍ଷର ଧର୍ମ, ଜୀବନ ଧାରାରେ ଦୁଃଖର ପ୍ରକାଶ ମଧ୍ୟ ସେହିଭଳି ସ୍ୱାଭାବିକ ସତ୍ୟ । ତା'ରି ଭିତରେ ଛୋଟ ଛୋଟ ସୁଖର ଆତ୍ମପ୍ରକାଶ । ତାକୁ ଅନୁଭବ କରିବା ପୂର୍ବରୁ ସେ ଉଭେଇ ଯାଏ, ଠିକ୍ ଆକାଶ କୁସୁମ ଭଳି ।

କାଳିନ୍ଦୀଚରଣ ଶକ୍ତିଧର ଶିଳ୍ପୀ । 'ପୁରୀମନ୍ଦିର', 'ଗାନ୍ଧାରୀର ଆଶୀର୍ବାଦ', 'ଯାଦୁଘର', 'କିଏ ଶଳା ସଇତାନ୍', 'ହସେ ପାହାନ୍ତି ତାରା', 'ପାଶୋରି ଦେଲିରେ ଶିମୁଳିପାଳ' ପ୍ରଭୃତି କବିତାରେ କବିଙ୍କ ନିମନ୍ତେ ଏକ ଆବେଗିକ ଦୁର୍ବଳତା ଆମର ଚିରକାଳ ରହିବ । ବିଶ୍ୱର ନିର୍ଯ୍ୟାତିତ ଜନତାର ସମବ୍ୟଥୀ ରୂପରେ ଯେଉଁ କବି ଲେଖନୀରୁ ପ୍ରକାଶ ପାଏ –

''ବିଶ୍ୱର ଶତ କ୍ଷତେ, ବ୍ୟଥିତ ବଧୀର
ଏ ମରମୁ ଗଳେ ଚିର, ଲୋହିତ ରୁଧିର ।'' (ଚିରନ୍ତନ କୁହୁ)

ତାହା ମାନବଦରଦୀ ଭୀମ ଭୋଇଙ୍କର ସେଇ ବିଶ୍ୱ ପ୍ରସିଦ୍ଧ ଉକ୍ତି, ''ମୋ ଜୀବନ ପଛେ ନର୍କେ ପଡ଼ିଥାଉ''ଠାରୁ କେତେଦୂର ? କିମ୍ବା ମାୟାକୋଭସ୍କିଙ୍କର "Where ever pain is there × × I myself am crucified."ଠାରୁ କେତେ ସ୍ୱତନ୍ତ୍ର ? କଥାକାର ରୂପରେ, କବି ରୂପରେ ଏଭଳିକି ପ୍ରାବନ୍ଧିକ ରୂପରେ ତାଙ୍କର ଅବଦାନକୁ ଅସ୍ୱୀକାର କରି ହେବ ନାହିଁ । ''ଦିନେ ରୂପ ଓ ସୌନ୍ଦର୍ଯ୍ୟରେ ଚକିତ ସ୍ୱପ୍ନାବିଷ୍ଟ ପରିବେଶିତ ଥିଲା କାଳିନ୍ଦୀଚରଣଙ୍କ କବି ମନର ଅନୁକୂଳ ପରିବେଶ । କିନ୍ତୁ ପ୍ରଗତି ପର୍ବରେ ସେ ଅଭିଜାତ ଜୀବନ × କବିତାକୁ ମୁକ୍ତ କରି ସାଧାରଣ ମଣିଷର ଚଳମାନ ଜୀବନ ସ୍ରୋତ × ସହିତ × × ତାହାକୁ ଯୋଡ଼ିଦେଲେ × × ବାସ୍ତବ ଜୀବନ କ୍ଷେତ୍ରରେ ଚଳପ୍ରଚଳ ହେଲେ'' (କାଳିନ୍ଦୀଚରଣଙ୍କ କବି ମାନସ : ଦାଶରଥି ଦାସ) । ଏଇ ଉତ୍ତରଣ କଥା ସାହିତ୍ୟ ଓ କାବ୍ୟ କବିତା କ୍ଷେତ୍ରରେ ଘଟିଛି । ମାତ୍ର ନାଟକ କ୍ଷେତ୍ରରେ ବିସ୍ତୃତ ନ ହୋଇ ଗୋଟିଏ ବିନ୍ଦୁରେ ହିଁ ଠିଆ ହୋଇ ରହିଛି ।



# କାଳିନ୍ଦୀଚରଣଙ୍କ ଶିଶୁ ସାହିତ୍ୟ

ଡକ୍ଟର ମହେଶ୍ୱର ମହାନ୍ତି

ଆଧୁନିକ ଓଡ଼ିଆ ଶିଶୁ ସାହିତ୍ୟର ଇତିହାସ ଆଲୋଚନା କରିବାକୁ ଗଲାବେଳେ ଊନବିଂଶ ଶତାବ୍ଦୀ ଏବଂ ତତ୍‌ସହିତ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧର ପାଠ୍ୟପୁସ୍ତକ ଆନ୍ଦୋଳନର ଇତିହାସକୁ ଅବଶ୍ୟ ବିଚାରକୁ ନେବାକୁ ହେବ । କାରଣ ଊନବିଂଶ ଶତାବ୍ଦୀର ଭର୍ଣ୍ଣାକୁଲାର ପାଠ୍ୟପୁସ୍ତକ ମଧ୍ୟରେ ଓଡ଼ିଆ ଶିଶୁସାହିତ୍ୟର ଯେଉଁ ଭ୍ରୂଣ ସଞ୍ଚାର ହୋଇଥିଲା, ବିଂଶ ଶତାବ୍ଦୀର ପ୍ରଥମ ଭାଗର ପାଠ୍ୟପୁସ୍ତକ ମଧ୍ୟରେ ତାହା ଏକ ନିର୍ଦ୍ଦିଷ୍ଟ ରୂପ ଗ୍ରହଣ କରିବାକୁ ଆରମ୍ଭ କରିଥିଲା । ଆଧୁନିକ ଇଂରାଜୀ ଶିକ୍ଷାର ପ୍ରସାର ପୂର୍ବରୁ ଭାରତର କୌଣସି ପ୍ରାନ୍ତୀୟ ଭାଷାରେ ଶିଶୁ ସାହିତ୍ୟର ସଂଜ୍ଞା, ସ୍ୱରୂପ ନିର୍ଦ୍ଧାରଣ କରଯାଇ ନଥିଲା । ଗ୍ରାମ ଚାଟଶାଳୀରେ ଶିଶୁମାନେ ଯାହାକିଛି ଅଧ୍ୟୟନ କରୁଥିଲେ, ସେ ସବୁଗୁଡ଼ିକ ଶିଶୁର ମନସ୍ତାତ୍ତ୍ୱିକତା ଉପରେ ଆଧାରିତ ନଥିଲା । ଇଂରାଜୀ ପ୍ରଭାବିତ ଆଧୁନିକ ଧରଣର ସ୍କୁଲମାନ ପ୍ରତିଷ୍ଠା କରାଯିବା ପରେ ଶିଶୁର ମନସ୍ତତ୍ତ୍ୱ ତଥା ତା'ର ଉପଯୋଗିତାକୁ ବିଚାରକୁ ନେଇ ଭର୍ଣ୍ଣାକୁଲାର ପାଠ୍ୟପୁସ୍ତକମାନ ପ୍ରଣୀତ ହେଲା । ଏ ଦିଗରେ ନେତୃତ୍ୱ ନେଇଥିଲେ କଲିକତା ସ୍କୁଲ ବୁକ୍ ସୋସାଇଟି । ସ୍କୁଲ ବୁକ୍ ସୋସାଇଟି ଦ୍ୱାରା ପାଠ୍ୟପୁସ୍ତକର ମଡ଼େଲ ତିଆରି କରାଯାଇ, ସେହି ଅନୁସାରେ ପ୍ରାଦେଶିକ ଭାଷାର ପାଠ୍ୟପୁସ୍ତକମାନ ପ୍ରଣୀତ ହେଉଥିଲା ।

ଊନବିଂଶ ଶତାବ୍ଦୀର ପାଠ୍ୟପୁସ୍ତକ ପ୍ରଣେତାମାନଙ୍କ ମଧ୍ୟରେ ମଧୁସୂଦନ ରାଓ, ରାଧାନାଥ ରାୟ, ଗୋବିନ୍ଦ ରଥ, ଗୋବିନ୍ଦ ଚନ୍ଦ୍ର ଶର୍ମା, ଚତୁର୍ଭୁଜ ପଟ୍ଟନାୟକ, ବିଚ୍ଛନ୍ଦ ଚରଣ ପଟ୍ଟନାୟକ, ଚନ୍ଦ୍ରନାଥ ରାୟ ଏବଂ କପିଳେଶ୍ୱର ବିଦ୍ୟାଭୂଷଣ ପ୍ରଭୃତି ଥିଲେ ଅଗ୍ରଗଣ୍ୟ । ସେମାନଙ୍କ ମଧ୍ୟରେ ମଧୁସୂଦନ ରାଓ ଥିଲେ ସର୍ବାଧିକ ଲୋକପ୍ରିୟ । ତାଙ୍କ ରଚିତ ସାହିତ୍ୟ କୁସୁମ ଓ ସାହିତ୍ୟ ପ୍ରସଙ୍ଗ ପୁସ୍ତକ ଦୁଇଟି ବିଦ୍ୟାଳୟମାନଙ୍କରେ ବହୁଦିନ ପର୍ଯ୍ୟନ୍ତ ପ୍ରଚଳିତ ଥିଲା । ଏବେ ମଧ୍ୟ ପାଠ୍ୟପୁସ୍ତକ ଲେଖକମାନଙ୍କ ସମ୍ମୁଖରେ ସେ ଦୁଇଟି ମଡ଼େଲ ଭାବରେ ବିଦ୍ୟମାନ । ବିଂଶ ଶତାବ୍ଦୀର ଆଦ୍ୟଭାଗରେ ଏ କ୍ଷେତ୍ରରେ ଯେଉଁମାନେ ଲୋକପ୍ରିୟତା ଅର୍ଜନ କରିଥିଲେ ଏବଂ ପରବର୍ତ୍ତୀ କାଳରେ ଶିଶୁ ସାହିତ୍ୟ ନିମନ୍ତେ ଭିତ୍ତି ସ୍ଥାପନ କରିଥିଲେ, ସେମାନେ ହେଲେ ଚନ୍ଦ୍ର ମୋହନ ମହରାଣା, ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ବାଳକୃଷ୍ଣ

କର, ବାସୁଦେବ ମହାପାତ୍ର, ବୀର କିଶୋର ଦାସ, କାଳୀ ଚରଣ ପଟ୍ଟନାୟକ, ଗୋଦାବରୀଶ ମହାପାତ୍ର, କାଳିନ୍ଦୀଚରଣ ପାଣିଗ୍ରାହୀ, ରାମକୃଷ୍ଣ ନନ୍ଦ, କୃଷ୍ଣଚନ୍ଦ୍ର କର, ଉପେନ୍ଦ୍ର ନାଥ ଦାସ, ଡମ୍ବରୁଧର ପରିଡ଼ା, ବାଇଧର ପାଠୀ, ବାମନ ଚରଣ ମିଶ୍ର ଓ ଜୟକୃଷ୍ଣ ସାହୁ ଇତ୍ୟାଦି । ଏମାନଙ୍କ ମଧ୍ୟରେ କାଳିନ୍ଦୀଚରଣ ପାଣିଗ୍ରାହୀ ଓ ରାମକୃଷ୍ଣ ନନ୍ଦ ବିଂଶ ଶତାବ୍ଦୀର ଚତୁର୍ଥ ଓ ପଞ୍ଚମ ଦଶକରେ ବେଶ୍ ଲୋକପ୍ରିୟ ଥିଲେ; କାରଣ ପାଠ୍ୟ ପୁସ୍ତକ ରଚନା କ୍ଷେତ୍ରରେ ଏ ଦୁହିଁଙ୍କର ସାଫଲ୍ୟ ଥିଲା ଅପେକ୍ଷାକୃତ ଅଧିକ । ଏମାନେ ମୁଖ୍ୟତଃ ପାଠ୍ୟପୁସ୍ତକ ରଚୟିତା ହେଲେ ମଧ୍ୟ ଶିଶୁ ସାହିତ୍ୟ ପ୍ରତି ଏମାନଙ୍କର ଅବଦାନକୁ ଅସ୍ୱୀକାର କରିହୁଏ ନାହିଁ ।

କାଳିନ୍ଦୀ ବାବୁ ନବସାହିତ୍ୟ ପ୍ରଥମ ଭାଗ, ନବସାହିତ୍ୟ ଦ୍ୱିତୀୟ ଭାଗ, ସୁନ୍ଦର ସାହିତ୍ୟ ଓ ସାହିତ୍ୟ ସମ୍ପଦ ପ୍ରଭୃତି କେତେଖଣ୍ଡ ପାଠ୍ୟପୁସ୍ତକ ରଚନା କରିଥିଲେ । ଗଳ୍ପ, ଉପନ୍ୟାସ ଓ କବିତା ରଚନା କ୍ଷେତ୍ରରେ ସେ ଯେପରି ଯଶସ୍ୱୀ, ପାଠ୍ୟ ପୁସ୍ତକ ରଚନା କ୍ଷେତ୍ରରେ ମଧ୍ୟ ସେ ସେଇଭଳି ଜଣେ ସଫଳ ସ୍ରଷ୍ଟା । ଶିଶୁ ସାହିତ୍ୟର ବିକାଶ ଦିଗରେ ସେ ସଚେତନ ଭାବରେ କିଛି ସୃଷ୍ଟି କରିନଥିଲେ ମଧ୍ୟ, ତାଙ୍କ ତିନିଖଣ୍ଡି ପାଠ୍ୟ ପୁସ୍ତକକୁ ବିଚାରକୁ ନେଲେ ଶିଶୁ ସାହିତ୍ୟର ଇତିହାସରେ ସେ ନିଶ୍ଚେ ସ୍ମରଣୀୟ ହୋଇ ରହିବେ; କାରଣ ଆଧୁନିକ ଶିଶୁ ସାହିତ୍ୟ ପାଠ୍ୟପୁସ୍ତକର ଗଣ୍ଡି ମଧ୍ୟରୁ ଅଙ୍କୁରିତ ହୋଇଥିବାରୁ ସେ କାଳର ପାଠ୍ୟପୁସ୍ତକ ଏବଂ ତା'ର ପ୍ରଣେତାମାନଙ୍କୁ ଅବଜ୍ଞା କରାଯାଇପାରିବ ନାହିଁ । ଏହି କାରଣରୁ ବହୁ ପ୍ରତିଷ୍ଠିତ ଲେଖକ ସେତେବେଳେ ଏ ଦିଗରେ ଲେଖନୀ ଚାଳନା କରିଥିଲେ ।

କାଳିନ୍ଦୀ ବାବୁ ନିଜର ପାରିବାରିକ ଅବସ୍ଥା ଏବଂ ଆବଶ୍ୟକତା ଦୃଷ୍ଟିରୁ ପାଠ୍ୟପୁସ୍ତକ ରଚନା ଦିଗରେ ମନୋନିବେଶ କରିଥିଲେ । ସେ ନିଜର ଆତ୍ମଜୀବନୀରେ ଲେଖିଛନ୍ତି ଯେ ୧୯୪୦ ବେଳକୁ ସେ ଏ କ୍ଷେତ୍ରରେ ପ୍ରବେଶ କରି ବେଶ୍ କିଛି ଅର୍ଥ ଉପାର୍ଜନ କରିଥିଲେ । ଏହି ଅର୍ଥ ତାଙ୍କର ଅର୍ଥକଷ୍ଟକୁ ବହୁଭାବରେ ଲାଘବ କରିଥିଲା । କାରଣ ଏକ ସମୟରେ ତାଙ୍କର କୌଣସି ନିର୍ଦ୍ଦିଷ୍ଟ ଆୟର ପନ୍ଥା ନଥିଲା ।

ନବସାହିତ୍ୟ ଓ ସୁନ୍ଦର ସାହିତ୍ୟ ହେଉଛି କାଳିନ୍ଦୀଚରଣଙ୍କର ସ୍ୱାଧୀନତାର ଅବ୍ୟବହିତ କାଳର ରଚନା । ଉନବିଂଶ ଶତାବ୍ଦୀର ଶେଷ ଭାଗରେ କଲିକତା ସ୍କୁଲ ବୁକ୍ ସୋସାଇଟି ପାଠ୍ୟପୁସ୍ତକର ଯେଉଁ ମଡ଼େଲ ପ୍ରସ୍ତୁତ କରିଥିଲେ, ସେହି ଅନୁସାରେ ଭର୍ଣ୍ଣାକୁଲାର ପାଠ୍ୟପୁସ୍ତକ ଗୁଡ଼ିକ ପ୍ରସ୍ତୁତ ହେଉଥିଲା । ୧୯୩୭ ମସିହା ପର୍ଯ୍ୟନ୍ତ ଏହି ଢାଞ୍ଚା ଚାଲୁ ରହିଥିଲା । ୧୯୩୭ ମସିହା ଅକ୍ଟୋବର ମାସରେ ୱାର୍ଦ୍ଧାଠାରେ ମହାତ୍ମାଗାନ୍ଧୀଙ୍କ ଅଧ୍ୟକ୍ଷତାରେ ପ୍ରଥମକରି ଏକ ଜାତୀୟ ଶିକ୍ଷା ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏହି ସମ୍ମିଳନୀର ଆଲୋଚନା ପରେ ଡଃ ଜାକିର୍ ହୁସେନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ କମିଟି ପ୍ରାଥମିକ ଶିକ୍ଷା

ସମ୍ପର୍କରେ ଏକ ରିପୋର୍ଟ ପ୍ରସ୍ତୁତ କରିଥିଲେ । ଏହା ୱାର୍ଦ୍ଧା କମିଟି ରିପୋର୍ଟ ନାମରେ ପରିଚିତ । ଏଥିରେ ମୌଳିକ ଶିକ୍ଷା ଓ କର୍ମଭିତ୍ତିକ ଶିକ୍ଷା ଉପରେ ଗୁରୁତ୍ୱ ଆରୋପ କରି ସେ ଦିଗରେ କେତୋଟି ସୁଚିନ୍ତିତ ପରାମର୍ଶ ଦିଆଯାଇଥିଲା । ବସ୍ତୁତଃ ୧୯୩୮ ବା ତତ୍ ପରବର୍ତ୍ତୀ କାଳରେ ରଚିତ ପାଠ୍ୟପୁସ୍ତକ ଗୁଡ଼ିକର ଢାଞ୍ଚା ଏହି ଅନୁସାରେ କିଛି ପରିବର୍ତ୍ତନ ଘଟିଥିଲା । ୱାର୍ଦ୍ଧା କମିଟି ରିପୋର୍ଟରେ ଜାତୀୟବାଦୀ ଭାବନା, ନୀତିଶିକ୍ଷା, ଶ୍ରମର ମର୍ଯ୍ୟାଦା ଓ ବିଶିଷ୍ଟ ମନୀଷୀମାନଙ୍କର ଜୀବନୀପାଠ ଉପରେ ମଧ୍ୟ ପ୍ରାଧାନ୍ୟ ଦିଆଯାଇଥିଲା । ଯଦିଓ ୧୯୨୦ ବେଳକୁ ଅସହଯୋଗ ଆନ୍ଦୋଳନ ପରିପ୍ରେକ୍ଷୀରେ ଜୀବନୀ ସାହିତ୍ୟ ପ୍ରଣୟନ ଓ ଅଧ୍ୟୟନ ଉପରେ ଗୁରୁତ୍ୱ ଆରୋପ କରାଯାଇଥିଲା, ୱାର୍ଦ୍ଧା କମିଟି ରିପୋର୍ଟରେ ଏହାର ପୁନରାବୃତ୍ତି କରାଯାଇଥିଲା । ଭର୍ଣ୍ଣାକୁଲାର ପାଠ୍ୟପୁସ୍ତକମାନଙ୍କରେ ଏହି କାରଣରୁ ଅନ୍ୟାନ୍ୟ ବିଷୟ ସହିତ ଛାତ୍ରମାନଙ୍କୁ ଭାରତୀୟ ତଥା ବିଦେଶୀ ମନୀଷୀମାନଙ୍କର ଜୀବନୀ ବିଷୟରେ ଅବଗତ କରାଯାଉଥିଲା ।

କାଳିନ୍ଦୀଚରଣ ତାଙ୍କ ନବ ସାହିତ୍ୟ ପୁସ୍ତକରେ ଯେଉଁ କେତେଜଣ ମନୀଷୀଙ୍କର ଜୀବନୀର ଅବତାରଣା କରିଥିଲେ, ସେମାନେ ହେଲେ କଲିକତା ହାଇକୋର୍ଟର ପ୍ରଧାନ ବିଚାରପତି ତଥା ଏସିଆଟିକ୍ ସୋସାଇଟିର ପ୍ରତିଷ୍ଠାତା ସାର୍ ୱିଲିୟମ୍ ଜୋନ୍‌ସ୍, ଜାତୀୟ ଭାବାପନ୍ନ କବିତା 'ସାରେ ଜାହାଁ ସେ ଆଚ୍ଛା ହିନ୍ଦୁସ୍ତାଁ ହମାରା'ର ଲେଖକ ସାର୍ ଅହମ୍ମଦ ଇକୱାଲ୍, ସ୍ୱାଧୀନତା ସଂଗ୍ରାମୀ ଗୋପାଳକୃଷ୍ଣ ଗୋଖଲେ, ଓଡ଼ିଶାର ପୂର୍ବତନ କମିଶନର ସଦାଶୟ ରେଭେନ୍‌ସା ସାହେବ, ଉତ୍କଳ ଗୌରବ ମଧୁସୂଦନ ଦାସ, ବିଶ୍ୱନାଥ କର ଇତ୍ୟାଦି ପ୍ରଧାନ । 'ପଢ଼ିଲେ ଜାଣିବୁ' ଶିରୋନାମାରେ ଲେଖକ ବେଶ୍ ହୃଦୟଗ୍ରାହୀ ଶୈଳୀରେ ୱିଲିୟମ୍ ଜୋନ୍‌ସ୍‌ଙ୍କ ଜୀବନୀକୁ ପରିବେଷଣ କରିଛନ୍ତି । ସେହି ଯୋଗଜନ୍ମା ପ୍ରାଜ୍ଞ ପୁରୁଷ ଜୋନ୍‌ସ୍ ମାତ୍ର ୪୮ ବର୍ଷ ବୟସରେ ପରଲୋକ ଗମନ କରିଥିଲେ । ତାହାଙ୍କ ଜୀବନର ଆଦର୍ଶକୁ ଲେଖକ ଛାତ୍ରମାନଙ୍କ ନିକଟରେ ନିମ୍ନ ଭାଷାରେ ଉପସ୍ଥାପନ କରିଥିଲେ –

''ଜନ୍ମଲାଭ କରିବାମାତ୍ରେ ଆମ୍ଭେମାନେ କାନ୍ଦୁ; କିନ୍ତୁ ପିତାମାତା ଓ ଆଉ ସମସ୍ତେ ଖୁସି ହୁଅନ୍ତି । ସଂସାରରେ ଆମେ ଏପରି କାର୍ଯ୍ୟ କରିବା ଯେପରି କି ମରଣବେଳେ ଆମ ପାଇଁ ସମସ୍ତେ କାନ୍ଦିବେ, କିନ୍ତୁ ଆମେ ଖୁସିରେ ମରିବା ।''

୧୯୪୦ ମସିହା ପରେ ଗାନ୍ଧିଜୀଙ୍କ ଜୀବନୀ ପାଠ୍ୟପୁସ୍ତକରେ ସ୍ଥାନ ପାଇଥିବାର ଦେଖାଯାଏ । ନବ ସାହିତ୍ୟର ପ୍ରଥମ ଭାଗରେ ଲେଖକ 'ପରିଚ୍ଛନ୍ନତାର ଦୃଷ୍ଟାନ୍ତ' ଶିରୋନାମାରେ ଗାନ୍ଧିଜୀଙ୍କ ଆଦର୍ଶ ଜୀବନର ଗୋଟିଏ ଦୃଷ୍ଟାନ୍ତ କାହାଣୀ ଆକାରରେ ଅବତାରଣା କରିଛନ୍ତି । ବ୍ରିଟିଶ୍ ସରକାର ଗାନ୍ଧିଜୀଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀ ବୋଲି କହିବାକୁ ପ୍ରସ୍ତୁତ ନଥିଲେ । ଗାନ୍ଧିଜୀଙ୍କୁ କେନ୍ଦ୍ରକରି ସ୍ୱାଧୀନତା ସଂଗ୍ରାମ ସମ୍ପର୍କୀୟ କୌଣସି

ରଚନା ପାଠ୍ୟପୁସ୍ତକରେ ଅନୁମୋଦନ ଲାଭ କରି ନଥାନ୍ତା । ତେଣୁ ଗାନ୍ଧିଜୀଙ୍କ ଜୀବନାଦର୍ଶ ହିଁ ଶିଶୁମାନଙ୍କ ନିମନ୍ତେ ଥିଲା ଉପାଦେୟ ।

ଶ୍ରମର ମର୍ଯ୍ୟାଦା ଦର୍ଶାଇବାକୁ ଯାଇ ଲେଖକ 'ଛାତ୍ର ଓ ଅଧ୍ୟାପକ' ଶିରୋନାମାରେ ଗୋଟିଏ ସୁନ୍ଦର ଗଳ୍ପର ଅବତାରଣା କରିଛନ୍ତି । ଇଂରେଜମାନେ କିପରି ଯେକୌଣସି ଶ୍ରମକୁ ନ୍ୟୂନ ଜ୍ଞାନ ନକରି ତାକୁ ଉପଯୁକ୍ତ ମର୍ଯ୍ୟାଦା ଦେଇଥାନ୍ତି ଏବଂ ଜଣେ ଭାରତୀୟ ଛାତ୍ର ଲଣ୍ଡନ ସହରରେ ନିଜର ସାମାନ୍ୟ ବ୍ୟାଗ୍ ଖଣ୍ଡିକ ବୋହିବା ପାଇଁ କିପରି କୁଲି ଆବଶ୍ୟକ କରି ଜଣେ ଅଧ୍ୟାପକଙ୍କ ପାଖରେ ଲଜ୍ଜିତ ହୋଇଛନ୍ତି, ତାହାକୁ ଲେଖକ ବେଶ୍ ସୁନ୍ଦର ଶୈଳୀରେ ପରିବେଷଣ କରିଛନ୍ତି । ଲଣ୍ଡନର ଅଧ୍ୟାପକ ଜଣକ ଭାରତୀୟ ଛାତ୍ରଙ୍କ ନିକଟରେ ଅକୁଣ୍ଠିତ ଭାବରେ କୁଲି କାମ କରିବାକୁ ଆଗେଇ ଆସିଥିବାର ଦେଖି ଭାରତୀୟ ଛାତ୍ର ଆଶ୍ଚର୍ଯ୍ୟାନ୍ୱିତ ହୋଇଯାଇଛନ୍ତି । କୁଲି କାର୍ଯ୍ୟ କରୁଥିବା ଲଣ୍ଡନର ଅଧ୍ୟାପକଙ୍କ ମୁଖରେ ଲେଖକଙ୍କର ବକ୍ତବ୍ୟ ହେଉଛି – ''ଏ କାର୍ଯ୍ୟକୁ ଆପଣ ହୀନ ବୋଲି ବିଚାରୁଛନ୍ତି କାହିଁକି ? ଯେଉଁ କାର୍ଯ୍ୟରେ ଏକ ସଙ୍ଗରେ ବ୍ୟାୟାମ ଓ ଅର୍ଥୋପାର୍ଜନ ହୋଇଥାଏ, ତାହା ତ କେବେ ହୀନ ହୋଇ ନପାରେ ।'' ଛାତ୍ରମାନଙ୍କ ନିମନ୍ତେ ଏହି ଗଳ୍ପଟି କମ୍ ଶିକ୍ଷଣୀୟ ନୁହେଁ ।

ନବ ସାହିତ୍ୟ ୧ମ ଭାଗରେ ଲିଖିତ 'ବାଉରି ଓ ବ୍ରାହ୍ମଣ' ଗପଟି ଗାନ୍ଧିଜୀଙ୍କର ହରିଜନ ଆନ୍ଦୋଳନ ଓ ଅସ୍ପୃଶ୍ୟତା ନିବାରଣ ଉପରେ ଆଧାରିତ । ଯେଉଁ ହରିଜନ ମଧୁଆ ଭୋଇକୁ ବ୍ରାହ୍ମଣ-ମୁନିବ ହୀନ ଓ ଅସ୍ପୃଶ୍ୟ ବୋଲି କହି ଦିନେ ତିରସ୍କାର କରୁଥିଲେ, ସେଇ ମଧୁଆ ଭୋଇ ଅବସ୍ଥାଚକ୍ରରେ ମୁନିବପୁତ୍ରକୁ ବନ୍ୟାଜଳରୁ ଉଦ୍ଧାର କରି ଆଣିବା ପରେ ମୁନିବଙ୍କର ମୋହଭଙ୍ଗ ହୋଇଛି । ସେ କୃତଜ୍ଞତାରେ ହୃଦୟକୁ ପୂର୍ଣ୍ଣ କରି ମଧୁଆକୁ ଆଲିଙ୍ଗନ କରିଛନ୍ତି ଏବଂ କହିଛନ୍ତି, ''ମଧୁ, ତୁ ଯେଉଁ ଧର୍ମ କରିଅଛୁ, ତାହା ନିକଟରେ ମୋହର ସବୁ ଧର୍ମ ଓ ପୁଣ୍ୟ ମଳିନ ପଡ଼ିଯାଇଛି । ନିଜେ ବ୍ରାହ୍ମଣ ହେଲେ ହେଁ ତୋତେ ଏଣିକି ବାଉରି ବୋଲି ହୀନ ଦୃଷ୍ଟିରେ ଦେଖି ପାରିବି ନାହିଁ ।'' କାହାଣୀର ଶେଷ ବାକ୍ୟଟି ହେଉଛି, ''ସେହି ଦିନଠାରୁ ଶତପଥୀଙ୍କର ଅସ୍ପୃଶ୍ୟତା ବ୍ୟାଧି ଦୂର ହୋଇଗଲା ।''

ଅବଶ୍ୟ ଏଭଳି ଏକ ଶିରୋନାମାରେ ଏ ଶ୍ରେଣୀୟ ଏକ ଗଳ୍ପକୁ ବର୍ତ୍ତମାନ କାଳରେ କେହି ପସନ୍ଦ କରିବେ ନାହିଁ, ମାତ୍ର ପ୍ରାକ୍-ସ୍ୱାଧୀନତା କାଳରେ ବିଶେଷକରି ଗାନ୍ଧିଜୀଙ୍କର ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ କାଳରେ ତାହା ଥିଲା ଅତ୍ୟନ୍ତ ଜରୁରୀ । ଏହି ଗଳ୍ପଟି ଜରିଆରେ ଗାନ୍ଧିଜୀଙ୍କର ବାର୍ତ୍ତା ଛାତ୍ରଛାତ୍ରୀମାନଙ୍କ ନିକଟରେ ପହଞ୍ଚାଇବାକୁ ଲେଖକ ଉଦ୍ୟମ କରିଛନ୍ତି ।

କାଳିନ୍ଦୀଚରଣ ଥିଲେ ଜଣେ ପ୍ରତିଭାବାନ୍ କବି ତଥା କଥାକାର । ପାଠ୍ୟପୁସ୍ତକ ପରିଧି ମଧ୍ୟରେ ଏହି ଆଲୋଚନାକୁ ସୀମିତ ରଖିଲେ, ତାଙ୍କ ଶିଶୁ ସାହିତ୍ୟର ଯଥାର୍ଥ ମୂଲ୍ୟାୟନ

ହୋଇ ପାରିବ ନାହିଁ । କାରଣ ପାଠ୍ୟପୁସ୍ତକକୁ ସାହିତ୍ୟିକ ମର୍ଯ୍ୟାଦା ଦେବା ଦିଗରେ ଆଲୋଚକମାନେ କୁଣ୍ଠିତ, କାରଣ ତାହା ବିଦ୍ୟାର୍ଥୀମାନଙ୍କର ନିର୍ଦ୍ଦିଷ୍ଟ ଆବଶ୍ୟକତାକୁ ଚାହିଁ କେବଳ ଶ୍ରେଣୀ ଗୃହର ଚଉହଦୀ ମଧ୍ୟରେ ଆବଦ୍ଧ ଥାଏ । ତଥାପି ପାଠ୍ୟପୁସ୍ତକ ମଧ୍ୟରେ ଏଭଳି କେତେକ ରଚନା ଥାଏ ଯାହା ପାଠକମାନଙ୍କ ମନରେ ସ୍ମରଣୀୟ ହୋଇ ରହିବା ସଙ୍ଗେ ସଙ୍ଗେ କାଳଜୟୀତ୍ୱ ଲାଭ କରିଥାଏ । ଗ୍ରାମ ଚାଟଶାଳୀ, କୁସୁମ, ଲଙ୍ଗଳ, ଉଦ୍ୟମ, ଅଭ୍ୟାସ, ବାଲ୍ମୀକି, ମୋଚି, ହରିତାଳିକା, ଦଶହରା, ଜନ୍ମଭୂମି, ସମୁଦ୍ର ଓ ସରିତ, କାଠଯୋଡ଼ି କୂଳେ ସାନ୍ଧ୍ୟ ଭ୍ରମଣ ପ୍ରଭୃତି କବିତାଗୁଡ଼ିକ ଏହି ଶ୍ରେଣୀୟ ରଚନା ଅଟନ୍ତି । ଏଗୁଡ଼ିକର ସାହିତ୍ୟିକ ମୂଲ୍ୟ ବେଶ ଉଚ୍ଚକୋଟୀର ଅଟେ ।

ପାଠ୍ୟପୁସ୍ତକ ଉଦ୍ଦେଶ୍ୟରେ ରଚିତ କବିଙ୍କର ସବୁଠାରୁ ଲୋକପ୍ରିୟ ଏବଂ ସ୍ମରଣୀୟ କବିତାଟି ହେଉଛି 'ଗ୍ରାମ ଚାଟଶାଳୀ' । ବାଲ୍ୟ ଜୀବନରେ କେବେ ସେ ଗ୍ରାମ ଦାଣ୍ଡ କଡ଼ରେ ଥିବା ଛୋଟ ଚାଳଘରଟିରେ ଖଡ଼ିମୁଣ୍ଡାଟିଏ ଧରି ଅକ୍ଷର ଶିକ୍ଷା ଆରମ୍ଭ କରିଥିଲେ, ପରେ ପୁଣି ଅଙ୍କ, ସାହିତ୍ୟ, ଇତିହାସ, ଭୂଗୋଳ ଇତ୍ୟାଦି ପାଠ କରିଥିଲେ, ଭଲଗୁଣ ଲାଗି ଶିକ୍ଷକଙ୍କଠାରୁ ପ୍ରଶଂସା ପାଇଥିଲେ, ପୁଣି ମନ୍ଦ କାମ ପାଇଁ ଛାଟ ଖାଇଥିଲେ, ଜୀବନର ମଧ୍ୟାହ୍ନରେ ତାହା ସ୍ମୃତିପଟରେ ଗୋଟି ଗୋଟି ହୋଇ ଉଜ୍ଜୀବିତ ହୋଇଛି । ଏହା ଯେତିକି ସରସ ଓ ସୁନ୍ଦର ସେତିକି ହୃଦୟଗ୍ରାହୀ । ବୟସର ଭାରରେ ନଇଁ ପଡ଼ିଥିବା ଯେକୌଣସି ସଂସାରୀ ଲୋକର ପ୍ରାଣରେ ଏହି କବିତାଟି କ୍ଷଣକ ପାଇଁ ଆଲୋଡ଼ନ ସୃଷ୍ଟିକରିବ ନିଶ୍ଚୟ । ସ୍ମୃତି ରୋମନ୍ଥନ କରି ସେ ଲେଖିଛନ୍ତି –

''ଗୁରୁ ସହପାଠୀ କେ ଗଲେଣି କାହିଁ
ଗୋଟି ଗୋଟି ତାହା ପଡୁଛି ମନେ
ହସିଥିଲି କେଉଁ ବିଲ ପାହାଡ଼ରେ
କାନ୍ଦିଥିଲି ଆମ୍ବ ପୁଲାଙ୍ଗ ବନେ ।''

କବିତାର ଶେଷ ପଦଟି ଏକ ଶାଶ୍ୱତ ବାର୍ତ୍ତା ବହନ କରିଥାଏ । ଏବେ ମଧ୍ୟ ତାହା ବିଭିନ୍ନ ସମୟରେ ଆଲୋଚକମାନେ ଉଦ୍ଧାର କରିଥାଆନ୍ତି । ସେଇ ପଦଟି ହେଉଛି –

''ମନ୍ଦିର ସମାନ ଗ୍ରାମ ଚାଟଶାଳୀ
ସବୁ ସ୍ମୃତି ପରେ ଟେକିଛି ମଥା
ଶିଖିଥିଲି ଯହିଁ ପ୍ରଥମ ଅକ୍ଷର
ପଢ଼ିଥିଲି ଯହିଁ ପ୍ରଥମ କଥା ।''

କବିଙ୍କର ଆଉ ଏକ ଉପାଦେୟ ତଥା ଶିଶୁ ଉପଯୋଗୀ କବିତା ହେଉଛି ଲଙ୍ଗଳ । ଆଜିର ଯନ୍ତ୍ରଯୁଗରେ ମଧ୍ୟ ଲଙ୍ଗଳର ଉପାଦେୟତା ନ୍ୟୂନ ହୋଇନାହିଁ । ଲଙ୍ଗଳ ଜଗତକୁ

ଯୋଗାଉଛି ଆହାର ଓ ବସନ । ତା'ର ମହନୀୟତା ପ୍ରତି ଶିଶୁମାନଙ୍କୁ ସଚେତନ କରାଇଦେବାକୁ ଯାଇ ସେ କହିଛନ୍ତି –

''ଆହାର ବସନ ଯୋଗାଉଛି ଯେହୁ
ହେଜ ତା'ର ମହା ଗୁଣ
କୋଟି ସମ୍ପଦର ମୂଳରେ ନିହିତ
ସାମାନ୍ୟ ଲଙ୍ଗଳ ମୁନ ।
କ୍ଷୁଦ୍ର, ଧନହୀନ ହୁଅ ପଛେ ତୁମ୍ଭେ
କରିପାର ମହା କର୍ମ
ଭୂମି ରୂପ ଗ୍ରନ୍ଥେ ଲଙ୍ଗଳ ଲେଖନୀ
ବଖାଣୁଛି ଏହି ମର୍ମ ।''

ଲଙ୍ଗଳ କବିତାର ଏହି ଶେଷ ପଦଟି ଶିଶୁଶିକ୍ଷା ଦୃଷ୍ଟିରୁ କିଭଳି ଓ କେତେଦୂର ଉପାଦେୟ, ତା'ର ବ୍ୟାଖ୍ୟା ଅନାବଶ୍ୟକ । ଶିଶୁଶିକ୍ଷା ଉଦ୍ଦେଶ୍ୟରେ ରଚିତ 'ଉଇ ଓ ମହୁମାଛି' କବିତାଟି କବିଙ୍କର ଅନ୍ୟ ଏକ ସାର୍ଥକ ସୃଷ୍ଟି ବୋଲି ମନେହୁଏ । ମହୁମାଛିକୁ ନିର୍ବୋଧ ବୋଲି କହି ଉଇ ତାଚ୍ଛଲ୍ୟ କରିଛି । ସେ ଅକାରଣରେ ଗୁଣୁଗୁଣୁ ଶବ୍ଦ କରି ମଧୁ ସଞ୍ଚୟ କରେ । ଅଥଚ ଫୁଲର ବାସରେ ସେ ଆତ୍ମବିଭୋର ଥିବାବେଳେ ଅନ୍ୟମାନେ ତା'ର ମଧୁଭଣ୍ଡାରକୁ ଲୁଟ କରି ନିଅନ୍ତି । ଉଇର ଏହି ଅଭିଯୋଗର ପ୍ରତ୍ୟୁତ୍ତରରେ ମହୁମାଛି ଉଇକୁ ନିନ୍ଦା କରି କହିଛି –

''ସ୍ୱାର୍ଥ ଲାଗି ସଦା ଅନ୍ଧ କରୁ ତୁହି ଅତି ମନ୍ଦ
ବହୁ ଧନ କରୁ ଛାରଖାର
ସୁନ୍ଦର ବସନ କାଟି କ୍ଷଣକେ କରୁ ତୁ ମାଟି
କେତେ ଗ୍ରନ୍ଥ ହୁଏ ତୋ ଆହାର ।''

ଅପର ପକ୍ଷରେ ମହୁମାଛିର ସଂସାର ଆନନ୍ଦମୟ । ତା'ର ବିଚାରରେ ''କୁସୁମ ସଙ୍ଗୀତ ଭରା, ଅତି ସୁଖମୟ ଧରା'' । ସେଇ ସୁଖରେ ସେ ଭାସମାନ । ସେ ତେଣୁ କହିଛି –

''ଫୁଲ ମୋର ପ୍ରିୟ ବନ୍ଧୁ ହସି ଯାଚି ଦିଏ ମଧୁ
କହେ ଯେତେ ଘେନିଯାଅ ରସ
ଢାଳି ଦେଇ ପ୍ରୀତିସୁଧା ସୁଖୀ କର ଏ ବସୁଧା
ଗାଅ ତୁମେ, ବିତରେ ମୁଁ ହସ ।''

ଏହି କବିତାଟି ଶିଶୁର ସରଳ ମନରେ ଏକ ଉଦାର ଓ ବିଶ୍ୱମୁଖୀ ଭାବନାର ଉନ୍ମେଷ କରି ତା'ର ହୃଦୟକୁ ଅମୃତମୟ କରିଦେଇଥାଏ । ମହୁମାଛିର ବ୍ରତ ହେଉଛି –

''ପର ହିତ ପାଇଁ ମୋ ସଞ୍ଚୟ
ହରଷେ ମୁଁ ଗାଏ ଗୀତ ସରସ ସଦା ମୋ ଚିତ୍ତ
ନ ଗଣଇ ତିଳେ ଦୁଃଖ ଭୟ ।''

ମହୁମାଛିର ତ୍ୟାଗ ଓ ପରୋପକାର ବ୍ରତର ଏହା ଏକ ସୁନ୍ଦର ପରିପ୍ରକାଶ ।

ପାଠ୍ୟପୁସ୍ତକ ଶିଶୁର କେବଳ ଜ୍ଞାନ ବର୍ଦ୍ଧନ ଉଦ୍ଦେଶ୍ୟରେ ରଚିତ ହୋଇ ନଥାଏ, ତାହାର ବ୍ୟକ୍ତିତ୍ୱ ଗଠନ, ମାନବୀୟତାର ବିକାଶ, ଚାରିତ୍ରିକ ଉତ୍କର୍ଷ ତଥା ଆଦର୍ଶର ଅନୁସରଣ ଦିଗରେ ସହାୟକ ହୋଇଥାଏ । ଶୈଶବର ଶିକ୍ଷାରୁ ସେ ଉତ୍ତର ଜୀବନ ପାଇଁ ପାଥେୟ ସଂଗ୍ରହ କରେ । ଜୀବନର ମହତ୍ତର ଗୁଣଗୁଡ଼ିକ କଅଣ ତାହା ସେ ଜାଣିପାରେ । 'କୁ'ଠାରୁ 'ସୁ'କୁ ପୃଥକ କରି ପାରେ, ଜୀବନର ମହତ୍ତର ଆଦର୍ଶ ଓ ସୁକର୍ମର ଦୃଷ୍ଟାନ୍ତକୁ ଦିବ୍ୟ ଆସନରେ ସ୍ଥାପନ କରି ତାର ଉପାସନା ଦିଗରେ ବ୍ରତୀ ହୁଏ । ସେଥିପାଇଁ ପୁସ୍ତକ ପୃଷ୍ଠାରେ କେବଳ ଆଦର୍ଶର ଅବତାରଣା କଲେ ଯଥେଷ୍ଟ ହୁଏ ନାହିଁ, ସେ ଦିଗରେ ଶିଶୁ ମନରେ ପ୍ରତ୍ୟୟ ସୃଷ୍ଟିକରି, ତାକୁ ହୃଦୟଗ୍ରାହୀ କରିବାକୁ ହୁଏ । 'ବାରଣ ବଢ଼େଇରେ ଦାୟୀ' ଶୀର୍ଷକ କ୍ଷୁଦ୍ର ଏକାଙ୍କିକାଟି ଏହି ଉଦ୍ଦେଶ୍ୟର ପରିପୂରକ ଅଟେ । କୋଣାର୍କ ମନ୍ଦିରର ଚୂଡ଼ା ସ୍ଥାପନ କରିସାରିବା ପରେ ଶିଶୁଶିଳ୍ପୀ ଧର୍ମପଦ ସମଗ୍ର ଶିଳ୍ପୀକୁଳର ସମ୍ମାନ ରକ୍ଷା ନିମନ୍ତେ ଯେତେବେଳେ ସ୍ୱଇଚ୍ଛାରେ ଚନ୍ଦ୍ରଭାଗା ନଦୀ ଗର୍ଭରେ ଆତ୍ମବିସର୍ଜନ କରିବାକୁ ନିଷ୍ପତ୍ତି ନେଇଛି, ପିତା ବିଶୁ ମହାରଣା ଶୋକାତୁର ଭାବରେ ତାହାକୁ ଏଥିରୁ ବାରଣ କରିଛି । ମାତ୍ର ଧର୍ମପଦ କହିଛି, ''ନିଜ ବଂଶର ମର୍ଯ୍ୟାଦା ପାଇଁ, ବିନ୍ଧାଣି କୁଳର ପ୍ରାଣରକ୍ଷା ପାଇଁ, ପୁଣି ସ୍ୱଦେଶର କୀର୍ତ୍ତିରକ୍ଷା ପାଇଁ ମୁଁ ଆଜି ମରିବାକୁ ଯାଉଛି । × × ଏହି କୋଣାର୍କ ମନ୍ଦିର ଥିବା ପର୍ଯ୍ୟନ୍ତ ମୋହର କୀର୍ତ୍ତି ଜୀବିତ ଥିବ । ମୋହର ତ୍ୟାଗ ଏ ଦେଶର କେତେ ସନ୍ତାନଙ୍କୁ ଅନୁପ୍ରାଣିତ କରିବ ।

ଏହି ସଂଳାପଟି କେବଳ ଶିକ୍ଷଣୀୟ ନୁହେଁ । ପ୍ରଭାବଶାଳୀ ମଧ୍ୟ । ଭବିଷ୍ୟତର ସୁଯୋଗ୍ୟ ଦାୟାଦ ହେବା ନିମନ୍ତେ କବି ଜନ୍ମଭୂମି କବିତାରେ ଶିଶୁମାନଙ୍କ ଉଦ୍ଦେଶ୍ୟରେ କହିଛନ୍ତି –

''ଶିଖାଅ ସେ ବଳ ବଳହୀନ ପରେ
ଆଘାତ ନ କରେ ଯାହା
କରମ ବିହୀନ ନ ହେଉ କଦାପି
ଥିବାଯାଏ ଦୁଇ ବାହା ।
ଶିଖାଅରେ ସତ୍ୟ ଯେଉଁ ସତ୍ୟ ଲଭି
ଭୟହୀନ ହୁଏ ଶ୍ରୁତି

ଯେଉଁ ସତ୍ୟ ଲଭି          ବଡ଼ଥିଲୁ ଆମ୍ଭେ
ବଡ଼ ହୁଏ ସବୁ ଜାତି ।

ଜାତୀୟତା ଉଦ୍ରେକକାରୀ ଏଭଳି କବିତାର ଭାବ ଅତୁଳନୀୟ । ତେଣୁ ଏଭଳି ଶିକ୍ଷାକୁ ଶ୍ରେଷ୍ଠ ଶିକ୍ଷା ବୋଲି ଗ୍ରହଣ କରିବାକୁ ହେବ ।

ଇଂରାଜୀରେ କୁହାଯାଇଛି ''Art is long, Time is fleeting'' ''କରମଠାରୁ ସମୟ ବେଶି ବଡ଼, ନହେଇ ରଖ୍, ପଳାଏ ଧଡ଼ ପଡ଼'' । ଲେଖକଙ୍କର 'ଅଳସ ଛାଡ଼ ଭାଇ' କବିତାରେ ଏଇ ଭାବଟି ବେଶ ସୁନ୍ଦର ଭାବରେ ପ୍ରତିପାଦିତ ହୋଇଛି । ଆଳସ୍ୟ ହେଉଛି ଜୀବନର ପରମ ଶତ୍ରୁ । ଆଳସ୍ୟ ମନୁଷ୍ୟର ବୁଦ୍ଧି, ଜ୍ଞାନ ଓ କର୍ମ କୁଶଳତାକୁ ନଷ୍ଟ କରି ଦେଇଥାଏ । ଅପରପକ୍ଷରେ କର୍ମ ହିଁ ହେଉଛି ଜୀବନ । ଜୀବନରେ ବହୁ ସୁକର୍ମ କରିବାକୁ ଅଛି । ସେଥିପାଇଁ ଲେଖକ ଶିଶୁମାନଙ୍କୁ ଆହ୍ୱାନ କରି କହିଛନ୍ତି –

''ଅଳସ ଛାଡ଼ ଅଳସ ଛାଡ଼ ଭାଇ
ଆଳସ୍ୟ ଯୋଗେ ଅଧିକ ଦୁଃଖ ପାଇ ।
ଜଗତେ ଯେତେ ପଡ଼ିଛି କାମ
ପାରିବ କହି କିଏ ତା ନାମ
ପାରିବ କିଏ ତା ଗୁଣ ରାଶି ଗାଇ
ଅଳସ ଛାଡ଼ ଭାଇ''

ସମଭାବାପନ୍ନ ଆଉ ଗୋଟିଏ କବିତା ହେଉଛି 'ଅଭ୍ୟାସ' । ବିଫଳତାରେ ନିରାଶ ନ ହୋଇ ବାରମ୍ବାର ସେ ଦିଗରେ ଉଦ୍ୟମ ଅବ୍ୟାହତ ରହିଲେ ଅବଶ୍ୟ ସଫଳତା ମିଳିବ ବୋଲି କବି ଶିଶୁମାନଙ୍କୁ କହିଛନ୍ତି । ଅଭ୍ୟାସ ଯୋଗେ ଶିଶୁ କଥା କହି ଶିଖିଛି । ବାରମ୍ବାର ତଳେ ପଡ଼ିଗଲେ ମଧ୍ୟ ପୁଣି ଉଠି ଚାଲିବାକୁ ଅଭ୍ୟାସ କରୁଛି । ସେ ଯଦି ତାର ଅଭ୍ୟାସକୁ ଅବ୍ୟାହତ ରଖନ୍ତା ନାହିଁ, ତେବେ ସେ ଭବିଷ୍ୟତରେ କଥା କହି ପାରନ୍ତା ନାହିଁ, କିମ୍ବା ଚାଲି ଶିଖନ୍ତା ନାହିଁ । ଏଇ କଥାଟିକୁ ପ୍ରକାଶ କରିବାକୁ ଯାଇ କବି ଲେଖିଛନ୍ତି –

''ଅଭ୍ୟାସ ଯୋଗେ ଶିଶୁ ଯଥା
ଶିଖଇ କ୍ରମେ କହି କଥା ।
ଥରକୁ ଥର ପଡ଼ି ତଳେ
ଚାଲଇ ଅଭ୍ୟାସର ବଳେ ।
ହେବାରୁ ତାର କଥା ମନ୍ଦ
କରନ୍ତା ଯେବେ ମୁଖ ବନ୍ଦ
ପଡ଼ଇ ଯେଣୁ ଗୋଡ଼ ଖସି

ନ ଉଠି ରହୁଥିଲେ ବସି,
କେବେ ହେଁ ପାରନ୍ତା କି କହି
ଚାଲନ୍ତା ପାଦେ ଦେହ ବହି ।
ତେସନ ଅଭ୍ୟାସର ବଳେ
ବିଜୟ ଲଭିବ ଭୂତଳେ ।

'ପାହିଲା ରାତି', 'କୁସୁମ', 'ଦଶହରା' ଏବଂ 'କାଠଯୋଡ଼ି କୂଳେ ସାନ୍ଧ୍ୟ ଭ୍ରମଣ' ପ୍ରଭୃତି ହେଉଛି କବିଙ୍କର ପ୍ରକୃତି ବର୍ଣ୍ଣନାମୂଳକ କବିତା । ଅତି ସରଳ ଓ ସାବଲୀଳ ଶୈଳୀରେ ସେ ପ୍ରକୃତିର ରମଣୀୟ ଶୋଭାକୁ ଏହି କବିତାଗୁଡ଼ିକ ମାଧମରେ ଶିଶୁର ହୃଦୟଗ୍ରାହୀ କରିବାକୁ ଚେଷ୍ଟା କରିଛନ୍ତି । ଏଗୁଡ଼ିକ ଶିଶୁର କେବଳ ପରିଚିତ ପରିବେଶରୁ ସଂଗୃହୀତ ହୋଇ ନାହିଁ; ଅଧିକନ୍ତୁ ଏହା ସେମାନଙ୍କର ଅନୁଭୂତି ସ୍ନିଗ୍ଧ । 'ପାହିଲା ରାତି' କବିତାରେ ସେ ଲେଖିଛନ୍ତି –

''ଉଜ୍ଜ୍ୱଳ ଦଶ ଦିଶ ପାହିଲା ରାତି
ରାବିଲେ କାକ ପିକ କଜ୍ଜଳ ପାତି
ଲୁଚିଲେ ଗୋଟି ଗୋଟି ଆକାଶେ ତାରା'
ପୂରୁବ ଦିଗୁଁ ଝରେ ଆଲୋକ ଧାରା ।
ସୁବର୍ଣ୍ଣ ଜିଣି ଆଭା ଉକୁଟି ଉଠେ,
ଧରାରେ ନାନା ଜାତି କୁସୁମ ଫୁଟେ ।''   ଇତ୍ୟାଦି

ଏହି କବିତାଟି ଜରିଆରେ କବି ସୁନ୍ଦର ପ୍ରକୃତିର ଏକ କମନୀୟ ଛବି ଶିଶୁର ଚିତ୍ତପଟରେ ଅଙ୍କନ କରି ଦେଇଛନ୍ତି । ତାହାରି ମଧରେ ସେ ସୂର୍ଯ୍ୟଙ୍କର ମହାନ୍ ଧର୍ମ ପ୍ରତି ମଧ ଶିଶୁଙ୍କୁ ସଚେତନ କରି ଦେଇଛନ୍ତି । ପ୍ରତିଦିନ ସକାଳେ ସୂର୍ଯ୍ୟ ଉଦୟ ହେଉଛନ୍ତି, ଅସ୍ତ ଯାଉଛନ୍ତି । ଜୀବଜଗତକୁ ସେ କର୍ମଚଞ୍ଚଳ କରି ରଖିଛନ୍ତି । ତେଣୁ ଶିଶୁମାନଙ୍କ ପାଇଁ କବିଙ୍କର ବାର୍ତ୍ତା ହେଉଛି –

''ଜଗତ ହିତେ ନିତି ଉଏଁ ତପନ
ଆଲୋକ ଦେଇ ରଖେ ଜୀବ ଜୀବନ ।''

ସୂର୍ଯ୍ୟ ହେଉଛନ୍ତି ଜଗତର ପାଳକ, ଆଲୋକ ହେଉଛି ଜଗତର ଜୀବନ । ତେଣୁ ଜଗତର ହିତାର୍ଥେ ହିଁ ସୂର୍ଯ୍ୟ ପ୍ରତିଦିନ ଉଦୟ ହୁଅନ୍ତି ବୋଲି ଶିଶୁମାନଙ୍କ ଉଦ୍ଦେଶ୍ୟରେ କବି ବାର୍ତ୍ତା ପ୍ରଦାନ କରିଛନ୍ତି ।

ସେଇଭଳି 'କୁସୁମ' କବିତାଟି ପ୍ରକୃତି ଓ ପର୍ଯ୍ୟବେକ୍ଷଣ ଉପରେ ଆଧାରିତ । ଋତୁ ଚକ୍ରର ଆବର୍ତ୍ତନ କ୍ରମେ କି କି ଫୁଲ ପ୍ରସ୍ଫୁଟିତ ହୋଇ ଧରଣୀକୁ ରୂପଶ୍ରୀରେ ସୁମଣ୍ଡିତ କରନ୍ତି,

ତାହା କବି ଏଥିରେ କଳାତ୍ମକ ଭାବରେ ଦର୍ଶାଇଛନ୍ତି । ଶରତ ଋତୁରେ ବିଲ ପାଟରେ ଫୁଟି ଉଠିଥିବା କାଶତଣ୍ଡୀ ଫୁଲଠାରୁ ଆରମ୍ଭ କରି ଯୂଈ, ଯାଈ, ମଲ୍ଲୀ, କଦମ୍ବ, ମାଳତୀ, ଜହ୍ନି ଫୁଲ, ଅଗସ୍ତି ମଞ୍ଜରୀ, ରଙ୍ଗଣୀ, ଗୟସ, ସୋରିଷ, କାମିନୀ, ପଳାଶ, କୁମୁଦ, କମଳ ଓ ଗୋଲାପ ଇତ୍ୟାଦି ଋତୁ ଅନୁସାରୀ ବହୁବିଧ କୁସୁମର ତାଲିକା ସେ ଏଠାରେ ପ୍ରଦାନ କରିଛନ୍ତି । ନାନା ଜାତିର କୁସୁମ ସମ୍ଭାରରେ ପରିପୂର୍ଣ୍ଣ ଧରଣୀରାଣୀର ଲାବଣ୍ୟମୟୀ ଶୋଭାରେ କବି ବିମୁଗ୍ଧ ହୋଇଯାଇଛନ୍ତି । ସେଇ ବିମୁଗ୍ଧ ଅନ୍ତରର ଭାବକୁ ସେ ବେଶ ସରଳ ଭାଷାରେ ଶିଶୁମାନଙ୍କ ନିକଟରେ ପରିବେଷଣ କରିଛନ୍ତି । ତାଙ୍କ ଭାଷାରେ –

''ଫୁଟେ ଫୁଲ ବନେ ଉପବନେ
ମଣ୍ଡଇ ଧରାକୁ କେତେ ରୂପରେ ଯତନେ'
× × ×
ବରଷାରେ ଫୁଟେ କେତେ ଫୁଲ
ରଙ୍ଗଣୀ କୁସୁମ ଶୋଭା ରଙ୍ଗରେ ଅତୁଳ ।
× × ×
ଶରତରେ କୁସୁମ ସମ୍ଭାର
ଫିଟାଏ ଧରାରେ ମହା ଶୋଭାର କୁଆର
ବିଲ ପାଟେ ଫୁଟେ କାଶତଣ୍ଡୀ
କୁମୁଦ କମଳ ଫୁଟେ ସରୋବର ମଣ୍ଡି ।''

ପାଠ୍ୟପୁସ୍ତକ ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ପ୍ରତ୍ୟେକ କବିତାରେ କବି କିଛି ଶିକ୍ଷା ପ୍ରଦାନ କରିଛନ୍ତି । ସେଇ କାରଣରୁ କବିତାଗୁଡ଼ିକର ଗୁଣାତ୍ମକ ସୌଷ୍ଠବ ବୃଦ୍ଧି ପାଇଛି । କୁସୁମ କବିତାର ଶେଷପଦରେ କବି ଉଲ୍ଲେଖ କରିଛନ୍ତି –

''ଫୁଟିବି ମୁଁ କୁସୁମ ସମାନ
ପର ପାଇଁ ନିଜ ବିତ୍ତ କରିବାକୁ ଦାନ ।
ଆନ ମୁଖେ ଫୁଟାଇବି ହାସ
ବିତରିବି ଅନ୍ୟ ଲାଗି ସୁଗୁଣ ସୁବାସ ।
ଆନ ପାଇଁ ସଞ୍ଚିବି ମୁଁ ମଧୁ
ଫୁଲ ପରି କରିବି ମୁ ଜଗତକୁ ବନ୍ଧୁ ।''

ଶିକ୍ଷାତ୍ମକତା ଦୃଷ୍ଟିରୁ ଶିଶୁ କବିତା ଭାବରେ ଏହା ଏକ ଉତ୍କୃଷ୍ଟ ରଚ଼ନା ଅଟେ ।

''କାଠଯୋଡ଼ି କୂଳେ ସାନ୍ଧ୍ୟ ଭ୍ରମଣ' କବିତାଟି ମଧ କବିଙ୍କର ଏକ ଉଲ୍ଲେଖଯୋଗ୍ୟ କୃତି । ଏହି କବିତାଟି ପାଠକଲେ ୬୦ ବର୍ଷ ତଳର ପୁରାତନ କାଠଯୋଡ଼ି ନଦୀ ବନ୍ଧର

ସାନ୍ଧ୍ୟକାଳୀନ ଛବି ସ୍ମୃତିପଟରେ ଜାଗରୁକ ହୋଇଉଠେ । କବି ଭାବପ୍ରବଣତାର ସହିତ ବନ୍ଧୁମାନଙ୍କୁ ଆହ୍ୱାନ କରି କହିଛନ୍ତି –

''ସାରି ଦିବସର କର୍ମ ଆସ ବନ୍ଧୁ
କାଠଯୋଡ଼ି ତୀରେ
ସତେଜ କରିବା ଚିତ୍ତ ଭ୍ରମି ପୂତ
ଶୀତଳ ସମୀରେ'
ପଛକୁ ପକାଇ ଦେଇ କଟକର
ନଗର ଚହଳ
ପୋଛି ସବୁ ଚିନ୍ତା ଗ୍ଲାନି ଆସ ମନ
କରି ନିରିମଳ ।''

ପୋଲ ଉପରେ ଧୂଆଁ ଛାଡ଼ି ଧାଇଁଥିବା ରେଳଗାଡ଼ି, ବନ୍ଧ ଉପରେ ଥିବା ବିଜୁଳି ଖୁଣ୍ଟର ତାରରେ ଆଘାତ କରୁଥିବା ପବନର ସ୍ୱର, ସୁଦୂର ଶୈଳ ଶିଖରରେ ଅସ୍ତଗାମୀ ସୂର୍ଯ୍ୟର ମଳିନ ରଙ୍ଗ, ନଦୀ ବକ୍ଷରେ ଶୀର୍ଣ୍ଣ ଶୀତଳ ନୀର ଧାର, ଆକାଶ ବକ୍ଷରେ ଜୋଛନା ସ୍ପର୍ଶରେ ଫୁଟି ଉଠୁଥିବା ରମଣୀୟ ଛବି, ନଦୀ ଅପର ପାର୍ଶ୍ୱରେ ଥିବା ନୀରବ, ନିଶ୍ଚଳ ପଲ୍ଲୀର ଅନ୍ଧକାର, ସର୍ବୋପରି କେଶରୀ ରାଜାଙ୍କ ଦ୍ୱାରା ନିର୍ମିତ ପଥର ବନ୍ଧ ଏବଂ ତା'ର ବୁରୁଜ କବିଙ୍କ ଲେଖନୀରେ ବେଶ୍ ଜୀବନ୍ତ ହୋଇ ଉଠିଛି । ପାଠ୍ୟ ପୁସ୍ତକ ଉଦ୍ଦେଶ୍ୟରେ ରଚିତ ହୋଇଥିଲା ବୋଲି ସାହିତ୍ୟିକ ମର୍ଯ୍ୟାଦାରୁ ଏହି କବିତାଟିକୁ ବଞ୍ଚିତ କରାଯାଇ ପାରିବ ନାହିଁ । ଏହା ଏକ ସ୍ୱତନ୍ତ୍ର ସୃଷ୍ଟି ଓ ଓଡ଼ିଆ ସାହିତ୍ୟ ଜଗତରେ ସାର୍ବକାଳୀନ ସମ୍ପଦ ଅଟେ ।

'ରାଜାଙ୍କ ନୂତନ ପରିଚ୍ଛଦ' ଏବଂ 'ଦୁଇଟି ଛାତ୍ରବନ୍ଧୁ' ଶୀର୍ଷକ ଗଳ୍ପ ଏବଂ 'ସମୁଦ୍ର ଓ ସରିତ', 'ବିଚିତ୍ର ହାର' କବିତା ଦୁଇଟି ଇଂରାଜୀ ପାଠ୍ୟର ଅନୁବାଦ ବା ଆହରଣ । 'ବିଚିତ୍ର ହାର' କବିତାଟି ପୁସ୍ତକର ଅନ୍ୟ କେତେକ ସଂସ୍କରଣରେ 'ସତ୍ୟର ମାହାତ୍ମ୍ୟ' ନାମରେ ମୁଦ୍ରିତ ହୋଇଛି । ଏକଥା ପୂର୍ବରୁ ସୂଚିତ ହୋଇଛି ଯେ ସ୍କୁଲ ବୁକ୍ ସୋସାଇଟି ଦ୍ୱାରା ପ୍ରସ୍ତୁତ ଇଂରାଜୀ ରିଡ଼ରର ମଡ଼େଲ ଅନୁଯାୟୀ ଭର୍ଣ୍ଣାକୁଲାର ପାଠ୍ୟ ପୁସ୍ତକର ମଡ଼େଲ ତିଆରି କରାଯାଉଥିଲା । ପରେ ଭିନ୍ନ ଭିନ୍ନ ପ୍ରକାଶକ ଏ କ୍ଷେତ୍ରରେ ପ୍ରବେଶ କରି ନିଜେ ଇଂରାଜୀ ରିଡ଼ର ପୁସ୍ତକମାନ ପ୍ରସ୍ତୁତ କରିଥିଲେ ଏବଂ ସେଗୁଡ଼ିକ ସ୍କୁଲମାନଙ୍କରେ ଚଳୁଥିଲା । ଓଡ଼ିଶାର ପାଠ୍ୟପୁସ୍ତକ ପ୍ରଣେତାମାନେ ବହୁ ଇଂରାଜୀ ରିଡ଼ରର ନିର୍ବାଚିତ ପାଠ୍ୟକୁ ଓଡ଼ିଆରେ ଅନୁବାଦ କରି ବା ଆହରଣ କରି ନିଜେ ନିଜ ପୁସ୍ତକରେ ସ୍ଥାନ ଦେଉଥିଲେ ।

କାଳିନ୍ଦୀଚରଣଙ୍କ 'ରାଜାଙ୍କ ନୂତନ ପରିଚ୍ଛଦ' ଗଳ୍ପଟି "The Cleaver Weaver" ନାମରେ Model English Reader (1914)ରେ ଏବଂ "Maharaja's New Clothes"

କଥା ଓ ପରେ ନିଜକଥା ଦେଖିବାକୁ କହିଛି । ଏହି ପରିପ୍ରେକ୍ଷୀରେ ସେ ହାରାବୋଉ ସାଥିରେ କଥାବାର୍ତ୍ତା ବନ୍ଦ କରିଛି, ଅନଶନ କରିଛି, ଘର ଛାଡ଼ି ଅନେକ ସମୟ ବାହାରେ ବିତେଇଛି । କାଚ କାଞ୍ଚନ ସଂସର୍ଗାତ୍ ମାରକତ ଜ୍ୟୋତି ଧାରୟେତ ନ୍ୟାୟରେ କଳିହୁଡ଼ି ହାରାବୋଉ ପରିବର୍ତ୍ତିତ ହୋଇଛି; ବରଜୁର ମନ୍ତ୍ରରେ ଦୀକ୍ଷିତା ହୋଇଛି ।

ସ୍ତ୍ରୀକୁ ନିଜ ଆଦର୍ଶ ଆଡ଼କୁ ଟାଣିଆଣିଥିବା ବରଜୁ ମନରେ ଗଭୀର ଆତ୍ମସନ୍ତୋଷ ଲଭିଥିବ ନିଶ୍ଚୟ । ତାପରେ ଛକଡ଼ି ଓ ସାନବୋହୂ ନେତ୍ରମଣିକୁ ପରିବର୍ତ୍ତିତ କରିବାର ଆଶା ମନରେ ନେଇ ଆଗେଇଥିବ । କିନ୍ତୁ ସେ ଆଶା କ'ଣ ପୂରଣ ହୋଇ ପାରିଲା ? ନା । କଠୋର ବାସ୍ତବତା ଅନେକ ସମୟରେ ଆଦର୍ଶବାଦକୁ କୁମ୍ଭୀରପରି ଗିଳିଦିଏ । ତାହାହିଁ ହୋଇଛି । ନେତ୍ରମଣି ଓ ଛକଡ଼ିର ଜିନିଷପତ୍ର, ଘରବାରି, ଗାଈଗୋରୁ ଅଧା ଅଧା ବାଣ୍ଟି ଭିନ୍ନେ ହେବାର ଜିଦ୍ ନିକଟରେ ବରଜୁ ହାରିଯାଇଛି । ତାର ମନେ ହୋଇଛି ଛକଡ଼ି ନୁହେଁ, ଛକଡ଼ି ରୂପରେ ଆଉ ଜଣେ କେହି ତା ସାମ୍ନାରେ ଛିଡ଼ାହୋଇ ଭିନେ ହେବାର ପ୍ରସ୍ତାବ ବାଢ଼ୁଛି । ଧର୍ମ ସଙ୍କଟରେ ପଡ଼ିଛି ବରଜୁ । ଭଙ୍ଗା କାନ୍ଥରେ କାଦୁଅ ନେସି କେତେଦିନ ବା ଝଡ଼ବାତ୍ୟା କବଳରୁ ରଖିହେବ ଘରକୁ ? ବାପା କଥା ମନେପଡ଼ିଛି । ନିଜ ଆଦର୍ଶରେ ଅଟଳ ରହି ଛକଡ଼ିକୁ ଘରଦ୍ୱାର, ବିଲବାରି, ଧାନବିହନ, କୋଳଥମଞ୍ଜି, ଗାଈଗୋରୁ ସବୁବିଷୟରେ ଟିକିନିଖି ବୁଝାଇ, ସ୍ତ୍ରୀ ଓ ପିଲାମାନଙ୍କୁ ନେଇ ଗୃହତ୍ୟାଗ କରିଛି । ଗାଁ ଗୋଟାକର ମଣିଷ ତା ପଛରେ ମେଣ୍ଢାପଲ ପରି ଚାଲିଛନ୍ତି । ଗାଁ ସୀମାରୁ ସମସ୍ତଙ୍କୁ ଫେରେଇଦେଇ, ହସି ହସି ସମସ୍ତଙ୍କ ପିଠିରେ ହାତବୁଲାଇ ବରଜୁ ପଧାନ ଚାଲିଛି – ସିଧା ସଳଖେ, ଲମ୍ବା ଲମ୍ବା ପାହୁଣ୍ଡ ପକେଇ, ମନ ଯୁଆଡ଼େ ଚାହିଁଛି, ଦୃଷ୍ଟି ଯେଉଁଆଡ଼େ ଯାଇଛି ।

ବରଜୁପଧାନ କାଉଁରିଆ କାଠି, ଭାଙ୍ଗିବ ପଛେ ନଇଁବ ନାହିଁ । ନିଜ ଆଦର୍ଶର ଟେକପାଇଁ ସେ ସବୁକିଛି ତ୍ୟାଗ କରିପାରେ । ଯିଏ ସମଗ୍ର ସଂସାରକୁ ଆପଣାର କରିବାପାଇଁ ସଙ୍କଳ୍ପ କରିଛି, ତା ପାଇଁ ଏ ଘରବାରି, ଗାଈଗୋରୁ ବା କେତେ ମାତର ? କିଛି ପାଇବାକୁ ହେଲେ କିଛି ତ୍ୟାଗ କରିବାକୁ ପଡ଼େ । ସୁତରାଂ ମନରେ ସାହସବାନ୍ଧି ସାନଭାଇକୁ ସବୁ ସମର୍ପି ସେ ଗୃହତ୍ୟାଗୀ ହୋଇଛି ।

ଶକ୍ତିହୀନ ଦୁର୍ବଳ ତଥା ଅସହାୟ ଚରିତ୍ରଟିଏ ଛକଡ଼ି । ପିଲାଦିନରୁ କାନ୍ଧରେ ପାଟିଲା ଗାମୁଛା ପକେଇ, କାନରେ ଦକ୍ଷିଣି ନୋଳିନାଇ, ଧଳାକମିଜ ଉପରେ କଳା ଉଆସକୋର୍ଟ ଲଗାଇ କଲିକତା ଫେରନ୍ତି ଗାଁ ସାଙ୍ଗମାନଙ୍କ ସାଥିରେ ଯାତ୍ରା ମେଲଣ ଦେଖୁଥିବା ଛକଡ଼ି ବଡ଼ ହେଲାପରେ ମଧ୍ୟ ତାର ବିଶେଷକିଛି ପରିବର୍ତ୍ତନ ଘଟିନାହିଁ । ଭାଇ ବରଜୁ ପଧାନର ବାହୁଛାୟାତଳେ ପରିବର୍ଦ୍ଧିତ ଏହି ଚରିତ୍ରଟି ପରମ ସ୍ୱାର୍ଥପରା ସ୍ତ୍ରୀ ନେତ୍ରମଣି ଓ ଗାଁ ଟାଉଟର ହରିମିଶ୍ର ହାତର କ୍ରୀଡ଼ନକ ହୋଇଛି । ଭାଇସାମ୍ନାରେ ସିଧାସଳଖ ଛିଡ଼ା ହେବାର ସାହସ କରୁ ନଥିବା ଛକଡ଼ି ସେହିମାନଙ୍କ ପ୍ରରୋଚନାରେ ଭିନେ ହେବାପାଇଁ ଦିନେ ବରଜୁ ସାମ୍ନାରେ ପ୍ରସ୍ତାବ ବାଢ଼ିଛି । ହେଲେ ଶିଶୁର କୋମଳ ମନପରି ମନ ଯେଉଁ ଛକଡ଼ିର, ଭାଇ ଭାଉଜ

ଓ ପିଲାମାନଙ୍କ ଅବର୍ତ୍ତମାନରେ ସେ କିଭଳି ବା ଧୈର୍ଯ୍ୟଧରି ରହିପାରନ୍ତା ? ଘରଟା ତାକୁ ଖାଁ ଖାଁ ଗୋଡ଼େଇଛି । ଦିପହରେ ଛକଡ଼ି ଭାଇର ଶୋଇବାଘର ଫିଟେଇ ଦେଖିଛି – ଯାହା ଯେଉଁଠି ଯେମିତିଥିଲା ସବୁ ସେମିତି ପଡ଼ିଛି । ଦେଖିଲା, ପିଲାଙ୍କ ପାଇଁ ଯାତ୍ରାରୁ ଆଣିଥିବା ରବର ହଂସ, ଯାହାକୁ ଚିପିଦେଲେ କୁଁ କୁଁ କରେ, ସେହି ହଂସଟି ଭାଡ଼ିତଳେ ପଡ଼ିଛି । ଛକଡ଼ି କଣ୍ଢେଇଟିକୁ ଆଣି ନିଜ ଛାତିରେ ଚିପିଧରିଛି ଓ ଆଖିରୁ ଧାରଧାର ଲୁହ ଝରି ପଡ଼ିଛି, କଣ୍ଠ ବାଷ୍ପରୁଦ୍ଧ ହୋଇଛି । ଛକଡ଼ିର ଭାଇ ବାପା ମାଆ ସମସ୍ତଙ୍କ କଥା ମନେପଡ଼ିଛି – ''ସମସ୍ତେ ଥିବାବେଳେ ଏ ଘର କ'ଣ ହୋଇଥିଲା – ଆଜି କ'ଣ ହୋଇଛି ! କାହାର ସମ୍ପତ୍ତି, କାହାର ବାରିଘର, ଛକଡ଼ି କିଛି ବୁଝିପାରି ନାହିଁ । ସବୁ ଅନ୍ଧାରିଆ ଦିଶିଛି । ମନଟା ତାର ପିତା ପଡ଼ିଯାଇଛି × × ରାତିରେ ଭାତଥାଳି ଲୁହରେ ଭିଜିଯାଇଛି । ଶୋଇଲେ ବିଳିବିଳେଇଚି – ଭାଇ, ଭାଇ !'' ଏଭଳି ନିଷ୍ପାପ ନିର୍ମଳ ହୃଦୟକୁ ଟାଉଟର ହରିମିଶ୍ର ବା ସ୍ୱାର୍ଥପରା ନେତ୍ରମଣିର କୁପ୍ରଭାବ କେତେ ସମୟ ଅବା କବଳିତ କରିପାରନ୍ତା ? ଦିନେ ସକାଳୁ ସକାଳୁ ନେତ୍ରମଣି ଦେଖିଛି ଛକଡ଼ି ଘରେ ନାହିଁ । ରାତିରୁ ଉଠି ସେ ହରିପୁରର ଗୌରାଙ୍ଗ ଶେଣ ଘରେ ଯାଇ ପହଞ୍ଚିଛି, ବରଜୁକୁ ଫେରାଇ ଆଣିବା ପାଇଁ, ତାହା ଯଦି ସମ୍ଭବ ନହୁଏ ତେବେ ଲକ୍ଷ୍ମଣପରି ଭାଇର ସହଯାତ୍ରୀ ହେବାପାଇଁ ସେ ପ୍ରସ୍ତୁତ ହୋଇଛି ।

ନେତ୍ରମଣି ସରବରାକାରର ଝିଅ ହେଲେ କ'ଣ ହେବ ମନଟା ସେହିପରି ବଡ଼ ନୁହେଁ । ସ୍ୱାର୍ଥପରା ସଂକୀର୍ଣ୍ଣମନା ଜିଦ୍‌ଖୋର ଏହି ନାରୀଟି ପାଇଁ ପଧାନଘରର ସୁନାସଂସାର ଚୁନା ହୋଇଛି । ବାସ୍ତବତାର ପଂଝାରେ ଆଦର୍ଶବାଦ ଛଟପଟ ହୋଇଛି । ସର୍ବସ୍ୱଦେଇ ବରଜୁ ଘରଛାଡ଼ି ଚାଲିଗଲା ପରେ ମଧ୍ୟ ତା ମନରେ ଟିକିଏ ହେଲେ ପରିବର୍ତ୍ତନ ଘଟିନାହିଁ । ଏଭଳି ଚରିତ୍ର ସମାଜରେ ବହୁଳଭାବେ ଦେଖିବାକୁ ମିଳନ୍ତି । ଏତଦ୍‌ବ୍ୟତୀତ, ଶରଦୀବୋଉ, ନାଣ୍ଡିପଣ୍ଡିଆଣୀ, ଯଦୁଦଳେଇ, ଚନ୍ଦରାଶିଅଳ, ଧରମା ପରି ଗୌଣ ଚରିତ୍ର ସମୂହ ଉପନ୍ୟାସର ଗତିକୁ ତ୍ୱରାନ୍ୱିତ କରିବା ସଙ୍ଗେ ସଙ୍ଗେ ଉପନ୍ୟାସର ଶ୍ରୀମଣ୍ଡନ କରିଛନ୍ତି ।

ପଲ୍ଲୀ ପରିବେଶରେ ସୃଷ୍ଟ ଏହି ଉପନ୍ୟାସ ପଲ୍ଲୀର ନିଛକ ଚିତ୍ର ବହନ କରିଛି । ପୋଖରୀ ତୁଠର ଦୃଶ୍ୟବର୍ଣ୍ଣନା, କୃଷକମାନଙ୍କ ବିଲବାଛିବା ବେଳର କଥୋପକଥନ, ଗାଁଠାକୁରାଣୀଙ୍କ ନିକଟରେ ନ୍ୟାୟ ନିଶାପ ଆଦିର ବର୍ଣ୍ଣନା ଯେତିକି ବାସ୍ତବ ସେତିକି ହୃଦୟସ୍ପର୍ଶୀ । ସହଜ ସରଳ ଭାଷା ମାଧ୍ୟମରେ ଔପନ୍ୟାସିକ ଗ୍ରାମ ପରିବେଶକୁ ଧରିବାକୁ ଯେଉଁଳି ପ୍ରୟାସ କରିଛନ୍ତି ତାହା ବାସ୍ତବିକ ସ୍ୱାଗତଯୋଗ୍ୟ । ଏତଦ୍‌ବ୍ୟତୀତ ଓଡ଼ିଶାର ପ୍ରାଚୀନ ଐତିହ୍ୟ, ପରମ୍ପରା ଓ ସଂସ୍କୃତି ଉପରେ ଏହି ଉପନ୍ୟାସରେ ସେ ଗୁରୁତ୍ୱ ଆରୋପ କରିଛନ୍ତି । ପଛକୁ ଫେରି ଚାହିଁ ସେ ଭବିଷ୍ୟତର ସ୍ୱପ୍ନ ଦେଖିଛନ୍ତି ।

'ମାଟିର ମଣିଷ' ସୃଷ୍ଟିର ଷୋହଳ ବର୍ଷ ପରେ 'ଲୁହାର ମଣିଷ' ଉପନ୍ୟାସର ସୃଷ୍ଟି । ୧୯୩୧ ମସିହାରେ ସୃଷ୍ଟ 'ମାଟିର ମଣିଷର ବରଜୁ ପଧାନ ୧୯୪୭ ମସିହାରେ ଲୁହାର

ମଣିଷକୁ ରୂପାନ୍ତରିତ ହୋଇଛି । ଔପନ୍ୟାସିକଙ୍କ ଭାଷାରେ – ''ଏହି ଲମ୍ବ ଷୋହଳ ବର୍ଷ ମଧ୍ୟରେ ଲେଖକ ମାଟିରୁ କେତେ ଲୁହା ବାହାରିବାର ଦେଖିଛି, କେତେକ ଲୁହା ପୁଣି ମାଟିରେ ମିଶିଯାଇ ତହିଁରୁ ଆହୁରି ଲୁହା ବାହାରୁଛି । ମାଟି ଆଉ ଲୁହା ଏହି ଅଦଳବଦଳ ମଧ୍ୟରେ ଲୁହାର ମଣିଷ ଛିଡ଼ା ହୋଇଛି ।''

ମାଟିର ମଣିଷର ଆଦର୍ଶବାଦୀ ବରଜୁ ଘର, ଜମିବାଡ଼ି, ଗାଈଗୋରୁ ସବୁ ସାନଭାଇ ଛକଡ଼ିକୁ ଦେଇ ଗାଁ ଛାଡ଼ି ପହଞ୍ଚିଛି ଯାଇଁ ହରିପୁରର ଗୌରାଙ୍ଗ ଶେଣ ଘରେ । ଗୌରାଙ୍ଗର ଅନୁରୋଧ କ୍ରମେ ବରଜୁ କିଛିଦିନ ପାଇଁ ତା'ଘରେ ଆଶ୍ରୟ ନେଇଛି । ଭ୍ରାତୃଭକ୍ତ ଭରତପରି ଛକଡ଼ି କାନ୍ଦିକାଟି ପହଞ୍ଚିଛି ଯାଇଁ ହରିପୁରରେ – ଭାଇକୁ ଫେରାଇ ଆଣିବ ନଚେତ ତା ସାଥିରେ ଯିବ । ବରଜୁ ଛକଡ଼ିକୁ ବୁଝାଇଛି, ଠିକ୍ ଯେମିତି ତିରିଶବର୍ଷ ତଳେ (ତାକୁ ଯେତେବେଳେ ୧୨ ବର୍ଷ ଓ ଛକଡ଼ିକୁ ସାତବର୍ଷ) ସେ ଛକଡ଼ିକୁ ପାଖରେ ବସାଇ ଗପୁଥିଲା, ସେମିତି ତାକୁ ପାଖରେ ବସାଇ କହିଲା - 'ତୁ କ'ଣ ଭାବୁଛୁ ମୁଁ ମାନ ଅଭିମାନରେ ଘରଛାଡ଼ି ଚାଲିଆସିଲି ? ମାନ ଅଭିମାନ କାହାକୁ କରିବି - ତତେ ! ବରଜୁ ଓଠର ଗୋଟାଏ ପାଖ ଟିକିଏ ମେଲାହୋଇ ମୁରୁକିହସ ଦେଖାଦେଲା । ତାହା ଛକଡ଼ିର ପିଲାଦିନରୁ ଜଣା ହସ ।'' ଭାଇ ଭାଉଜର ସ୍ନେହ ଶ୍ରଦ୍ଧା ତଥା ଗୌରାଙ୍ଗ ଶେଣଠାରୁ ବରଜୁ କିଛିଦିନ ପରେ ଘରକୁ ଫେରିଯିବାର ଆଶ୍ୱାସନା ପାଇ ମନଖୁସିରେ ଛକଡ଼ି ଘରକୁ ଫେରିଛି ଓ କ୍ଷେତବାଡି କାର୍ଯ୍ୟରେ ମନ ଦେଇଛି ।

ଗୌରାଙ୍ଗ ଶେଣ ଘରେ ବରଜୁ ତା ପରିବାର ସଦସ୍ୟ ପାଲଟି ଯାଇଛି । ନିଜ ଭାଇଙ୍କୁ ଆପଣାର କରି ନ ପାରିଲେ ମଧ୍ୟ ପରକୁ ସେ ଆପଣାର କରିଛି । ଗୌରାଙ୍ଗର ପୁନର୍ବିବାହ କାର୍ଯ୍ୟ ସମ୍ପାଦନ କରିଛି । ଅନ୍ୟାୟ ଅନୀତି ବିରୁଦ୍ଧରେ ବରଜୁର ମନ ଝଗଡ଼ି ଉଠିଛି । ସମବାୟ ସମିତିରୁ ଋଣଗ୍ରସ୍ତ ନିରୀହ ଗ୍ରାମବାସୀଙ୍କ ପାଇଁ ତା ହୃଦୟ କାନ୍ଦି ଉଠିଛି । ସେଥିପାଇଁ ମ୍ୟାନେଜରଙ୍କ ନିକଟରେ ସେ ତା ହୃଦୟର କ୍ଷୋଭ ପ୍ରକାଶ କରିଛି । ସାମ୍ୟବାଦୀ ବୈପ୍ଳବିକ ମନୋବୃତ୍ତି ନେଇ ବରଜୁ ଆଗେଇ ଚାଲିଛି । ହରିମିଶ୍ରଙ୍କ ଚକ୍ରାନ୍ତରେ ପଧାନ ପଡ଼ାର ଗ୍ରାମବାସୀମାନେ ବନ୍ଦୀ ହୋଇଥିବା ଖବର ପାଇ ସେ ଧାଇଁ ଯାଇଛି । ବରଜୁର ଆଦର୍ଶକୁ କଂଗ୍ରେସ କର୍ମୀମାନେ ଅଭିନନ୍ଦନ କରିଛନ୍ତି । କଂଗ୍ରେସ ସହିତ ମିଶି ବରଜୁ ଅରଟ ଚଳାଇ ସ୍ୱଦେଶୀ ହେବାର ମନୋଭାବ ପୋଷଣ କରିଛି । ଜାତୀୟତାର ମନ୍ତ୍ରରେ ଦୀକ୍ଷିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇ ସେ କାରାବରଣ କରିଛି । ମାଟିର ମଣିଷର ବରଜୁ ହାତରେ ଲୁହାର ଶିକୁଳି ପିନ୍ଧି 'ଲୁହାର ମଣିଷ'ରେ ପରିଣତ ହୋଇଛି ।

ବରଜୁ ଭାବିଥିଲା ସେ ଗୃହତ୍ୟାଗ କଲାପରେ ଛକଡ଼ି ଦାୟିତ୍ୱ ସମ୍ପନ୍ନ ହେବ । ବଞ୍ଚିବାର ବାଟ ନିଜେ ଖୋଜି ପାଇବ; ମାତ୍ର ତାହା ସମ୍ଭବ ହୋଇପାରିନି । ଛକଡ଼ି ଦିନକୁ ଦିନ ହରିମିଶ୍ରର ଚକ୍ରବ୍ୟୂହ ଭିତରକୁ ଟାଣିହୋଇ ଯାଇଛି । ତା କୁକର୍ମରେ ସାହାଯ୍ୟ କରିଛି । ଗ୍ରାମବାସୀମାନଙ୍କୁ ଜେଲ ପଠାଇବାରେ ସେ ସାକ୍ଷୀ ପଡ଼ିଛି । ଏଘଟଣା ବରଜୁ ପଧାନର

ପଞ୍ଜରାକୁ ଦୋହଲେଇ ଦେଇଛି । ବରଜୁକୁ ଲୁହାର ମଣିଷ ହେବାପାଇଁ ପ୍ରେରଣା ଯୋଗାଇଛି । ମାଟିର ମଣିଷରେ ମାନବିକ ଆବେଦନରେ ଆପ୍ଳୁତ ବରଜୁ ଲୁହାର ମଣିଷର ଆଦର୍ଶକୁ ଜାବୁଡ଼ିଧରି ପ୍ରଚାର ଧର୍ମୀ ହୋଇଉଠିଛି ।

ମାଟିର ମଣିଷର ହାରାବୋଉ 'ଲୁହାର ମଣିଷ' ରେ ଏକ ଆଦର୍ଶଗୃହିଣୀରେ ରୂପାୟିତ ହୋଇଛି । ପରକୁ ଆପଣାର କରିବାହେତୁ ଏହି ଚରିତ୍ରଟିର ପୂର୍ଣ୍ଣବିକାଶ ସମ୍ଭବପର ହୋଇପାରିଛି । ସେହିପରି ଗୌରାଙ୍ଗ ଶେଣ ଏକ ପରୋପକାରୀ ଶ୍ରଦ୍ଧାଳୁ ଚରିତ୍ର । ଜଣେ ନିଷ୍ଠାପର ବନ୍ଧୁ ଭାବରେ ଏହି ଚରିତ୍ରଟିର ମୌଳିକତା ପ୍ରକଟିତ ହୋଇଛି । ମୁଖ୍ୟ ଚରିତ୍ରଗୁଡ଼ିକୁ ଅଧିକ ସ୍ପଷ୍ଟ ପ୍ରାଞ୍ଜଳ କରିବା ଘଟଣାର ଗତିକୁ ତ୍ୱରାନ୍ୱିତ କରିବାରେ ସୁଲୀ ମା, ଅଗଣିରଥ, ରୂପକେନା, ନାଥବାବୁ, ଦୁଃଖୀଅପା, ନୀଳମାଉସୀ ଆଦି ଚରିତ୍ରଗୁଡ଼ିକର ଚମତ୍କାର ଅବତାରଣା, ଏଠାରେ ଉଲ୍ଲେଖଯୋଗ୍ୟ ।

ଲୁହାର ମଣିଷ ଉପନ୍ୟାସରେ କୃଷକ ପରିବାରର ମଧୁର ଦାମ୍ପତ୍ୟ ଜୀବନ, ଗ୍ରାମବାସୀମାନଙ୍କର ସାଧାରଣ ନାମକରଣ ତଥା ସେମାନଙ୍କ କଥୋପକଥନ ବେଶ୍ ସ୍ୱାଭାବିକ ହୋଇଛି – ''ଚେମା କହିଲା ଗଉରା ଦାଦିକୁ ମନକାଣି ଫଳ ମିଳିଛି । ବରଜୁ ପଧାନ ତା'ଘରେ ଗୋଡ଼ ଦେଇଛି କି ନାହିଁ, ଚାରିଆଡ଼େ ଯେମିତି ହସି ଉଠୁଛି । ମାଧିଆ କହିଲା – ତା ବାରିପଟ ଦେଖିଲୁଣି, ମାଟି ହଣା ହେଇଚି ଯେ କ'ଣ କହିବି ତା ଗୁଣ । ଏ ଚୁଡ଼ାଘଷା କାହିଁକି ସେ ମାଟିକି ସରିହେବ ।''

ବରଜୁ ଘରଛାଡ଼ି ଆସିବା ପରେ ତାର ମନସ୍ତାତ୍ତ୍ୱିକ ଭାବାବେଗକୁ ଔପନ୍ୟାସିକ ଅତି ଚମତ୍କାରଭାବେ ବର୍ଣ୍ଣନା କରିଛନ୍ତି – ''ନିଜଘରୁ ବାହାରି ଆସିଲାବେଳେ ବରଜୁ କେଉଁଠିକି ଯିବ, କେଉଁଠି ରହିବ କିଛି ହେଲେ ଭାବି ନଥିଲା । ଛକଡ଼ି ଜିମା ଘର ଦ୍ୱାର ଦେଇ ଆସିବାଟାକୁ ସେତେବେଳେ ଖାଲି ଠିକ୍‌ବୋଲି ସେ ବିଚାରିଥିଲା । ପରେ କ'ଣ ହେବ ସେଥିପାଇଁ ବେଗେ ଭାବନା କରିବା କେବେହେଲେ ତାର ଅଭ୍ୟାସ ନୁହେଁ । ତାର ଖାଲି ଅଭ୍ୟାସ ଏତିକି ଯେ, ଯୁଆଡ଼େ ଯାଉ କାମ କରିବ । ଗଣ୍ଡାଏ ଖାଇ ଖଣ୍ଡେ ପିନ୍ଧିବାକୁ ତାକୁ ଅଭାବ ହେବ ନାହିଁ । ଜନ୍ଦା ପିମ୍ପୁଡ଼ିକୁ ଖାଇବାକୁ ମିଳୁଛି ଆଉ ସେ ମଣିଷ ହୋଇ ଭୋକରେ ମରିବ ! ସେ ବୁଝିପାରେ ନାହିଁ କାହିଁକି ଲୋକେ ଭୋକ ଉପାସରେ ମରନ୍ତି । ଅନ୍ଧ, କୁଡ଼ିଙ୍କ କଥାସିନା ନିଆରା ! ଦେହରେ ତାକତ ଥିବା ଯାକେ ଦୁନିଆଁ ଗୋଟାକତ ସବୁରି ପାଇଁ ପଡ଼ିଛି । ଭୋକ ଉପାସରେ ମରିବାର ଅଧିକାର ଜଣେ କାହାର ଅଛିକି ? କାହିଁକି ତେବେ ମଣିଷ ମରେ ! କାହିଁକି ?

'ମାଟିର ମଣିଷ' ପରି 'ଲୁହାର ମଣିଷ' ଉପନ୍ୟାସରରେ ଔପନ୍ୟାସିକ ଚରିତ୍ର ଚିତ୍ରଣରେ ବା ବର୍ଣ୍ଣନା ବିଳାସରେ ଯେଉଳି ଆନ୍ତରିକତା ପ୍ରଦର୍ଶନ କରିଛନ୍ତି, ତାହା ବାସ୍ତବିକ ହୃଦ୍ୟ ।

'ମୁକ୍ତାଗଡ଼ର କ୍ଷୁଧା' ଉପନ୍ୟାସରେ କ୍ଷୟିଷ୍ଣୁ ସାମନ୍ତବାଦୀ ସଭ୍ୟତାକୁ ନଅଙ୍କ ଦୁର୍ଭିକ୍ଷର ପୃଷ୍ଠଭୂମି ଉପରେ ଦର୍ଶାଯାଇଛି । ପରୋପକାରୀ ପ୍ରଜାବତ୍ସଳ ରାଜା ଚନ୍ଦ୍ରକାନ୍ତ ପଟ୍ଟଦେବ ଅପୁତ୍ରକ ଥିଲେ ମଧ୍ୟ ଦ୍ୱିତୀୟ ବିବାହ କରିନାହାନ୍ତି । ରାଜପୁରୋହିତଙ୍କ କନ୍ୟା ସୁନନ୍ଦା ସହିତ ତାଙ୍କର ଗୁପ୍ତ ପ୍ରଣୟ ଓ ତାଙ୍କ ଔରସରୁ ଏକ ପୁତ୍ରସନ୍ତାନ ଜାତ, ରାଜଉଦ୍ୟାନରେ ସୁନନ୍ଦାର ଶିଶୁପୁତ୍ରକୁ ତ୍ୟାଗ, ଆଦି ସାମନ୍ତବାଦୀ ମାନସିକତାର ଏକ ଏକ ଦିଗ । ରାଜଉଦ୍ୟାନରୁ ଶିଶୁପୁତ୍ର ପ୍ରାପ୍ତ, ରାଜା, ରାଣୀ, ପୁଣି ମାତା ଗୌରୀ ଏବଂ କୃଷକ ରମଣୀ ସୁନାର ସ୍ନେହରେ ସେ ପରିବର୍ଦ୍ଧିତ । ଏହି ଲଣ୍ଡାବାବୁ ଚରିତ୍ରଟି ପିତାଙ୍କର ସମ୍ପୂର୍ଣ୍ଣ ବିପରୀତ ଧର୍ମୀ ଚରିତ୍ର । ବାହାରକୁ ଅତ୍ୟାଚାରୀ, ନିଷ୍ଠୁର ଓ କଠୋର ସ୍ୱଭାବର ହେଲେ ହେଁ ହୃଦୟ ତାଙ୍କର ମାନବିକତାସିକ୍ତ ଏହି ମଣିଷପଣିଆ ଟିକକ ହିଁ ତାଙ୍କ ଚରିତ୍ରର ସମସ୍ତ କାଳିମାକୁ ଧୋଇଦେଇ ପରବର୍ତ୍ତୀ ସମୟରେ ତାଙ୍କୁ ମହନୀୟ କରିଛି ।

ଲଣ୍ଡାବାବୁ ଓରଫ ଶୁଭକାନ୍ତ ମୁକ୍ତାଗଡ଼ର ସିଂହାସନ ଆରୋହଣ କଲାପରେ ଜଣେ ପ୍ରଜାଶୋଷକ ଅତ୍ୟାଚାରୀ ରାଜାଭାବେ ପରିଚିତ ହୋଇଛନ୍ତି । ବିଳାସବ୍ୟସନ ପାଇଁ ସେ ରାଜକୋଷରୁ ପ୍ରଚୁର ଅର୍ଥ ବ୍ୟୟ କରିଛନ୍ତି । ରାଣୀଙ୍କର ମନତୁଷ୍ଟି ନିମିତ୍ତ ସେ ସର୍ବଦା ଚେଷ୍ଟିତ ରହି ଉଆସ ପରେ ଉଆସ ତୋଳି ଚାଲିଛନ୍ତି । ଅନାବୃଷ୍ଟି ହେତୁ ଦେଶରେ ଦୁର୍ଭିକ୍ଷ ଦେଖାଦେଇଛି । ଏକେତ ରାଜାଙ୍କର ଅତ୍ୟାଚାର, ଦ୍ୱିତୀୟତଃ ଦୁର୍ଭିକ୍ଷ ପାଇଁ ଲୋକେ ପୋକମାଛି ପରି ମୃତ୍ୟୁବରଣ କରିଛନ୍ତି । କେତେକ ଦେଶଛାଡ଼ି ପଳାୟନ କରିଛନ୍ତି । ସନାତନର ନେତୃତ୍ୱରେ କେତେଜଣ ରାଜାଙ୍କୁ ଭେଟି ଅତ୍ୟାଚାର ନ କରିବା ପାଇଁ ରାଜାଙ୍କୁ ଅନୁରୋଧ କରିଛନ୍ତି । ସନାତନର ନିର୍ଭୀକତା ଓ ଔଦ୍ଧତ୍ୟରେ ରାଜା ଶୁଭକାନ୍ତ କ୍ଷୁବ୍ଧ ହୋଇ ସନାତନକୁ ନିର୍ବାସନ ଦଣ୍ଡ ଦେଇଛନ୍ତି । ଶହ ଶହ ଭୋକିଲା ଲୋକଙ୍କର ମୃତ୍ୟୁ ରାଜାଙ୍କ ମନରେ ଆଦୌ ପ୍ରଭାବ ବିସ୍ତାର କରିନାହିଁ । ସ୍ତନ୍ୟଦାନ କରି ତାଙ୍କୁ ବଞ୍ଚାଇଥିବା କୃଷକ ରମଣୀ ସୁନାର ମୃତ୍ୟୁ ହିଁ ରାଜାଙ୍କ ମନରେ ଗଭୀର ରେଖାପାତ କରିଛି । ସୁନାର ମୃତ୍ୟୁ ନିମିତ୍ତ ସେ ନିଜକୁ ଦାୟୀ କରିଛନ୍ତି । ଜନନୀର ଡାକ ତାଙ୍କୁ ଶୁଭିଯାଇଛି । ଏଥିରେ ତାଙ୍କ ଆଖି ଖୋଲିଯାଇଛି । ସନାତନର ଉକ୍ତିମଧ୍ୟ ତାଙ୍କର ମନେପଡ଼ିଛି । ପୁନଶ୍ଚ ରାଣୀଙ୍କ ବିଶ୍ୱାସଘାତକତା ରାଜା ଭର୍ତ୍ତୃହରିଙ୍କ ପରି ତାଙ୍କୁ ବୈରାଗ୍ୟ ଆଡ଼କୁ ଟାଣି ନେଇଛି ।

ପ୍ରଥମ ପର୍ଯ୍ୟାୟରେ ମୁକ୍ତାଗଡ଼ ଭିତରେ ତାଙ୍କର ସେବାକାର୍ଯ୍ୟ ସୀମିତ ରହିଛି । ପରେ ତାହା ପରିବ୍ୟାପ୍ତ ହୋଇଛି । ରାଜପ୍ରାସାଦର ସମସ୍ତ ସମ୍ପତ୍ତି ସେ ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କ ମଧ୍ୟରେ ବଣ୍ଟନ କରିଛନ୍ତି । ରାଜ୍ୟରେ ଅନ୍ନଛତ୍ର ଖୋଲି କାଙ୍ଗାଳମାନଙ୍କୁ ଅନ୍ନଦାନ କରିଛନ୍ତି । ପରେ କଲ୍ୟାଣପୁର ହୋଇଛି ରାଜାଙ୍କର କର୍ମକ୍ଷେତ୍ର । ଦୁର୍ଭିକ୍ଷର ପୃଷ୍ଠଭୂମି ଉପରେ ଶୁଭକାନ୍ତପରି ବର୍ତ୍ତୁଳ ଚରିତ୍ରଟିର ବିକାଶଶୀଳତାକୁ ଦର୍ଶାଇ ଦିଆଯାଇଛି ।

'ମୁକ୍ତାଗଡ଼ର କ୍ଷୁଧା' ଉପନ୍ୟାସରେ ବହୁ ପୁରୁଷ ଓ ନାରୀ ଚରିତ୍ରର ଅବତାରଣା କରାଯାଇଛି । ସେମାନଙ୍କ ମଧ୍ୟରେ କୃଷକରମଣୀ ସୁନା ଏକ ଅନବଦ୍ୟ ଚରିତ୍ର । ଶୁଭକାନ୍ତଙ୍କ

ବାଲ୍ୟାବସ୍ଥାରେ ସେ ସ୍ତନ୍ୟଦାନ କରି ତାଙ୍କ ଜୀବନ ରକ୍ଷା କରିଛି, ହେଲେ ଖାଇବାକୁ ନ ପାଇ ଦୁର୍ଭିକ୍ଷର କରାଳ ଗ୍ରାସରେ ସେ ମୃତ୍ୟୁବରଣ କରିଥିଲେ ସୁଦ୍ଧା ରାଜାଙ୍କର ଦ୍ୱାରସ୍ଥ ହୋଇନାହିଁ । ପ୍ରତିଦାନରେ ରାଜାଙ୍କୁ ସେ କେବେହେଲେ କିଛି ମାଗିନାହିଁ । ମାଆ ପରି ମାଆଟିଏ ସେ । ଏହି ଚରିତ୍ରଟିର ଚରିତ୍ରବତ୍ତା ଓ ପରବର୍ତ୍ତୀ ସମୟରେ ତାର ମୃତ୍ୟୁ ହିଁ ରାଜାଙ୍କ ମାନସିକ ପରିବର୍ତ୍ତନରେ ଘୋର ପ୍ରଭାବ ବିସ୍ତାର କରିଛି ।

ସେହିପରି ଚନ୍ଦ୍ରକାନ୍ତ ପଟ୍ଟଦେବଙ୍କ ରାଣୀ ଚରିତ୍ର । ରାଣୀ ସନ୍ତାନହୀନା ହେଲେ ମଧ୍ୟ ବାତ୍ସଲ୍ୟମୟୀ । ସେ ରାଜାଙ୍କ କୁକର୍ମ ଜାଣି ମଧ୍ୟ ଚୁପ୍‌ଚାପ୍ ସହୃଦୟ ଦୃଷ୍ଟିଭଙ୍ଗୀ ନେଇ ସବୁକଥା ବିଚାର କରିଛନ୍ତି । ଶୁଭକାନ୍ତକୁ ପୁତ୍ରବତ୍ ଭଲପାଇଛନ୍ତି । ସେହିପରି ଗୌରୀ, କୃପାନିଧି, ବଳିୟାରସିଂହ ଆଦି ଏକ ଏକ ଅପୂର୍ବ ଗୌଣ ଚରିତ୍ର ।

'ମୁକ୍ତାଗଡ଼ର କ୍ଷୁଧା'ର ଦ୍ୱିତୀୟଭାଗ ହେଉଛି 'ଅମରଚିତା' ଉପନ୍ୟାସ । ଔପନ୍ୟାସିକଙ୍କ ପ୍ରତିଭାର ଚରମ ବିକାଶ ଏହି ଉପନ୍ୟାସରୁ ସୂଚିତହୁଏ । ସାମାଜିକ ପୃଷ୍ଠଭୂମି ଉପରେ ମାନବତାବାଦରେ ଦୀକ୍ଷିତ ଚରିତ୍ରମାନଙ୍କର ଆତଯାତ, ବେଶ୍ ମନୋରମ ଶୈଳୀରେ ଉପସ୍ଥାପିତ । ସନାତନ ଦେଶାନ୍ତର ହେଲାପରେ ତାର ବୃଦ୍ଧ ପିତାମାତା ଓ ଭଗ୍ନୀ ଅଳକା ମର୍ମାହତ ହୋଇ ପଡ଼ନ୍ତି । ସେହି ପରିବାରକୁ ମୂଳପୋଛ କରିବାକୁ ଦୁର୍ଭିକ୍ଷର ହାତ ଲମ୍ବିଆସେ, ପିତାମାତା ମୃତ୍ୟୁବରଣ କରନ୍ତି । ରାଜା ଶୁଭକାନ୍ତ ସେମାନଙ୍କ ଶବସତ୍କାର କରିଦିଅନ୍ତି । ଏକମାତ୍ର ରହିଯାଏ ଅଳକା । ଅଳକାଠାରୁ ପତ୍ରମାଧ୍ୟମରେ ସନାତନ ଶୁଭକାନ୍ତଙ୍କର ପରିବର୍ତ୍ତନ ତଥା ସେବା ମନୋବୃତ୍ତିର ଖବର ପାଇଛି । ପିତାମାତାଙ୍କର ମୃତ୍ୟୁ ଖବର ଶୁଣି ସନାତନ ଧୈର୍ଯ୍ୟ ହରାଇ ନାହିଁ, ପରନ୍ତୁ ରାଜାଙ୍କ ପରିବର୍ତ୍ତନରେ ସେ ଖୁସି ହୋଇଛି । କୋଟି କୋଟି ଲୋକଙ୍କର ଭାଗ୍ୟନିର୍ଦ୍ଧାରକ ରାଜାଙ୍କୁ ପରିବର୍ତ୍ତିତ ପରିସ୍ଥିତିରେ ଭେଟିବାପାଇଁ ସେ ଆଗ୍ରହୀ ହୋଇ ଉଠିଛି । ସନାତନ ରାଜା ଶୁଭକାନ୍ତଙ୍କୁ ସାକ୍ଷାତ୍‌କରିଛି । ପରସ୍ପର ଆନନ୍ଦରେ ବିହ୍ୱଳ ହୋଇ ଉଠିଛନ୍ତି ଓ ରାଜାଙ୍କର ପରମ ସହଚରଭାବେ କାର୍ଯ୍ୟ କରିବାକୁ ସନାତନ ରାଜାଙ୍କୁ ପ୍ରତିଶ୍ରୁତି ଦେଇଛି । ତାକୁ ସର୍ଦ୍ଦାର ବଳିୟାର ସିଂହ ସ୍ୱତଃ ପ୍ରଣୋଦିତ ସାହଚର୍ଯ୍ୟରେ ଶ୍ୟାମରଥଙ୍କୁ ଡରାଇ ସାହାଯ୍ୟ କେନ୍ଦ୍ରକୁ ଚାଉଳ ଯୋଗାଇବା ନେଇ ଶୁଭକାନ୍ତ ସହିତ ଆଳାପ ପ୍ରସଙ୍ଗରେ ସନାତନ କହିଛି – ''ଚୋରି ଡକାୟତି, ଖୁଣି, ଦରକାର ପଡ଼ିଲେ କୌଣସି ଗୋଟିକୁ ବାଦ୍ ଦେବାକୁ ହେବ ନାହିଁ । ଶ୍ୟାମରଥ ଭଳି ଲୋକଙ୍କୁ ହତ୍ୟାକଲେ ପାପ ବୋଲି ତୁମେ ମନେକର ଭାଇ ? × × ଗୋଟିଏ କଥା ବିଚାର କର – ସମ୍ମୁଖରେ ଶତଶତ ନିରୀହ ମଣିଷର ଅନାହାର ମୃତ୍ୟୁ ଦର୍ଶନ କରିବ ନା ପାପାଚାରୀମାନଙ୍କର ଧନସମ୍ପତ୍ତି ବଳାତ୍କାରରେ ହରଣ କରିବାକୁ ଭୟ କରିବ ?'' ଦୁର୍ଭିକ୍ଷ ପ୍ରପୀଡ଼ିତ ଜନତାଙ୍କୁ ସାହାଯ୍ୟ କରିବାକୁ ସନାତନ ହିଂସାର ପଥ ବାଛିନେଇଛି । ନରହତ୍ୟା ଦୋଷରେ ଅଭିଯୁକ୍ତ ସନାତନ ବିଚରାଳୟର ଜମାନବନ୍ଦିରେ ନିର୍ଭୀକ ଚିତ୍ତରେ ପ୍ରକାଶ କରିଛି

– ''ସମସ୍ତ ବିଚାର ଓ ବିଚାରାଳୟକୁ ମୁଁ ଅଳିକ ପ୍ରହସନ ରୂପେ ଜ୍ଞାନ କରେ । ସୁତରାଂ କୌଣସି ପ୍ରଶ୍ନର ଉତ୍ତର ଦେବାପାଇଁ ମୁଁ ଅକ୍ଷମ । କେବଳ ଏତିକି ମାତ୍ର କହିପାରେ ଯେ ଶୁଭକାନ୍ତ ସଂପୂର୍ଣ୍ଣ ନିର୍ଦ୍ଦୋଷ'' । ସନାତନ ମୃତ୍ୟୁଦଣ୍ଡରେ ଦଣ୍ଡିତ ହେଲାବେଳେ କେବଳ ତା ମୁଖରୁ ସ୍ଫୁରିଛି – ''ଜଗତର ମଙ୍ଗଳ ହେଉ ।'' ସନାତନ ଏକ ଦେଶପ୍ରେମୀ କର୍ମବୀର ଯିଏ ଜଗତର ମଙ୍ଗଳପାଇଁ ହସି ହସି ପ୍ରାଣବଳି ଦେଇପାରେ । ଏଭଳି ଚରିତ୍ରକୁ ଜୀବନ ବାଟ ଛାଡ଼ିଦିଏ ସତ, ହେଲେ ମୃତ୍ୟୁ ତାକୁ ସ୍ପର୍ଶକରି ପାରେ ନାହିଁ । କାଳିନ୍ଦୀଚରଣଙ୍କ ସୃଷ୍ଟିରେ ଏ ଚରିତ୍ରିଟି ଅମଳିନ ଓ ଭାସ୍ୱର ।

ରାଜାଶୁଭକାନ୍ତ ସମସ୍ତ ଐଶ୍ୱର୍ଯ୍ୟ ବିଳାସ ତ୍ୟାଗକରି ଦୁର୍ଭିକ୍ଷ ପ୍ରପୀଡ଼ିତ ପ୍ରଜାଙ୍କ ସେବାକାର୍ଯ୍ୟରେ ତତ୍ପର ହୋଇଉଠିଛନ୍ତି । ମାନବସେବାକୁ ପରମଧର୍ମ ବୋଲି ବିଚାରି ରାଜକୋଷ ଶୂନ୍ୟ କରି ଦେଇଛନ୍ତି । ଯିଏ ଦିନେ ଘୋଡ଼ାପିଠିରୁ 'ଓହ୍ଲାଉ ନଥିଲେ, କଣ୍ଟାପଥରେ ଚାଲି ତାଙ୍କ ପାଦରୁ ରକ୍ତର କ୍ଷରଣ ଘଟିଛି । ପ୍ରଜାମାନଙ୍କ ଦୁଆର ଦୁଆର ବୁଲି ସେମାନଙ୍କ ଅଭାବ ଅସୁବିଧା ବୁଝିଛନ୍ତି । ପ୍ରଜାମାନେ ତାଙ୍କୁ ଉଆସକୁ ଫେରିଯିବା ପାଇଁ ଅନୁରୋଧ କଲାବେଳେ ସେ କହିଛନ୍ତି – ''ଆରେ ମୁଁ ତ କେତେ ପାପ୍ କରିଛି । ସେହି ପାପ ପାଇଁ ପ୍ରାୟଶ୍ଚିତ୍ତ କରୁଛି । ତମର ସବୁ ତ କିଛି କରୁନାହିଁ ।'' ଅପରାଧୀ ସାବ୍ୟସ୍ତ ହୋଇ ଆଜୀବନ ନିର୍ବାସନ ଦଣ୍ଡରେ ଦଣ୍ଡିତ ରାଜା ଶୁଭକାନ୍ତ ଭଲକାର୍ଯ୍ୟକରି ବାରବର୍ଷପରେ ମୁକ୍ତ ହୋଇଛନ୍ତି । ଦେଶ ସେବା ହିଁ ହୋଇଛି ତାଙ୍କର ପରମବ୍ରତ । ଶୁଭକାନ୍ତ ଏକ ଆଦର୍ଶ ଚରିତ୍ର । ଏହି ଚରିତ୍ରଟିର ବିକାଶ ସ୍ୱତଃସ୍ଫୂର୍ତ୍ତ ସ୍ନେହ ପ୍ରେମ ମାନବିକତା ତଥା ମହାନ୍ ଦେଶସେବକ ରୂପେ ସେ ଉପନ୍ୟାସରେ ବର୍ଣ୍ଣିତ । ଶୁଭକାନ୍ତ ଚରିତ୍ର ଔପନ୍ୟାସିକ କାଳିନ୍ଦୀଚରଣଙ୍କର ଏକ ଅପୂର୍ବ ସୃଷ୍ଟି । ଏତଦ୍ ବ୍ୟତୀତ ଅଭିରାମ, ଅଳକା, ଶୋଭା, ଆନନ୍ଦଦାସ, ଗୌରୀ ଆଦି ଅନେକ ଚରିତ୍ରକୁ ନେଇ ଉପନ୍ୟାସଟି ଋଦ୍ଧିମନ୍ତ ।

'ଆଜିର ମଣିଷ' ଉପନ୍ୟାସଟି ମାଟିର ମଣିଷ ଓ ଲୁହାର ମଣିଷର ପରବର୍ତ୍ତୀ ବିକାଶ ଭଳି ଜଣାପଡୁଥିଲେ ହେଁ, ପ୍ରକୃତରେ ତାହା ନୁହେଁ । ଏହି ଉପନ୍ୟାସଟି ପୂର୍ବଦୁଇଟି ଉପନ୍ୟାସଠାରୁ ସମ୍ପୂର୍ଣ୍ଣ ଭିନ୍ନ । ପ୍ରୌଢ଼ଶିକ୍ଷାନୁକୂଳ ଏହି ରଚ଼ନାଟି 'ଗୌରୀ' ନାମରେ କଟକ ଆକାଶବାଣୀ ତରଫରୁ ଚାରିମାସଯାଏ ସାପ୍ତାହିକ କାର୍ଯ୍ୟକ୍ରମରେ ପ୍ରଚାରିତ ହୋଇଥିଲା । ପରବର୍ତ୍ତୀ ସମୟରେ ଏହା 'ଆଜିର ମଣିଷ' ନାମରେ ନାମିତ ହୋଇ ପୁସ୍ତକ ଆକାରରେ ଆତ୍ମପ୍ରକାଶ କଲା । ଏହା ପ୍ରଚାରଧର୍ମୀ ଏକ ରଚ଼ନା ହୋଇଥିବା ହେତୁ ଏହାର କଳାତ୍ମକଦିଗ କ୍ଷୁଣ୍ଣ ହୋଇଥିବା ଦେଖାଯାଏ ।

ବିଶ୍ୱଯୁଦ୍ଧ ଓ ସ୍ୱାଧୀନତା ଆନ୍ଦୋଳନର ପୃଷ୍ଠପଟ ଉପରେ ଏହି ଉପନ୍ୟାସଟି ପର୍ଯ୍ୟବସିତ । ସ୍ୱାଧୀନତା ପରବର୍ତ୍ତୀ ସମାଜରେ ମଣିଷର ମାନସିକତା, ବିଭିନ୍ନ ଅଭାବବୋଧକୁ ଆଧାରକରି ଉପନ୍ୟାସଟି ଗତିଶୀଳ । ସମାଜକୁ ପରିବର୍ତ୍ତନ କରିବାର

ସ୍ୱପ୍ନନେଇ ଆଇ.ଏ.ଫେଲ ଦିବାକର ଅସବର୍ଣ୍ଣ ବିବାହ କରିବାପାଇଁ ଇଚ୍ଛାପ୍ରକାଶ କରିଛି । ଶେଷରେ ନୟନଗଡ଼ର ଆଭିଜାତ୍ୟପୂର୍ଣ୍ଣ ଦଳବେହେରା ପରିବାରର କନ୍ୟା ସାବିତ୍ରୀକୁ ବିବାହ କରିଛି । ଦିବାକର ବାକ୍ୟବୀର । ସମାଜସଂସ୍କାର ପାଇଁ ଅନେକ ଯୋଜନା ପ୍ରସ୍ତୁତ କଲେ ମଧ କାହାକୁ ସେ କାର୍ଯ୍ୟରେ ପରିଣତ କରିପାରେ ନାହିଁ । ମନରେ ଜମାଟବନ୍ଧା ଅନ୍ଧବିଶ୍ୱାସର ଶରବ୍ୟ ହୋଇ ନିଜ ଜୀବନକୁ ମଧ ସେ ହଳାହଳମୟ କରିଛି । ଶଶୁରଘରର ଦୋଷ ଦୁର୍ବଳତାକୁ ସେ ନିଜ ଉପରେ ଆରୋପ କରିଛି । ସ୍ୱାମୀ ସ୍ତ୍ରୀ ଭିତରେ ମତାନ୍ତର ଘଟିବାରୁ ସେ କଲିକତା ପଳାଇଛି । ହେଲେ ସେଠିମଧ ସେ ସ୍ଥିର ହୋଇ ରହିପାରି ନାହିଁ । ପୁନଶ୍ଚ ନିଜ ଗାଁକୁ ଫେରିଆସିଛି । ସାବିତ୍ରୀ ନିଜ ବାଲ୍ୟସଙ୍ଗିନୀ ଗୌରୀର ସହାୟତାରେ ଗ୍ରାମର ଉନ୍ନତିପାଇଁ ବିବିଧ ସଂଗଠନ କାର୍ଯ୍ୟରେ ଯୋଗ ଦେଇଛି ।

ଆଦର୍ଶବାଦୀ ମଦନବାବୁଙ୍କ କନ୍ୟା ଗୌରୀ ଗାଁ ସ୍କୁଲରେ ଶିକ୍ଷାଲାଭ କରିଛି । ସମୟକ୍ରମେ ଡାକ୍ତର ବିଧୁଶେଖରଙ୍କ ପୁତ୍ର ତୁହିନ୍‌କୁ ସେ ଭଲପାଇ ବସିଛି । ଏଥିନେଇ ଗ୍ରାମରେ ବହୁ ଅଶ୍ଳୀଳ ଭାବନା, ବେନାମୀ ପତ୍ର, କାନ୍ଥବାଡ଼ରେ କୁତ୍ସିତ ଲେଖା ସତ୍ତ୍ୱେ ତାର ଭଲପାଇବା ଅତୁଟ ରହିଛି । ୧୯୪୧ ମସିହାରେ ସଂଘଟିତ ଯୁଦ୍ଧରେ ବିଧୁଶେଖର ଡାକ୍ତର ଭାବେ ଯୋଗଦେଇଛନ୍ତି । ବର୍ମାସୀମାନ୍ତ ଆଜାଦ୍‌ହିନ୍ଦ୍ ଫୌଜରେ ଯୋଗଦାନ କରି ଦେଶମାତୃକାର ସେବା କରୁ କରୁ ସେ ମୃତ୍ୟୁବରଣ କରିଛନ୍ତି । ପରେ ପରେ ତୁହିନ୍‌ର ଅକାଳବିୟୋଗ ଗୌରୀପାଇଁ ଦୁର୍ଦ୍ଦିନ ଡାକି ଆଣିଛି । ଶାଶୁ ଓ ନଣନ୍ଦଙ୍କ ଗଞ୍ଜଣାରେ ଜର୍ଜରିତା ଗୌରୀ ଦେଶସେବାକୁ ପରମବ୍ରତଭାବେ ଗ୍ରହଣ କରିଛି । ଗାଁ ସ୍କୁଲରେ ସେ ଶିକ୍ଷକତା କରିଛି । ଆଧୁନିକତାର ପରିପନ୍ଥୀ ଗ୍ରାମବାସୀଙ୍କର ସେ ଚକ୍ଷୁଶୂଳ ହୋଇଛି । ଗୌରୀର ସହାୟତାରେ ସାବିତ୍ରୀର ଉଜୁଡ଼ା ସଂସାର ପୁଣି ହସି ଉଠିଛି ।

ଉପନ୍ୟାସର ମୁଖ୍ୟଚରିତ୍ର ଦିବାକର ଦାସ ପ୍ରାଚୀନ ଭାବଧାରାର ପରିପନ୍ଥୀ ଜଣେ ସଂସ୍କାରକାମୀ ଯୁବକ । ଜାତିପ୍ରଥାର ଉଚ୍ଛେଦ ଓ ଅସବର୍ଣ୍ଣ ବିବାହର ସେ ପକ୍ଷପାତୀ । ପିତାଙ୍କ ନିର୍ଦ୍ଦେଶ କ୍ରମେ ଆଭିଜାତ୍ୟପୂର୍ଣ୍ଣ ଦଳବେହେରା ପରିବାରର କନ୍ୟା ସାବିତ୍ରୀକୁ ବିବାହ କରିଥିଲେ ମଧ ସାଂସାରିକ ଜୀବନ ସୁଖମୟ ହୋଇନାହିଁ । ସାବିତ୍ରୀ ସ୍ୱାମୀ ଦିବାକରକୁ ସାହାଯ୍ୟ ସହଯୋଗ କରିନାହିଁ, ବରଂ ଶକ୍ତିସାମର୍ଥ୍ୟହୀନ ପୁରୁଷ ବିବାହ କରିବା ଉଚିତ୍ ନୁହେଁ ବୋଲି ଆକ୍ଷେପ କରିଛି । ପତ୍ନୀ ବଂଶର କଳଙ୍କ ଓ କୁସଂସ୍କାର ନେଇ ସର୍ବଦା ଚିନ୍ତିତ ଦିବାକର କଠୋର ଭାଷାରେ ଜବାବ ଦେଇଛି - 'ହଁ, ସାବିତ୍ରୀ ! ଖୁବ୍ ଶକ୍ତି ସାମର୍ଥ୍ୟ ମୁଁ ଦେଖିଛି, ବାପକୁ ମାରି ଶକ୍ତି ସାମର୍ଥ୍ୟ, ସାହସ ଦେଖାଇବା ଯେଉଁ ଘରର ଆଦର୍ଶ, ସେଇ ଘରୁ ତୁମେ ଆସିଛ – ସେଇ ବଂଶର ରକ୍ତ ତୁମ ଦେହରେ । ତୁମ ଜେଜେ, ଗୋସେଁପା, ଯେମିତି ସଂସାରରେ ଧର୍ମପାଳିଥିଲେ ମୁଁ ସେ ଧର୍ମ ଶିଖି ନାହିଁ ।'' ଦୁଇଟି ସନ୍ତାନ ପରେ ଯୁକ୍ତି, କଳହ ଓ ବାଦବିବାଦ ମଧରେ ଦାମ୍ପତ୍ୟ ଜୀବନ ସୁଖମୟ ହୋଇନାହିଁ । ତଥାପି ସେହି ଜୀବନ କାମ୍ୟ । ସେ ଜୀବନକୁ ଅସ୍ୱୀକାର କରିହେବ ନାହିଁ । ଉଷାସହିତ କଥାବାର୍ତ୍ତା ହେଲାବେଳେ

ଦିବାକର ଏହା ପ୍ରକାଶ କରିଛି ଯେଉଁଥିରୁ ଏହି ଚରିତ୍ରଟିର ଏକ ମହନୀୟ ଦିଗ ପ୍ରକଟିତ ହୁଏ । ଦିବାକର କହିଛି – ''ଆମେ ରାମାୟଣ ମହାଭାରତ ଯୁଗର ମଣିଷ ନୋହୁଁ, ଆମେ ଆଜିର ମଣିଷ । ହୁଏତ କେବେ ଆମକୁ ନୂଆଜୀବନ ଖୋଜିବା ପାଇଁ ପୁଣି ସେହି ରାମାୟଣ ମହାଭାରତ ଯୁଗକୁ ଫେରିବାକୁ ପଡ଼ିବ । ତାହାବୋଲି ଆଜିକୁ ଆମେ ଏଡ଼ିଦେଇ ପାରିବା ନାହିଁ । କାଲିଠାରୁ ପଛେ ଆଜିଟା ଯେତେ ଅସହ୍ୟ ହେଉ, ମୃତ୍ୟୁଠାରୁ ପଛେ ଜୀବନଟା ଯେତେ ଭୀଷଣ, ତାହାରି ଆଡ଼କୁ ଯିବାକୁ ହେବ ଆମକୁ ।'' ସମୟକୁ ସବୁବେଳେ ସ୍ୱୀକାର କରିବାକୁ ହୁଏ, ଏହା ହିଁ ଦିବାକର ଚରିତ୍ରର ବୈଶିଷ୍ଟ୍ୟ ।

ଦିବାକର ଦାସର ପତ୍ନୀ ସାବିତ୍ରୀ ରକ୍ଷଣଶୀଳା ଗୃହିଣୀ । ପ୍ରଥମେ ସେ ସ୍ୱାମୀକୁ ସମାଜମଙ୍ଗଳ କାର୍ଯ୍ୟରେ ସାହାଯ୍ୟ କରିନାହିଁ । ତାର ପ୍ରତ୍ୟେକ କାର୍ଯ୍ୟର ଘୋର ବିରୋଧ କରିଛି । ସ୍ୱାମୀକୁ ପରିବାର ଭିତରେ ଆବଦ୍ଧ ରଖିବାକୁ ସର୍ବଦା ଚେଷ୍ଟା କରିଛି । ଦିବାକର କଲିକତା ଚାଲିଯିବାପରେ ସେ ଧୈର୍ଯ୍ୟହରାଇ ନାହିଁ । ପିଲାମାନଙ୍କର ଦାୟିତ୍ୱ ନେଇଛି । ଗୌରୀ ସହିତ ମିଶି ଦେଶହିତକର କାର୍ଯ୍ୟରେ ନିଜକୁ ନିୟୋଜିତ କରିଛି ।

ଉପନ୍ୟାସରେ ଗୌରୀ ଏକ ଆଦର୍ଶ ପ୍ରେମିକା ତଥା ପରୋପକାରିଣୀ ଚ଼ରିତ୍ର । ଦାରିଦ୍ର୍ୟ ତଥା ଅଭାବ ଅନଟନ ଭିତରେ ଗତିକରି ଏହି ଚରିତ୍ରଟି ଜୀବନ ସହିତ ମୁକାବିଲା କରି ଶିଖିଛି । ସେହିପରି ଉଷା ଚରିତ୍ର ମାଧ୍ୟମରେ ଔପନ୍ୟାସିକ ଆଜିର ମଣିଷର ସ୍ୱରୂପକୁ ଚିହ୍ନାଇବାକୁ ଚେଷ୍ଟା କରିଛନ୍ତି । ଯୌନପିପାସୁ ଲୋକଙ୍କ ଶିକାର ହୋଇ ଉଷାର ଜୀବନ କଳଙ୍କିତ ହୋଇଛି । ସ୍ୱାମୀ ପରିତ୍ୟକ୍ତା ଉଷା ଜୀବନର ଧୂ ଧୂ ବାସ୍ତବତାର ସମ୍ମୁଖୀନ ହେଲାବେଳେ ଭାବିଛି – ''ମଣିଷ ଜୀବନଟା ଯେ ପାଣିସୁଅଭଳି କେତେ ଖାଲଢ଼ିପ ଡେଇଁ, କେବେ ପୁଣି ଆଉ କେତେ ସୁଅରେ ମିଶି ଏକ ହୋଇଯାଏ । ତାପରେ ଖଣ୍ଡେ ଦୂରଯାଇ ଫାଙ୍କ ହୋଇ ପୁଣି ନିଆରା ରାସ୍ତାଧରେ । × × ସବୁ କ'ଣ କେବେ ହେଲେ ଖୋଲାଖୋଲି କହି ହୁଏ କି ? ତେବେ କ'ଣ ସମାଜ ଆଉ ଭଦ୍ର ହୋଇ ରହିବ ? ପ୍ରକାଶ କରିଦେଲେ ଯେ ସମସ୍ତେ ଆମେ ଅପରାଧୀ ହୋଇଯିବା ।'' ଜୀବନକୁ ଅତି ନିକଟରୁ ଦେଖି ଉଷା ଯେଉଁ ମନ୍ତବ୍ୟ ଦେଇଛି ତାହା ଯେତିକି ବାସ୍ତବ ସେତିକି ମର୍ମସ୍ପର୍ଶୀ ।

କାଳିନ୍ଦୀଚରଣଙ୍କ ଉପନ୍ୟାସ ସମୂହ ପଲ୍ଲୀ ଭିତ୍ତିକ । ପଲ୍ଲୀର ରାଜନୈତିକ, ଅର୍ଥନୈତିକ ତଥା ସାଂସ୍କୃତିକ ପୃଷ୍ଠପଟ ଉପରେ ଯୁଗଧର୍ମର ଆଦର୍ଶକୁନେଇ ଉପନ୍ୟାସ ଗୁଡ଼ିକ ଗତିଶୀଳ । ସହଜ ସରଳ ଗ୍ରାମ୍ୟଭାଷା ମାଧ୍ୟମରେ ଉପନ୍ୟାସର ଗଳ୍ପାଂଶ, ଚରିତ୍ର ତଥା ପରିବେଶ ଖୁବ୍ ଆନ୍ତରିକତାର ସହିତ ଉପସ୍ଥାପିତ । ଔପନ୍ୟାସିକଙ୍କର ତୀକ୍ଷ୍ଣ ପର୍ଯ୍ୟବେକ୍ଷଣ ଶକ୍ତି ଓ ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଉପନ୍ୟାସଗୁଡ଼ିକୁ ସମାଜ ଆଭିମୁଖ୍ୟ କରିବା ସଙ୍ଗେ ସଙ୍ଗେ ଏଗୁଡ଼ିକୁ ସ୍ୱାତନ୍ତ୍ର୍ୟ ଦେଇଛି ।



# କାଳିନ୍ଦୀଚରଣଙ୍କ ଈଶ୍ୱର

ଡକ୍ଟର ଶ୍ୟାମସୁନ୍ଦର ମିଶ୍ର

ଓଡ଼ିଆ କାବ୍ୟସାହିତ୍ୟରେ ଯେଉଁମାନଙ୍କୁ ପଞ୍ଚସଖା କୁହାଯାଏ ସେମାନେ ଗୋଟିଏ ନିର୍ଦ୍ଦିଷ୍ଟ ସମୟର କବି ହେଲେ ମଧ, ଘନିଷ୍ଠ ବନ୍ଧୁ ହେଲେ ମଧ, କେତେକ ଦୃଷ୍ଟିକୋଣରୁ ଓଡ଼ିଆ ସାରସ୍ୱତ କ୍ଷେତ୍ରରେ ଆଧୁନିକତାର ଅଗ୍ରଦୂତ ହେଲେ ମଧ ସେମାନଙ୍କ ରଚ଼ନା ମଧରେ ଭାବନା ଓ ଆଭିମୁଖ୍ୟର ଅନେକ ପାର୍ଥକ୍ୟ ଦେଖାଯାଇଥାଏ । ବୈକୁଣ୍ଠ ପଟ୍ଟନାୟକ ଥିଲେ ଗଭୀର ଆଧାତ୍ମିକତାର ପଥିକ । ସେ ଅବଶ୍ୟ ଦେବାଳୟ ବା ପାରମ୍ପରିକ ପ୍ରାର୍ଥନା ମଣ୍ଡପକୁ ଯାଇ ବିଭିନ୍ନ ଦେବଦେବୀଙ୍କ ମୂର୍ତ୍ତି ନିକଟରେ ପ୍ରାର୍ଥନାର କଥା କହିନାହାନ୍ତି; କିନ୍ତୁ ନିଜ ମନର ହଂସକୁ ମାନସରୋବରକୁ ଉଡ଼ିଯାଇ 'ଅଦୂର ଗୋଲକରେ ପ୍ରିୟ ରାସ' ଦେଖିବା ପାଇଁ ପ୍ରଣୋଦିତ କରିଛନ୍ତି । ଅନ୍ନଦା ଶଙ୍କର ଥିଲେ ପ୍ରବଳ ଆଧୁନିକବାଦୀ କବି । ସମାଜ ମଧରେ ଥିବା ସମସ୍ତପ୍ରକାର ପୁରାତନ ପ୍ରଥାକୁ ଭାଙ୍ଗି ନୂତନ କରି ଗଢ଼ିବା ପାଇଁ ସେ କବିତା ମଧରେ ପ୍ରେରଣା ଦେଇଛନ୍ତି । 'ସବିତା' କବିତାରେ ସେ ଯୁବସମାଜକୁ ପ୍ରତ୍ୟକ୍ଷ ଉଦ୍‌ବୋଧନ ଦେଇଛନ୍ତି ଯେ ସୂର୍ଯ୍ୟଙ୍କର ପ୍ରଚଣ୍ଡ ଉତ୍ତାପ ପରି ସେମାନେ ଜରାଜର୍ଜର ସମାଜକୁ ଧ୍ୱଂସ କରିପାରିବେ; ପୁଣି ସୂର୍ଯ୍ୟକିରଣର ନବ ସୃଜନାତ୍ମକ ଶକ୍ତି ମଧ ସେମାନଙ୍କଠାରେ ଅଛି । ସେମାନେ ଏବେ ପୁରୁଣାକୁ ଭାଙ୍ଗି ନୂଆ ଦୁନିଆର ଗଠନ ଆରମ୍ଭ କରନ୍ତି ।

ଅନ୍ନଦାଶଙ୍କର ଅବଶ୍ୟ ନୀରୀଶ୍ୱରବାଦୀ ନଥିଲେ କିନ୍ତୁ ନିଜ କବିତା ମଧରେ ଆଧାତ୍ମିକତାର ପ୍ରକାଶ କରିବାକୁ ହୁଏତ ସେ ସୁଯୋଗ ପାଇନାହାନ୍ତି କିମ୍ବା ଇଚ୍ଛା କରିନାହାନ୍ତି । ପ୍ରକୃତ ଅର୍ଥରେ ସେ ଥିଲେ ସେକ୍ୟୁଲାର ବା ଧର୍ମନିରପେକ୍ଷବାଦୀ । ସେହି କ୍ଷେତ୍ରରେ କାଳିନ୍ଦୀଚରଣଙ୍କ କାବ୍ୟାଦର୍ଶ କିନ୍ତୁ ସମ୍ପୂର୍ଣ୍ଣ ଅଲଗା । ନୈଷ୍ଠିକ ବ୍ରାହ୍ମଣ ପରିବେଶରୁ ଆସିଥିବା ସ୍ୱପ୍ନେଶ୍ୱର ପାଣିଗ୍ରାହୀଙ୍କର ଦ୍ୱିତୀୟ ପୁତ୍ର କାଳିନ୍ଦୀଚରଣଙ୍କଠାରେ ଯେ ଈଶ୍ୱରଚେତନା ଆଦୌ ନଥିଲା ତାହାନୁହେଁ କିନ୍ତୁ ଫଲ୍‌ଗୁର ଜଳସ୍ରୋତ ଉପରେ ବହଳ ବାଲୁକାର ଆସ୍ତରଣ ପରି ତାଙ୍କ ଈଶ୍ୱର ଚେତନା ଉପରେ ସମସାମୟିକ ସମାଜ, ରାଜନୀତି, ସଂସ୍କାର ପ୍ରୟାସ ଓ ଧାର୍ମିକ ସଂଘର୍ଷର ପ୍ରଭାବ ଘୋଡ଼େଇ ହୋଇ ପଡ଼ିଥିଲା । ଯାହାର ସୁସ୍ପଷ୍ଟ ଆଭାସ ବେଳେବେଳେ ତାଙ୍କ ରଚନାମାନଙ୍କରୁ ବାରିହୋଇ ପଡ଼େ ।

କାଳିନ୍ଦୀଚରଣଙ୍କ ଛାତ୍ରାବସ୍ଥା ବା କବି ଜୀବନର ଆରମ୍ଭ ଅର୍ଥାତ୍, ବିଂଶ ଶତକର ଦ୍ୱିତୀୟ ଓ ତୃତୀୟ ଦଶନ୍ଧି ଓଡ଼ିଶାରେ ବୌଦ୍ଧିକତାର ଏକ ଘଟ ପରିବର୍ତ୍ତନର ସମୟ । ଆଧାତ୍ମିକ ସଂସ୍କାର କ୍ଷେତ୍ରରେ ବ୍ରହ୍ମସମାଜର ଆନ୍ଦୋଳନର ପ୍ରଭାବ ସେତେବେଳେ ମଧ୍ୟ ଓଡ଼ିଶାରେ ବ୍ୟାପକ ଥିଲା ଏବଂ ହିନ୍ଦୁ ସମାଜରେ ପ୍ରଚଳିତ କେତେକ ବାହ୍ୟ ଉପଚାର ଓ ଆଡ଼ମ୍ବରରେ କ୍ଷୁବ୍ଧ ଯୁବସମାଜକୁ ପ୍ରଭାବିତ କରୁଥିଲା । ବହୁ ଦେବଦେବୀଙ୍କ ମୂର୍ତ୍ତି ଉପାସନା ପଦ୍ଧତି ବିରୁଦ୍ଧରେ ଖ୍ରୀଷ୍ଟୀୟ ମିଶନାରୀମାନେ ପ୍ରବଳ ପ୍ରଚାର ଆରମ୍ଭ କରିଦେଇଥିଲେ । ଏହି ସବୁର ସାମୂହିକ ପ୍ରଭାବ ଫଳରେ ଭାରତର ତରୁଣ ପ୍ରାଣରେ ଏହି ସମୟରେ ପାରମ୍ପରିକ ଧର୍ମ ଓ ଈଶ୍ୱର ବିଶ୍ୱାସ ପ୍ରତି କେତେକ ପରିମାଣରେ ବିତୃଷ୍ଣା ସୃଷ୍ଟି ହେଉଥିଲା । ଯୁବ ସମାଜ କିଂକର୍ତ୍ତବ୍ୟବିମୂଢ଼ ହୋଇପଡୁଥିଲେ । ସେହି ବିମୂଢ଼ ଭାବକୁ ଆହୁରି ବର୍ଦ୍ଧିତ କରି ବିଂଶ ଶତକର ପ୍ରଥମ ଭାଗରେ ଭାରତକୁ ଆଉ ଗୋଟିଏ ବୈଦେଶିକ ଚିନ୍ତନର ଆଗମନ ହେଲା । ତାହା ହେଉଛି କମ୍ୟୁନିଜିମ୍ ବା ସମାଜବାଦ । ଜର୍ମାନ ଦାର୍ଶନିକ କାର୍ଲମାର୍କସ୍‌ଙ୍କ ସାମାଜିକ ତତ୍ତ୍ୱ ବନାଗ୍ନିପରି ଇଉରୋପ ତଥା ପୃଥିବୀର ବହୁ ଅନୁନ୍ନତ ଓ ଅନ୍ନୋନ୍ନତ ଦେଶରେ ଏତେଦୂର ଏତେ ତ୍ୱରିତ ଗତିରେ ପ୍ରସାରିତ ହେଲା ଯେ ଭାରତ, ଏପରିକି ପାଶ୍ଚାତ୍ୟ ସଭ୍ୟତାର ସର୍ବନିମ୍ନ ସମ୍ପର୍କରେ ଆସିଥିବା ତତ୍‌କାଳୀନ ଉତ୍କଳରେ ମଧ୍ୟ ବୁଦ୍ଧିଜୀବୀ ବିଶେଷ କରି ତରୁଣ ସମାଜର ପ୍ରାଣକୁ ଏହା ଆକ୍ରାନ୍ତ କଲା । ଯୁବ ସାହିତ୍ୟିକମାନେ ଏହି ବିଚାରଧାରାରେ ପ୍ରଲୁବ୍ଧ ହୋଇ ଯେଉଁ ସାହିତ୍ୟ ରଚନା କଲେ ତାହାକୁ କୁହାଯାଏ ବାମପନ୍ଥୀ ସାହିତ୍ୟ । ଏହି ବାମପନ୍ଥୀ ବା 'ଲେଫଟିଷ୍ଟ'ର ପ୍ରୟୋଗ ମଧ୍ୟ ପାଶ୍ଚାତ୍ୟ ଦେଶରୁ ଆମଦାନୀ ।

ବାମପନ୍ଥୀ ବିଚାରଧାରାର କେତୋଟି ବିଶେଷ ଦିଗ ହେଉଛି –

(୧) ସମଗ୍ର ପୃଥିବୀ ଦୁଇଟି ଗୋଷ୍ଠୀରେ ବିଭକ୍ତ- (କ) ଦଳିତ ବା ସର୍ବହରା ବା Proletariate (ଖ) ସାମନ୍ତବାଦୀ, ପୁଞ୍ଜିପତି, ଶୋଷକ ବା ବୁର୍ଜୁଆ ।

(୨) ଏହି ଦୁଇଶ୍ରେଣୀ ମଧ୍ୟରେ ସଂଘର୍ଷ ଅନିବାର୍ଯ୍ୟ ଓ ଏହି ସଂଘର୍ଷରେ ସର୍ବହରାର ବିଜୟ ସୁନିଶ୍ଚିତ ।

(୩) ସଶସ୍ତ୍ର ସଂଗ୍ରାମ ମାଧ୍ୟମରେ ହିଁ ଏହି ବିଜୟ ହାସଲ କରାଯାଇ ପାରିବ । ଏହି ବିଜୟ ଫଳରେ ବୁର୍ଜୁଆଶ୍ରେଣୀ ଲୋପ ହେବେ ଓ ସମଗ୍ର ପୃଥିବୀ ଶ୍ରେଣୀହୀନ ସମାଜ ମାଧ୍ୟମରେ ଏକ ହୋଇଯିବେ ।

ଏହି ଏକତା ଆଣିବା ପଥରେ ଯେଉଁ କେତୋଟି ବଡ଼ ପ୍ରତିବନ୍ଧକ ଅଛି ସେଥିରୁ ଗୋଟିଏ ହେଉଛି Religion ବା ଈଶ୍ୱର ବିଶ୍ୱାସ, ଯାହାକୁ ଲୌକିକ ଅର୍ଥରେ ଆମେ ଧର୍ମ ବୋଲି କହୁ । ଧର୍ମ ଶବ୍ଦଟି ପ୍ରକୃତ ଅର୍ଥରେ Religion ବା ମଜହବ୍‌କୁ ବୁଝାଉ ନଥିଲେ ମଧ୍ୟ ଭାରତୀୟ ବାମପନ୍ଥୀ ସାହିତ୍ୟିକମାନେ ଏ ଦୁଇଟି ଶବ୍ଦକୁ ସମାନ ରୂପରେ ଗ୍ରହଣ କରିନେଇ ଭଗବାନ ଓ ଆଧାତ୍ମିକତାର ବିରୋଧ ଆରମ୍ଭ କଲେ ।

ଇତିହାସରେ ଇଉରୋପ ଓ ମଧ୍ୟପ୍ରାଚ୍ୟର ବହୁ ଅଞ୍ଚଳରେ ଏକଦା ଈଶ୍ୱର ଉପାସନା ପଦ୍ଧତିକୁ ନେଇ ଶହ ଶହ ବର୍ଷ ଧରି ସଂଗ୍ରାମ ଲାଗିଥିଲା । ଏହିସବୁ ସଂଘର୍ଷ ଘଟିଥିଲା ଇହୁଦି-ଖ୍ରୀଷ୍ଟିଆନ୍, ଇସ୍‌ଲାମ୍-ଖ୍ରୀଷ୍ଟିଆନ୍ ବା କ୍ୟାଥୋଲିକ ପ୍ରୋଟେଷ୍ଟାଣ୍ଟ ବିଶ୍ୱାସକୁ କେନ୍ଦ୍ରକରି । ଭାରତୀୟ ଇତିହାସରେ ଉପାସନା ପଦ୍ଧତିକୁ ନେଇ ସେପରି କୌଣସି ହିଂସାତ୍ମକ ବିପ୍ଳବ ସଂଘଟିତ ହୋଇନଥିଲେ ମଧ୍ୟ ଭାରତୀୟ ଆଧ୍ୟାତ୍ମିକ ଚିନ୍ତନ ମଧ୍ୟରେ ଈଶ୍ୱର କୌଣସି ସୀମିତ ଗଡ଼ି ବା ସଂଜ୍ଞାରେ ଆବଦ୍ଧ ନଥିଲେ ମଧ୍ୟ ସେଇଥିରେ ପରିଚାଳିତ କେତେକ ପାଶ୍ଚାତ୍ୟ ଓ ମଧ୍ୟ ଏସୀୟ ପ୍ରଭାବ ଫଳରେ ଆଧୁନିକ ଯୁଗରେ ଏ ଦେଶରେ ସ୍ଥାନେ ସ୍ଥାନେ ସାମ୍ପ୍ରଦାୟିକ ବିଦ୍ୱେଷ ମୁଣ୍ଡ ଟେକିଲା । ତେଣୁ ବାମପନ୍ଥୀ ସାହିତ୍ୟିକମାନେ ଧର୍ମ ସହ Religion ବା ମଜହବ୍‌କୁ ସମାନ କରିଦେଇ ଭାରତୀୟ ଧର୍ମଧାରା ଓ ଉଦାର ଈଶ୍ୱରବିଶ୍ୱାସ ଉପରେ ମଧ୍ୟ ଆକ୍ରମଣ ଆରମ୍ଭ କଲେ ।

ଈଶ୍ୱର ବିଶ୍ୱାସ ଉପରେ ଅନ୍ୟ ଏକ ଆଘାତ ଆସିଲା ବୈଜ୍ଞାନିକ ଯୁଗର ଜଡ଼ବାଦୀ ଦର୍ଶନ ମାଧ୍ୟମରେ । ବିଜ୍ଞାନ ମଣିଷକୁ ଅତ୍ୟନ୍ତ ଆତ୍ମପ୍ରତ୍ୟୟ ଆଣିଦେଲା । ତେଣୁ ସେ ଈଶ୍ୱରଙ୍କ ଉପରୁ ଆସ୍ଥା କମାଇଦେଇ ଦେହ ସର୍ବସ୍ୱ ଭୋଗବାଦୀ ହୋଇ ଉଠିଲା । ବେକନ୍ ପ୍ରଭୃତି କେତେକ ଦାର୍ଶନିକଙ୍କ ଯୁକ୍ତି ମଣିଷ ମନରୁ ଜନ୍ମାନ୍ତର ଓ କର୍ମଫଳର ବିଶ୍ୱାସକୁ ଦୂରେଇ ଦେଲା । ଅବଶ୍ୟ ପ୍ରାଚୀନ ଭାରତରେ ମଧ୍ୟ ଚାର୍ବାକୀୟ ମତବାଦୀମାନେ ଏହିପରି ଏକ ଆନ୍ଦୋଳନ ଆରମ୍ଭ କରିଥିଲେ । କିନ୍ତୁ ସେତେବେଳେ ତାହା ସାମୂହିକ ଲୋକପ୍ରିୟତା ହାସଲ କରିପାରିନଥିଲା; କିନ୍ତୁ ବିଂଶ ଶତକରେ ବୈଜ୍ଞାନିକ ଭୋଗବାଦ ସାଙ୍ଗକୁ ମାର୍କସୀୟ ଦର୍ଶନର ମିଳନ ଘଟି ତାହା ସାହିତ୍ୟ ଜଗତକୁ ବହୁ ପରିମାଣରେ ପ୍ରଭାବିତ କଲା । କବି କାଳିନ୍ଦୀଚରଣଙ୍କ କାବ୍ୟିକ ଆଦର୍ଶ ସେହି ପ୍ରଭାବରେ ଆସିବା ସ୍ୱାଭାବିକ ଥିଲା ।

କାଳିନ୍ଦୀଚରଣଙ୍କ ପରିବାରଟି ଥିଲା ଓଡ଼ିଶାରେ ବାମପନ୍ଥୀ ବିଚାରଧାରାର ଏକ ମୂଳ ସ୍ତମ୍ଭ । ତାଙ୍କ କନିଷ୍ଠ ଭ୍ରାତା ଭଗବତୀ ଚରଣ ଥିଲେ ଓଡ଼ିଶାରେ କମ୍ୟୁନିଷ୍ଟ ଆନ୍ଦୋଳନର ପ୍ରଥପ୍ରଦର୍ଶକ । ସେ କ୍ଷେତ୍ରରେ ଜ୍ୟେଷ୍ଠ ଭ୍ରାତାଙ୍କ ପ୍ରେରଣା ମଧ୍ୟ କମ୍ ନଥିବ । କାଳିନ୍ଦୀଙ୍କ ଉପନ୍ୟାସ ଓ ଭଗବତୀଙ୍କ କ୍ଷୁଦ୍ରଗଳ୍ପମାନଙ୍କ ମଧ୍ୟରେ ଦୁଃଖୀ ଦଳିତ ଜନତାପ୍ରତି ସଂବେଦନଶୀଳତା ପରିପୂର୍ଣ୍ଣ ହୋଇ ରହିବା ସଙ୍ଗେ ସଙ୍ଗେ ଶ୍ରେଣୀସଂଘର୍ଷ ଜରିଆରେ ସର୍ବହରାର ହିଂସାତ୍ମକ ପ୍ରତିରୋଧର ଚିତ୍ର ମଧ୍ୟ ରୂପାୟିତ ହୋଇଛି । ଭଗବତୀଙ୍କ 'ଶିକାର' ଗଳ୍ପର 'ଘିନୁଆ' ଓ କାଳିନ୍ଦୀଚରଣଙ୍କ 'ମାଟିର ମଣିଷ' ଉପନ୍ୟାସର ଧରମା ଚରିତ୍ରରେ ଏହିପରି ଅବସ୍ଥାର ପ୍ରତିଫଳନ ହୋଇଛି ।

ମାର୍କସୀୟ ତତ୍ତ୍ୱ ମଧ୍ୟରେ ଧର୍ମ ବା ଈଶ୍ୱରବିଶ୍ୱାସକୁ ଜନତା ପାଇଁ ଅଫିମ ନିଶା ରୂପେ କଳ୍ପନା କରାଯାଇ ସମାଜ ମଧ୍ୟରୁ ତାହାକୁ ଦୂର କରିବା ପାଇଁ ନିର୍ଦ୍ଦେଶ ଦିଆଯାଇଛି । ଇଉରୋପରେ ଗୀର୍ଜାଧୀଶ ଓ ରାଜଶକ୍ତି ମିଳିତ ହୋଇ ଯେଉଁ ଜନଶୋଷଣ କରୁଥିଲେ

ସମାଜବାଦୀ ତତ୍ତ୍ୱ ତାହାର ଉଗ୍ରପ୍ରତିବାଦ ରୂପେ ଅନୁମିତ ହୁଏ । ଭାରତରେ ଶାସକ ଗୋଷ୍ଠୀ ଏବଂ ପୁରୋହିତ ବା ମଠାଧୀଶମାନଙ୍କ ମଧ୍ୟରେ ସେ ଧରଣର କୌଣସି ଅସାଧୁମେଣ୍ଟର ଐତିହାସିକ ଦୃଷ୍ଟାନ୍ତ ନଥିଲେ ମଧ୍ୟ ଭାରତୀୟ ମାର୍କସବାଦୀମାନେ ଇଉରୋପୀୟ ଇତିହାସର ସେହି ଅବିକଳ ଛାଞ୍ଚକୁ ଭାରତୀୟ ପରିବେଶ ଉପରେ ଆରୋପ କରି ସାହିତ୍ୟ ସୃଷ୍ଟି କରିଛନ୍ତି । ତାହାର ଗୋଟିଏ ଦୃଷ୍ଟାନ୍ତ ହେଉଛି କାଳିନ୍ଦୀଚରଣଙ୍କର ଯାଦୁଘର କବିତା –

''ଦେଉଳେ ଦେଖିଲି ଧର୍ମ ଯା' ଅଛି
ଗୀର୍ଜାରେ ସେତ ଆନ
କିଏ ଅବା ଛେଳି କିଏ ପୁଣି ଗୋରୁ
କାଟିବା ପାଇଁକି ଥାନ'' ।

ତେବେ କବି ପ୍ରତ୍ୟକ୍ଷ ଭାବରେ ଭଗବତ୍‌ଶକ୍ତିକୁ ନିନ୍ଦାକରିନାହାନ୍ତି, କରିଛନ୍ତି ଆଧୁନିକ ଯୁଗରେ ପ୍ରାଚୀନ ମନୀଷୀମାନଙ୍କ ଅବମାନନା ଓ ଆଧ୍ୟାତ୍ମିକ ବିଚାରର ଅବମୂଲ୍ୟାୟନକୁ । ସେଥିପାଇଁ ସେ କହନ୍ତି –

''ବୁଦ୍ଧ ଯୀଶୁର ମନ୍ତ୍ର ବା କାହିଁ
କାହିଁ ମହମ୍ମଦ ଖୋଦା
ସବୁ ଦିଅଁ ଆଜି ବଳି ଲୋଡ଼ିଲେଣି
ମଣିଷ ହୋଇଛି ବୋଦା ।

× × × × ×

ଧର୍ମ ଘୋଡ଼ଣୀ ଭିତରେ ପଶିଲେ
ସାତଖୁଣ ହେବ ମାଫ୍
ଦରକାର ଯେଉଁ କରିବା ଆମର
ସଦ୍ୟ ଶହେଟା ପାପ ।''

ଆଜିର ତଥାକଥିତ ଧର୍ମାଧିକାରୀ ଈଶ୍ୱରଙ୍କୁ ଆୟୁଧ କରି ଯେଉଁ ଆତ୍ମପ୍ରବଞ୍ଚନାର ଆବର୍ତ୍ତ ସୃଷ୍ଟି କରନ୍ତି, ସେଥିପାଇଁ ଗଭୀର ରୋଷ ପ୍ରକାଶ କରି କବି ଲେଖିଛନ୍ତି –

''ମଣିଷ ଭିତରେ ଧାର୍ମିକ ବୋଲି
ଶୁଣିଲି ଯାହାର ନାମ
ବଳିଲା ବାସନା ନିକଟକୁ ଯାଇ
ଦେଖିବା ପାଇଁ ତା କାମ

ଦେଖିବା ପାଇଁ ତା ରୀତି ଆଚରଣ
ଖୋଲିତା ଧରମ ଝୁଲି

ଦୁଃଖ ଲାଗିଲା ଚାବୁକ ଖଣ୍ଡେ
ଆଣିବାକୁ ଗଲି ଭୁଲି'' । (ଯାଦୁଘର)

ଈଶ୍ୱରଙ୍କ ନାମକୁ ଅବଲମ୍ବନ କରି ଚାଲିଥିବା ଧପ୍‌ପାବାଜିକୁ କେବଳ ସାମ୍ୟବାଦୀ କାହିଁକି ଯେକୌଣସି ବିଚାରଶୀଳ ବ୍ୟକ୍ତି ବିରୋଧ କରନ୍ତି । ତାହା ହେବା ସ୍ୱାଭାବିକ; କିନ୍ତୁ ତା ସଙ୍ଗେ ସଙ୍ଗେ ଈଶ୍ୱରଙ୍କୁ ଭର୍ତ୍ସନା କରିବାର ଯେଉଁ ପ୍ରଚେଷ୍ଟା ଭାରତୀୟ ସାମ୍ୟବାଦୀମାନେ କରିଥାନ୍ତି ସେଥିରେ ସେମାନଙ୍କର ଆନ୍ତରିକତା ଥିବାର ମନେହୁଏ ନାହିଁ । ଜଣା ପଡ଼େ ଯେପରି ସେମାନେ ନିଜକୁ ନିଜେ ଭୁଲ ବୁଝି ବସିଛନ୍ତି । କାଳିନ୍ଦୀଚରଣ ମଧ୍ୟ ଭଗବାନଙ୍କ ମୃତ୍ୟୁର କଳ୍ପନା କରିଛନ୍ତି –

''ଭଗବାନ ! ଏ ଧରାରୁ ବିଦାୟ ନେବ ତ ସତେ ଆଜି
ମାନବ ବିଜୟ ଗାନ ଉଠିବ ଚକିତେ ଏଠି ବାଜି
ମୃତ୍ୟୁ ଚିତା ପରେ ତବ ମାନବର ଜୀବନ-ପ୍ରଦୀପ
ଜାଳିବ କି ତମସାର ଆବରଣ କରି ଅନ୍ତରିତ'' (ବିଦାୟ ଭଗବାନ)

ଏଇଠି ମନେ ପଡ଼େ ପରବର୍ତ୍ତୀ ସମୟର ଚରମ ମାର୍କ୍ସବାଦୀ ଭୀଷ୍ମବିପ୍ଳବୀ କବି ରବି ସିଂଙ୍କ ଆହ୍ୱାନ –

''ଚରମ ପତ୍ର ଘେନ ଭଗବାନ ଚରମ ପତ୍ର ଘେନ
ଆଗାମୀ ଚବିଶ ଘଣ୍ଟା ଭିତରେ
ଆଗାମୀ କାଲିର ଏଇ ପ୍ରଭାତରେ
ଖାଲି କରିଦିଅ ଗୋଲୋକ ସିଂହାସନ'' (ରବି ସିଂ – ଚରମ ପତ୍ର)

କିମ୍ବା ବାମପନ୍ଥୀ ସାହିତ୍ୟ ରୁଚିକୁ ଏକଦା ଅନୁସରଣ କରିବାକୁ ଚେଷ୍ଟା କରୁଥିବା କବି ମୁରାରି ମୋହନ ଜେନା କହନ୍ତି, ''ଭଗବାନ ମୁଁ ତୁମକୁ ଠିଆ ଫାଡ଼ି ଦେବି'' ଉପରୋକ୍ତ ପଦମାନଙ୍କରୁ ପାଠକ ନିଜେ ଗୋଲକଧନ୍ଦାରେ ପଡ଼ିଯାଏ । ସତେ କଣ ଏଇ କବିମାନେ ନିରୀଶ୍ୱରବାଦୀ; ଭଗବାନଙ୍କ ଅସ୍ତିତ୍ୱକୁ ଏମାନେ କ'ଣ ସମ୍ପୂର୍ଣ୍ଣ ଅସ୍ୱୀକାର କରନ୍ତି ? ଯଦି ତାହା, ତେବେ କାହାର ଚିତା ଜାଳିବା ପାଇଁ ଏତେ ଉଦ୍‌ଗ୍ରୀବତା, କାହାକୁ ଗୋଲୋକ ସିଂହାସନ ଛାଡ଼ି ଦେବାପାଇଁ ତାଗିଦ୍ ବା କାହାକୁ ଠିଆ ଫାଡ଼ିଦେବା ପାଇଁ ପ୍ରତିଜ୍ଞା !

କବିଙ୍କ ଲେଖନୀରେ ମୂର୍ତ୍ତିପୂଜାର ବିରୋଧ ସ୍ୱାଭାବିକ । ବ୍ରହ୍ମଧର୍ମର ପ୍ରଭାବ ଓ ଭାରତବାହାରୁ ଆଗତ ଉପାସନା ପଦ୍ଧତିର ଅନୁସରଣରୁ ଅଣ ସାମ୍ୟବାଦୀ ଓ ହିନ୍ଦୁ ସମାଜର କେତେକ ଗୋଷ୍ଠୀର ସାହିତ୍ୟିକ ମଧ୍ୟ ପିତୁଳାପୂଜାର ବିରୋଧ କରନ୍ତି, ଯାହା କବିଙ୍କ 'ପ୍ରତିମା' କବିତାରେ ପ୍ରତିଫଳିତ –

''ଡାକି ଡାକି ଶୁଖେ କଣ୍ଠ କାହିଁ ଶାନ୍ତି, କାହିଁରେ ମୁକତି
ଦୂରେ ଫିଙ୍ଗି ପୂଜା ଧୂପ
ଠେଲିଦିଏ ଦେବତାର ରୂପ
ଘୃଣାଭରେ ।
ଅପମାନ ବଦ୍ଧ ସ୍ୱରେ
ଗର୍ଜଇ ଦେବତା
'ନାହିଁ ଶାନ୍ତି ନାହିଁ ମୁକ୍ତି ଅକାରଣେ ପିଟୁ କିମ୍ପା ମଥା
ପୂଜାର ଆସନ ଛାଡ଼ି ହୁଅ ଆସି ଉଭା
ହେ ଚଞ୍ଚଳ ହେ ଅଶାନ୍ତ ଯୁବା
ମୁକ୍ତ ରାଜପଥେ –''  (ପ୍ରତିମା)

ଭକ୍ତି ପ୍ରଧାନ ବୈଷ୍ଣବ ମତରେ 'ବିଶ୍ୱାସେ ମିଳଇ ହରି ତର୍କେ ବହୁଦୂର' ଜଡ଼ବାଦୀ ବିଜ୍ଞାନୀ ପକ୍ଷରେ ଏପରି ଏକ ଉକ୍ତି ଅସାର ଓ ବର୍ଜନୀୟ । କବି ମଧ୍ୟ ଅହେତୁକ ଭକ୍ତିଭାବ ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି ।

''ଯୁକ୍ତି ବିହୀନ ଭକ୍ତିର ଯେତେ ପ୍ରମାଣ ରହିଛି ଶୁଣ
ଜେରୁଜେଲମରୁ ମକା ହରଦ୍ୱାର – କେତେ ବଖାଣିବା ଗୁଣ

×    ×    ×

ଯୁକତି ଭକତି ସବୁ କାଟି ଦେଖ ଚାବୁକ କମାଣ ଧାଏଁ
ଜେନେଭା ପାଶରୁ ବର୍ଲିନ ପୁଣି ରୋମ ବା ଟୋକିଓ ଯାଏ (ଭକ୍ତି ଓ ଚାବୁକ)

ଯୁକ୍ତି ଓ ଭକ୍ତି ଏ ଉଭୟେ ପରସ୍ପର ବିରୋଧୀ ହେଲେ ମଧ୍ୟ ଏହା ଉପରେ ବଳ ଅଛି; ତାହା ହେଉଛି ଶକ୍ତି ବା ସାମରିକ ଶକ୍ତି । ପ୍ରଥମ ମହାଯୁଦ୍ଧପରେ ଗଢ଼ାଯାଇଥିବା ଲିଗ୍ ଅଫ୍ ନେସନସ୍‌ର ଭଙ୍ଗ ଓ ୧୯୩୮ରେ ଏହି କବିତା ଲେଖନ ସମୟରେ ଦ୍ୱିତୀୟ ମହାଯୁଦ୍ଧ ପାଇଁ ସାଜସଜ୍ଜା ମଧ୍ୟରୁ କବି ଏହି ଶକ୍ତିର ସ୍ୱରୂପ ଲକ୍ଷ୍ୟ କରିଛନ୍ତି ।

ସ୍ଥଳବିଶେଷରେ କବି ଦେହଧର୍ମୀ । ସେଥିପାଇଁ ସେ ଶିଳ୍ପୀ କବିମାନଙ୍କୁ କଠୋର ସାଧନା ମାଧ୍ୟମରେ ପାରଲୌକିକ ସୁଖ ଆଶା ନରଖି ଚାର୍ବାକଙ୍କ 'ଯାବତ ଜୀବେତ୍ ସୁଖଂ ଜୀବେତ୍' ରୀତିରେ ଏହି ଲୋକର ଜୀବନକୁ ପୂର୍ଣ୍ଣାଙ୍ଗ କରିବାକୁ ଉପଦେଶ ଦେଇଛନ୍ତି –

''ହେ ଶିଳିପୀ ହେ କବି ଧାର୍ମିକ
ଦେଖପରା ସବୁ ସୁଖ କଥା
ଦେହଛାଡ଼ି କି ଅଛି ଜଗତେ
ସତ କହ ରଖି ବାଜେ କଥା''  (ଏ ଦେହକୁ ଭଲପାଏ ମୁହିଁ)

ପ୍ରତ୍ୟେକ ସାରସ୍ୱତ ସାଧକଙ୍କ ଜୀବନ ଆଲୋଚ଼ନା କଲେ ଦେଖାଯାଏ ବିଭିନ୍ନ ବୟସ ଓ ପରିବେଶ ମଧ୍ୟରେ ସେମାନଙ୍କ କଳ୍ପନା ବିଭିନ୍ନ ରୂପରେ ପ୍ରତିଭାତ ହୁଏ । କାଳିନ୍ଦୀଚରଣଙ୍କ ସୃଷ୍ଟି ସମ୍ପର୍କରେ ମଧ୍ୟ ତାହା ଘଟିଥିଲା । ଔପନ୍ୟାସିକ କାଳିନ୍ଦୀଚରଣଙ୍କ ଲେଖା ଭିତରେ ଆମେ ସରଳ ଗ୍ରାମ୍ୟ ଜୀବନର ଚିତ୍ର ଦେଖୁ । 'ମାଟିର ମଣିଷ', 'ମୁକ୍ତାଗଡ଼ର କ୍ଷୁଧା', 'ଅମରଚିତା', ଏପରିକି ପରବର୍ତ୍ତୀ ଉପନ୍ୟାସ 'ଲୁହାର ମଣିଷ' ଓ ଅନ୍ୟାନ୍ୟ ଗଳ୍ପ ମଧ୍ୟରେ ଆମେ ରାଜନୀତିକ ବିପ୍ଳବର ଏତେ ଝଡ଼ଝଞ୍ଜା ଦେଖୁନାହିଁ । ଅବଶ୍ୟ ଜମିଦାରର ଶୋଷଣ, ଦୁର୍ଭିକ୍ଷ, ମରୁଡ଼ି ଓ ଭଙ୍ଗପ୍ରବଣ ପାରିବାରିକ ଚିତ୍ର ମଧ୍ୟରେ କିଛି ଗ୍ରାମ ସଂଗଠନ ଓ ଗ୍ରାମ ସଂସ୍କାରର ପ୍ରୟାସ ରହିଛି । ସେସବୁରେ ଆଧ୍ୟାତ୍ମିକତା ବା ଈଶ୍ୱର ସମ୍ପର୍କରେ ବିଶେଷ କିଛି ଉଲ୍ଲେଖ ନାହିଁ । ସମ୍ଭବତଃ ଧର୍ମନିରପେକ୍ଷତା ରକ୍ଷା ପାଇଁ ସେ ସେଥିରୁ ଯତ୍ନର ସହ ଦୂରରେ ରହିଛନ୍ତି । ତାଙ୍କର ଆଦ୍ୟ ରଚିତ କବିତାରେ ମଧ୍ୟ ସେଇ ମନୋବୃତ୍ତି ପ୍ରତିଫଳିତ । କୈଶୋର ଓ ତାରୁଣ୍ୟ ମଧ୍ୟରେ ରଚିତ କବିତାରେ ସରଳ ପ୍ରକୃତି ଚିତ୍ର ବା ପ୍ରେମାପ୍ଲୁତ ପ୍ରାଣ ବା ଉଭୟର ଚିତ୍ର ଦେଖାଯାଏ । ଉଦାହରଣତଃ 'ବିଶ୍ୱର ଆହ୍ୱାନ' କବିତାରେ –

''କାନନେ ଡାକେ ମୟୂରୀ
ନଦୀରେ ଡାକେ ଭଉଁରୀ
ଶିଖରୀ ଚୂଳରେ ମେଘ ଡାକିଲାଣି
ଭୁବନେ ଡାକିଲେ ସକଳ
ମୋହରି ପାଇଁ ସେ ବିକଳ''

'ପୌଷ ମଳୟ' ରେ –

''ପୌଷର ପଞ୍ଚମୀ ଚାଁଦ
ଆକାଶ କୋଳେ ଦେଲା ହସି
ମଧୁମାସ ଆଗମନୀ-ଭାଷା
ଜରା-ହୃଦେ ଯଉବନ ଆଶା
ପୌଷର ପଞ୍ଚମୀ ଶଶି
ଢ଼ାଳି ଦେଲା ଦୂରେ ହସି ହସି''

କିମ୍ବା 'ବର୍ଷା ନାୟିକା'ରେ –

''ବରଷା ଜଳେ ବସନ ତବ ତିନ୍ତଇ
ବସନହୀନ କି ଦେବି ମୁଁ ଗୋ ଚିନ୍ତଇ
ଅଙ୍ଗେ ତବ କପୂର ବାସ
ଅଧରେ ତବ ମଧୁର ହାସ

କର୍ଣ୍ଣେ ତବ କେୟୂର ଝୁଲେ ଚଞ୍ଚଳେ
ବିଜୁଳି ହସେ ପର୍ଣ୍ଣ-ଜରି ଅଞ୍ଚଳେ''

ପରବର୍ତ୍ତୀ ଜୀବନରେ କବିଙ୍କର କାବ୍ୟିକ ଆଭିମୁଖ୍ୟ ପରିବର୍ତ୍ତିତ ହୋଇଥିଲେ ମଧ୍ୟ ସେ ଯେ ସମ୍ପୂର୍ଣ୍ଣ ନିରୀଶ୍ୱରବାଦୀ ସତ୍ତା ମଧ୍ୟରେ ନିଜକୁ ହଜାଇ ଦେଇଛନ୍ତି ତାହା କହିବା ଭ୍ରାନ୍ତ ହେବ । ଅବଶ୍ୟ ଏ କ୍ଷେତ୍ରରେ ସେ ଅତ୍ୟନ୍ତ ସଂଯତ ଓ ସନ୍ତର୍ପଣରେ ନିଜର ମନୋଭାବ ପ୍ରକାଶ କରିଛନ୍ତି ଯେପରିକି 'ଆସ୍ତିକର ଆହ୍ୱାନ' କବିତାରେ -

''ହେ ଦେବତା ଏ ଜୀବନେ ପଡ଼େ ଯେବେ ବେଦନାର ଦାଗ
ନିଏଁ ବରି ଅକାତରେ ମଣି ତାହା ତବ ଅନୁରାଗ × × ×
ତବ ଅପମାନ ବଂଧୁ ଶୁଣେ ଯେବେ ଜଗତର ମୁଖେ
ବଧିର ହେଉ ଏ କର୍ଣ୍ଣ ବାଜୁ ତାର ବୁକେ''

ସ୍ଥଳବିଶେଷରେ ଉପନିଷଦୀୟ ପ୍ରଭାବରେ କବି ଏକେଶ୍ୱରବାଦୀ ଓ ନିରାକାର ବ୍ରହ୍ମଙ୍କ ନିକଟରେ ଆତ୍ମସମର୍ପଣ କରିଥିବାପରି ମନେହୁଏ । ସେଥିପାଇଁ 'ପୁରଷ ସୂକ୍ତ' କବିତାରେ ସେ ଆରାଧନା କରିଛନ୍ତି –

''ହେ ମହାପୁରୁଷ ! ଚରଣ ତୁମରି ବନ୍ଦେ
ଆକାଶେ ଭୂଧରେ ନିତି ନୂଆ ଛବି
ଦେଖି ଏ ନୟନ ଯାଏ ମୋର ଦ୍ରବି
କୋଟିଏ ଚନ୍ଦ୍ର କୋଟି ତାରା ରବି
ବହଇ ମଳୟ ମନ୍ଦେ
ହେ ମହାପୁରୁଷ ! ଚରଣ ତୁମରି ବନ୍ଦେ ।''

କବିଜୀବନର ଆଦ୍ୟ ପାଦରେ ଅଠର ବର୍ଷ ବୟସରେ କବି ଯେଉଁ କେତେକ ଦରଦୀ ପ୍ରାଣର କବିତା ଲେଖିଥିଲେ ସେଥିମଧ୍ୟରୁ 'ତୁମରି ପ୍ରେମ' ଅନ୍ୟତମ । ଓଡ଼ିଶାରେ ବୈଷ୍ଣବୀୟ ଗୀତିକବିମାନେ ଗୋପୀ ଭାବରେ ଜଡ଼ୀଭୂତ ହୋଇ ନିଜକୁ ବାସକସଜ୍ଜା ନାୟିକା ରୂପରେ ସଜାଇ ଈଶ୍ୱରଙ୍କୁ ପ୍ରେମିକ ରୂପେ କଳ୍ପନାକରି ତାଙ୍କ ନିକଟରେ ନିଜକୁ ସମ୍ପୂର୍ଣ୍ଣ ଆତ୍ମସମର୍ପଣ କରିବାର ଯେଉଁ ମାର୍ଗ ସୃଷ୍ଟି କରିଥିଲେ କବି ସେଥିରେ ବହୁଭାବରେ ଅନୁପ୍ରାଣିତ ହୋଇ ଏହି କବିତାରେ ପ୍ରକାଶ କରିଛନ୍ତି ।

''ଏ ଦେହ ମୋର ସାଜଇ ବସି
ତୁମରି ପ୍ରେମ ଲାଗି
ନିଜକୁ ମୁଁ ଯେ କରଇ ପ୍ରେମ
ତୁମରି ଅନୁଗାମୀ ହେ
× × × × × ×

ତୁମରି ପ୍ରେମେ ଭୁବନ ଭଲ ଲାଗଇ
ଚେତନା ମମ ସକଳ ପଥେ ଜାଗଇ
ହତାଶେ ଆଉ ନୁହେଁ ମୁଁ ଜଡ଼
ମରଣ ଆଉ ନ ମଣେ ବଡ଼
ତୁମରି ଲାଗି ଶତ ଜୀବନ ଆଜି ଗୋ ଏଥି ମାଗଇ''

ମାର୍କସୀୟ ଚିନ୍ତାଧାରାରେ ସମ୍ପୂର୍ଣ୍ଣ ଦୀକ୍ଷିତ ହୋଇଯିବାପରେ କବି ଯେତେବେଳେ ନୀଳାଚଳରେ ଜଗନ୍ନାଥଙ୍କ ନିକଟରେ ପହଞ୍ଚିଛନ୍ତି ସେତେବେଳେ ବିରାଟ ଦ୍ୱନ୍ଦ୍ୱ ଓ ଧର୍ମସଙ୍କଟରେ ପଡ଼ିଛନ୍ତି । ଜଗନ୍ନାଥଙ୍କୁ ସେ ରତ୍ନ ସିଂହାସନ ତ୍ୟାଗ କରିବାକୁ ଆହ୍ୱାନ ଦେଇପାରି ନାହାନ୍ତି ବା ଦାରୁ ବିଗ୍ରହର ଧ୍ୱଂସର ଇଚ୍ଛା ପ୍ରକଟ କରିପାରି ନାହାନ୍ତି । ହଜାର ହଜାର ବର୍ଷ ଧରି କୋଟି କୋଟି ଜନତା ଯେଉଁଠାରେ ନିଜର ଭକ୍ତି ଅର୍ଘ୍ୟ ଢ଼ାଳି ଆସିଛନ୍ତି, ସେଇମାନଙ୍କ ପୁଞ୍ଜୀଭୂତ ସମୂହ ଭକ୍ତିକୁ ସେ ଅବମାନନା କରିପାରି ନାହାନ୍ତି । ତେଣୁ ଗାଇଛନ୍ତି –

''ତଥାପି ନମଇଁ ତୋରେ ହେ ନିର୍ଜୀବ କର୍କଶ ପାଷାଣ
ଘନୀଭୂତ ଏଥି ଯେଣୁ କେତେ ପୁଣ୍ୟ ଶିଳ୍ପୀର ପରାଣ
ଯେ ରାଜନ ଗଢ଼ିଲା ଏ ପାଷାଣର ଗିରି
ଯେ ବିରାଟ କଳ୍ପନାରୁ ଉଦ୍ଭୂତ ଏ ଶିରୀ
ବିଶ୍ୱପାଇଁ କରିଲା ଦାଦନ
ଅନ୍ତରର ବିପୁଳ ବେଦନ
ହେବାକୁ ନିର୍ବଂଶ
ଲୋଡ଼ିଲା ଅଯଶ
ବଂଶ ଗର୍ବ
କରି ଖର୍ବ

ତ୍ୟାଗର ମହିମା ଯେଣୁ ଏ ଦେଉଳ ଘୋଷଇ ପବନେ
ତ୍ୟାଗର ଜୟପତାକା ଉଡ଼ାଉଛି ଅନନ୍ତ ଗଗନେ
ବିରାଟ ସେ ଆତ୍ମା ଏହି ପାଷାଣେ ନିହିତ
ଉଦ୍ଦେଶ୍ୟେ ତାହାର ଆଜି ନମ୍ର ମୋର ଚିତ୍ତ''

× × × × × (ପୁରୀ ମନ୍ଦିର)

କବି ପୁରୀ ମନ୍ଦିର ମଧ୍ୟରେ ନିଜର ସାମ୍ୟବାଦୀ ଆଦର୍ଶ ପ୍ରତିଫଳିତ ହେବାର ଅନୁଭବ କରିଛନ୍ତି । ପୃଥିବୀର ଅନ୍ୟାନ୍ୟ ଧର୍ମପୀଠମାନଙ୍କରେ ଜାତି, ଗୋଷ୍ଠୀ, ବର୍ଣ୍ଣ ଓ ସମ୍ପ୍ରଦାୟ

ମଧ୍ୟରେ ଯେଉଁ ପ୍ରାଚୀର ସୃଷ୍ଟି କରାଯାଏ, ତାହା ଶ୍ରୀମନ୍ଦିର ମଧ୍ୟରେ ନାହିଁ । ସବୁ ସମ୍ପ୍ରଦାୟର ପ୍ରବକ୍ତା ଏଇ ମନ୍ଦିର ମଧ୍ୟକୁ ଆସି ସେମାନଙ୍କର ନୈବେଦ୍ୟ ଦେଇ ଏହି ପୀଠକୁ ମହାନ୍ କରିଛନ୍ତି । ଏଇ ସ୍ଥାନ ହିଁ କବିଙ୍କୁ ମାର୍କସବାଦୀ ନିରୀଶ୍ୱର ଚିନ୍ତନକୁ ଜଗନ୍ନାଥ ତତ୍ତ୍ୱ ସହ ସାଲିସ୍ କରିବାରେ ସହାୟକ ହୋଇଛି, ସେ ସ୍ୱୀକାର କରିଛନ୍ତି –

''ଆଦର୍ଶ ଯାହାର ମହା ସାମ୍ୟନୀତି ନାହିଁ ଭେଦ ସ୍ଥାନ
ମାନବ ଶିଶୁର ଯହିଁ ନାହିଁ ଜାତି ଦ୍ୱେଷ ଅପମାନ
କବୀର, ନାନକ, ବୁଦ୍ଧ, ଚୈତନ୍ୟ ଶଙ୍କର
କଲେ ଯହିଁ ସମାବେଶ ସକଳ ଧର୍ମର
ଲେଖିଲେ ଏ ପାଷାଣର ଗତେ
'ସକଳେ ଯେ ସମାନ ଜଗତେ
ସବୁ ବଡ଼ ସାନ
ଦୀନ ଧନବାନ'
ନତ ମୁଣ୍ଡ
ଏଥି ରୁଣ୍ଡ ।''

ପାର୍ଥିବ ଜଗତର ସମସ୍ତ ନଶ୍ୱରତା ମଧ୍ୟରେ କୌଣସି ବସ୍ତୁ ଚିରସ୍ଥାୟୀ ନୁହେଁ । ଏ ମନ୍ଦିର ଦିନେ ନିଶ୍ଚିହ୍ନ ହୋଇଯିବ କିନ୍ତୁ ଶାଶ୍ୱତ ହୋଇ ରହିବ ଯୁଗ ଯୁଗ ବ୍ୟାପୀ । ଏଇଠାରେ ଅଜଡ଼ା ହୋଇଥିବା ଭକ୍ତି ଓ ବିଶ୍ୱାସର ସ୍ତୂପ । ଏଇଆ ଅନୁଭବ କରି ଭାବୁକପ୍ରାଣ କବି, ତାଙ୍କର ରାଜନୀତିକ ବା ସାମାଜିକ ଚେତନା ଯାହା ଥାଉ ନା କାହିଁକି ଭାବପ୍ରବଣ ହୋଇ ଗାଇଛନ୍ତି –

''x x x x x
ନ ରହିବ ଇତିହାସ ନ ରହିବ ଚିହ୍ନ
ଏ ପାଷାଣ ଗାତ୍ର କାହିଁ ନୋହିବ ବିଦୀର୍ଣ୍ଣ
କିନ୍ତୁ ସେ ଯେ ବିଶ୍ୱାସ ଭକତି
ତା ଉଦ୍ଦେଶ୍ୟେ ଜଣାଏ ମୁଁ ନତି''

କାଳିନ୍ଦୀଚରଣ କୌଣସି ମଣିଷ ତିଆରି କୃତ୍ରିମ ଆଦର୍ଶର ଆବରଣ ମଧ୍ୟରେ ନିଜର ସ୍ୱତଃସ୍ଫୂର୍ତ୍ତ ଭାବନାକୁ ଆବଦ୍ଧ ନ କରି ସ୍ୱଚ୍ଛନ୍ଦ ରୀତିରେ ନିଜର ମନୋଭାବକୁ ପ୍ରକାଶ କରିଛନ୍ତି । ଏହା ତାଙ୍କର ସମସ୍ତ କୃତିର ଅଧ୍ୟୟନରୁ ସ୍ପଷ୍ଟ ବାରିହୋଇ ପଡ଼େ ।



# କାଳିନ୍ଦୀଚରଣଙ୍କ କବିତାରେ କାରୁକାର୍ଯ୍ୟ

ଅଧ୍ୟାପକ ନାରାୟଣ ପଣ୍ଡା

"Power above powers
O heavenly eloquence"

(Samuel Daniel)

ସବୁଜଗୋଷ୍ଠୀର କବିମାନଙ୍କ ମଧ୍ୟରେ କାଳିନ୍ଦୀଚରଣ ଜଣେ ଧୂରୀଣ ପ୍ରତିଭାସଂପନ୍ନ କବି । କବିଙ୍କର ଲେଖନୀ ପ୍ରସୂତ କବିତାଗୁଡ଼ିକ ଓଡ଼ିଆବାଣୀ କାନନରେ ପାରିଜାତ ସମ । ଜଣେ ଦକ୍ଷ ଔପନ୍ୟାସିକ ଭାବରେ ସେ ଯେପରି ସର୍ବବାଦିସମ୍ମତ, ସାରସ୍ୱତ ପ୍ରାବନ୍ଧିକ ଭାବରେ ସେ ସେପରି ସ୍ୱନାମଧନ୍ୟ । ଗଳ୍ପ, ଉପନ୍ୟାସ, ପ୍ରବନ୍ଧ, ସମାଲୋଚନା ପ୍ରଭୃତି ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ମନୁଷ୍ୟ ଜୀବନର ସ୍ୱପ୍ନ ଓ ସମ୍ଭାବନା ସହିତ ବାସ୍ତବତାର ସଂଯୋଗରେ ସେ ସର୍ବତ୍ର ମଧୁମୟ ରସଲୋକ ସୃଷ୍ଟିକରିଥାନ୍ତି । ଜୀବନ ଓ ଜଗତ ପ୍ରତି ଗଭୀର ସମ୍ବେଦନଶୀଳତା ତାଙ୍କର ବାସ୍ତବଧର୍ମୀ କବି ଦୃଷ୍ଟିର ପରିଚୟ ପ୍ରଦାନ କରିଥାଏ ।

ଜୀବନ ଓ ଜଗତକୁ କବି ଯେପରି ଭାବରେ ଅନୁଭବ କରିଛନ୍ତି, ସେହିପରି ଭାବରେ କବି କବିତା ରଚ଼ନା କରିଛନ୍ତି । ନିର୍ଯ୍ୟାତିତ ଲାଞ୍ଛିତ ଜୀବନର କୋହ, ବିଧବା ଆଖିର ଲୁହ; ଅନାଥ ଶିଶୁର ଦରୋଟି କଥା, ପ୍ରେମକରି ପ୍ରତାରିତ ହୋଇଥିବା ପ୍ରେମିକାର କରୁଣ କାହାଣୀ, ନୟନ ପ୍ରତିମା ମନ ମନୋରମାର ସଜଳ ଚାହାଣି, କବି କାଳିନ୍ଦୀ ଚ଼ରଣଙ୍କ କବିତାର ନିର୍ଯ୍ୟାସ । କବି ଗୀତି ବିତାନର ସ୍ରଷ୍ଟା, ସ୍ୱପ୍ନ ଦ୍ରଷ୍ଟା କବିର ଚାରଣ ଭୂମି ତରଙ୍ଗ ଧୌତ ସାଗର ବେଳା ନିର୍ଜନ ନିର୍ଝରିଣୀର ତଟ ପୃଥିବୀକୁ ହଜାଇ ଦେବାର ବେଦନା ସୃଜନ ଆନନ୍ଦର ଛାୟାଲୋକରେ ପ୍ରତିବିମ୍ବିତ ତା'ର ଆକାଶ-ଚନ୍ଦ୍ରଚକିତ । ତା'ର ଦୃଷ୍ଟିରେ ବିପ୍ଳବ ଏବଂ ନୂତନ ସ୍ୱର୍ଣ୍ଣ ଯୁଗର ନିର୍ମାଣ ପରିକଳ୍ପନା । ଏହା ହିଁ କବି କାଳିନ୍ଦୀଚରଣଙ୍କ କାବ୍ୟ ପୁରୁଷର ତଦ୍‌ଗତ ସତ୍ତା ।

କବି କାଳିନ୍ଦୀଚ଼ରଣ କବିତାର ଏକ ଅନିର୍ବଚ଼ନୀୟ ପ୍ରତିମା କଳ୍ପନାକରି ତା' ପ୍ରତି ଅତିମାନୁଷୀ ପ୍ରକଳ୍ପ ଲେପନ କରିଛନ୍ତି –

''ମାନବ ନୟନେ ଯାହା ଶୂନ୍ୟବୋଲି ହୁଅଇ ପ୍ରତୀତ
ସୂକ୍ଷ୍ମତମ ସେହି ଶୂନ୍ୟେ ପୂରି ଅଛି ଜୀବନର ଗୀତି
କୋଟି ଚେତନାର ଅଣୁ ପରମାଣୁ ରମେ
ରୂପେ ରୂପେ ଏ ସୃଷ୍ଟି ବିଳସେ ।
ଘୂର୍ଣ୍ଣାୟିତ ବିଶ୍ୱଚକ୍ରେ ଯେତେ ଲୟ ସ୍ଥିତି ବା ଜନମ
ବ୍ୟଞ୍ଜନା ଆନନ୍ଦ ରସେ ସଦା ତାର ପୀଡ଼ିତ ମରମ,
ଅନୁକ୍ଷଣ ବହି ଏହି ବ୍ୟଥାର ଆନନ୍ଦ
ଜାଗିଉଠେ ସୃଜନର ଛନ୍ଦ । (ସୃଜନ ବ୍ୟଥା)

'ଲୋହିତ ବ୍ୟଥା' କବି କାଳିନ୍ଦୀ ଚ଼ରଣଙ୍କ ଏକ ପ୍ରତୀକ ଧର୍ମୀ କବିତା । 'ଲୋହିତ ବ୍ୟଥା' ଶୀର୍ଷକ କବିତାରେ କବିଙ୍କ ମହନୀୟଭାବ ଭାବ ପ୍ରସ୍ଫୁଟିତ । 'ଲୋହିତ' ଶବ୍ଦର ଅର୍ଥ ହେଉଛି ଶୋଣିତ, ରକ୍ତ, ନାଲିଆ ପ୍ରଭୃତି । 'ଲୋହିତ ବ୍ୟଥା' କବିତାର ଆକ୍ଷରିକ ଅର୍ଥ ହେଉଛି ରକ୍ତର ବ୍ୟଥା, ଯେଉଁ ବ୍ୟଥାଟି ଜନ୍ମଗତ । ତେଣୁ 'ଲୋହିତ ବ୍ୟଥା' କହିଲେ ସ୍ରଷ୍ଟାର ଅନ୍ୟତମ ମୌଳ-ଭାବ । ଏହା ପ୍ରତ୍ୟେକଟି ବ୍ୟକ୍ତି ଭିତରର ମୌଳ ଅଭିଜ୍ଞାନ । ଏହି ଅଭିଜ୍ଞାନର ପରିପ୍ରକାଶରେ କବିତା ହୁଏ ମଧୁର । କାରଣ ତାହା ସାର୍ବଜନୀନ ।

ଇଂରାଜୀ ସାହିତ୍ୟର ରୋମାଣ୍ଟିକ୍ କବି ଶେଲିଙ୍କ ଭାଷାରେ –

"We look before and after
And Pine for what is not
Our sincerest laughter
With some pain is fraught
Our sweetest songs are those that
tell of Saddest thought."

(To a Skylark - P. B. Shelly)

'ଲୋହିତ ବ୍ୟଥା' କବିତାରେ କବି ବିଷାଦିତ ଅନୁଭୂତିର ଚିତ୍ର ପ୍ରଦାନ କରିଛନ୍ତି । ଅନୁଭୂତିରେ ବିଷାଦ ବେଶ୍ ଅହେତୁକ । ତାକୁ Romantic agony ବା ରୋମାଣ୍ଟିକ ଯନ୍ତ୍ରଣା କହିହେବ । କୌଣସି ଦୃଶ୍ୟ ବା ଭାବରେ ଦୁଃଖ ନଥାଏ । ବ୍ୟଥା ଥାଏ ସ୍ରଷ୍ଟାର ମନରେ । ସବୁଜ ଗୋଷ୍ଠୀର କବି ଅନ୍ନଦାଶଙ୍କର ରାୟଙ୍କ ଭାଷାରେ –

''ଜଗତେ ହଜେ ନା କିଛି
ହଜେ ଜୀବନେ
ବାହାରେ ବେଦନା ନାହିଁ
ବେଦନା ମନେ''

(ଯଉବନ ଥରେ ଗଲେ ଆଉ ଆସେନା - ଅନ୍ନଦାଶଙ୍କର)

ସବୁଜ-ଚେତନାର ଉଦ୍‌ଗାତା କାଳିନ୍ଦୀଚରଣ ଯେଉଁ ରକ୍ତର ବ୍ୟଥାକୁ ଉପସ୍ଥାପନ କରିବେ, ତାହା ତାଙ୍କର ବ୍ୟକ୍ତିଗତ ମାନସିକତା ହେଲେ ହେଁ, ଆବେଦନ ଦୃଷ୍ଟିରୁ ତାହା ସାର୍ବଜନୀନ । ରୋମାଣ୍ଟିକ୍ କବି ଶେଲିଙ୍କ ଭାଷାରେ - 'Love's very pain is sweet' ଅର୍ଥାତ୍ ପ୍ରେମର ଯନ୍ତ୍ରଣାଠାରୁ ଅଧିକ ମାଧୁର୍ଯ୍ୟ କାହିଁ । 'ଲୋହିତ ବ୍ୟଥା'ରେ ପରିବେଷଣ କରାଯାଇଥିବା ବ୍ୟଥା ହେଉଛି ରୋମାଣ୍ଟିକ୍ କବି ସୁଲଭ ବାକ୍‌ଚାତୁରୀ । ଯେପରି - I fall upon the thorns of life and bleed. ନାଗଫେଣ ଜୀବନରେ କ୍ଷତାକ୍ତ ହେବା ରୋମାଣ୍ଟିକ୍ କବିର ବିଳାସ ମାତ୍ର । 'ଲୋହିତ ବ୍ୟଥା' କୁ ବାଦ୍‌ଦେଲେ, କବି ବ୍ୟଥା ଶୀର୍ଷକରେ ଅନେକ କବିତା ରଚନା କରିଛନ୍ତି । 'ସୃଜନବ୍ୟଥା' 'ବ୍ୟଥାଗୀତି' 'ବ୍ୟଥାର ସାଧନ' 'କବିର ବ୍ୟଥା' । 'ବ୍ୟଥା ଗୀତି' କବିତାରେ ବାସ୍ତବ ଜୀବନଭୂମିର ବ୍ୟଥା କଥା ସୂଚିତ ହୋଇଛି ।

ସ୍ୱର୍ଗୀୟ ମାଧୁରୀରେ ସଞ୍ଚିତ ଏଇ ସ୍ୱର-ସଙ୍ଗୀତ ଧରଣୀର ଜୀବନ ଯନ୍ତ୍ରଣାକୁ ଉପଶମିତ କରେ - ଯନ୍ତ୍ରଣା ମଧୁର ହୁଏ । କବି Keatsଙ୍କ ଏହା ହିଁ ମଧୁର ବ୍ୟଥା - sweet pain । କବି Shelly ଆହୁରି ଗଭୀର ଉପଲବ୍ଧି ସହିତ କହିଛନ୍ତି - " Our best songs are those tell of saddest thempt. ଘନୀଭୂତ ଦୁଃଖର କ୍ଲୀବ ଭାବନା ମଧ୍ୟରୁ ଶ୍ରେଷ୍ଠ ଗୀତିର ଝଙ୍କାର ଉଠେ । କବି କାଳିନ୍ଦୀଚରଣଙ୍କର ଏହା ହିଁ ଜୀବନ ଦର୍ଶନ । କବି 'ମୁକୁଳି ପଡ଼ ଗୋ' କବିତାରେ ଯଥାର୍ଥରେ ପ୍ରକାଶ କରିଛନ୍ତି :

''ମୁକୁଳର ବ୍ୟଥା ମଳୟ ସେ ଯଥା
ବହେ କି ପୀରତି ସୁମରି
ସବୁ ବ୍ୟଥା ପ୍ରିୟ ବହିବି ମୁଁ ତଥା ତୁମରି
ସବୁ ଅବସାଦ ମତେ ଦେଇ ପ୍ରିୟ
ତୁମେ ହସ ଗୀତେ ତୁମରି'' । (ମୁକୁଳି ପଡ଼ ଗୋ)

ମୁକୁଳର ବ୍ୟଥା ମଳୟ ନେଇ ଯେଉଁ ପ୍ରୀତିର ଭୂମିକା ନିର୍ମାଣ କରେ ସେଥିରେ ହିଁ ପାଖୁଡ଼ାର ଉନ୍ମେଷ ହୁଏ, ରୂପ, ରସ, ଗନ୍ଧ ଓ ସ୍ୱାଦ ନେଇ, ପ୍ରିୟର ସମସ୍ତ ଅବସାଦ ନେଇ କବି ସେଇ ଭୂମିକାରେ ଗୀତର ବର୍ଷମୁଖର ସ୍ୱରୂପ ରଚନା ପାଇଁ ଉନ୍ମୁଖ ।

କବି ନୀରବରେ ଯାତ୍ରା ପଥରେ ସଙ୍ଗୀତର ଧ୍ୱନି ଶୁଣି ଶୁଣି ଉପତ୍ୟକା ଅତିକ୍ରମ କଲାପରେ ନୀରବତା ମଧ୍ୟରେ ସେ ଗୀତିର ମୂର୍ଚ୍ଛନା ନିଜର ହୃଦୟ ତନ୍ତ୍ରୀରେ ଅନୁଭବ କଲେ । "Though heard no more, the music in my heart I bore" କବି କାଳିନ୍ଦୀ ଚରଣଙ୍କ ସଙ୍ଗୀତ ସମ୍ପର୍କୀୟ ଦର୍ଶନ ୱାର୍ଡ଼ସ୍‌ୱାର୍ଥଙ୍କ ଅନୁରୂପ :-

''ବଂଶୀ କାନ୍ଦିଗଲା ଦୂର ବିଲବନ ପଥେ
ସ୍ୱର ରହିଗଲା ଏ ମୋର ମରମ ଗତେ,

ଦୂର ଅତୀତର ଶୁଭୁଥିଲା ଭାଷା
କି ବିରହ ବ୍ୟଥା ଦୂରନ୍ତ ପିପାସା ।
ସନ୍ଧ୍ୟା ସୁନ୍ଦରୀ ସ୍ୱର୍ଣ୍ଣ ମେଘର ରଥେ
ସଜଳ ନୟନେ ଚାହିଁଥିଲା ବନପଥେ
ସେ କିବା ମୋହର ପ୍ରଥମ ଆଲୋକ କଥା
ଅନନ୍ତ ଯୁଗର ଆଦିମ ଏକ ବାରତା ।
ପ୍ରାଚୀନତମ ସେ ପ୍ରାଣର ପରାସ
ଅସୀମ କାଳର ଏକ ଇତିହାସ
ଅତଳୁଁ ଅତଳେ ଲୁଚିଛି କାହିଁ ସେ ବ୍ୟଥା ।          (ଲୋହିତ ବ୍ୟଥା)

'ଯାଦୁଘର' କବି କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଏକ ଅନନ୍ୟ କବିତା । ଧର୍ମନାମରେ କିପରି ଶୋଷଣ ଚାଲିଛି ତା'ର ଏକ ସୁନ୍ଦର ଚିତ୍ର କବି କବିତାରେ ଅଙ୍କନ କରିଛନ୍ତି । ଧର୍ମ ସଂପର୍କରେ ଅନେକ କବି ମନୀଷୀ ସେମାନଙ୍କର ମତକୁ କବିତାରେ ଉପସ୍ଥାପନ କରିଛନ୍ତି । ମାଟିର ମହାକବି ଶାରଳା ଦାସ ଯଥାର୍ଥରେ ପ୍ରକାଶ କରିଛନ୍ତି –

''ଧର୍ମ ଲଘିବା ପାଇଁକି ଅଟେ ଯେଉଁ ପ୍ରାଣୀ
ଆୟୁ କ୍ଷୟ ଯାଏ ତା'ର ଶିରୀ ହୁଏ ହାନି ।''
(ମହାଭାରତ - ଶାରଳା ଦାସ)

ପ୍ରକୃତି କବି ରୂପପ୍ରାଣ ରାଧାନାଥ 'ଚିଲିକା' କାବ୍ୟରେ ଧର୍ମ ସଂପର୍କରେ ପ୍ରକାଶ କରିଛନ୍ତି –

''ଧର୍ମ ଏକା ସିନା ମହତ ପଣିଆଁ
ଆଉ ସବୁ କଥା ଅଢ଼େଇ ଦିନିଆଁ ।
ଧର୍ମ ଏକ ପୋତ ଗଢ଼ିଛନ୍ତି ବିଧି
ତରିବାକୁ ଏହି ସଂସାର ବାରିଧି'' ।          (ଚିଲିକା - ରାଧାନାଥ ରାୟ)

ପଲ୍ଲୀକବି ନନ୍ଦକିଶୋର ଧର୍ମ ସଂପର୍କରେ ପ୍ରକାଶ କରିଛନ୍ତି :-

''ଦୁଃଖ ସୁଖ ମଧ୍ୟରେ କର୍ତ୍ତବ୍ୟ କର୍ମ
ସାଧିବା ମାନବର ଶାଶ୍ୱତ ଧର୍ମ ।'' (ନନ୍ଦକିଶୋର ବଳ)

ଧର୍ମ ସଂପର୍କରେ ଶାସ୍ତ୍ର, ପୁରାଣ, କାବ୍ୟ କବିତା ପ୍ରଭୃତି ଯେତେ ଯାହା ପ୍ରକାଶ କରନ୍ତୁ ନା କାହିଁକି ''ଯାଦୁଘର' କବିତାରେ କବି କାଳିନ୍ଦୀଚରଣ ପ୍ରାଚୀନ ଧାରଣା ବିରୁଦ୍ଧରେ ବିଦ୍ରୋହ କରିଛନ୍ତି କହିଲେ ବାର୍ତ୍ତାର ଅପଳାପ ହେବ ନାହିଁ ।

'ଯାଦୁଘର' କବିତାରେ କବି ପ୍ରକାଶ କରିଛନ୍ତି :-

''ଧର୍ମ ରଖିଛି ଧରି ଜଗତକୁ ଶୁଣିଲି ବ୍ୟାଖ୍ୟା ବହୁ
ଖୋଜିଲି ଶାସ୍ତ୍ର ଚାଖିବାକୁ ଏତେ ଧର୍ମ - ମଧୁର - ମହୁ''

(ଯାଦୁଘର - କାଳିନ୍ଦୀଚ଼ରଣ ପାଣିଗ୍ରାହୀ)

କିନ୍ତୁ ପରିଶେଷରେ କବି ହତାଶ ହୋଇଛନ୍ତି । 'ପୋଥି ବାଇଗଣ ଓ ବାଡ଼ି ବାଇଗଣ ବିଚାରରେ ଯାହା ଧର୍ମ ବୋଲି ପ୍ରଚାରିତ ହୋଇ ଆସିଛି, ତାହା କାର୍ଯ୍ୟରେ ସାଧିତ ହେଉନଥିବାରୁ କବି କ୍ଷୋଭ ପ୍ରକାଶ କରିଛନ୍ତି । ଯଥାର୍ଥରେ କବିଙ୍କ ଭାଷାରେ –

''ଜଡ଼ ଅକ୍ଷର ଭିତରେ ଜଡ଼ିତ ଅଚାର ନିୟମ ଥୋଡ଼ା
ନ ପାଇଲି ଖୋଜି, ଅଛି ଅବା ତହିଁ ଆଉ କେଉଁ ହାତୀଘୋଡ଼ା
ନଗରେ ନଗରେ ପଥେ ଜନପଦେ ଧର୍ମ ଦେଖିବା ପାଇଁ
ହାତ ବଢ଼ାଇଲି ଧରିବି ବୋଲି ମୁଁ ପୁଚ୍ଛିଲି କେତେ କାହିଁ ।'

(ଯାଦୁଘର - କାଳିନ୍ଦୀ ଚ଼ରଣ ପାଣିଗ୍ରାହୀ)

ଧର୍ମର ସାଧନାରେ ଏତେ ପାର୍ଥକ୍ୟ ଦେଖି କବି ଆଚମ୍ବିତ ହୋଇ ଯାଇଛନ୍ତି । ହିନ୍ଦୁ ମାନଙ୍କର ଧର୍ମ ମନ୍ଦିରରେ ଧର୍ମର ଆଚାର ବିଚାର ବୋଲି ଯାହା ପ୍ରତିପାଳିତ ହୁଏ, ଖ୍ରୀଷ୍ଟିୟାନଙ୍କର ଗୀର୍ଜାରେ ତାହା ହୁଏତ ବିପରୀତ ରୂପରେ କାର୍ଯ୍ୟକାରୀ ହୋଇଥାଏ । ପୁନଶ୍ଚ ମୁସଲମାନଙ୍କର ମସଜିଦ୍‌ରେ ଧର୍ମାଚରଣ କହିଲେ ଯାହା ବୁଝାଯାଏ, ଇହୁଦୀଙ୍କର ଧର୍ମ ମନ୍ଦିରରେ ତାହା ଅନ୍ୟଥା ବିବେଚ଼ିତ ହୋଇଥାଏ । ଧର୍ମ ନାମରେ କିଏ ଛେଳିକୁ ବଳି ପାଇଁ ଯୁକ୍ତି କରେ ତ ଆଉ କେଉଁଠାରେ ଗୋରୁ କାଟିବା ପାଇଁ ନିର୍ଦ୍ଦେଶ ରହିଥାଏ । ପୁନଶ୍ଚ କେଉଁଠାରେ ଜୀବହତ୍ୟା ଏକାବେଳେ ନିଷିଦ୍ଧ ବୋଲି ଜଣାଗଲେ ହେଁ ସେଠାରେ ପରୋକ୍ଷରେ ଅସଂଖ୍ୟ ମନୁଷ୍ୟକୁ ଶୋଷଣ କରି ହତ୍ୟା କରିବାର ପଥ ସୁଗମ ହୋଇଥାଏ । କବି କାଳିନ୍ଦୀଚରଣ 'ଯାଦୁଘର' କବିତାରେ ଏକ ଉଦାତ୍ତବାଣୀ ପ୍ରକାଶ କରିଛନ୍ତି –

''ଦେଉଳେ ଦେଖିଲି ଧର୍ମ ଯା ଅଛି ଗୀର୍ଜାରେ ସେତ ଆନ
କିଏ ଅବା ଛେଳି କିଏ ପୁଣି ଗୋରୁ କାଟିବା ପାଇଁ କି ଥାନ
କିଛି ନ କାଟିବା ପାଇଁ ଯେଉଁଠରେ କହିଲେ ଧର୍ମଗୁରୁ
ଲକ୍ଷ୍ୟ ସେଠାରେ ମଣିଷର ବେକ ମଣିଷର ପାଦ ଉରୁ''

(ଯାଦୁଘର - କାଳିନ୍ଦୀଚରଣ ପାଣିଗ୍ରାହୀ)

ସେହି କାରଣରୁ ସାଂପ୍ରତିକ ସମାଜରେ କବିଙ୍କର ଅବିଶ୍ୱାସର ସୀମା ନାହିଁ । ଏଠାରେ ଧର୍ମ ନାମରେ କେବଳ ଭଣ୍ଡାମି ଚାଲିଛି ବୋଲି କବି ଯୁକ୍ତି କରିଛନ୍ତି । ଅବଶ୍ୟ ଏକଥା ସତ୍ୟ ଯେ ମହାପୁରୁଷ ଯୀଶୁଖ୍ରୀଷ୍ଟ, ମହମ୍ମଦ, ଚୈତନ୍ୟ ପ୍ରଭୃତି ଧର୍ମର ପ୍ରତିଷ୍ଠା ପାଇଁ ଉଦ୍ୟମ

କରିଥିଲେ । ମହାପୁରୁଷ ବୁଦ୍ଧଦେବ ବୌଦ୍ଧଧର୍ମର ପ୍ରଚାର ଓ ପ୍ରସାର ପାଇଁ ଜୀବନବ୍ୟାପୀ ସାଧନା କରିଥିଲେ । ପୃଥିବୀର ବିଭିନ୍ନ ସମାଜରେ ଅତୀତରେ ଏହିପରି କେତେ ଆଧ୍ୟାତ୍ମିକ ବୀର ଧର୍ମର ପ୍ରତିଷ୍ଠା ପାଇଁ ତପସ୍ୟା ଏବଂ ସାଧନା କରିଥିଲେ । ମାତ୍ର ସେହି ସବୁ ଧର୍ମ ଆଜି ପ୍ରହେଳିକାରେ ପରିଣତ ହୋଇଛି । ଧର୍ମର ମୌଳିକ ନୀତି କେହି ଆଜି ସ୍ୱୀକାର କରିବାକୁ ପ୍ରସ୍ତୁତ ନୁହନ୍ତି । ଥରେ କବି ଫକୀରମୋହନ ବିଭିନ୍ନ ଧର୍ମର ମୂଳନୀତି ସ୍ମରଣ କରାଇ କହିଥିଲେ –

''ଇସଲାମ ଧର୍ମୁ ଶିଖ ବିଶ୍ୱାସର ମର୍ମ
ବୈରାଗ୍ୟ ଗୌରବ ରକ୍ଷାକାରୀ ବୌଦ୍ଧଧର୍ମ
ଚୈତନ୍ୟ ଦେବଙ୍କ ଭକ୍ତି ଖ୍ରୀଷ୍ଟଧର୍ମ ପ୍ରୀତି
ଏହି ଚାରି ଧର୍ମ ଶିକ୍ଷାଦିଏ ଚାରି ନୀତି ।
ନ ବୁଝନ୍ତି ଆତ୍ମପର ବ୍ରହ୍ମଜ୍ଞାନୀ ଗଣ
ସର୍ବଶାସ୍ତ୍ର ସାର ତତ୍ତ୍ୱ କରନ୍ତି ଗ୍ରହଣ ।''

କିନ୍ତୁ ଆଧୁନିକ ଯୁଗରେ ସବୁ ଭକ୍ତି ଅବାସ୍ତବ ପ୍ରତୀତ ହୋଇଛି । ଅତୀତରେ କୁହାଯାଉଥିଲା ଯେ, ସମାଜ ଥିଲା ଧର୍ମାନୁମୋଦିତ ଏବଂ ଧର୍ମ କୁଆଡ଼େ ସମାଜର ଆଦର୍ଶ ରକ୍ଷା ପାଇଁ ଏକମାତ୍ର ସାହା ଭରସା ଥିଲା । ମାତ୍ର ଦୁଃଖ ଓ ପରିତାପର୍ କଥା ଯେ, ଜଗତର ଧର୍ମାନ୍ଧତା ପାଇଁ ବହୁ ରକ୍ତାକ୍ତ ସମର ଏବଂ ଅସଂଖ୍ୟ ଲୋକକ୍ଷୟ ହୋଇଯାଇଛି ତାର ଇୟତ୍ତା ନାହିଁ । ଏବେ ମଧ ଧର୍ମ ନାମରେ ଏହି ଅତ୍ୟାଚାର ସୀମାତିକ୍ରମ କରିଅଛି । ତେଣୁ କବି ପଚାରିବା ଛଳରେ କହିଛନ୍ତି –

''ବୁଦ୍ଧ ଯୀଶୁର ମନ୍ତ୍ର କାହିଁବା କାହିଁ ମହମ୍ମଦ ଖୋଦା
ସବୁ ଦିଅଁ ଆଜି ବଳି ଲୋଡ଼ିଲେଣି, ମଣିଷ ହୋଇଛି ବୋଦା ।''

ଯୁଗ ଯୁଗ ଧରି ନାନା ଦେଶର ଶାସ୍ତ୍ର ପୁରାଣରେ ଧର୍ମର ନୀତି କଥା ବୟାନ କରାଯାଇଥିଲା । ଧର୍ମ ନହେଲେ ମନୁଷ୍ୟର ଗତି ନାହିଁ । ଧର୍ମର ଅନୁଶାସନ ମାନି ନ ଚଳିଲେ ଜୀବନ ଓ ରାଷ୍ଟ୍ର ଧ୍ୱଂସ ହୋଇଯିବ । ଧର୍ମ ହିଁ ହେଉଛି ମଣିଷର ଏକମାତ୍ର ଗତି । ବାସ୍ତବିକ୍ କବିଙ୍କ କବିତା ତାତ୍ପର୍ଯ୍ୟପୂର୍ଣ୍ଣ ।

ପ୍ରେମ ଓ ବୀରତ୍ୱର ଅଭିବ୍ୟଞ୍ଜନା ରୂପ ଦର୍ଶନର ଅଭିବ୍ୟକ୍ତି ରୂପେ ସ୍ୱୈରବାଦୀ କବିତାରେ ସ୍ଥାନ ପାଇଛି, କାରଣ ଏହା ଏକ ଆଦିମ ପ୍ରବୃତ୍ତି । ଏହା ଶାଶ୍ୱତ ସାହିତ୍ୟ ବା କ୍ଲାସିକ୍ ଧର୍ମୀ ।

କାଳିନ୍ଦୀ ଚ଼ରଣଙ୍କ ସଂପର୍କରେ ଆଲୋଚ଼ନା କରି ଡକ୍ଟର ମାୟାଧର ମାନସିଂହ ଯଥାର୍ଥରେ ପ୍ରକାଶ କରିଥିଲେ : - ''Kalandi Charan in the group, made a

mark also as a writer of short stories, poet, essayist, novelist and story writer. Kalandi charan stands out today as the real representative of the group, covering as he does all the facets of group's activities. Of his novels only one 'Matira Manisa' has proved successful and popular."

କବି କାଳିନ୍ଦୀଚରଣଙ୍କ କବିତା କେତେବେଳେ ମାଟିର କଥା କହିଛି ତ ଆଉ କେତେବେଳେ ଜୀବନ କଥା କହିଛି । ମାଟି ଓ ଆକାଶର ମଝିରେ କବିର ମନ ଘୂରି ବୁଲିଛି ଦୁନିଆ ପାରିରୁ ଦରିଆପାରି ଯାଏ । କବିତାରେ ଅଛି ସମାଜ ପାଇଁ ବାର୍ତ୍ତା ଓ ବଂଚିବା ପାଇଁ ରସଦ । କାଳିନ୍ଦୀ ଚରଣଙ୍କ କବିତାଗୁଡ଼ିକ ଯେପରି ପ୍ରଜ୍ଞାଦୀପ୍ତ ସେହିପରି ରସୋତ୍ତୀର୍ଣ୍ଣ । ସାଧାରଣ ପାଠକ କବିଙ୍କ କବିତାରୁ ପାଏ ଆନନ୍ଦ; ରସଜ୍ଞ ପାଠକ କବିତାରୁ ପାଏ ରସ । ରୂପ-ରସ-ଗନ୍ଧରେ କବିତା ଗୁଡ଼ିକ ବେଶ୍ ମନୋଜ୍ଞ ।



# କାଳିନ୍ଦୀଚରଣଙ୍କ ଗଳ୍ପରେ ପ୍ରେମ ଓ ପ୍ରଣୟ

ଡକ୍ଟର ବିଜୟାନନ୍ଦ ସିଂହ

ଆଧୁନିକ ଓଡ଼ିଆ ସାହତି୍ୟକୁ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଅବଦାନ ବିପୁଳ । ଉପନ୍ୟାସ, କବିତା, ଗଳ୍ପ, ପ୍ରବନ୍ଧ, ନାଟକ ରଚନା କରି ସେ ଅସାଧାରଣ ପ୍ରତିଭାର ପରିଚ୍ୟ ଦେଇଛନ୍ତି । ଏପରିକି ତାଙ୍କ ଆତ୍ମଜୀବନୀରେ ଏକ ମହାନ ସାରସ୍ୱତ ବ୍ୟକ୍ତିତ୍ୱର ସଂଧାନ ମିଳିଛି । କବିତା ଲେଖି ସେ ଯେପରି ବହୁ ପ୍ରଶଂସାର ଅଧିକାରୀ ହୋଇପାରିଛନ୍ତି, ଉପନ୍ୟାସ କ୍ଷେତ୍ରରେ ମଧ୍ୟ ତାଙ୍କର ଅସାମାନ୍ୟ କୃତିତ୍ୱର ସୂଚ଼ନା ମିଳିଛି । ଉପନ୍ୟାସର ଭାଷା, ଭାବ, ଚରିତ୍ର, ବିଷୟବସ୍ତୁ ପରିକଳ୍ପନାରେ ଚମତ୍କାରିତା ସହ କବିତାରେ ଶବ୍ଦ ସଂଯୋଜନା ଓ ଭାବ ସଂପ୍ରସାରଣରେ ଅପୂର୍ବ ଦକ୍ଷତା ପାଇଁ ସେ ସ୍ମରଣୀୟ ହୋଇଛନ୍ତି ଆମ ସାହିତ୍ୟରେ । କାଳିନ୍ଦୀଚରଣ ଜୀବନବାଦୀ କଥାଶିଳ୍ପୀ ଭାବରେ ଏକ ନୂତନ ସ୍ୱାକ୍ଷର ଅଙ୍କନ କରିଛନ୍ତି । ମାନବିକ ସମ୍ବେଦନକୁ ସାହିତ୍ୟରେ ଗୁରୁତ୍ୱ ଦେବା ସହ ମାଟି ଓ ମଣିଷର ପ୍ରକୃତ କଥାକୁ ସେ ନୂତନ ଦୃଷ୍ଟିଭଙ୍ଗୀରେ କହିଛନ୍ତି । କାଳିନ୍ଦୀଚରଣଙ୍କ ରଚନା ସମୂହରେ ସମାଜର ବାସ୍ତବ ସ୍ଥିତି ଉଦ୍‌ଘାଟିତ ହୋଇଛି । ମାନବେତର ଚରିତ୍ର ସୃଷ୍ଟିକରି ତାଙ୍କ ଜୀବନ ସହ ମାନବିକ ସଂପର୍କକୁ ଯୋଡ଼ି ଦେଇଛନ୍ତି । ହସ, ଲୁହ, ଦୁଃଖ, ଯନ୍ତ୍ରଣା, ନୈରାଶ୍ୟ, ବେଦନାବିଧୁର ଜୀବନର ବିଭିନ୍ନ ଦିଗକୁ ସେ ସାହିତ୍ୟରେ ସଫଳତାର ସହ ପ୍ରକାଶ କରିଥିଲା ବେଳେ ପ୍ରେମ, ପ୍ରଣୟ ବା ରୋମାଣ୍ଟିକ୍ ଭାବନାରେ ତାଙ୍କ ସାହିତ୍ୟ ସୁଶୋଭିତ ହୋଇଛି । ସ୍ରଷ୍ଟା ଜୀବନର ପ୍ରାରମ୍ଭିକ ପର୍ଯ୍ୟାୟରୁ ହିଁ ରୋମାଣ୍ଟିକ୍ ଭାବପ୍ରବଣତା ପ୍ରାଧାନ୍ୟ ଲାଭ କରିଛି । ଭଲପାଇବା ଭିତରେ ଜୀବନକୁ ଦେଖି ହୁଏ; ଗଭୀର ପ୍ରେମ ମଧ୍ୟରେ ଜୀବନକୁ ଚିହ୍ନିହୁଏ । ନିବିଡ଼ ରୋମାଣ୍ଟିକ୍ ଚେତନା ହିଁ ମଣିଷକୁ ସ୍ୱଚ୍ଛ, ସରଳ କରିଦିଏ । ଭଲ ପାଇବା ମଣିଷର ଏକ ସହଜାତ ପ୍ରବୃତ୍ତି । ସ୍ରଷ୍ଟା କାଳିନ୍ଦୀଚରଣ ପ୍ରେମ ଚେତନା ପ୍ରତି ଅନୁରକ୍ତ । ସେହି ପ୍ରେମ, ରୋମାଣ୍ଟିକ ଭାବନା ତାଙ୍କ ସାରସ୍ୱତ ବ୍ୟକ୍ତିତ୍ୱକୁ କରିଛି ସୃଷ୍ଟିଶୀଳ । ତାଙ୍କ କଥା ସାହିତ୍ୟରେ ବିଶେଷ ଭାବରେ ଗଳ୍ପରେ ଅଛି ପ୍ରେମର ଚାରୁଚିତ୍ରଣ । ଏହି ପ୍ରେମ କେତେବେଳେ ନାରୀ ପୁରୁଷର ସ୍ୱାଭାବିକ ଆକର୍ଷଣ ଜନିତ ହୋଇଛି ତ ପୁଣି କେତେବେଳେ ଚିରନ୍ତନ ପ୍ରେମର ଅବତାରଣା କରାଯାଇଛି । ପୃଥିବୀକୁ, ମଣିଷକୁ, ଜୀବନକୁ ନିବିଡ଼ ଭାବରେ ଭଲପାଇ ବସିଲେ ମଣିଷର ବିଶାଳ ଭାବର ପରିପ୍ରକାଶ ଘଟେ ।

କାଳିନ୍ଦୀଚରଣ ହୃଦୟଭରି ଭଲପାଇ ବସିଥିଲେ ଏ ପୃଥିବୀକୁ । ତାଙ୍କ ଭାଷାରେ - ''ଦୁନିଆରେ ଭଲ ପାଇବା ଅପେକ୍ଷା ଆଉ ବଡ଼ କିଛି ହେଲେ ନାହିଁ । ମୋ ଦୁଇହାତକୁ କିଛି ପୂର୍ଣ୍ଣ କରିବାକୁ ଲୋଡ଼େ ମୁଁ – କେବଳ ସ୍ନେହ, ପ୍ରେମ ଓ ପ୍ରାଣରେ ।'' ସେ ପୁଣି ଏହି ପ୍ରସଙ୍ଗରେ କହିଛନ୍ତି – ''ଜୀବନ ଯୁଦ୍ଧରେ ବିଜୟୀ ହେବା ଲାଗି ଭଲ ପାଇବା ଠାରୁ ଯେ ବଡ଼ ଅସ୍ତ୍ର ଆଉ କିଛି ନାହିଁ । ଶେଷ ନିଃଶ୍ୱାସ ଛାଡ଼ିଲା ବେଳେ ଏଇ ଗୋଟାଏ କଥା ଯେମିତି ମୋ ସ୍ମରଣ ହୁଏ ।'' (୧)

କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଗଳ୍ପଗୁଡ଼ିକରେ ପ୍ରେମ, ପ୍ରଣୟ ଚେତନାରେ ମୁଖରିତ ହୋଇଛି । ମାନବିକ ଜୀବନର ପ୍ରକୃତ ସ୍ୱରୂପ ପ୍ରେମରୁ ହିଁ ଜଣାପଡ଼ିଥାଏ । ପ୍ରେମ ଆନନ୍ଦ, ସୁଖ, ସୌନ୍ଦର୍ଯ୍ୟର ପ୍ରତୀକ । ତେଣୁ ନାରୀ ଓ ପୁରୁଷର ପ୍ରେମ କଥା ଜୀବନ୍ତ ଭାବେ ପ୍ରକାଶିତ ହେଲେ ତାହା ପାଠକକୁ ମୁଗ୍ଧକରେ । କାଳିନ୍ଦୀଙ୍କ ରଚିତ 'ପ୍ରେମିକ' ଗଳ୍ପ ଏକ ସାର୍ଥକ ସୃଷ୍ଟି । ଏହି ଗଳ୍ପରେ ରୋମାଣ୍ଟିକ୍ ଭାବଧାରାର ପରିପ୍ରକାଶ ଘଟିଛି । ପ୍ରେମିକ ଗଳ୍ପରେ 'ସତୁରିବର୍ଷ ବୟସ୍କ ବୃଦ୍ଧ ପ୍ରେମିକ ରୂପରେ ଉଭା ହୋଇଛି । ସେ ପୁଣି ଶିଳ୍ପୀ । କାଠ, ପାଷାଣରେ ନିର୍ମାଣ କରେ ନୂତନ ସୃଷ୍ଟି ସମ୍ଭାର । ଏହି ଶିଳ୍ପୀଙ୍କର ପଡ଼ୋଶୀ ଆଚାର୍ଯ୍ୟଙ୍କ ଶିଶୁ କନ୍ୟାପ୍ରତି ଗଭୀର ଶ୍ରଦ୍ଧା ସୃଷ୍ଟି ହୁଏ । ପ୍ରାୟତଃ ସବୁଦିନ ଶିଳ୍ପୀଙ୍କ ଦ୍ୱାରା ପ୍ରସ୍ତୁତ ମୂର୍ତ୍ତିକୁ ଦେଖିବାକୁ ଆସେ ବାଳିକା । ମୂର୍ତ୍ତି ଦେଖି ସାରି ସେ ମତାମତ ଦିଏ । ଫଳତଃ ଉଭୟଙ୍କ ଆତ୍ମିକ ସଂପର୍କ ଘନିଷ୍ଠ ହୋଇଯାଏ । ବୃଦ୍ଧଶିଳ୍ପୀଙ୍କ ମାନସପଟରେ ବାଳିକା ଗଭୀର ଭାବରେ ରେଖାପାତ କରିଛି । କଥାଶିଳ୍ପୀ କାଳିନ୍ଦୀଚରଣ ପ୍ରେମିକା ଗଳ୍ପରେ ସୌନ୍ଦର୍ଯ୍ୟର ପୂଜା କରିବା, ପ୍ରେମିକା ଭାବରେ ମାର୍ବଲ ମୂର୍ତ୍ତିକୁ ଉପସ୍ଥାପନ କରିବା ଘଟଣା ପଛରେ ରୋମାଣ୍ଟିକ ଚିନ୍ତା ଚେତନା ସୁସ୍ପଷ୍ଟ । – ''ଦୁହିଁଙ୍କ ମଧ୍ୟରେ ଘନିଷ୍ଠତା କ୍ରମେ ଏତେ ବେଶି ହେବାକୁ ଲାଗିଲା ଯେ ପରସ୍ପର ସାକ୍ଷାତ ନ ହେଲେ ଏକ ଅପରକୁ ଶାସନ କରେ ଏବଂ ଦୋଷୀ ଯେ ସେ ନୀରବ ହୋଇ ରହେ । ବାଳିକାର କୋମଳ ତିରସ୍କାରରେ ବୃଦ୍ଧ ମନେ ମନେ ହସେ । ତା' ଅନ୍ତରରେ ଯେଉଁଠାରେ ଶିଳ୍ପୀ ଶିଶୁ ବାସକରେ, ସେ ମଧ୍ୟ ବାଳିକାର ଦୋଷ ଦେଖି ସେଇପରି ତିରସ୍କାର ନ କରି ଛାଡ଼େ ନାହିଁ । ବୃଦ୍ଧର ଇଚ୍ଛା ବାଳିକା ଆସି ତା ମୂର୍ତ୍ତିଗୁଡ଼ାକୁ ଇତସ୍ତତଃ କରୁ, ଭଙ୍ଗାଭଙ୍ଗି କରୁ । ଅତ୍ୟନ୍ତ ଶାନ୍ତ ଜୀବନ ତାର ଅସହ୍ୟ ହୋଇପଡ଼ିଛି ।'' (୨)

ଶିଳ୍ପୀ ହୃଦୟର ଅନାସକ୍ତ ପ୍ରେମର ଚମତ୍କାର ଚିତ୍ର ଅଙ୍କିତ ହୋଇଛି 'ପ୍ରେମିକ' ଗଳ୍ପରେ । ସେହିପରି 'ସାଗରିକା' ଗଳ୍ପରେ ଗାଳ୍ପିକ କାଳିନ୍ଦୀଚରଣ ପ୍ରେମିକ ଦୃଷ୍ଟିଭଙ୍ଗୀର ସଂକେତ ପ୍ରଦାନ କରିଛନ୍ତି । 'ସାଗରିକା' ଗଳ୍ପରେ ସାଗରିକାର ପ୍ରକୃତିପ୍ରେମ ଓ ସୌଦାଗର ପୁତ୍ରର ସାଗରିକା ପ୍ରତି ଭଲପାଇବା ଦ୍ୱନ୍ଦ୍ୱକୁ ସୁନ୍ଦର ଭାବରେ ଉପସ୍ଥାପନା କରିଛନ୍ତି । ପ୍ରକୃତି ପ୍ରେମ ନିକଟରେ ମାନବିକ ପ୍ରେମ ପରାଜୟ ସ୍ୱୀକାର କରିଛି । ଗାଳ୍ପିକଙ୍କ ବର୍ଣ୍ଣନା ପ୍ରେମିକ, ପ୍ରେମିକାର ବାସ୍ତବ ସ୍ଥିତିକୁ ସ୍ୱୀକାର କରେ – ''ଯୁବକ ଗୃହକୁ ଫେରିଲା ସତ, କିନ୍ତୁ ସାଗରିକାକୁ ଭୁଲି ପାରିଲା

ନାହିଁ । କୋଣାର୍କକୁ ଆସି କେତେଥର ବାଲୁକା ପ୍ରାନ୍ତରରେ ତାକୁ ଖୋଜି ବୁଲିଲା, କିନ୍ତୁ ସବୁ ଅକାରଣ, କିଛିମାତ୍ର ସନ୍ଧାନ ନାହିଁ । ତଥାପି ସେ କ୍ଷାନ୍ତ ନୁହେଁ । ପ୍ରତିଦିନ ସଞ୍ଜ ସକାଳେ ସେ ପାଗଳ ପରି ଖୋଜିବୁଲେ ।'' (୩) ପୁଣି ସେ ପ୍ରତ୍ୟକ୍ଷ ପ୍ରେମର ଅବତାରଣା କରିଛନ୍ତି – ''ସେହି ଝଡ଼ ରାତ୍ରିଟା ସେ ଆଦୌ ଶୋଇ ପାରିଲା ନାହିଁ, ସମସ୍ତ ଜୀବନ ଯେପରି ତିକ୍ତ ହୋଇ ଉଠିଛି । ଏକା ସାଗରିକା ତାହାର ଭଜନମାଳା ହୋଇବସିଛି ।'' (୪) ସାଗରିକାର ରୂପ ବର୍ଣ୍ଣନା ଓ ଗଳ୍ପର ପ୍ରକାଶ ଶୈଳୀରେ ରୋମାଣ୍ଟିକ୍ ଚେତନା ପରିପୂର୍ଣ୍ଣ ହୋଇଛି ।

'ନିଶୀଥିନୀ' ଗଳ୍ପ କାଳିନ୍ଦୀଚରଣଙ୍କ ଏକ ଅମୂଲ୍ୟ ସୃଷ୍ଟି । ରୋମାଣ୍ଟିକ ବର୍ଣ୍ଣନାରେ ଗଳ୍ପଟି ମୁଖରିତ ହୋଇଛି । ପ୍ରକୃତରେ କାଳିନ୍ଦୀଚ଼ରଣଙ୍କ ଗଳ୍ପରେ ପ୍ରେମ, ପ୍ରଣୟ ଅପୂର୍ବ ରୂପ ଲାଭ କରିଛି । କାଳ୍ପନିକ ଚରିତ୍ର 'ନିଶୀଥିନୀ'ର ଚରିତ୍ରର ରୂପ ଅଙ୍କନରେ ପ୍ରେମର ମାଧୁର୍ଯ୍ୟ ଫୁଟି ଉଠିଛି – ''ନିଶୀଥିନୀ କଥା କହିବାକୁ ଆରମ୍ଭ କଲା । ତାହାର ଓଠ ଦିଓଟି ସାମାନ୍ୟ କମ୍ପିତ ହେଉଥାଏ ମାତ୍ର, ଅଥଚ ମୁଁ ସବୁ ସ୍ପଷ୍ଟ ବୁଝି ପାରୁଥାଏ । ସେ ସେହିପରି ମୃଦୁ ହସି (ଓଃ, ସେ ହାସ୍ୟରେ କି ମର୍ମନ୍ତୁଦ ବେଦନାର ଚିତ୍ର ରଂଜିତ) ପଚାରିଲା 'ତୁମେ ମତେ ସତ ସତ ସ୍ନେହ କର ?' ସେ ଆଖି କୋଣରେ, ସେ ଅଧରରେ ଯେଉଁ ବ୍ୟଥା ବାଜୁଥିଲା, ମୋ ଅନ୍ତରରେ ତାହା ଶତ ଗୁଣ ହୋଇ ପ୍ରତିଧ୍ୱନିତ ହେଲା ।'' (୫) ଏକ ଶାଶ୍ୱତ ପ୍ରେମର ଚିତ୍ର ବହନ କରିଛି 'ନିଶୀଥିନୀ' ଗଳ୍ପ । 'ନିଶୀଥିନୀ' ଏକ ନାରୀ ଚରିତ୍ର କେବଳ ନୁହେଁ, ଜଣେ କବିର ମାର୍ମିକ ଅଭିବ୍ୟକ୍ତି ମାଧ୍ୟମରେ ଏକ ନାରୀ ମୂର୍ତ୍ତିଟିଏ ଯଥାର୍ଥ ରୂପ ନେଇଛି ।

'ବିଟ୍ ଘର ଓ ରେଳଗାଡ଼ି' ଗଳ୍ପରେ ଗଡେଇ ମାଝିର କନ୍ୟା ଜହ୍ନପ୍ରତି ଦାମର ନିବିଡ଼ ପ୍ରେମ ଫୁଟିଉଠିଛି । ଏହି ପ୍ରେମ ଆତ୍ମତ୍ୟାଗ, ନିଷ୍ଠା ଉପରେ ପର୍ଯ୍ୟବସିତ । ହୃଦୟ, ପ୍ରାଣ ଓ ମନ ପ୍ରେମରେ ପରିପୂର୍ଣ୍ଣ ଦାମର – ''ଗାଡ଼ି ଚାଲିଲା ବେଳେ ବାଟରେ ଘାଟରେ ଗାଧୁଆ ତୁଠରେ କେତେ ସୁନ୍ଦର ମୁହଁ ନିତି ଦାମ ଆଖିରେ ପଡ଼େ; କିନ୍ତୁ ମନେହୁଏ, ସବୁ ସୁନ୍ଦର ମୁହଁ ଯେମିତି ଜହ୍ନଠାରେ ଠୁଳ ହୋଇଛି । କେତେ ପାହାଡ଼, ଜଙ୍ଗଲ କାଟି ଗାଡ଼ି ଚାଲିଛି । ସବୁକାଗାଗୁଡ଼ାକ ସାଥିରେ ଦାମର ଭଲ ଚିହ୍ନା ପରିଚ । ଆଜି ସେ ସବୁକୁ ଦେଖି ମଧ୍ୟ ସେ ତାକୁ ଦେଖୁନାହିଁ । ନେଳି ପତାକାଟି ଧରି ଜହ୍ନ ଠିଆ ହୋଇଥିବାର ବହୁତ ଦୂରରୁ ତା ଆଖି ଆଗରେ ପଡ଼ିଲା ।'' (୬)

'ତାଆଣୀବୁଢ଼ୀ' ଗଳ୍ପରେ ପ୍ରେମର ଉତ୍ତାଳ ତରଙ୍ଗ ଉପଲବ୍ଧ ହୁଏ । ଶାଶ୍ୱତ ପ୍ରେମର ଅବତାରଣା କରାଯାଇଛି ଏହି ଗଳ୍ପରେ । ନିରୋଳା, ସଚ୍ଚୋଟ ପ୍ରେମର ଶେଷ ନାହିଁ – ତାହାର ବର୍ଣ୍ଣନା କାଳିନ୍ଦୀଚରଣ କରିଛନ୍ତି– ''ଭାନୁ ମଳିକ ଚାଲିଗଲା ପରେ ବୁଢ଼ୀ ବାହାରକୁ ଥରେ ପ୍ରଦକ୍ଷିଣ କଲା । ଗୃହ ମଧ୍ୟରେ ପ୍ରବେଶ କରି ସଦମ୍ଭରେ କବାଟ କିଳିଦେଲା । ହେଁସଟି ତଳେ ପାରିଦେଲା । ଧୋବ କନାଖଣ୍ଡେ ତା ଉପରେ ବିଛାଇ ଦେଲା । ବାଡ଼ି ଉପରୁ ଅତି ଯତ୍ନରେ ଧୀରେ କନା ଖଣ୍ଡି ଖୋଲିଦେଲା, ଅଳଙ୍କାରଗୁଡ଼ିକ କାଢ଼ି ଶୀର୍ଣ୍ଣ ଅଙ୍ଗୁଳିରେ ଆଲୋଡ଼ିତ କଲା ।

କେତେ ଥର ଶୁଷ୍କ ଓଠରେ ଚୁମ୍ବନ କଲା; କୋଟରଗତ ଚକ୍ଷୁରେ ବାରମ୍ବାର ସ୍ପର୍ଶ କଲା, ବକ୍ଷରେ ଚାପିଧରିଲା । (୭) ଏକ ଅମୃତ ପ୍ରେମର ସୂଚନା ଯାହା ମଣିଷକୁ ଚକିତ କରେ, ମୁଗ୍ଧ କରେ ।

ବୟସ ପ୍ରେମର ପ୍ରତିବନ୍ଧକ ନୁହଁ । ବର୍ଷ, ବୟସ ମାନେ ନାହିଁ ପ୍ରେମ । ଏହି ଗଳ୍ପରେ ତାହା ପ୍ରମାଣିତ ହୋଇଛି । ଉତ୍ତୀର୍ଣ୍ଣ ବୟସରେ ଆତ୍ମିକ ପ୍ରେମାବେଗରେ ଗଳ୍ପଟି ସଜୀବ ହୋଇ ଉଠିଛି ।

ରଶ୍ମିରେଖା ଗଳ୍ପରେ ରୋମାଣ୍ଟିକ୍ ଚେତନାର ସଫଳ ପ୍ରୟୋଗ ହୋଇଛି । ନୈସର୍ଗିକ ପ୍ରେମର ଉଚ୍ଚାରଣରେ ହୃଦୟ ଉଦ୍‌ବେଳିତ ହୁଏ । ଆଉ ଏକ ପ୍ରାଣରେ ସ୍ପନ୍ଦନ ସୃଷ୍ଟି ହୁଏ । 'ସୁଧା' ଚରିତ୍ରକୁ ସମ୍ବୋଧନ କରିବା ସହ ପ୍ରାଣର ବାର୍ତ୍ତା ପ୍ରଦାନ କରି ଚରିତ୍ରଟି ନିଶ୍ଚୁପ ହୋଇଯାଉନାହିଁ, ବରଂ ପ୍ରୀତିର ଜୟଗାନ କରିଛି – ''ମନେଅଛି ପ୍ରିୟେ, ଆଉ ଦିନେ ଏହିପରି ନିଶୀଥରେ ତୁମ ନୀରବତା ମୋର କେତେ ଅସହ୍ୟ ହୋଇଥିଲା ? ପୁଣି ତାହା ମୋଚନ କରିବା ପାଇଁ ମୋର କି କଠିନ ସାଧନା ହୋଇପଡ଼ିଥିଲା ? (୮)

'ଜୟହିନ୍ଦ୍'ଗଳ୍ପ ଏକ ଭିନ୍ନ ଧରଣର ଗଳ୍ପ । ଉତ୍କଣ୍ଠା, ଆବେଗ ବେଶ୍ ପ୍ରଭାବଶାଳୀ ହୋଇଉଠିଛି ଏହି ଗଳ୍ପରେ । ସଚ୍ଚୋଟ ଭାବେ ଭଲପାଇବା, ଆନ୍ତରିକ ଭାବେ ପ୍ରେମର ପୂଜା କଲେ ଜୀବନ ମଧୁମୟ ହୋଇଉଠେ, ଲକ୍ଷ୍ୟ ପୂରଣ ହୁଏ । ନୂପୁରୀ ଜଣେ ସାଧାରଣ ଗ୍ରାମ୍ୟ ଯୁବତୀ ହେଲେ ବି ତା'ର ପ୍ରେମର ନିଷ୍ଠା ବାସ୍ତବିକ୍ ଅସାଧାରଣ । ପ୍ରେମ ଯେ ଅସମ୍ଭବକୁ ସମ୍ଭବ କରିପାରିବ, ତା'ର ପ୍ରମାଣ ଏହିଠାରେ ଦେଖିବାକୁ ମିଳେ । କାଳିନ୍ଦୀଚରଣଙ୍କ ବର୍ଣ୍ଣନା ମର୍ମସ୍ପର୍ଶୀ । ତାଙ୍କର ପ୍ରତ୍ୟକ୍ଷ ଆବେଦନ ପାଠକ ହୃଦୟକୁ ଅଭିଭୂତ କରିଦିଏ । ବର୍ଣ୍ଣନାର ଛଟା ଭିତରେ ବିଶୁଦ୍ଧ ପ୍ରେମ କ୍ରମଶଃ ଗୁରୁତ୍ୱଲାଭ କରିଛି ।

ଗାନ୍ଧିକଙ୍କ ମନ ଥିଲା ରୋମାଣ୍ଟିକ୍ ଭାବ ପ୍ରବଣ ଉନ୍ମୁଖ – ''କେଳା ସେ କଥାକୁ ପରୁଆ କରିନାହିଁ । କାହିଁକି କେଜାଣି ସେଇଦିନୁ ନୂପୁରୀ ସାଥିରେ କଥା ଭାଷା ହେବାକୁ ସେ ଭାରି ଗୋଳେଇ ମିଶେଇ ହୁଏ । ଆଜିଯାକେ ସେମିତି ସୁବିଧା ଜୁଟି ନଥିଲା । ନୂପୁରୀ ସାଙ୍ଗସାଥିଙ୍କ ଭିତରେ ଗପ କରୁଥିଲାବେଳେ ଦୂରରେ କେଳାକୁ ଦେଖିଦେଇ ଥରେ ଅଧେ ହସିଦେଇଛି । କୋଟିନିଧି ପାଇଲା ପରି କେଳା ବିଚରାକୁ ସେଦିନ ରାତିରେ ନିଦ ହୋଇନାହିଁ । ଆଜି ଏକୁଟିଆ ପାଇ ବିଚାରିଲା ନୂପୁରୀ ନିଶ୍ଚେ ତାକୁ ଭଲରେ ପଦେ କଥା କହିବ ।'' (୯)

'ଜୟହିନ୍ଦ୍' ଗଳ୍ପରେ ପ୍ରେମର ପରିଧି ବୃଦ୍ଧି ପାଇଛି । ପ୍ରେମ ସହିତ ଜୀବନର ସମ୍ପୃକ୍ତିକୁ ସେ ସ୍ୱୀକାର କରିବା ସହିତ ଜୀବନର ମହନୀୟ ଦିଗକୁ ବିସ୍ତାରିତ କରିଛନ୍ତି ।

'ଛିନ୍ନପୃଷ୍ଠା', 'ସାବିତ୍ରୀର ଦୁଃଖ' ଗଳ୍ପରେ ମଧ୍ୟ ପ୍ରେମର ଚିତ୍ର ସୁସ୍ପଷ୍ଟ । ଏହା ବ୍ୟତୀତ ଅନ୍ୟାନ୍ୟ ବହୁ ଗଳ୍ପରେ କାଳିନ୍ଦୀଚରଣ ପ୍ରେମର ଉପଯୁକ୍ତ ବ୍ୟବହାର କରିଛନ୍ତି ।

ପ୍ରେମ ଓ ସୌନ୍ଦର୍ଯ୍ୟରେ ଚକିତ ସ୍ୱପ୍ନାବିଷ୍ଟ ପରିବେଶରେ, କାଳିନ୍ଦୀଚରଣ ରୋମାଣ୍ଟିକ୍ ତରଙ୍ଗ ସୃଷ୍ଟି କରିବାରେ ସକ୍ଷମ ହୋଇଛନ୍ତି । କାଳିନ୍ଦୀଚରଣ ସବୁଜ ଆନ୍ଦୋଳନର ନେତୃତ୍ୱ ନେବା ସହିତ ମଣିଷ ଓ ମାଟିକୁ ନେଇ ସୃଷ୍ଟି କରିଛନ୍ତି ନୂତନ ସାମ୍ରାଜ୍ୟ । ମାନବିକ ସମ୍ବେଗକୁ ପାଥେୟ କରିଥିବା ଏହି ପ୍ରଖ୍ୟାତ କବି ମଧ ପ୍ରେମ, ପ୍ରଣୟର ସାର୍ଥକ ଶବ୍ଦଶିଳ୍ପୀ । ତାଙ୍କ ଗଳ୍ପରେ କଥାବସ୍ତୁ ଓ ଭାବସତ୍ତା ସହିତ ଶୈଳୀ, ଭାଷା ଠିକ୍ ସମତାଳରେ ଅଗ୍ରଗତି କରିଛି । ସେହିପରି କାଳିନ୍ଦୀଚରଣ ଗଳ୍ପ ଭିତରେ ରୋମାଣ୍ଟିକ୍ ଭାବନା କଳାତ୍ମକ ରୀତିରେ ଆତ୍ମପ୍ରକାଶ କରି ପାଠକକୁ ଏକାତ୍ମ କରି ରଖିବାରେ ସକ୍ଷମ ହୋଇଛି ।

ପ୍ରେମ, ପ୍ରଣୟର ପ୍ରକାଶନରେ କାଳିନ୍ଦୀଚରଣଙ୍କ ସଫଳତା ସ୍ପଷ୍ଟ ବାରି ହୋଇପଡ଼େ । ରୋମାଣ୍ଟିକ୍ ଭାବନାର ରୂପକାର ଭାବରେ କାଳିନ୍ଦୀଚରଣଙ୍କର ସ୍ଥାନ ଓଡ଼ିଆ ସାହିତ୍ୟରେ ସ୍ୱତନ୍ତ୍ର ।

ପାଦଟୀକା :

୧. ଅଙ୍ଗେ ଯାହା ନିଭାଇଛି (କାଳିନ୍ଦୀଚରଣ ପାଣିଗ୍ରାହୀ)
୨. ପ୍ରେମିକ : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୨୦୧
୩. ସାଗରିକା : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୭
୪. ତତ୍ରୈବ
୫. ନିଶୀଥିନୀ : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୨୯୬
୬. ବିଟ୍ ଘର ଓ ରେଳଗାଡ଼ି : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୨୭୦
୭. ଡାଆଣୀବୁଢ଼ୀ : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୩୦୬
୮. ରଶ୍ମିରେଖା : କାଳିନ୍ଦୀଚରଣ ଗଳ୍ପ ସମଗ୍ର, ପୃ. ୩୪୫
୯. ଜୟହିନ୍ଦ୍ : କାଳିନ୍ଦୀଚରଣ ରଚନା ସମଗ୍ର, ପୃ. ୨୩୨



# ଆତ୍ମଜୀବନୀ-ସାହିତ୍ୟର ସଫଳ ରୂପକାର କାଳିନ୍ଦୀଚରଣ

ଡକ୍ଟର ଚିନ୍ମୟୀ ମହାପାତ୍ର

ସାହିତ୍ୟର ସକଳ ବିଭାଗ ମଧ୍ୟରେ ଜୀବନୀ, ପୁଣି ଆତ୍ମଜୀବନୀର ସ୍ଥାନ ଏକାନ୍ତ ସ୍ୱତନ୍ତ୍ର । ଅବଶ୍ୟ ଜୀବନ ଓ ସାହିତ୍ୟ ପରସ୍ପରର ପରିପୂରକ । ଜୀବନ-ନିର୍ଝରର ଚଳଚଞ୍ଚଳ ପ୍ରବହମାନତା ସାହିତ୍ୟକୁ ନିନାଦିତ କରେ । ଜୀବନର ବର୍ଣ୍ଣୋଦ୍ଭାସରେ ସାହିତ୍ୟର ଇନ୍ଦ୍ରଧନୁର ଛଟା ଉକୁଟେ । ଜୀବନପୁଷ୍ପର ସୌରଭରେ ମହକେ ସାହିତ୍ୟର ଉପବନ । ତେବେ ସାମୂହିକ ବା ସାଧାରଣ ଜୀବନ ନୁହେଁ; ନିର୍ଦ୍ଦିଷ୍ଟ ବ୍ୟକ୍ତି-ବିଶେଷଙ୍କ ଜୀବନର ଐତିହାସିକ ପ୍ରରୂପ ହିଁ ଜୀବନୀ-ସାହିତ୍ୟ ରୂପେ ଅଭିହିତ ହୁଏ । 'Oxford Dictionary' ରେ ଜୀବନୀ ବା Biographyର ସଂଜ୍ଞା ନିରୂପଣ କରିବାକୁ ଯାଇ କୁହାଯାଇଛି, ଏହା ହେଉଛି – "the history of the lives of individual men as a branch of literature" କିନ୍ତୁ ଯେ କୌଣସି ବ୍ୟକ୍ତି ନୁହେଁ, କୌଣସି ନିର୍ଦ୍ଦିଷ୍ଟ ଜାତି, ସମାଜ ଅଥବା ସମଗ୍ର ମାନବ-ସମାଜର ସ୍ଥିତି ଓ ସ୍ମୃତିରେ ନିଜ ପାଇଁ ବିଶିଷ୍ଟ ସ୍ଥାନଟିଏ ସୃଷ୍ଟି କରି ପାରିଥିବା ବିଶିଷ୍ଟ ମଣିଷମାନଙ୍କ ଜୀବନର ଘଟଣା-ଦୁର୍ଘଟଣା, ପ୍ରୟାସ ଓ ପ୍ରାପ୍ତି ହିଁ ଜୀବନୀ-ରଚନାକୁ ଅନୁପ୍ରେରିତ କରିଥାଏ ।

କୌଣସି ବ୍ୟକ୍ତି ଯେତେବେଳେ ନିଜ ଜୀବନର ଘଟଣାସମୂହ, ଅନୁଭୂତିଚୟ ସହିତ ନିଜସ୍ୱ ସ୍ୱପ୍ନ ଓ ଅଭିଳାଷ ଇତ୍ୟାଦିକୁ ନିଜ ଭାଷାରେ ଲିପିବଦ୍ଧ କରନ୍ତି, ତାହା ହୁଏ ଆତ୍ମଜୀବନୀ । ଆତ୍ମଜୀବନୀ ଲେଖକଟି ବ୍ୟକ୍ତିଗତ ଜୀବନରେ ସାହିତ୍ୟ, ଶିକ୍ଷା, ପ୍ରଶାସନ, ଦର୍ଶନ, ବିଜ୍ଞାନ ଯେକୌଣସି କ୍ଷେତ୍ରରେ ତାଙ୍କର ସମୟ ଓ ଶକ୍ତି ନିୟୋଜିତ କରିଥା'ନ୍ତୁ ନା କାହିଁକି, ସେହି ନିର୍ଦ୍ଦିଷ୍ଟ ରଚନାଟି ପାଇଁ ସେ ଜଣେ ସାହିତ୍ୟିକ ହିଁ ପାଲଟିଯା'ନ୍ତି । ଜୀବନୀକାରର ପରୋକ୍ଷ ଚିତ୍ରଣ ଅପେକ୍ଷା ଆତ୍ମଜୀବନୀକାରର ପ୍ରତ୍ୟକ୍ଷ ଅନୁଭବକୁ ଲାଙ୍ଗଫେଲୋଙ୍କ ପରି ସମାଲୋଚକମାନେ ଅଧିକ ମର୍ଯ୍ୟାଦା ଦେଇଛନ୍ତି ।

ସିଜରଙ୍କ 'Commentaries', ମାର୍କୋପୋଲୋଙ୍କ 'Travels' ପରି ବସ୍ତୁନିଷ୍ଠ କାଳାନୁକ୍ରମିକ ବିବରଣୀ ଉପସ୍ଥାପନ ଅପେକ୍ଷା ସେଣ୍ଟ୍ ଅଗଷ୍ଟାଇନ୍‌ଙ୍କର 'Confession', ଆଲେକ୍‌ଜାଣ୍ଡାର ଡୁମାଙ୍କର 'My Memories' ପରି ବ୍ୟକ୍ତି-ଚରିତ୍ର ଓ ମନସ୍ତତ୍ତ୍ୱ ଉପରେ

ଆଧାରିତ ଆତ୍ମଜୀବନୀଗୁଡ଼ିକ ହିଁ ଅଧିକତର ଆଦୃତ ହୋଇଥାଏ, ପ୍ରାଚୀନ ଭାରତୀୟ ସାହିତ୍ୟର ବହୁ ସୁମହାନ୍ ସ୍ରଷ୍ଟାଙ୍କ ପରି ଓଡ଼ିଆ ସାହିତ୍ୟର ଆଦିକାଳରୁ ହିଁ ସାହିତ୍ୟିକମାନେ ନିଜ ନିଜର ସାହିତ୍ୟ-କୃତି ମଧ୍ୟରେ ସେମାନଙ୍କର ଜୀବନକଥା ଯତ୍‌କିଞ୍ଚିତ୍ ଉପସ୍ଥାପନ କରିଛନ୍ତି । ମାତ୍ର ସେଗୁଡ଼ିକ ପୂର୍ଣ୍ଣାଙ୍ଗ ଆତ୍ମଚରିତ ନୁହେଁ । ପୁଣି ନାନା ଅବାସ୍ତବ ଅଲୌକିକ ଘଟଣାର ବର୍ଣ୍ଣନା, ଇଷ୍ଟଦେବତାଙ୍କ ମହତ୍ତ୍ୱ ଓ ଅନୁକମ୍ପାର ଉଲ୍ଲେଖ-ବାସନା ଏଗୁଡ଼ିକୁ କଳ୍ପିତ କାହାଣୀର ପର୍ଯ୍ୟାୟରେ ଉପନୀତ କରାଇଛି । ଏହି ପରିପ୍ରେକ୍ଷୀରେ ପ୍ରାୟ ଏକ ଶତାବ୍ଦୀ ତଳେ ରଚିତ ଫକୀରମୋହନ ସେନାପତିଙ୍କ 'ଆତ୍ମଜୀବନ ଚରିତ' ହିଁ ଓଡ଼ିଆ ଆତ୍ମଜୀବନୀ-ସାହିତ୍ୟର ପ୍ରଥମ ସାର୍ଥକ ଦୃଷ୍ଟାନ୍ତ । ପରବର୍ତ୍ତୀ କାଳରେ ଗଙ୍ଗାଧର ମେହେରଙ୍କ 'ଆତ୍ମଜୀବନୀ', ଗୋଦାବରୀଶ ମିଶ୍ରଙ୍କ 'ଅର୍ଦ୍ଧଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ', ପଣ୍ଡିତ ନୀଳକଣ୍ଠ ଦାଶଙ୍କ 'ଆତ୍ମ ଜୀବନୀ', ବୈଷ୍ଣବ ପାଣିଙ୍କ 'ପାଣିକବିଙ୍କ ଆତ୍ମକାହାଣୀ', ଲକ୍ଷ୍ମୀନାରାୟଣ ସାହୁଙ୍କ 'ମୋ ବାରବୁଲା ଜୀବନ କଥା', ହରେକୃଷ୍ଣ ମହତାବଙ୍କ 'ସାଧନାର ପଥେ', ପବିତ୍ର ମୋହନ ପ୍ରଧାନଙ୍କ 'ମୁକ୍ତିପଥେ ସୈନିକ', ଚନ୍ଦ୍ରଶେଖର ମିଶ୍ରଙ୍କ 'ସତ୍ୟବାଦୀରେ ସାତବର୍ଷ', କାଳିଚରଣ ପଟ୍ଟନାୟକଙ୍କ 'କୁମ୍ଭାର ଚକ' ଇତ୍ୟାଦି ରଚିତ ଓ ପ୍ରକାଶିତ ହୋଇ ଓଡ଼ିଆ ଆତ୍ମଜୀବନୀ-ସାହିତ୍ୟର ଭଣ୍ଡାରକୁ ପରିପୁଷ୍ଟ କରିଛନ୍ତି । ଏହି କ୍ରମରେ ସ୍ୱର୍ଗତ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି'ର ମୂଲ୍ୟାଙ୍କନ କରାଯାଇ ପାରେ ।

'କାଳିନ୍ଦୀଚରଣ ପାଣିଗ୍ରାହୀ' ଓଡ଼ିଆ ସାହିତ୍ୟର ଇତିହାସ ପୃଷ୍ଠାରେ ଏକ ଭାସ୍ୱର ନାମ । ଏ ଭାଷା-ସାହିତ୍ୟର ନାନା ବିଭାଗକୁ ସମୃଦ୍ଧ କରିବା ପାଇଁ ସେ ଆଜୀବନ ନିରଳସ ସାଧନାରେ ନିୟୋଜିତ ଥିଲେ । ଓଡ଼ିଶାରେ ସାହିତ୍ୟ-ସେବା କରି ପରିବାର-ପୋଷଣ ତ ଦୂରର କଥା, ଆତ୍ମପୋଷଣ ମଧ୍ୟ କରି ହୁଏ ନାହିଁ । ତେଣୁ ସାହିତ୍ୟିକକୁ ଜୀବିକା ଅର୍ଜନ ପାଇଁ ଅନ୍ୟ ପନ୍ଥାର ଅନ୍ୱେଷଣ କରିବାକୁ ପଡ଼ିଥାଏ । ଉଦର-ପୋଷଣ ପାଇଁ ଅନ୍ନ-ସଂସ୍ଥାନର ବର୍ଦ୍ଧ-ବର୍ତ୍ତନ କରୁ କରୁ ସାହିତ୍ୟର ସାଧନାକୁ ଅବକାଶ-ଯାପନ ଓ ଆତ୍ମ-ତୁଷ୍ଟିର ସାଧନ ରୂପେ ଗ୍ରହଣ କରିଥାଏ ଓଡ଼ିଶାର ସାହିତ୍ୟିକ । ସ୍ୱର୍ଗତ ପାଣିଗ୍ରାହୀଙ୍କ ଜୀବନ ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

ଆତ୍ମଜୀବନୀ ରଚନା ତାରୁଣ୍ୟର ପ୍ରଗଲ୍‌ଭତା ନୁହେଁ, ଅର୍ବାଚୀନର ଆସ୍ଫାଳନ ନୁହେଁ; ଜୀବନର ଦୀର୍ଘ ପଥ ଅତିକ୍ରମ କରି ଅନୁଭୂତି ଓ ଅଭିଜ୍ଞତାରେ ପରିପକ୍ୱ ହୋଇ ସାରିଥିବା ପ୍ରବୃଦ୍ଧ ବ୍ୟକ୍ତିତ୍ୱର ଆତ୍ମକଥନ । ଆତ୍ମଜୀବନୀକାରଙ୍କ ଅଭୀପ୍ସା ଓ ଅନ୍ୱେଷଣ, ସାଧନା ଓ ସଫଳତା, ପ୍ରୟାସ ଓ ପ୍ରାପ୍ତି ସହିତ ବିଫଳତା ଓ ଅପ୍ରାପ୍ତିର ଇତିହାସ ମଧ୍ୟ ଏଥିରେ ଲିପିବଦ୍ଧ ହୋଇଥାଏ । ପ୍ରତ୍ୟେକ ମଣିଷର ଜୀବନ ଭଲ-ମନ୍ଦ, ସୁନ୍ଦର-କୁତ୍ସିତ, ଶୁଦ୍ଧ-ଅଶୁଦ୍ଧ, ଆଚାର-ଅନାଚାର ଆଦି ନାନା ବିପରୀତ ମୁଖୀ ଗୁଣ ଓ କ୍ରିୟାର ସମବାୟରେ ପୁଷ୍ଟଳ ହୋଇଥାଏ ।

ପୁଣି ଜୀବନର ଘଟଣାବହୁଳତା ଭିତରୁ ଯାହା ସତ୍ୟ ଓ ବାସ୍ତବ ହେଲେ ମଧ୍ୟ ଚମତ୍କାରିତା ଓ କୌତୁକପ୍ରଦତାରେ କାହାଣୀ ପରି ପ୍ରତୀତ ହୋଇଥାଏ, ସେସବୁର ବୈଚିତ୍ର୍ୟପୂର୍ଣ୍ଣ ବର୍ଣ୍ଣନା ହିଁ ଆତ୍ମକାହାଣୀକୁ ଆକର୍ଷଣୀୟ କରିଥାଏ ।

ଆତ୍ମଜୀବନୀ ବ୍ୟକ୍ତିବିଶେଷର ପ୍ରତ୍ୟକ୍ଷ-ଜୀବନାନୁଭବର ବାଙ୍ମୟ ପରିପ୍ରକାଶ । ତେଣୁ ସେହି ନିର୍ଦ୍ଦିଷ୍ଟ ମଣିଷଟିର ବାହ୍ୟ ତଥା ଅନ୍ତରର ସମସ୍ତ ଅଭିଜ୍ଞତା ଓ ଅନୁଭୂତିର ପ୍ରଖ୍ୟାପନ ଏଥିରେ ହୋଇଥାଏ । ତେଣୁ ଜୀବନୀ ଅପେକ୍ଷା ଆତ୍ମଜୀବନୀ ଅଧିକତର ପ୍ରତୀତୀଯୋଗ୍ୟ ବୋଲି ମତ ଦେଇ ଡକ୍ଟର ଜନ୍‌ସନ୍ କହିଛନ୍ତି – "The writer of his own life has at least the first qualification of an historian, the knowledge of the truth and thoughts it may be plausibly objected that his temptation to disguise it are equal to his opportunities of knowing it, yet I cannot but think that impartiality may be expected with equal confidence from him that relates the passages of his own life as from him that delivers the transactions of another." ସୁତରାଂ ସତ୍ୟ ପ୍ରତି ଏକନିଷ୍ଠ ରହି ନିଜର ବାହ୍ୟ ତଥା ଆନ୍ତଃ ଜୀବନକୁ ଭାଷାରେ ଉପସ୍ଥାପନ କରିବା ହିଁ ସଚ୍ଚୋଟ ଆତ୍ମଜୀବନୀକାରର ଲକ୍ଷଣ ।

କାଳିନ୍ଦୀଚରଣଙ୍କ ଜୀବନ ଘଟଣାବହୁଳ, ଅଭିଜ୍ଞତାର ବିପୁଳ ସମ୍ଭାରରେ ପରିପୂର୍ଣ୍ଣ ତାଙ୍କର ପସରା । ସେସବୁକୁ ସ୍ମୃତି-କୋଷରେ ଗଚ୍ଛିତ ରଖି ସୁସଜ୍ଜିତ ଭାବରେ ପାଠକମାନଙ୍କ ଆଗରେ ବାଢ଼ିଦେବା ଆଦୌ ସହଜ ବ୍ୟାପାରଟିଏ ନୁହେଁ । ତେବେ ସାହିତ୍ୟିକର ବିଶାଳ ହୃଦୟ ଏହା ଅବଲୀଳାକ୍ରମେ ସମ୍ପାଦନ କରି ପାରିଛି । ନିଜ ଜୀବନର କଥା କହିଲାବେଳେ ପରିବାରର ସଦସ୍ୟମାନଙ୍କ ବିଷୟରେ କହିବା ତ ସ୍ୱାଭାବିକ । କିନ୍ତୁ ସେ ଜୀବନ ସମକାଳୀନ ରାଜନୀତିକ ତଥା ସାହିତ୍ୟିକ ପରିବେଶ ସହିତ ଏପରି ଅଙ୍ଗାଙ୍ଗୀ ଭାବେ ଜଡ଼ିତ ଯେ, ତାଙ୍କ ଆତ୍ମ-ଇତିହାସ ଭିତରକୁ ସମକାଳୀନ ଓଡ଼ିଶାର ତଥା ଭାରତର ସାହିତ୍ୟିକ, ସାଂସ୍କୃତିକ, ରାଜନୀତିକ ଇତିହାସ ଧସେଇ ପଶି ଆସିଛି; ପୁଣି ଗାଁଠାରୁ ସହର ଯାଏ, ଓଡ଼ିଆ ସମାଜର ପ୍ରତ୍ୟକ୍ଷ ଚିତ୍ର ମଧ୍ୟ ଫୁଟି ଉଠିଛି । ଡକ୍ଟର ନଟବର ସାମନ୍ତରାୟଙ୍କ ମତରେ – ''ଜୀବନୀ ରଚନା ଓ ଆତ୍ମ-ଜୀବନ ବିଶ୍ଳେଷଣ ବ୍ୟକ୍ତିବିଶେଷକୁ କେନ୍ଦ୍ର କରି ଗଢ଼ି ଉଠିଥିଲେ ହେଁ ସମସାମୟିକ ସମାଜର ଜୀବନ୍ତ ଉପାଦାନ ସେଇ ଜୀବନୀକୁ ଏପରି ଏକ ସ୍ୱତନ୍ତ୍ର ରୂପବିଭବ ପ୍ରଦାନ କରେ ଯେ କୁଶଳୀ କଳାକାରର ପରିବେଷଣ ଚାତୁର୍ଯ୍ୟରେ ତାହା ଏକ ମୌଳିକ ବିଭବରେ ପରିଣତ ହୋଇଯାଏ । ଫଳରେ ବ୍ୟକ୍ତିର ଜୀବନ ବୃହତ୍ତର ସମାଜ ଜୀବନ ଭିତରେ ହୁଏ ସ୍ୱତଃ ବିକଶିତ; ସ୍ରଷ୍ଟାର ସଫଳ ରୂପାୟନ ଓ ବଳିଷ୍ଠ ଉପସ୍ଥାପନା ବଳରେ ତାହା ହୁଏ ଏକ ସାର୍ଥକ ସୃଷ୍ଟି ।'' କାଳିନ୍ଦୀଚରଣ ନିଜର ଅଙ୍ଗେ ନିଭା କଥାଗୁଡ଼ିକ ଏପରି ଶିଳ୍ପ ନୈପୁଣ୍ୟ

ଓ ରଚନାଚାତୁର୍ଯ୍ୟ ସହକାରେ ଉପସ୍ଥାପନ କରିଛନ୍ତି ଯେ, ବ୍ୟକ୍ତି-ଜୀବନ ଜାତିର ଜୀବନରେ ପରିଣତ ହୋଇ ସାର୍ବଜନୀନ ହୋଇ ପଡ଼ିଛି ।

ପ୍ରଥମେ 'କଳନା' ପତ୍ରିକାର ସମ୍ପାଦକଙ୍କ ଅନୁରୋଧରେ ସେ ନିଜ ଜୀବନର କଥା ଲେଖିବାକୁ ଆରମ୍ଭ କରିଥିଲେ ଓ ତାହା ୧୯୬୫ ପୂଜାସଂଖ୍ୟାଠାରୁ ସେହି ପତ୍ରିକାରେ ଧାରାବାହିକ ଭାବରେ ପ୍ରକାଶିତ ହୋଇ ପାଠକମାନଙ୍କର ଦୃଷ୍ଟି ଆକର୍ଷଣ କରିଥିଲା । ପରେ ଏହା କଟକ ଷ୍ଟୁଡେ଼ଣ୍ଟସ୍ ଷ୍ଟୋରଦ୍ୱାରା ପୁସ୍ତକ ଆକାରରେ ପ୍ରକାଶ ପାଇଛି । ତେବେ ପତ୍ରିକାରେ ଧାରାବାହିକତା ରକ୍ଷା କରିବା ପାଇଁ ବିଭିନ୍ନ ଶିରୋନାମାରେ ପ୍ରକାଶିତ ପରିଚ୍ଛେଦଗୁଡ଼ିକରେ ଅନେକ ସ୍ଥଳରେ ଘଟଣା ବା ବିଷୟର ପୁନରାବୃତ୍ତି ହୋଇଥିବାର ଲକ୍ଷ୍ୟ କରାଯାଏ । 'ଜନ୍ମରୁ ବଞ୍ଚିଥିବା ପର୍ଯ୍ୟନ୍ତ ସବୁକଥା ଠିକେ ଠିକେ ମନେପଡ଼ିବା କାଠିକର ପାଠ' ହୋଇଥିବାରୁ, 'ଆଗକଥା ପଛକୁ ଓ ଅବିକଳ ତା'ର ଓଲଟା ଅବସ୍ଥାଟି ଘଟିବାର ବିପଦ ମଧ୍ୟ ପଦେ ପଦେ' ଥିବାରୁ ଏପରି ହୋଇ ପାରିଥାଏ ।

ଆତ୍ମଜୀବନୀ ରଚନା ସମ୍ପର୍କରେ ନିଜର କୈଫିୟତ ଦେଇ ସାରିବା ପରେ ଲେଖକ ନିଜ ଜନ୍ମସ୍ଥାନ ବିଶ୍ୱନାଥପୁର ଗାଁର ବର୍ଣ୍ଣନା ଦେବା ସଙ୍ଗେ ସଙ୍ଗେ ନିଜର ବଂଶଲତା, ପିତା-ମାତା, ଜନ୍ମ-ଜାତକ, ଶୈଶବର ନାନା ଘଟଣା-ଦୁର୍ଘଟଣା ଇତ୍ୟାଦିର ବର୍ଣ୍ଣନା କରିଛନ୍ତି । ସେଇ ବର୍ଣ୍ଣନା ଭିତରେ ପରିବାରର ବିଭିନ୍ନ ସଦସ୍ୟଙ୍କ ସହିତ ଗ୍ରାମର ବିଭିନ୍ନ ବ୍ୟକ୍ତି - ଦରିଦ୍ର ହରିଜନ ଗୋଷ୍ଠୀଠାରୁ ଆରମ୍ଭ କରି ଗାଁର ଅବିଚାରୀ, ଅତ୍ୟାଚାରୀ, ମକଦ୍ଦମଶ୍ରେଣୀ, ଗାଁ ଚାଟଶାଳୀର ଶିକ୍ଷକ, ଭାଙ୍ଗ ପାଚକପାଣି ସେବନକାରୀ ବ୍ରାହ୍ମଣଗୋଷ୍ଠୀ ପର୍ଯ୍ୟନ୍ତ ସମସ୍ତଙ୍କ ନିଖୁଣ ଚରିତ୍ର-ଚିତ୍ରଣ କରିଛନ୍ତି । ଅନେକ ବାସ୍ତବ ଘଟଣାକୁ ଅତୀତର ଗହ୍ୱର ଭିତରୁ ଟାଣି ଆଣି ପାଠକମାନଙ୍କ ଆଗରେ ଠିଆ କରାଇ ଦେଇଛନ୍ତି । ଗାଁର ରଜ, ଦୋଳମେଳନ, ସୁନିଆ, ଧାନବୁଣା, ସାହିତ୍ୟ-ସଙ୍ଗୀତ, ନାଟ-ସୁଆଙ୍ଗ, ଟିକା ଦିଆ ଆଦି ଟିକିନିଖି ବିଷୟର ଉପସ୍ଥାପନା ଭିତରେ ପ୍ରାୟ ଅର୍ଦ୍ଧଶତାବ୍ଦୀରୁ ଉର୍ଦ୍ଧ୍ୱ ସମୟ ପୂର୍ବର ଓଡ଼ିଆ ପଲ୍ଲୀ ଜୀବନର ସାମାଜିକ-ସାଂସ୍କୃତିକ ବାତାବରଣର ନିଖୁର ଚିତ୍ର ତୋଳି ଧରିଛନ୍ତି । ବାଲ୍ୟ କୈଶୋରର କ୍ରୀଡ଼ା ଚପଳତାର ବର୍ଣ୍ଣନା ଭିତରେ ସେହି ଅପରିପକ୍ୱ ବୟସର ନାନା ଅଭିଜ୍ଞତା ଓ ନାନା ଶ୍ରେଣୀର ଚରିତ୍ର ସମ୍ପର୍କରେ ସୂକ୍ଷ୍ମ ଅବଧାରଣା ତାଙ୍କ ଆତ୍ମଜୀବନୀରେ ସ୍ଥାନ ପାଇ କେବଳ ଯେ ପାଠକମାନଙ୍କୁ ଆମୋଦିତ କରିଛି, ତାହା ନୁହେଁ; ତାଙ୍କ ସାହିତ୍ୟ-ସୃଷ୍ଟିରେ ମଧ୍ୟ ଜୀବନ୍ତ ଚରିତ୍ର ଓ ପରିବେଶ ସୃଷ୍ଟିର ହେତୁ ହୋଇଛି । ଏପରିକି ଗାଁ ଛାଡ଼ି ପୁରୀ ଯିବା ସମୟର ଅନୁଭୂତି ଚିତ୍ରଣ ମଧ୍ୟରେ ସେ ତତ୍‌କାଳୀନ ପରିବହନ ବ୍ୟବସ୍ଥାର ସ୍ପଷ୍ଟ ଚିତ୍ରଟିଏ ଆଙ୍କି ଦେଇଛନ୍ତି ।

ପୁରୀ ଜିଲ୍ଲା ସ୍କୁଲରେ ଅଧ୍ୟୟନ ସମୟରେ ହିଁ ଧୀରେ ଧୀରେ ତାଙ୍କର ଅନ୍ତର୍ନିହିତ ପ୍ରତିଭାର ଅନାବରଣ ଓ ବିକାଶ ଘଟିଥିବା ତାଙ୍କ ଆତ୍ମଜୀବନୀରେ ସୂଚିତ । ଗାଁର ପ୍ରାଥମିକ

ବିଦ୍ୟାଳୟର ଶିକ୍ଷକ ଆନନ୍ଦ ଚନ୍ଦ୍ର ମିଶ୍ରଙ୍କଠାରୁ ପାଇଥିବା କବିତା ଲେଖିବାର ପ୍ରଥମ ପ୍ରେରଣା, ପୁରୀରେ ଶିକ୍ଷକମାନଙ୍କର ପ୍ରଭାବ ଓ ସହାଧ୍ୟାୟୀ ବନ୍ଧୁମାନଙ୍କ ସାହଚର୍ଯ୍ୟ ହେତୁ କବିତା, ଗଳ୍ପ, ପ୍ରବନ୍ଧ, ରମ୍ୟରଚନା ଆଦି ଲେଖି ସେ ଅନ୍ୟମାନଙ୍କର ଦୃଷ୍ଟି ଆକର୍ଷଣ କରିବାକୁ ସମର୍ଥ ହୋଇଥିଲେ ମଧ୍ୟ ଲେଖାଗୁଡ଼ିକ କୌଣସି ପତ୍ରିକାରେ ପ୍ରକାଶ କରିବାକୁ ମନୋନୀତ ହେଉ ନଥିବାରୁ ଗଭୀର ଅବଶୋଷର ବଶବର୍ତ୍ତୀ ହୋଇଥିଲେ । କିନ୍ତୁ ଏଥିରେ ହତୋତ୍ସାହ ନ ହୋଇ ସେ ଯେଉଁ ପ୍ରଶଂସନୀୟ ଉଦ୍ୟମ କରିଥିଲେ, ତାହା ପ୍ରତ୍ୟେକ ତରୁଣର ଆଦର୍ଶ ହେବା ଉଚିତ । ନିରୁତ୍ସାହିତ ହେବା ପରିବର୍ତ୍ତେ ଆଗ୍ରହକୁ ଦୃଢ଼ସଙ୍କଳ୍ପରେ ପରିଣତ କରି ତାଙ୍କଦ୍ୱାରା ସମ୍ପାଦିତ 'ଛାତ୍ରଦର୍ପଣ' (ପ୍ରଥମେ ହାତଲେଖା ଓ ପରେ ମୁଦ୍ରିତ) ପତ୍ରିକା ଓ ସେଥିରେ ପ୍ରକାଶିତ ତାଙ୍କର ରଚନା ପଣ୍ଡିତ ନୀଳକଣ୍ଠଙ୍କ ପରି ମନୀଷୀଙ୍କଦ୍ୱାରା ମଧ୍ୟ ପ୍ରଶଂସିତ ହୋଇଥିଲା । ସେହି ସମୟରେ ପଣ୍ଡିତ ଗୋପବନ୍ଧୁ, ପଣ୍ଡିତ ନୀଳକଣ୍ଠ ପ୍ରମୁଖଙ୍କ ସାନ୍ନିଧ୍ୟ, ମହାତ୍ମାଗାନ୍ଧୀ, ସର୍ଦ୍ଦାର ପଟେଲ, ଲାଲା ଲଜପତ ରାୟ, ବିପିନ୍ ଚନ୍ଦ୍ର ପାଲ୍ ପ୍ରମୁଖ ଜାତୀୟ ନେତାଙ୍କ ଦର୍ଶନ ଓ ଉଦ୍‌ବୋଧନ-ଶ୍ରବଣ ତାଙ୍କ ଚିନ୍ତା-ଚେତନାକୁ ମାର୍ଜିତ ମାର୍ଗ ଅନ୍ୱେଷଣରେ ପ୍ରୟାସୀ କରାଇଥିଲା । ଏ ସମସ୍ତ ପ୍ରସଙ୍ଗର ବର୍ଣ୍ଣନା ଅବକାଶରେ ସେ ଉତ୍କଳମଣି ଗୋପବନ୍ଧୁଙ୍କ ଚରିତ୍ରର ବୈଶିଷ୍ଟ୍ୟ ଓଡ଼ିଆ ଜନତା ପାଇଁ ତାଙ୍କ ପ୍ରାଣର ସୁକୋମଳ ସମ୍ବେଦନଶୀଳତାକୁ ସୁସ୍ପଷ୍ଟ କରି ଦେଇଛନ୍ତି ।

ସେତେବେଳେ ଗାନ୍ଧିଜୀଙ୍କ ସ୍ୱରାଜ୍ୟ-ସଂଗ୍ରାମ ଆହ୍ୱାନରେ ଆକୁମାରୀ ହିମାଚଳ ଥରହର, ଘରେ ବାପା-ଭାଇ ସ୍ୱଦେଶୀ-ଆଦର୍ଶରେ ଅନୁପ୍ରାଣିତ, ବିଶେଷତଃ ଜ୍ୟେଷ୍ଠ ଦିବ୍ୟସିଂହ ଘର ଭିତରେ ରାଜନୀତି ଓ ସାହିତ୍ୟର ଯଥାର୍ଥ ଆଦର୍ଶର ବୀଜ ବୁଣିଥିଲେ; ମାତ୍ର ଅନୁଜ କାଳିନ୍ଦୀଙ୍କୁ ରାଜନୀତି କିମ୍ବା ସାହିତ୍ୟଚର୍ଚ୍ଚା ଅପେକ୍ଷା ପାଠପଢ଼ାରେ ମନୋନିବେଶ କରିବାକୁ ପ୍ରବର୍ତ୍ତାଉଥିଲେ । ରବୀନ୍ଦ୍ରନାଥଙ୍କ ସମେତ କେତେକ ନେତା ପୋଷଣ କରୁଥିବା ଛାତ୍ରମାନେ ପ୍ରଥମେ ନିଜ କର୍ତ୍ତବ୍ୟ ତୁଲାଇ ପରେ ଦେଶ-ସେବାରେ ମନ ଦେବା ବିଷୟକ ମତକୁ ପଣ୍ଡିତ ଗୋପବନ୍ଧୁ ମଧ୍ୟ ଦୃଢ଼ ଭାବରେ ଛାତ୍ରମାନଙ୍କ ସମ୍ମୁଖରେ ଉପସ୍ଥାପନ କରିଥିବାର କାଳିନ୍ଦୀଚରଣ ଉଲ୍ଲେଖ କରିଛନ୍ତି । ତେଣୁ ସେ ସମୟର ଅନେକ ଛାତ୍ର ସ୍କୁଲ-କଲେଜ ଛାଡ଼ି ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇଥିଲେ ମଧ୍ୟ ସେ ନିଜ ଭବିଷ୍ୟତ ଜୀବନର ସ୍ୱଚ୍ଛଳ କର୍ମସଂସ୍ଥାନ-ବ୍ୟବସ୍ଥାକୁ ଦୃଷ୍ଟିରେ ରଖି ନିଜର ଛାତ୍ରତ୍ୱ ଅବ୍ୟାହତ ରଖିଥିବା ସ୍ୱୀକାର କରିଛନ୍ତି । ସେଥି ସଙ୍ଗେ ସଙ୍ଗେ ଛାତ୍ର ଜୀବନର ପ୍ରାରମ୍ଭରେ ମେଧାବୀତ୍ୱର ପରିଚୟ ଦେଇଥିଲେ ମଧ୍ୟ ପରବର୍ତ୍ତୀ କାଳରେ ଉଚ୍ଚଶିକ୍ଷା କ୍ଷେତ୍ରରେ କୃତିତ୍ୱ ଦେଖାଇ ନ ପାରିଥିବାର ମଧ୍ୟ ଉଲ୍ଲେଖ କରିଛନ୍ତି ।

ତେବେ ସେହି ସମୟର ଐତିହାସିକ ଗୁରୁତ୍ୱକୁ ଲେଖକ ମୁକ୍ତହସ୍ତରେ ଘୋଷଣା କରିଛନ୍ତି – ''ସେ ଥିଲା ଏକ ନବଜାଗରଣର ଯୁଗାରମ୍ଭ ।'' ସେତେବେଳକୁ ପୃଥିବୀବ୍ୟାପୀ

ସାମ୍ରାଜ୍ୟବାଦକୁ ନିର୍ମୂଳ, ନିଶ୍ଚିହ୍ନ କରିଦେବା ପାଇଁ ପ୍ରବଳ ଝଡ଼ ଉଠିଥାଏ । ଏଣେ ଆକୁମାରୀ ହିମାଚଳ ଭାରତବର୍ଷରେ ଏକ ମନ, ଏକ ପ୍ରାଣ ହୋଇ ସ୍ୱରାଜ୍ୟ ପାଇଁ ଲଢ଼ିବାର ଉତ୍ସାହ । କାଳିନ୍ଦୀଙ୍କ ଅନ୍ତଃସତ୍ତାରେ ସେ ସମୟରେ ସମାଜବାଦ ପ୍ରତି ଯେପରି ଝୁଙ୍କ ଥିଲା, ସ୍ୱରାଜ୍ୟ-ସଂଗ୍ରାମରେ ଯୋଗ ଦେବାପାଇଁ ମଧ୍ୟ ସେହିପରି ଆଗ୍ରହ ଥିଲା । ସଂସାର ଦାୟିତ୍ୱ ଓ ଭବିଷ୍ୟତ ଜୀବନକୁ ଜଳାଞ୍ଜଳି ଦେବା ପାଇଁ ଯଥେଷ୍ଟ ସାହସର ଅଭାବ ହେତୁ ପ୍ରତ୍ୟକ୍ଷ ରାଜନୀତିରେ ଭାଗ ନେଇ ନ ପାରି ସେ ନିଜକୁ ସାହିତ୍ୟ-ସାଗରରେ ବୁଡ଼ାଇ ରଖିଥିଲେ – ''ମାତ୍ର ସେତେବେଳେ ମୋର ଚିନ୍ତା ଓ ଆଦର୍ଶକୁ ଖୋରାକ ଯୋଗାଏ କାଳିଦାସ ଓ ରବୀନ୍ଦ୍ର ସାହିତ୍ୟ, ସେକ୍‌ସପିୟର ଓ ମିଲ୍‌ଟନ୍‌ଙ୍କ ସଙ୍ଗେ ହ୍ୟୁଗୋ, ଗ୍ୟେଟେ ଆଦି ଆନ୍ତର୍ଜାତିକ ସାହିତ୍ୟ । ଜୀବନର ବିପୁଳ ରାଜନୀତିକ ଫାଙ୍କଟା ପୂରଣ ହୁଏ ଅବା ମୋର କେବଳ ସାହିତ୍ୟ ସାହାଯ୍ୟରେ ।''

ସ୍କୁଲ-ଶିକ୍ଷା ସମାପ୍ତି ପରେ କାଳିନ୍ଦୀଚରଣ ରେଭେନ୍‌ସା କଲେଜରେ ପଢ଼ିବା ପାଇଁ କଟକ ଆସନ୍ତି । ଗାଁର ଅତି ସଂକୀର୍ଣ୍ଣ ପରିବେଶ ତୁଳନାରେ ତାଙ୍କୁ ପୁରୀ ଯେମିତି ପ୍ରଶସ୍ତତର ମନେ ହୋଇଥିଲା, ପୁରୀ ତୁଳନାରେ କଟକ ବୋଧହେଲା ସେହିପରି ଓଡ଼ିଆ ପ୍ରାଣଶକ୍ତିର କର୍ମକେନ୍ଦ୍ର ରୂପେ । ପୁରୀର ଖାଲି ଠାକୁରଙ୍କ ରାଣ ଦେଇ ମାଗି ଖାଉଥିବା ମଣିଷଙ୍କ ଅପେକ୍ଷା କଟକର ଗଳିକନ୍ଦିର ଲାଗିଖିଆ ମଣିଷମାନେ ତାଙ୍କୁ ବେଶି ଭଲ ଲାଗିଥିଲେ ।

ସେହି ସମୟରେ 'କନିକା ଲାଇବ୍ରେରୀ'ର ଜାତୀୟ ତଥା ଅନ୍ତର୍ଜାତୀୟ ପ୍ରାଚୀନ ତଥା ଆଧୁନିକ ଶ୍ରେଷ୍ଠ ସାହିତ୍ୟ ପୁସ୍ତକମାନ ଆଣି ପଢ଼ିବା, ଦେଶ-ବିଦେଶର ମୃତ ଓ ଜୀବିତ ରାଜନୈତିକ ନେତା ତଥା ସାହିତ୍ୟିକମାନଙ୍କର ଜୀବନୀ ଓ ସାହିତ୍ୟ ସମ୍ପର୍କରେ ଆଲୋଚନା କରିବା ହିଁ ତାଙ୍କର ଶ୍ରେଷ୍ଠ ବିଳାସ ଥିଲା । 'ଉତ୍କଳ ସାହିତ୍ୟ ସମାଜ' ପକ୍ଷରୁ ଆୟୋଜିତ ପ୍ରତିଯୋଗିତାରେ 'ମଥୁରାମଙ୍ଗଳ'ର ସମାଲୋଚନା ଲେଖି ପୁରସ୍କୃତ ହେବା ପରେ ଅଧ୍ୟାପକ ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସପ୍ରଶଂସ ଉତ୍ସାହବାଣୀ ତାଙ୍କୁ ଅନୁପ୍ରେରିତ କରିଥିଲା ।

ସ୍କୁଲ-ଶିକ୍ଷା ସମୟରୁ ହିଁ 'ଉତ୍କଳ ସାହିତ୍ୟ'କୁ ବାରମ୍ବାର ଲେଖା ପଠାଇ ବିଫଳ-ମନୋରଥ ହେବା ପରେ ବାଳବିଧବା ପ୍ରତି ସାମାଜିକ ଅନ୍ୟାୟ, ତା'ର ବିବାହ ଓ ନବଦମ୍ପତିଙ୍କ ବ୍ରାହ୍ମଧର୍ମଗ୍ରହଣ ବିଷୟକୁ ଆଧାର କରି ରଚିତ ତାଙ୍କର ଗୋଟିଏ ଗଳ୍ପ ସେଥିରେ ପ୍ରକାଶ ପାଇଥିଲା । ସେ ସ୍ୱୀକାର କରିଛନ୍ତି – ''ଉତ୍କଳ ସାହିତ୍ୟ'ର ସମ୍ପାଦକ ଓ ପ୍ରସିଦ୍ଧ ସମାଜ-ସଂସ୍କାରକ ସୁପଣ୍ଡିତ ଶ୍ରୀ ବିଶ୍ୱନାଥ କର ମହାଶୟଙ୍କୁ ଏହା ସୁଖ ଲାଗିବ ବୋଲି ମୁଁ କୌଶଳ କ୍ରମେ ଗଳ୍ପଟିର ବିଷୟବସ୍ତୁ ବାଛିଥାଏଁ । କଲେଜ ପଢ଼ା ସମୟରେ ମଧ୍ୟ ଅନେକ ଲେଖା ପଠାଇ ହତାଶ ହେବା ପରେ ସେ କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ-ପ୍ରତିଭା ସମ୍ପର୍କରେ ତୁଳନାତ୍ମକ ନିବନ୍ଧ ଲେଖି ସମ୍ପାଦକ କର ମହୋଦୟଙ୍କ ଦୃଷ୍ଟି

ଆକର୍ଷଣ କରି ପାରିଥିଲେ । ସେ ଓ କେତେକ ସମଧର୍ମୀ ଉତ୍ସାହୀ ବନ୍ଧୁ ମିଶି ରାଜନୀତି ଓ ସାହିତ୍ୟ ଆଲୋଚନା ପାଇଁ 'ନନ୍‌ସେନ୍‌ସ୍ କ୍ଲବ୍' ନାମକ ଅନୁଷ୍ଠାନଟିଏ ଗଢ଼ି 'ନନ୍‌ସେନ୍‌ସ୍ କ୍ଲବ୍ ମ୍ୟାଗାଜିନ୍' ନାମକ ମୁଖପତ୍ର ମଧ୍ୟ ପ୍ରକାଶ କରୁଥିଲେ । ବନ୍ଧୁ ହରିହର ମହାପାତ୍ର ଏହାର ଓଡ଼ିଆ ନାମକରଣ 'ଅବକାଶ' କରିଥିଲେ । ମାତ୍ର ଅନ୍ନଦା, ବୈକୁଣ୍ଠ, କାଳିନ୍ଦୀ ଓ ଶରତ ଚାରିସଖାଙ୍କ ନାମର ପ୍ରଥମ ଅକ୍ଷର ଏଥିରେ ଥାଇ ପଞ୍ଚମ ସଖା ହରିହରଙ୍କ ନାମର ସଂକେତ ନଥିବାରୁ ଇଂରାଜୀ, ବଙ୍ଗଳା ଓ ଓଡ଼ିଆ ତିନିଟି ଭାଷାରେ ହାତରେ ଲେଖା ଯାଉଥିବା ଏହି ପତ୍ରିକାର ନାମ ପୁଣି ବଦଳାଇ 'ଶକ୍ତି ସାଧନା' ରଖା ଯାଇଥିଲା । ତେବେ ପ୍ରଥମରୁ ସବୁ ଛାଡ଼ି ସାହିତ୍ୟ ପାଇଁ ନିଜକୁ ନିୟୋଜିତ କରିବାକୁ ମନସ୍ଥ କରିଥିବା କାଳିନ୍ଦୀଙ୍କୁ ବନ୍ଧୁମାନଙ୍କ ମଧ୍ୟରୁ ସର୍ବପ୍ରଥମେ ସରସ୍ୱତୀଙ୍କ ସହିତ ଲକ୍ଷ୍ମୀଙ୍କର ଆରାଧନା କରିବାକୁ ପଡ଼ିଥିଲା ସମବାୟ ବିଭାଗର ମ୍ୟାନେଜର ରୂପେ କାର୍ଯ୍ୟରେ ଯୋଗଦେଇ ।

ବିହାରର ସାବୁର୍‌ଠାରେ ତାଲିମ୍ ନେବା ପରେ କୁଜଙ୍ଗ, ପୁରୀ ଓ କଟକରେ କାର୍ଯ୍ୟ କରିବା ସମୟରେ ସେ 'ଚକ୍ରବାକ', 'ମଧୁ ବିବାହ' ଆଦି କବିତା, ସାବୁର୍ ତାଲିମ କେନ୍ଦ୍ର ଭୋଜିରେ ମାଂସ ପାଇଁ କଟାଯାଇଥିବା ଛେଳିର ଆକୁଳ ସ୍ମୃତି ଉପରେ ଆଧାରିତ ଗଳ୍ପ 'ମାଂସର ବିଳାପ' ସହିତ ସମବାୟ-ସମିତିର ନୀତି ଓ ଆଦର୍ଶ ସମ୍ବନ୍ଧରେ କେତେକ ପ୍ରବନ୍ଧ ଲେଖିଥିଲେ । ବାଳକୃଷ୍ଣ କରଙ୍କ ଆହ୍ୱାନ କ୍ରମେ ଏକ ବାସ୍ତବ କଥା ଆଧାରିତ ଉପନ୍ୟାସ 'ମାଟିର ମଣିଷ' ଓ ଗୀତିନାଟ୍ୟ 'ସୌମ୍ୟା' ରଚନା କରି ବହୁ ପ୍ରଶଂସିତ ମଧ୍ୟ ହୋଇଥିଲେ । ଏହି ସମୟରେ 'ସବୁଜ ସାହିତ୍ୟ ସମିତି'ର ପ୍ରତିଷ୍ଠା ଓ 'ଯୁଗବୀଣା' ମାସିକ ପତ୍ରିକାର ପ୍ରକାଶ ଓଡ଼ିଆ ସାହିତ୍ୟରେ ସ୍ମରଣୀୟ ଆଲୋଡ଼ନ ସୃଷ୍ଟି କରିଥିଲା । ସମିତି ଆନୁକୂଲ୍ୟରେ ସବୁଜ-ପଞ୍ଚସଖାଙ୍କ କବିତା ସଂକଳନ 'ସବୁଜ କବିତା', ପୂର୍ବରୁ ନଅଜଣ ଲେଖକଙ୍କ ସମବାୟ ରଚନାରେ 'ଉତ୍କଳ ସାହିତ୍ୟ'ରେ ଧାରାବାହିକ ଭାବେ ପ୍ରକାଶିତ 'ବାସନ୍ତୀ' ଉପନ୍ୟାସ ସମେତ ଅନେକ ସାହିତ୍ୟିକଙ୍କର ରଚନା ପ୍ରକାଶ ସଙ୍ଗେ ସଙ୍ଗେ ନବ ନବ ସାହିତ୍ୟ-ସମ୍ଭାରରେ ମଣ୍ଡିତ 'ଯୁଗବୀଣା'ର ଦ୍ରୁତ ପ୍ରସାର ଓ ଲୋକପ୍ରିୟତା କେତେକ ପ୍ରବୀଣ ସ୍ଥାନୀୟ ଲେଖକଙ୍କର ଦୃଷ୍ଟିକଟୁ ହେବାରୁ କର୍ତ୍ତୃପକ୍ଷଙ୍କ ନିକଟରେ ଏହାକୁ ପ୍ରଚ୍ଛନ୍ନ ଟାଣୁଆ ଗାନ୍ଧିବାଦୀ ମେଣ୍ଟ ବୋଲି ଅଭିଯୋଗ ଅଣାଯାଇଥିଲା । ଏହି ହେତୁ ସମବାୟ ବିଭାଗର ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର୍ ଶରତଚନ୍ଦ୍ରଙ୍କୁ ସ୍ଥାନାନ୍ତରିତ ଓ କାଳିନ୍ଦୀଙ୍କୁ କାର୍ଯ୍ୟଚ୍ୟୁତ କରାଯାଇଥିବା ସେ ପ୍ରକାଶ କରିଛନ୍ତି ।

କାର୍ଯ୍ୟଚ୍ୟୁତିର ଅବସାଦ ମଧ୍ୟରେ ୧୯୩୨ରେ ଦକ୍ଷିଣ ଓଡ଼ିଶାର ଇଚ୍ଛାପୁରଠାରେ ଅନୁଷ୍ଠିତ 'ନିଖିଳ ଉତ୍କଳ କବି-ସମ୍ମିଳନୀ'କୁ ପ୍ରଧାନ ଅତିଥି ରୂପେ ନିମନ୍ତ୍ରିତ ହୋଇ ସେ ଆନନ୍ଦ ପାଇଥିଲେ । ପରେ ପରେ ମୟୁରଭଞ୍ଜ ରାଜସରକାରଙ୍କ ଆନୁକୂଲ୍ୟରେ ପ୍ରକାଶିତ 'ମୟୂରଭଞ୍ଜ ଗେଜେଟ୍'ର ସମ୍ପାଦନା କାର୍ଯ୍ୟରେ ନିଯୁକ୍ତ ହୋଇଥିଲେ । ମହାରାଜାଙ୍କ ଜ୍ୟେଷ୍ଠପୁତ୍ରଙ୍କ ନାମାନୁସାରେ ଏହାର 'ଭଞ୍ଜପ୍ରଦୀପ' ଓଡ଼ିଆ ନାମକରଣ କରି ଏକକାଳୀନ

ଉଭୟର ସମ୍ପାଦନା କରିବା ସଙ୍ଗେ ସଙ୍ଗେ କଲିକତାର 'ଷ୍ଟେଟ୍‌ସ୍‌ମ୍ୟାନ୍' ଓ 'ଆସୋସିଏଟେଡ଼ ପ୍ରେସ୍ ଅଫ୍ ଇଣ୍ଡିଆ' ଉଭୟ ସଂସ୍ଥା ପାଇଁ ସାମ୍ବାଦିକତା ମଧ୍ୟ କରୁଥିଲେ । ସାମ୍ବାଦିକତାର ପରମ୍ପରା ସମ୍ପର୍କରେ କାଳିନ୍ଦୀଙ୍କର ମତ ପ୍ରଣିଧାନଯୋଗ୍ୟ—

''ପୃଥିବୀପୃଷ୍ଠରେ ସାମ୍ବାଦିକତାର ଉତ୍ପତ୍ତିର ଇତିହାସ ଜନ୍ମ ଲାଭ କରେ ବ୍ୟବସାୟୀମାନଙ୍କ ଜିନିଷପତ୍ର ବିକ୍ରି କରିବା ପାଇଁ ବିଜ୍ଞାପନରୁ । ଏହି ବ୍ୟବସାୟର ପ୍ରସାର ଦ୍ୱାରା ହିଁ ପାଶ୍ଚାତ୍ୟ ଦେଶମାନଙ୍କର ସାମ୍ରାଜ୍ୟବାଦ ଓ ପୁଞ୍ଜିବାଦର ପ୍ରସାର– ଆଉ ସେହି ବ୍ୟବସାୟରେ ଲାଭର ଲୋଭ ହିଁ ପାଶ୍ଚାତ୍ୟ ଜାତିମାନଙ୍କର ପ୍ରାଚ୍ୟ ଦେଶଗୁଡ଼ିକ ଉପରେ ପ୍ରଭାବ ବିସ୍ତାର । ସେଇ ବ୍ୟବସାୟ ସୂତ୍ରରେ ହିଁ ଆଧୁନିକ ପ୍ରଣାଳୀର ଦେଶଜୟ ପ୍ରଚ୍ଛନ୍ନ ଭାବରେ ପରରାଷ୍ଟ୍ର ଲୁଣ୍ଠନରେ ପରିଣତ ହୋଇ ଆମେରିକାର ଡଲାର୍-ସାମ୍ରାଜ୍ୟର ଆଧିପତ୍ୟ ବିସ୍ତାର ଆଲୋଚନାର ବିଷୟୀଭୂତ ହୁଏ । ଆମର କ୍ଷୁଦ୍ରାତିକ୍ଷୁଦ୍ର ଓଡ଼ିଶା ରାଜନୀତି ସୁଦ୍ଧା କେନ୍ଦୁପତ୍ର ବ୍ୟବସାୟ ଦ୍ୱାରା କେତେ ପରିମାଣରେ ନିୟନ୍ତ୍ରିତ ବୋଲି କୁହାଯାଏ ।'' କିନ୍ତୁ ବିଶ୍ୱର ରାଜାନୀତି, ଅର୍ଥନୀତି ବା ସାମ୍ବାଦିକତାର ଜ୍ଞାନ ନୁହେଁ, ସାହିତ୍ୟ ହିଁ ଥିଲା ତାଙ୍କର ସର୍ବାଧିକ ପ୍ରେୟ ଓ ଧେୟ । ତେଣୁ ତାଙ୍କ ପାଇଁ କେବଳ ଯେ ''ମୟୂରଭଞ୍ଜର ଅର୍ଥନୈତିକ, ରାଜନୈତିକ ଓ ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ଇଂରେଜଶାସିତ ଓଡ଼ିଶାର ସ୍ୱାତନ୍ତ୍ର୍ୟ ଅପେକ୍ଷା ଅଧିକ ଅନୁଭୂତ ହେଉଥାଏ'' ତାହା ନୁହେଁ; ବରଂ ସେଠାରେ ଥିଲା ତାଙ୍କର ''ଚିରବାଞ୍ଛିତ, ଚିରଆକାଂକ୍ଷିତ ସାହିତ୍ୟଚର୍ଚ୍ଚା ଲାଗି ଏକ ଚମତ୍କୃତ ପରିବେଶ ।'' ତାଙ୍କରି ଅଧକ୍ଷତାରେ 'ବାରିପଦା ସାହିତ୍ୟ ସଂସଦ' ଗଠିତ ହୋଇଥିଲା । ଏହି ସମୟ ମଧ୍ୟରେ ୧୯୩୫ରେ ତାଙ୍କର ଅନୁଜ ଭଗବତୀ ଚରଣ ପାଣିଗ୍ରାହୀଙ୍କ ନେତୃତ୍ୱରେ କଟକରେ ଗଠିତ 'ନବଯୁଗ ସାହିତ୍ୟ ସଂସଦ'ର ସପ୍ତାହବ୍ୟାପୀ ଅନୁଷ୍ଠାନର ଉଦ୍‌ଘାଟନ ମଧ୍ୟ ସେ ହିଁ କରିଥିଲେ । ଏହି ଅନୁଷ୍ଠାନର ମୁଖପତ୍ର 'ଆଧୁନିକ' ସମ୍ପର୍କରେ ତାଙ୍କର ମତ ହେଲା – ''ସେତେବେଳେ ତ୍ରିଂଶ ଦଶକର ମଧ୍ୟଭାଗରେ 'ଆଧୁନିକ' ଯେଉଁ ପ୍ରଗତିଶୀଳ ସାହିତ୍ୟର ବାର୍ତ୍ତା ପ୍ରଚାର କରେ, ତାହାର ସ୍ଥାୟିତ୍ୱ ସୁଦୀର୍ଘ ନ ହେଲେ ହେଁ ପ୍ରଭାବ ଚିର ଅମଳିନ ।''

ତାଙ୍କର ବାରିପଦା-ରହଣିକାଳ ମଧ୍ୟରେ ୧୯୩୬ରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇଥିଲା । କିନ୍ତୁ ପାରିବାରିକ ଜୀବନରେ ପିତା, ଭ୍ରାତୃଜାୟା ଓ ଜ୍ୟେଷ୍ଠଭ୍ରାତା ଦିବ୍ୟସିଂହଙ୍କର ଅକାଳ-ବିୟୋଗ ମଧ୍ୟ ଘଟିଥିଲା ଏହିଠାରେ । ଦିବ୍ୟସିଂହଙ୍କ ବିୟୋଗ ପୂର୍ବରୁ ହିଁ କାଳିନ୍ଦୀ କଟକସ୍ଥ ସରକାରୀ ଛାପାଖାନାର 'ହେଡ୍ ରିଡ଼ର୍' କାର୍ଯ୍ୟରେ ଯୋଗ ଦେଇଥିଲେ । ୧୯୩୯ରେ ଓଡ଼ିଶା ସମେତ ଭାରତର ଅଳ୍ପ କେତେକ ରାଜ୍ୟରେ ପ୍ରଥମ କରି କଂଗ୍ରେସ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ମହାତ୍ମାଗାନ୍ଧୀଙ୍କ ଦ୍ୱାରା ଓଡ଼ିଶାର ପ୍ରଧାନମନ୍ତ୍ରୀ ରୂପେ ମନୋନୀତ ଶ୍ରୀ ବିଶ୍ୱନାଥ ଦାସଙ୍କ ସରକାର ଅଧୀନରେ ଏହି କାର୍ଯ୍ୟ ଅବଶ୍ୟ ତାଙ୍କ ପାଇଁ ସୁଖକର ନଥିଲା । ତେବେ ସେହି ସମୟରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପୁରୀ-ଆଗମନ —

ତାଙ୍କର ଜନ୍ମଦିବସରେ ଓଡ଼ିଶାର ସର୍ବପ୍ରଥମ କଂଗ୍ରେସ ସରକାରଙ୍କ ଅତିଥି ରୂପେ ତାଙ୍କୁ ସ୍ୱରଚିତ କବିତାଦ୍ୱାରା ସମ୍ବର୍ଦ୍ଧିତ କରିବାପାଇଁ ସରକାରୀ ନିର୍ଦ୍ଦେଶ କାଳିନ୍ଦୀଙ୍କୁ ଅତ୍ୟନ୍ତ ଆନନ୍ଦ ଦେଇଥିଲା । ରବୀନ୍ଦ୍ରନାଥଙ୍କ ରଚନାବଳୀ ପରି ଭାଷଣଭଙ୍ଗୀ ଓ ବ୍ୟବହାର ମଧ୍ୟ ତାଙ୍କୁ ମୁଗ୍ଧ କରିଥିଲା । ଅବଶ୍ୟ 'ରବୀନ୍ଦ୍ର ବନ୍ଦନା' କବିତାର ଛନ୍ଦକୁ କେହି କେହି ସମାଲୋଚନା କରିଥିଲେ, ଯାହାର ପ୍ରତିକ୍ରିୟାରେ କାଳିନ୍ଦୀଚରଣ ଲେଖିଛନ୍ତି – ''ନବ ନବ ଛନ୍ଦ, ଧାରା କବିତାରେ ପ୍ରକଟିତ ହେବା ହିଁ ଯୁଗୋପଯୋଗୀ ଧର୍ମ । ପୁଣି ପ୍ରାଚୀନ କବିତାର ବାହୁଲ୍ୟ ସ୍ଥାନରେ ବର୍ତ୍ତମାନ ଗଦ୍ୟଧର୍ମୀ ସାହିତ୍ୟର ପ୍ରାଚୁର୍ଯ୍ୟ ଅନସ୍ୱୀକାର୍ଯ୍ୟ । ସେଥି ସହିତ ଯାନ୍ତ୍ରିକ ମୁଦ୍ରଣାଳୟର ପ୍ରସାର ମଧ୍ୟ ବିଚାର୍ଯ୍ୟ ।''

ସେତେବେଳେ ଭଗବତୀଙ୍କ ନେତୃତ୍ୱରେ ଅହରହ ଯୁବଗୋଷ୍ଠୀର ଆଲୋଚନା ଓ ଓଡ଼ିଶା କମ୍ୟୁନିଷ୍ଟ ପାର୍ଟିର ପ୍ରାରମ୍ଭିକ କାର୍ଯ୍ୟ ଚାଲିଥାଏ । କାଳିନ୍ଦୀଙ୍କ ତତ୍‌କାଳୀନ ବାସସ୍ଥାନ କାଠଗଡ଼ାସାହିସ୍ଥିତ ଶରତଚନ୍ଦ୍ର ମୁଖାର୍ଜୀଙ୍କ 'ଶିବ କୁଟୀର' ରାଜନୈତିକ କେନ୍ଦ୍ରରେ ପରିଣତ ହୋଇଥିଲା । ଭଗବତୀଙ୍କ ସମ୍ପାଦିତ 'କୃଷକ' ପତ୍ରିକାରେ 'ବନ୍ଦୀ ସୈନିକ' ଛଦ୍ମନାମରେ କାଳିନ୍ଦୀଙ୍କର ଏକ ପ୍ରତିକ୍ରିୟାତ୍ମକ କବିତା (ବାଜି ରାଉତ ପରି ସହୀଦଙ୍କ ନୃଶଂସ ହତ୍ୟାର ପ୍ରତିକ୍ରିୟା) ପ୍ରକାଶ ପାଇଥିଲା, ତାହାର 'ଲହୁ ଢାଳି ଏବେ ହତିଆର ତୋର ପଜା' ପଙ୍‌କ୍ତିକୁ ହିଂସାତ୍ମକ ଓ ଗାନ୍ଧିଙ୍କ ଅହିଂସାନୀତିର ପରିପନ୍ଥୀ ବୋଲି ସରକାରୀ ପକ୍ଷରୁ ଗାନ୍ଧିଙ୍କ ପଟ୍ଟଶିଷ୍ୟା ଆଗାଥା ହାରିସନ୍‌ଙ୍କୁ ବୁଝାଇ ଦିଆଯାଇଥିଲା । କେହି କେହି ତାଙ୍କୁ ଫାସିବାଦର ଦଲାଲ୍ ଓ ହିଟ୍‌ଲର୍‌ଙ୍କ ସମର୍ଥକ ବୋଲି ମଧ୍ୟ କହିଲେ । ଏହି ଅବକାଶରେ ଚରମପନ୍ଥୀ ଭଗବତୀ ଓ ତାଙ୍କ ସାଥୀମାନେ ଗିରଫ ହୋଇ କଟକ ବନ୍ଦୀଶାଳାର ସେଲ୍‌ରେ ରହିଲେ ।

ସରକାରୀ ଛାପାଖାନାର କାର୍ଯ୍ୟ ଛାଡ଼ିବା ପରେ କାଳିନ୍ଦୀଚରଣ 'କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର୍' ପାଇଁ ପାଠ୍ୟପୁସ୍ତକ ଲେଖିବାରେ ଲାଗିଲେ । 'ଉତ୍କଳ ସାହିତ୍ୟ ସମାଜ'ର ସମ୍ପାଦକର ଗୌରବରେ ମଧ୍ୟ ମଣ୍ଡିତ ହେଲେ । ଅନ୍ନ ସଂସ୍ଥାନ ପାଇଁ ଟିଉସନ୍ କରିବା ସଙ୍ଗେ ସଙ୍ଗେ ଶଶିଭୂଷଣ ରଥଙ୍କ ଦ୍ୱାରା ଆହୂତ ହୋଇ ଦୈନିକ 'ଆଶା'ର ସମ୍ପାଦକୀୟ ଲେଖିବାରେ ମଧ୍ୟ ନିଯୁକ୍ତ ହୋଇଥିଲେ । ଏହି ସମୟରେ 'ପୂର୍ବାଞ୍ଚଳ ଦେଶୀୟ ରାଜ୍ୟ ପ୍ରଚାର ସଂଗଠନ' (Eastern States Publicity Bureau) ଗଠିତ ହେଲା ଓ ଓଡ଼ିଶା ପାଇଁ କାଳିନ୍ଦୀ ଏହି କାର୍ଯ୍ୟରେ ନିଯୁକ୍ତ ହେଲେ । ସମବାୟ ବିଭାଗରେ କାର୍ଯ୍ୟ କରି ସେ ଯେପରି ଓଡ଼ିଶାର ଗାଁଗହଳର ଚାଷୀ-ମୂଲିଆଙ୍କ ଜୀବନର ନିକଟବର୍ତ୍ତୀ ହେବାର ସୁଯୋଗ ପାଇଥିଲେ, ଦେଶୀୟ ରାଜ୍ୟ ପ୍ରଚାର କାର୍ଯ୍ୟରେ ରହି ସେହିପରି 'ଉତ୍କଳୀୟ କୌଳିନ୍ୟର ଶ୍ରେଷ୍ଠ ପ୍ରତୀକ ରାଜନ୍ୟବର୍ଗ ଓ ସେହିମାନଙ୍କ ଶାସନାଧୀନରେ ରହିଥିବା ପ୍ରଜାକୁଳ' ସମ୍ପର୍କରେ ଆସିବାର ସୁଯୋଗ ପାଇଲେ । ସେହି ସମୟରେ ସେ ଓଡ଼ିଶାର ତତ୍‌କାଳୀନ ପ୍ରଧାନମନ୍ତ୍ରୀ ହରେକୃଷ୍ଣ ମହତାବଙ୍କ ସହିତ ମଧ୍ୟ ସଂସ୍ପର୍ଶରେ ଆସିଥିଲେ ।

ବଡ଼ଭାଇ ଦିବ୍ୟସିଂହଙ୍କ ବିୟୋଗ ପରେ ସମୁଦାୟ ପରିବାରକୁ ସେ କଟକ ନେଇ ଆସିଲେ । ଭଗବତୀ ମଧ୍ୟ ଅନୁଗୁଳ ବନ୍ଦୀଶାଳାରୁ ମୁକ୍ତ ହୋଇ ସେହିଠାକୁ ଆସିଲେ ଓ ନିଜର ପୂର୍ବ କାର୍ଯ୍ୟରେ ଲାଗିପଡ଼ିଲେ । ସେତେବେଳକୁ ସମଗ୍ର ପୃଥିବୀ ଉପରେ ଦ୍ୱିତୀୟ ମହାଯୁଦ୍ଧର ଘନଘଟା । ଇଂରେଜ ସରକାରଙ୍କ ପ୍ରତିନିଧି ସାର୍ ଷ୍ଟାଫୋର୍ଡ୍ କ୍ରିପ୍‌ସ୍‌ଙ୍କ ନେତୃତ୍ୱରେ ଗାନ୍ଧି ଓ ଜିନ୍ନାଙ୍କ ସହିତ ସାଲିସ୍ ପ୍ରସ୍ତାବର ଆଲୋଚନା ମଧ୍ୟ ଚାଲିଥାଏ । ଭଗବତୀଙ୍କ ସମ୍ପାଦିତ 'ମୁକ୍ତିଯୁଦ୍ଧ'ରେ ଫାସିବାଦ ବିରୋଧୀ ଲେଖା ଓ ରୁଷ ଦେଶର ପ୍ରଜାସାଧାରଣଙ୍କ ପ୍ରତିରୋଧାତ୍ମକ ସଂଗ୍ରାମର ଲୋମହର୍ଷକ ବର୍ଣ୍ଣନା ପ୍ରକାଶ ପାଉଥାଏ । ଦଶ-ଏଗାର ବର୍ଷୀୟା କୁନି (ଶ୍ରୀମତୀ ନନ୍ଦିନୀ ଶତପଥୀ) ମଧ୍ୟ ସେଥିରେ ଲେଖୁଥାନ୍ତି । ଭଗବତୀ କଟକରେ ଓଡ଼ିଶାର ଏକ ଫାସିବାଦବିରୋଧୀ ସମ୍ମିଳନୀର ଆୟୋଜନ ମଧ୍ୟ କରୁଥିଲେ, ମାତ୍ର ବମ୍ବେରେ ଅନୁଷ୍ଠିତ ନିଖିଳ ଭାରତ କଂଗ୍ରେସ ଅଧିବେଶନରେ 'ଭାରତ ଛାଡ଼' ପ୍ରସ୍ତାବ ଗୃହୀତ ହେବା ସଙ୍ଗେ ସଙ୍ଗେ ଦେଶର ପ୍ରମୁଖ ନେତୃବର୍ଗ ବନ୍ଦୀ ହୋଇଯିବାରୁ ଏହା ମଧ୍ୟ ବନ୍ଦ ହୋଇଯାଇଥିଲା । କିନ୍ତୁ ୧୯୪୩ରେ ଅନୁଜ ଭଗବତୀଙ୍କ ଅକାଳ ବିୟୋଗ ତାଙ୍କର ପାରିବାରିକ ଜୀବନରେ ଏକ ବିରାଟ ଫାଙ୍କ ସୃଷ୍ଟିକଲା ।

ତେବେ ଅଭାବ-ଦୁଃଖରେ ଧୈର୍ଯ୍ୟ ଓ ଆଶା ଧରି କର୍ମ କରିଥିବା କାଳିନ୍ଦୀଙ୍କ ପ୍ରତି ଲକ୍ଷ୍ମୀ ପ୍ରସନ୍ନା ହେଲେ । ଅର୍ଥାଗମର ସ୍ୱଚ୍ଛଳତା ହେତୁ ପିଠାପୁରଠାରେ ନିଜର ବାସଗୃହ 'ସ୍ୱପ୍ନପୁରୀ' ନିର୍ମାଣ କରି ସେ ଭଡ଼ାଘର ଜଞ୍ଜାଳରୁ ମଧ୍ୟ ମୁକ୍ତି ପାଇଲେ । କିନ୍ତୁ ସେତେବେଳର କଂଗ୍ରେସ ସରକାରଙ୍କ ଆଦେଶରେ ପୋଲିସ ତାଙ୍କ ଘର ଘେରାଉ ଓ ଖାନତଲାସ କରି 'ଲୁହାର ମଣିଷ' ଉପନ୍ୟାସର ପାଣ୍ଡୁଲିପି ନେଇଯିବା ତାଙ୍କୁ କିଛିଟା ମର୍ମାହତ କରେ । ଅବଶ୍ୟ ସେ ଅନୁମାନ କରିପାରନ୍ତି — "ଅସଲ ଅଭିପ୍ରାୟଟା ବୋଧହୁଏ ସେତେବେଳେ କଂଗ୍ରେସର ମଧ୍ୟଯୁଗୀୟ ଆଭିମୁଖ୍ୟ ବିରୋଧୀ ସମାଲୋଚନା ପ୍ରତି ମୋର ପ୍ରାକାଶ୍ୟ ସମର୍ଥନ ।" ଚୀନରେ କମ୍ୟୁନିଷ୍ଟ ସରକାର ଗଠନ, ତତ୍‌କାଳୀନ ଭାରତରେ କମ୍ୟୁନିଷ୍ଟ-ଆନ୍ଦୋଳନର ବ୍ୟାପକତା, ସ୍ୱର୍ଗତ ଅନୁଜ ଭଗବତୀ ଓ କନ୍ୟା ନନ୍ଦିନୀଙ୍କର କମ୍ୟୁନିଷ୍ଟ ପାର୍ଟିରେ ସକ୍ରିୟ ଭୂମିକା ସହିତ କାଳିନ୍ଦୀଙ୍କର ତତ୍‌କାଳୀନ ସୃଷ୍ଟିରେ ପ୍ରଗତିବାଦୀ ଆଭିମୁଖ୍ୟ ଅବଶ୍ୟ ସରକାରଙ୍କର ଦୃଷ୍ଟିକଟୁ ହୋଇଥିବ ।

କଂଗ୍ରେସ, ସମାଜବାଦୀ, ସ୍ୱତନ୍ତ୍ର ଆଦି ବିଭିନ୍ନ ରାଜନୈତିକ ଦଳର ଆମନ୍ତ୍ରଣ ସତ୍ତ୍ୱେ କାଳିନ୍ଦୀ ସକ୍ରିୟ ରାଜନୀତିରେ ଯୋଗ ଦେଇ ନଥିଲେ, ଏପରିକି କମ୍ୟୁନିଷ୍ଟ-ଦେଶ ରୁଷିଆକୁ ଯିବାପାଇଁ ତାଙ୍କର ସବୁ ବ୍ୟବସ୍ଥା ହୋଇଥିଲେ ମଧ୍ୟ ଦୀର୍ଘ ଅସୁସ୍ଥତା ହେତୁ ତାହାକୁ ବାତିଲ୍ କରିବାକୁ ପଡ଼ିଥିଲା । କିନ୍ତୁ ସେହିପରି ଶଯ୍ୟାଶାୟୀ ଅବସ୍ଥାରେ ମଧ୍ୟ ଶ୍ରୁତଲିଖନ ସାହାଯ୍ୟରେ ସେ କେତେକ ପାଠ୍ୟପୁସ୍ତକ ଓ ପତ୍ରପତ୍ରିକା ଲାଗି ପ୍ରବନ୍ଧ ରଚନା କରିଥିଲେ । ପୁଣି ଦିଲ୍ଲୀର ସଂଗୀତ-ନାଟକ ଏକାଡ଼େମୀ ପକ୍ଷରୁ ଆୟୋଜିତ ବିଭିନ୍ନ ଭାରତୀୟ ଭାଷାରେ ରଙ୍ଗମଞ୍ଚ ଓ

ନାଟକ ରଚନାର ଅଗ୍ରଗତି ସମ୍ପର୍କୀୟ ଆଲୋଚନାରେ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚ ସମ୍ପର୍କରେ ନିବନ୍ଧ ଉପସ୍ଥାପନ କରି ଭାରତର ଅନ୍ୟାନ୍ୟ ଅଞ୍ଚଳର ପ୍ରତିନିଧିଙ୍କୁ ବିସ୍ମିତ ଓ ଚମତ୍କୃତ କରିଦେଇଥିଲେ । ୧୯୪୫ରେ ରାଜସ୍ଥାନର ଜୟପୁର ଓ ୧୯୪୭ରେ ବନାରସରେ ଅନୁଷ୍ଠିତ ନିଖିଳ ଭାରତ ପି.ଇ.ଏନ୍. ସମ୍ମିଳନୀରେ ମଧ୍ୟ ଯୋଗଦେଇ ନିବନ୍ଧମାନ ପାଠ କରିଥିଲେ ।

'ସ୍ୱାଧୀନତା' ପରେ ୧୯୪୮ରେ କଟକ ବେତାରକେନ୍ଦ୍ର ପ୍ରତିଷ୍ଠା ପରେ ପ୍ରାୟ ପ୍ରତିମାସରେ ଥରେ ଦୁଇଥର ସାହିତ୍ୟ-ବିଭାଗରେ ତାଙ୍କ ରଚନା ପ୍ରଚାରିତ ହେଉଥିଲା ଓ ପ୍ରାୟ ପ୍ରତ୍ୟେକ ଆକାଶବାଣୀ-କବି ସମ୍ମିଳନୀରେ ସେ ସ୍ୱରଚିତ କବିତା ପାଠ କରୁଥିଲେ । ୧୯୫୬ରେ ୫୬ ବର୍ଷ ବୟସରେ ତାଙ୍କୁ କଟକ-ଆକାଶବାଣୀର Producer ଭାବେ ନିଯୁକ୍ତି ମିଳିଲା ଓ ଦଶ ବର୍ଷ ଧରି ସେ ସେହି କାର୍ଯ୍ୟରେ ରତ ଥିଲେ । ସେହି ସମୟ ମଧ୍ୟରେ ପ୍ରାୟ ପ୍ରତିବର୍ଷ ଦିଲ୍ଲୀ-ଆକାଶବାଣୀ ଆନୁକୂଲ୍ୟରେ ଅନୁଷ୍ଠିତ ସାହିତ୍ୟ-ସମାରୋହମାନଙ୍କରେ ଯୋଗ ଦେଇ ଭାରତର ବିଭିନ୍ନ ଅଞ୍ଚଳର ଲେଖକ-ଲେଖିକାଙ୍କ ସହ ପରିଚିତ ହେବା ସଙ୍ଗେ ସଙ୍ଗେ ନାନା ଶ୍ରେଣୀର ଲୋକଙ୍କ ସମ୍ପର୍କରେ ମଧ୍ୟ ଆସୁଥିଲେ, ତେବେ ସାହିତ୍ୟ-ଚର୍ଚ୍ଚା କ୍ଷେତ୍ରରେ ଆକାଶବାଣୀର ପରିବେଶ ଆଶାନୁରୂପ ହୋଇପାରେ ନାହିଁ । ଏଥି ପୂର୍ବରୁ ସେ 'କେନ୍ଦ୍ର ସାହିତ୍ୟ ଏକାଡ଼େମୀ'ର ସଦସ୍ୟ ହେବାର ସୌଭାଗ୍ୟ ମଧ୍ୟ ଲାଭ କରିଥା'ନ୍ତି । ଆକାଶବାଣୀରେ କାର୍ଯ୍ୟରତ ଥିବା ସମୟରେ ହିଁ 'କେରଳ ସାହିତ୍ୟ ସମିତି'ର କୋଟାୟାମ୍ ଅଧିବେଶନକୁ ନିମନ୍ତ୍ରିତ ହୋଇ ଦକ୍ଷିଣ-ଭାରତୀୟ ସଂସ୍କୃତି ସହିତ ପରିଚିତ ହେବାର – କେରଳୀୟ ପ୍ରକୃତି ସହିତ କେରଳୀୟମାନଙ୍କର ଶୃଙ୍ଖଳାଜ୍ଞାନ ଓ ଶାନ୍ତ-ସମାହିତ ଜୀବନ-ପରିପାଟୀରେ ମୁଗ୍ଧ ହେବାର ସୁଯୋଗ ଲାଭ କରନ୍ତି । କଲିକତାର 'ମହାଜାତି ସଦନ'ରେ 'ଅଖିଳ ଭାରତ ଲେଖକ ସମ୍ମିଳନୀ'ରେ ଗୋଟିଏ ଦିନର ସଭାପତି ମଧ୍ୟ ହୁଅନ୍ତି, ଯେଉଁ ସଭାର ମୁଖ୍ୟବକ୍ତା ଥା'ନ୍ତି ପଣ୍ଡିତ ଜବାହରଲାଲ ନେହେରୁ ଓ ଆଲୋଚ୍ୟ ବିଷୟ ଥାଏ 'State and Literature' । ଏତଦ୍‌ବ୍ୟତୀତ କଲିକତାରେ ଆୟୋଜିତ ଆହୁରି ଅନେକ ସାହିତ୍ୟ-ସମ୍ମିଳନୀ, ଶାନ୍ତିନିକେତନ ଓ ବମ୍ବେର ରବୀନ୍ଦ୍ର-ଶତବାର୍ଷିକୀ ଉତ୍ସବରେ ଯୋଗଦେଇ ଓଡ଼ିଶା ପାଇଁ ଗୌରବ ମଧ୍ୟ ଅର୍ଜ୍ଜନ କରନ୍ତି । ପୁଣି ୧୯୫୮ରେ ବ୍ରହ୍ମପୁରରେ ଡକ୍ଟର ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ସଭାପତିତ୍ୱରେ ଅନୁଷ୍ଠିତ ଓଡ଼ିଶା ଲେଖକମାନଙ୍କର ସମ୍ମିଳନୀ ଓ ତା'ର କେତେକ ମାସ ପରେ ଭୁବନେଶ୍ୱରଠାରେ ୧୯୫୯ ଜାନୁଆରୀ ପ୍ରଥମ ସପ୍ତାହରେ ରାଧାକୃଷ୍ଣନ୍ ଓ ଜବାହରଲାଲଙ୍କ ଉପସ୍ଥିତିରେ ଅନୁଷ୍ଠିତ ପ୍ରଥମ ସର୍ବଭାରତୀୟ ପି.ଇ.ଏନ୍. ସମ୍ମିଳନୀରେ ଯୋଗଦେଇ ଓ ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ତୁଲାଇ ଉଚ୍ଚ-ପ୍ରଶଂସିତ ହୁଅନ୍ତି । ସରକାରୀ ଉଦ୍ୟମରେ ଓଡ଼ିଶାରେ ସ୍ଥାପିତ ରାଜ୍ୟସ୍ତରୀୟ ସାହିତ୍ୟ ଏକାଡ଼େମୀ ଓ ଲଳିତକଳା ଏକାଡ଼େମୀ ସହିତ ମଧ୍ୟ ସେ ଜଡ଼ିତ ହୋଇଥାନ୍ତି । ତେବେ ନିଜର ଆନ୍ତରିକ ଅନୁଭବ ବ୍ୟକ୍ତ କରିବାକୁ ଯାଇ ସେ ଲେଖନ୍ତି – ''କଳା ସାହିତ୍ୟର ସୃଷ୍ଟିରେ ଏକନିଷ୍ଠ ସାଧନା ପାଇଁ ଏହିସବୁ

ସାଙ୍ଗଠନିକ କାର୍ଯ୍ୟ ଅନେକ ସମୟରେ ପରିପୂରକ ହେବା ପରିବର୍ତ୍ତେ ବହୁ ବାଧା ସୃଷ୍ଟି କରିଥାଏ ମଧ୍ୟ । ପୁଣି ଯେଉଁମାନେ କଳାସାହିତ୍ୟ ସୃଷ୍ଟିରେ ବ୍ରତୀ, ଏଇସବୁ କାର୍ଯ୍ୟାଳୟରେ ତାଙ୍କ ପାଇଁ ସ୍ଥାନାଭାବ । କଳା-ସାହିତ୍ୟର ସାଧନା ସମ୍ପୂର୍ଣ୍ଣ ରୂପେ ଐକାନ୍ତିକ ଭାବନା, କଳ୍ପନା ଓ ଅଭିନିବେଶର ବିଷୟ ବୋଲି ମୁଁ ବାରମ୍ବାର ଅନୁଭବ କରିଛି ।''

ବମ୍ବେଠାରେ ଅନୁଷ୍ଠିତ ରବୀନ୍ଦ୍ର-ଶତବାର୍ଷିକୀ ଉତ୍ସବରେ ସଭାପତି ପଣ୍ଡିତ ଜବାହରଲାଲ୍‌ଙ୍କ ଭାଷଣରୁ ସେ ଶୁଣିଥିଲେ ଯେ ନେହେରୁ ଏକଦା ଗାନ୍ଧୀଙ୍କ ଅପେକ୍ଷା ରବୀନ୍ଦ୍ରଙ୍କ ପ୍ରତି ଅଧିକ ଆକୃଷ୍ଟ ଥିଲେ, ପୁଣି ଗାନ୍ଧିଙ୍କ ସୁଅରେ ଆପଣାକୁ ଭସାଇଦେଲେ ମଧ୍ୟ ମଝିରେ ମଝିରେ ଥଳ ଧରିବାକୁ ଲୋଡୁଥିଲେ ରବୀନ୍ଦ୍ରଙ୍କର ଅର୍ଥାତ୍ ରବୀନ୍ଦ୍ର-ସାହିତ୍ୟର ସାହାଯ୍ୟ । ନିଜେ କାଳିନ୍ଦୀ ମଧ୍ୟ ବିଦ୍ୟାଳୟ-ଛାତ୍ର ଥିବା ସମୟରୁ ସାହିତ୍ୟ ଓ ରାଜନୀତିର ଦ୍ୱନ୍ଦ୍ୱଭିତରେ ପଡ଼ି ପରିଣତ ବୟସ ପର୍ଯ୍ୟନ୍ତ ସେହି ଦ୍ୱନ୍ଦ୍ୱରେ ଘାଣ୍ଟି ହେଉଥା'ନ୍ତି । ତେବେ ସକ୍ରିୟ ରାଜନୀତିରେ ଭାଗନେବାକୁ ଶେଷ ପର୍ଯ୍ୟନ୍ତ ସମର୍ଥ ହୋଇ ନଥାନ୍ତି । ତା'ର କାରଣ ବୋଧହୁଏ ତାଙ୍କର ଅନ୍ତର୍ନିହିତ ସାହିତ୍ୟିକ-ବ୍ୟକ୍ତିତ୍ୱ । ତାଙ୍କରି ଭାଷାରେ ''ଭାବୁକ ଲେଖକର ପରିସର ଓ ଉପାଦାନ ରାଜନୀତିର ଉପାଦାନ ଓ ପରିସରଠାରୁ ସ୍ୱତନ୍ତ୍ର –– ଜଣକର କୋମଳ ତରଳ ମସୀ, ଅନ୍ୟର କଠୋର ନିର୍ମମ ଅସି ।'' ସାହିତ୍ୟ ହିଁ ଥିଲା ତାଙ୍କର ସାଧନା — ସାହିତ୍ୟରେ ହିଁ ତାଙ୍କର ସିଦ୍ଧି । ସେହି ସିଦ୍ଧିର ପରିଚୟ ୧୯୭୧ରେ 'ପଦ୍ମଭୂଷଣ' ସମ୍ମାନ ଓ ଭାରତୀୟ ସାହିତ୍ୟ ଏକାଡ଼େମୀର ଉଚ୍ଚ-ସମ୍ମାନିତ ସଦସ୍ୟ ହେବାର ସୌଭାଗ୍ୟ । ଓଡ଼ିଶା ତଥା ଅନ୍ୟାନ୍ୟ ଅନେକ ରାଜ୍ୟରେ ଆୟୋଜିତ ଅନେକ ସମ୍ବର୍ଦ୍ଧନା-ସଭାରେ ତଥା ଦିଲ୍ଲୀସ୍ଥିତ ଭାରତୀୟ କେନ୍ଦ୍ର ରାଷ୍ଟ୍ରଭାଷା ପକ୍ଷରୁ ତେଲୁଗୁ କବି ଶ୍ରୀ ବିଶ୍ୱନାଥ ସତ୍ୟନାରାୟଣ ଓ ତାମିଲ୍ ଲେଖକ କାଶୀନାଥ ସୁବ୍ରମଣ୍ୟମ୍‌ଙ୍କ ଗହଣରେ ଏକ ସଦ୍‌ଭାବନା ପରିଭ୍ରମଣରେ ବାହାରି ଉତ୍ତର ପ୍ରଦେଶର ଆଗ୍ରା, ଏହ୍ଲାବାଦ, ବନାରସ, ଲକ୍ଷ୍ନୌ ତଥା ସର୍ବଶେଷରେ ଦିଲ୍ଲୀ ନଗରୀରେ ଅନୁଷ୍ଠିତ ସଭାରେ ସମ୍ବର୍ଦ୍ଧିତ ମଧ୍ୟ ହୋଇଥିଲେ । ଗଦ୍‌ଗଦ ଭାଷାରେ ତେଣୁ ଲେଖିଛନ୍ତି – ''ଏଇ ବିଶାଳ ଉପମହାଦେଶର ପାଣି, ପବନ ଭଳି ସ୍ନେହଶୁଭେଚ୍ଛାର ପ୍ରାଚୁର୍ଯ୍ୟରେ ପରିପୂର୍ଣ୍ଣ ହୋଇଛି ଅନ୍ତର ମୋର – ଯାହାର ପ୍ରତିଦାନ କଳ୍ପନାତୀତ ।''

କ୍ଷମତା-ରାଜନୀତିରୁ ଦୂରେଇ ରହିବାର ଇଚ୍ଛା ସତ୍ତ୍ୱେ ତାହା ତାଙ୍କ ପରିବାର ଭିତରକୁ ପଶିଆସିଛି ଜ୍ୟେଷ୍ଠାକନ୍ୟା ନନ୍ଦିନୀଙ୍କର ମୁଖ୍ୟମନ୍ତ୍ରିତ୍ୱ ରୂପରେ । ତେବେ ଆଦର୍ଶବାଦୀ ରୂପେ ତାଙ୍କର ଚିନ୍ତା ଓ ଲେଖନୀ ରାଜନୀତିକୁ କେବେ ହେଲେ ସଂକୀର୍ଣ୍ଣ ପରିସରକୁ ଓଟାରି ଆଣି କ୍ଷମତାର ଗଣ୍ଡି ଭିତରେ ସୀମିତ କରି ବିଚାରି ନାହାନ୍ତି । ତେଣୁ ଓଡ଼ିଶାବାସୀଙ୍କର ଯେଉଁ ଲୁହ ଉତ୍କଳମଣି ଗୋପବନ୍ଧୁଙ୍କ ସମୟରୁ ଶୁଖି ନାହିଁ, ତାକୁ ଜନ୍ମକାଳରୁ ବାପା-ମା'ଙ୍କ ଆଖିର ଲୁହ ଶୁଖାଇ ପାରି ନଥିବା ନନ୍ଦିନୀ ଶୁଖାଇ ପାରିବାରେ ତାଙ୍କର ସନ୍ଦେହକୁ ନିଃସଙ୍କୋଚରେ ପ୍ରକାଶ କରନ୍ତି । ପ୍ରକାଶ କରନ୍ତି ମଧ୍ୟ ରାଜନୀତି, ଅର୍ଥନୀତି ଓ ସମାଜନୀତି ଏକ ସାଥିରେ ଗତିକରିବା

ହିଁ ଅବଶ୍ୟମ୍ଭାବୀ ବୋଲି ବିଶ୍ୱାସକୁ, ଦୁଇଟି ପୃଥିବୀ ମହାଯୁଦ୍ଧ ଭିତରେ ଜୀବନଯାପନ କରି ଅନୁଭବ କରିଥିବା ବିଶ୍ୱବ୍ୟାପୀ ଏକାତ୍ମବୋଧର ପ୍ରମାଣକୁ, ପୁଣି ବସ୍ତୁବିଜ୍ଞାନର ଅଦ୍ଭୁତ ଉଦ୍ଭାବନ ସମୁଦାୟ ପୃଥିବୀକୁ କ୍ଷୁଦ୍ରରୁ କ୍ଷୁଦ୍ରତର କରି ସବୁ ଜାତି-ଧର୍ମ ଓ ରୂପରଙ୍ଗର ମଣିଷଙ୍କୁ ନିକଟରୁ ନିକଟତର କରିବା ସଙ୍ଗେ ସଙ୍ଗେ ତାହାର ସୁଦୂରପ୍ରସାରୀ ପ୍ରଭାବ ଭାରତ ତଥା ଓଡ଼ିଶାର ରାଜନୀତିକୁ ପ୍ରବଳ ଭାବରେ ପ୍ରଭାବିତ କରିଥିଲା ।

କାଳିନ୍ଦୀଚରଣଙ୍କ ଜୀବନ ବହୁ ସାଧାରଣ-ଅସାଧାରଣ ଅନୁଭବ, ବହୁ ସାଧାରଣ-ଅସାଧାରଣ ଘଟଣା, ପୁଣି ସାଧାରଣ-ଅସାଧାରଣ ବହୁ ମଣିଷଙ୍କ ସହ ସମ୍ପର୍କର ଇତିହାସ । ତେଣୁ ତାଙ୍କ ଆତ୍ମଜୀବନୀରେ ବିଶ୍ୱନାଥପୁରର ମୂଳିଆ-ମକଦ୍ଦମଙ୍କଠାରୁ ଆରମ୍ଭ କରି ଓଡ଼ିଶା ତଥା ଭାରତର ବହୁ ରାଜନୈତିକ ନେତା ଓ ସାହିତ୍ୟ-ସ୍ରଷ୍ଟାଙ୍କ ଚିନ୍ତା, ଚେତନା, ବକ୍ତବ୍ୟ ଓ ଆଚରଣ ସମ୍ପର୍କୀୟ ବହୁ ତଥ୍ୟ ଲିପିବଦ୍ଧ ହୋଇଛି; ଲିପିବଦ୍ଧ ହୋଇଛି ଓଡ଼ିଶା, ଭାରତ ପୁଣି ବିଶ୍ୱ-ଇତିହାସର ନାନା ଉତ୍‌ଥାନପତନର ବିବରଣୀ । ବିଭିନ୍ନ ଜାତୀୟ ସମସ୍ୟା, ରାଜନୈତିକ ଓ ସାଂସ୍କୃତିକ ବିବିଧ ଆନ୍ଦୋଳନ ଓ ଅନୁଷ୍ଠାନ ସହ ପ୍ରତ୍ୟକ୍ଷ ଓ ପରୋକ୍ଷ ସମ୍ପର୍କ ହେତୁ ସେ ସବୁ ବିଷୟରେ ନିଜର ସୁସ୍ପଷ୍ଟ ଧାରଣା ଓ ନିଜସ୍ୱ ମତାମତ ସେ ପାଠକମାନଙ୍କ ପାଇଁ ଓ ସେହି ସୂତ୍ରରେ ଭବିଷ୍ୟତ ଦାୟାଦମାନଙ୍କ ପାଇଁ ବାଢ଼ି ଦେଇଛନ୍ତି । ତାଙ୍କର ବ୍ୟକ୍ତିଗତ ଜୀବନ ତେଣୁ ଜାତୀୟ-ଜୀବନର ଏକ ଅଂଶ ରୂପେ ପ୍ରତିଭାତ ହୋଇଛି । ଅଧ୍ୟାପକ ପଠାଣି ପଟ୍ଟନାୟକ କାଳିନ୍ଦୀଚରଣଙ୍କୁ ଏକ ପତ୍ରରେ ଲେଖିଥିଲେ ଯେ ତାଙ୍କର ଆତ୍ମଜୀବନୀ ପାଠକରି ''ଦୀର୍ଘ ଅର୍ଦ୍ଧ ଶତାବ୍ଦୀର ଓଡ଼ିଶାର ସାଂସ୍କୃତିକ ଜୀବନର ଏକ ପରିଚୟ ଏବଂ ତାହା ସହିତ ଭାରତୀୟ କ୍ଷେତ୍ରରେ ସାଂସ୍କୃତିକ ଆନ୍ଦୋଳନର ରୂପରେଖ ସମ୍ପର୍କରେ ଓଡ଼ିଆ ସାହିତ୍ୟର ପାଠକ ଏକ ମୂଲ୍ୟବାନ୍ ଇତିହାସ ପାଠ କରିବାକୁ ସୁଯୋଗ ପାଇବେ'' ବାସ୍ତବିକ ନିରାଟ ସତ୍ୟର ପରିପ୍ରକାଶ ।

କାଳିନ୍ଦୀଚରଣଙ୍କ ପ୍ରାୟ ସମସ୍ତ ପ୍ରକାଶିତ ରଚନା ପାଠ କରିଥିବା ଓଡ଼ିଶାର ସୁବିଖ୍ୟାତ ନାଟ୍ୟକାର ଗୋପାଳ ଛୋଟରାୟ ଏହି ଆତ୍ମଜୀବନୀର କିଛି ଅଂଶ ମାତ୍ର ପଢ଼ି ଏହା ଅତି ଉଚ୍ଚକୋଟୀର ବିଶ୍ଳେଷଣାତ୍ମକ ତଥା ଲେଖକଙ୍କର ସର୍ବଶ୍ରେଷ୍ଠ ରଚନା ବୋଲି ମନେକରିଥିଲେ । ବାସ୍ତବିକ, କାଳିନ୍ଦୀଙ୍କର 'ଅଙ୍ଗେ ଯାହା ନିଭାଇଛି' ବିବରଣାତ୍ମକ ଆତ୍ମଜୀବନୀଟିଏ ମାତ୍ର ନୁହେଁ, ସମାଜ-ରାଜନୀତି, ଦର୍ଶନ-ସାହିତ୍ୟ ଆଦି ନାନା ବିଷୟରେ ଲେଖକଙ୍କର ଗଭୀର ଅବଧାରଣା ଓ ଚିନ୍ତନରେ ଋଦ୍ଧିମନ୍ତ,ପୁଣି ସ୍ଥଳ ବିଶେଷରେ ମଧୁର କବିତ୍ୱର ଛଟାରେ ମୃଦୁଳ ସାହିତ୍ୟ-କୃତିଟିଏ । ଶ୍ରଦ୍ଧାକର ସୂପକାର ମହୋଦୟ ଏହି ଆତ୍ମଜୀବନୀକୁ ଯଥାର୍ଥରେ ଏକ ବିଶୁଦ୍ଧ ସାହିତ୍ୟିକ ଆତ୍ମଜୀବନୀ ରୂପେ ଓଡ଼ିଆ ସାହିତ୍ୟର ମୁକୁର ହେବାର ଆଶା କରିଥିଲେ ।

ଆଲୋଚକ J. T. Shipleyଙ୍କ ମତରେ – "The autobiography proper is connected narrative of the author's life, with stress laid on introspection or on the significance of his life against a wider background." । ତେବେ ସାହିତ୍ୟରେ ଜୀବନର କଥା ଯେତେ କହିଲେ ବି ତଥାପି ଅନେକ କିଛି ଅକୁହା ରହିଯାଏ । ଅଧିକନ୍ତୁ, ଆତ୍ମଜୀବନୀ ଲେଖିସାରିବା ପରେ ମଧ୍ୟ ଲେଖକ ଜୀବିତ ରହିଥାଏ ଆହୁରି ଅଧିକ କିଛି ଅଙ୍ଗେ ନିଭାଇବାକୁ । ସାହିତ୍ୟ ଏକାଡ଼େମୀ କାର୍ଯ୍ୟକାରୀ କମିଟିର ବୈଠକରେ ସ୍ୱର୍ଗତ ଗୋଦାବରୀଶ ମିଶ୍ରଙ୍କ ଆତ୍ମଜୀବନୀ 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋର ସ୍ଥାନ'କୁ ଅସମ୍ପୂର୍ଣ୍ଣ କୃତି ବୋଲି ଆପତ୍ତି ହେବାରୁ ନିଜେ କାଳିନ୍ଦୀଚରଣ ଓ ତାଙ୍କୁ ସମର୍ଥନ କରି ରାଧାକୃଷ୍ଣନ୍ ମତ ପ୍ରକାଶ କରିଥିଲେ ଯେ, 'ଲେଖକ ବଞ୍ଚି ଥାଉଁ ଥାଉଁ ତାଙ୍କ ଆତ୍ମଜୀବନୀ ସେ ସମ୍ପୂର୍ଣ୍ଣ କରିପାରିବା ଏକାବେଳେ ଅସମ୍ଭବ ।' ସେହି ବିବେଚନାରେ 'ଅଙ୍ଗେ ଯାହା ନିଭାଇଛି'ରେ ମଧ୍ୟ ଆତ୍ମଜୀବନୀକାରଙ୍କର ସମସ୍ତ ଅଙ୍ଗେ-ନିଭା କଥା କୁହାଯାଇ ପାରିନାହିଁ । ତେବେ ନିଃସଙ୍କୋଚ ଆତ୍ମକଥନ, ସ୍ୱୀୟ ଅପାରଗତା ଓ ଦୁର୍ବଳତା ସ୍ୱୀକାରରେ ଅବିମୁଖତା, ଜୟ-ପରାଜୟ, ଆଶା-ନିରାଶା, ପ୍ରାପ୍ତି-ଅପ୍ରାପ୍ତି, ଦୋଷ-ଗୁଣ ସବୁକିଛିର ଅଭିବ୍ୟକ୍ତି.ସହିତ ଜ୍ଞାନ ଓ ଅଭିଜ୍ଞତାର ବ୍ୟାପକତା, ବହୁଦର୍ଶିତା ତଥା ସ୍ୱଚ୍ଛ ସାହିତ୍ୟିକ ଶୈଳୀ ଏହାକୁ ଏକ ସାର୍ଥକ ଆତ୍ମଜୀବନୀର ମର୍ଯ୍ୟାଦାରେ ମହିମାନ୍ୱିତ କରିଛି, ଏହା ଅସ୍ୱୀକାର କରିହେବ ନାହିଁ ।



# ସାହିତ୍ୟ ସମାଲୋଚକ କାଳିନ୍ଦୀଚରଣ

ଡକ୍ଟର ବନମାଳୀ ବେହେରା

୧୯୨୧ ମସିହାରେ ଯେଉଁ କେତେଜଣ ତରୁଣ ରେଭେନ୍‌ସା ମହାବିଦ୍ୟାଳୟର ପ୍ରଥମ ବାର୍ଷିକ ଶ୍ରେଣୀର ଛାତ୍ର ଥାଇ ସେମାନଙ୍କର ବୈପ୍ଲବିକ ମନୋବୃତ୍ତି ଓ ସାମାଜିକ ପରିବର୍ତ୍ତନ ପାଇଁ ସଙ୍କଳ୍ପ ନେଇ 'ନନ୍‌ସେନ୍‌ସ କ୍ଲବ୍' ଗଠନ କରିଥିଲେ, ସେମାନେ ଥିଲେ ଅନ୍ନଦାଶଙ୍କର ରାୟ, ବୈକୁଣ୍ଠନାଥ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଶରତ ଚନ୍ଦ୍ର ମୁଖାର୍ଜୀ । ଓଡ଼ିଆ ସାହିତ୍ୟକୁ ନୂଆରୂପ ଓ ନୂଆରଙ୍ଗରେ ଗଢ଼ି ତୋଳିବେ ଏହି ମହତ୍ ଆକାଂକ୍ଷାରୁ ଅନୁଷ୍ଠାନର ହସ୍ତଲେଖା ମୁଖପତ୍ର 'ଅବକାଶ' ପ୍ରକାଶ ପାଇଥିଲା । ପରବର୍ତ୍ତୀ କାଳରେ ୧୯୩୨ ମସିହାରେ 'ସବୁଜ ସାହିତ୍ୟ ସମିତି' ଜରିଆରେ ମୁଖପତ୍ର ଯୁଗବୀଣା ଆତ୍ମପ୍ରକାଶ କରିଥିଲା ଏବଂ ତାହାରି ସୁଯୋଗ୍ୟ ସମ୍ପାଦକ ଥିଲେ ହରିହର ମହାପାତ୍ର । ସେମାନେ ନିଜକୁ ସବୁଜଗୋଷ୍ଠୀ ରୂପେ ପରିଚିତ କରାଇ ବାସ୍ତବ ପୃଥିବୀରେ ଯୁଗାନ୍ତକାରୀ ପରିବର୍ତ୍ତନ ଆଶା କରି ଏକ ନୂତନ ବିପ୍ଲବ ପାଇଁ ଆହ୍ୱାନ ଦେଇଥିଲେ । ସ୍ୱପ୍ନ, କଳ୍ପନା, ଜୀବନ ଓ ଯୌବନ ପ୍ରତି ଯେତିକି ବିଶ୍ୱସ୍ତ ଥିଲେ, ସାହିତ୍ୟ ମାଧ୍ୟମରେ ସାମାଜିକ ସଂସ୍କାର ସେତିକି ତାଙ୍କର ଲକ୍ଷ୍ୟ ଥିଲା । ଏହି ସବୁଜ ଗୋଷ୍ଠୀର ସାଧକମାନେ ନିଜ ନିଜର ସୃଷ୍ଟି ସଂସାର ମଧ୍ୟରେ ଥାଇ ଏହି ପୃଥିବୀକୁ ଯେପରି ଅନୁଧ୍ୟାନ କରିଛନ୍ତି, ସେହି ଗୁଣରେ ସେମାନେ ମହାନ, କାଳଜୟୀ ।

ଏହି ସବୁଜ ଗୋଷ୍ଠୀର ସର୍ବଶ୍ରେଷ୍ଠ ବିନ୍ଧାଣୀ କାଳିନ୍ଦୀଚରଣ । ଓଡ଼ିଆ ସାହିତ୍ୟର ପ୍ରାୟ ସବୁଦିଗକୁ ଛୁଇଁ ପାରିଥିବାର ଏକ ବିରଳ ବ୍ୟକ୍ତିତ୍ୱ । କବିତା, ଗଳ୍ପ, ଉପନ୍ୟାସ, ନାଟକ, ଆତ୍ମଜୀବନୀ, ପ୍ରବନ୍ଧ ଓ ସମାଲୋଚନା ସୃଷ୍ଟି ତାଙ୍କ ସାହିତ୍ୟ ସାଧନାର ଏକ ଏକ ଅମୂଲ୍ୟ କୀର୍ତ୍ତି । 'ମାଟିର ମଣିଷ' ପରି ଉପନ୍ୟାସର ସୃଷ୍ଟି ତାଙ୍କର ଏକ ଅନନ୍ୟ କୃତି । କେହି କେହି କହନ୍ତି, ଯଦି କାଳିନ୍ଦୀଚରଣ ସେହି ଖଣ୍ଡିଏ ଉପନ୍ୟାସ 'ମାଟିର ମଣିଷ' ରଚନା କରିଥାନ୍ତେ, ତେବେ କାଳବକ୍ଷରେ ସେ ଅମର ରହିଥାନ୍ତେ । ଏହା କହିବାର ତାତ୍ପର୍ଯ୍ୟ ଯେ ତାଙ୍କ ଉପନ୍ୟାସରେ ରହିଛି ସଦୃଢ଼ ଭିତ୍ତିଭୂମି ଓ ସାମାଜିକ ଆବେଦନ । କାଳିନ୍ଦୀଚରଣଙ୍କ ଗଳ୍ପ ଉପନ୍ୟାସ ତାଙ୍କୁ ଯେଉଁ ଉଚ୍ଚାସନ ଦେଇ ପାରିଛି, ନାଟକ କିମ୍ବା ପ୍ରବନ୍ଧ କିନ୍ତୁ ସେହି ଶୀର୍ଷରେ ପହଞ୍ଚାଇ ପାରିନାହିଁ । ତଥାପି ସମସାମୟିକ ସମୟର ପ୍ରାଣସ୍ପନ୍ଦନ ତାଙ୍କ ନାଟକ ଓ ପ୍ରବନ୍ଧରେ

ଅନୁଭୂତ ହୁଏ । ଶତାଧିକ ପ୍ରବନ୍ଧ ରଚନା ଥାଇ ମଧ ପାଠକର ମାନସ ଭୂମିରେ କାଳିନ୍ଦୀଚରଣ ବଞ୍ଚିଛନ୍ତି ଜଣେ କବି ଓ କଥାକାର ଭାବରେ । ମାତ୍ର ଉଚାଙ୍କ ପ୍ରବନ୍ଧ ଓ ସମାଲୋଚନା ସମ୍ପର୍କରେ ଆଶାନୁରୂପ ଆଲୋଚନା ସମ୍ଭବ ହୋଇନାହିଁ । ଯାହା କିଛି ହୋଇଛି ତାହା ମଧ ପୂର୍ଣ୍ଣାଙ୍ଗ ବୋଧହୁଏ ନାହିଁ । ସେହି କାଳଜୟୀ ସାରସ୍ୱତ ସାଧକଙ୍କର ସାହିତ୍ୟ ସମାଲୋଚନାର ଯେଉଁ ବଳିଷ୍ଠ ଦିଗ ରହିଛି, ତାହା ଏଠାରେ ଆଲୋଚନା କରାଯିବାର ଆବଶ୍ୟକତା ଅନୁଭବ କରୁଛୁ । କାଳିନ୍ଦୀଚରଣଙ୍କ ସାହିତ୍ୟ ସମାଲୋଚ଼ନା ରଚ଼ନାର ଆଦ୍ୟ ଉନ୍ମେଷ ଘଟିଥିଲା ରେଭେନ୍‌ସା ମହାବିଦ୍ୟାଳୟର ଛାତ୍ର ଥିବାବେଳେ । ସେ ଯେତେବେଳେ ଆଇ.ଏ. ଶ୍ରେଣୀର ପ୍ରଥମ ବର୍ଷର ଛାତ୍ର, ସେତେବେଳେ 'ଉତ୍କଳ ସାହିତ୍ୟ' ପତ୍ରିକାରେ ବିଶିଷ୍ଟ ଐତିହାସିକ ତଥା ପ୍ରାବନ୍ଧିକ ତାରିଣୀ ଚ଼ରଣ ରଥଙ୍କ ଲିଖିତ ପ୍ରବନ୍ଧ 'କବିଦ୍ୱୟଙ୍କର ସଂସାର ଓ ଜୀବନଚିତ୍ର' ପ୍ରକାଶ ପାଇଥିଲା । ଏହି କବିଦ୍ୱୟ ଥିଲେ ରାଧାନାଥ ଓ ମଧୁସୂଦନ । ପ୍ରକାଶିତ ପ୍ରବନ୍ଧଟି ପାଠ କରିବା ପରେ ତରୁଣ କାଳିନ୍ଦୀଚରଣଙ୍କ ମନରେ ଯେଉଁ ତୀବ୍ର ପ୍ରତିକ୍ରିୟା ପ୍ରକାଶ ପାଇଥିଲା, ତାହାକୁ ପ୍ରତିଷ୍ଠା କରିବାକୁ ଯାଇ ପ୍ରବନ୍ଧର ଯୁକ୍ତି ଓ ବିଚାରକୁ ଖଣ୍ଡନ କରି ସେହି ଶୀର୍ଷକରେ ସମାଲୋଚ଼ନାଟିଏ ସେ 'ଉତ୍କଳ ସାହିତ୍ୟ'କୁ ପ୍ରେରଣ କରିଥିଲେ । ତାହା ମଧ ତାରିଣୀ ଚରଣଙ୍କ ପ୍ରବନ୍ଧ ପ୍ରକାଶର ପରବର୍ତ୍ତୀ ସଂଖ୍ୟାରେ (୨୫/୯-୧୦) ପ୍ରକାଶିତ ହୋଇଥିଲା । ଇତି ପୂର୍ବରୁ କାଳିନ୍ଦୀ ଚ଼ରଣଙ୍କ କୌଣସି ସମାଲୋଚ଼ନା କୌଣସି ପତ୍ରିକାରେ ମଧ ପ୍ରକାଶିତ ହୋଇ ନଥିଲା । ଏ ସଂପର୍କରେ ନିଜ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି'ରେ ସେ କହନ୍ତି ''ମଥୁରା ମଙ୍ଗଳ ସମାଲୋଚ଼ନାରେ ପୁରସ୍କୃତ ହେବା ଆଗରୁ 'ଉତ୍କଳ ସାହିତ୍ୟ' ପାଇଁ ଆଧୁନିକ କବିତାର ଏକ ମୂଲ୍ୟାୟନ କରେ । ତାହା ହେଲା କବିବର ରାଧାନାଥ ଓ ଭକ୍ତକବି ମଧୁସୂଦନଙ୍କ ସାହିତ୍ୟ ପ୍ରତିଭା ସମ୍ପର୍କରେ ଏକ ତୁଳାନାତ୍ମକ ବିଚାର ବିଶ୍ଳେଷଣ ।'' (ପୃ - ୩୫୯) ନୂଆକରି କଲେଜରେ ପାଦ ଥାପିଥିବା ଜଣେ ପ୍ରଥମ ବର୍ଷର ଛାତ୍ର ପ୍ରତି ଏହା କମ୍ ସାହସର କଥା ନୁହେଁ । ଉକ୍ତ ପ୍ରବନ୍ଧରେ କାଳିନ୍ଦୀ ଚ଼ରଣ ତାରିଣୀ ଚରଣଙ୍କର ଯୁକ୍ତି ଓ ମତବାଦକୁ ଖଣ୍ଡନ କରିବା ସହିତ ତାଙ୍କୁ ରାଧାନାଥଙ୍କ କବିତାକୁ ଯଥାର୍ଥ ଭାବରେ ବୁଝି ନ ପାରିଥିବାର ନିନ୍ଦା ମଧ କରିଛନ୍ତି – ''କୌଣସି କବିଙ୍କୁ ସମାଲୋଚ଼ନା କରିବା ପୂର୍ବରୁ ତାଙ୍କର ପାଣ୍ଡିତ୍ୟ ଓ ଜ୍ଞାନ ସଙ୍ଗେ ସଙ୍ଗେ ହୃଦୟର ଚୌଡ଼ା ଦେଖିବା ଉଚ଼ିତ୍'' (ଉତ୍କଳ ସାହିତ୍ୟ, ୨୫/ ୯-୧୦) ଏପରିକି ସେ ତାଙ୍କ ପ୍ରବନ୍ଧରେ ରାଧାନାଥଙ୍କ କବିତ୍ୱର ଜନ୍ମସ୍ଥାନ ହୃଦୟ ବୋଲି ବିଚାର କରିଥିବାବେଳେ ମଧୁସୂଦନଙ୍କ କବିତା ମସ୍ତିଷ୍କ ବା ଜ୍ଞାନରୁ ଉତ୍ପତ୍ତି ଲାଭ କରିଥିବାର ଦର୍ଶାଇଛନ୍ତି । ଏହି 'କବିଦ୍ୱୟଙ୍କ ସଂସାର ଓ ଜୀବନଚିତ୍ର'କୁ ସେ ଏକ ସମାଲୋଚ଼ନା ଭାବରେ ଗ୍ରହଣ କରିଛନ୍ତି ବୋଲି ନିଜ ଆତ୍ମଜୀବନୀରେ ମଧ ପ୍ରକାଶ କରିବାକୁ କୁଣ୍ଠା ବୋଧ କରିନାହାନ୍ତି । ସେ କହନ୍ତି – ''ସୁବିଜ୍ଞ ସଂପାଦକ ସ୍ୱର୍ଗତ ବିଶ୍ୱନାଥ ବାବୁ ପ୍ରବନ୍ଧଟି ପ୍ରକାଶ କରିବା ସଂଗେ ସଂଗେ ନିଜ ମତାମତ ମଧ ଉଲ୍ଲେଖ କରିଥାନ୍ତି ସଂପାଦକୀୟରେ । ତାହା

ମୋର ସମାଲୋଚ଼ନା ହେଲେ ସୁଦ୍ଧା ପ୍ରବନ୍ଧର ମୂଲ୍ୟକୁ କରିପକାଇଛନ୍ତି ବହୁ ଗୁଣିତ'' (ଅଙ୍ଗେ ଯାହା ନିଭାଇଛି (୧୯୭୩, ପୃ-୩୬୧) ଏହାହିଁ କାଳିନ୍ଦୀଚରଣଙ୍କ ସମାଲୋଚ଼କ ଜୀବନର ଏକୁଡ଼ିଶାଳ ।

ଏକ ବିତର୍କିତ ପରିବେଶରୁ ଜନ୍ମନେଇଥିବା କାଳିନ୍ଦୀଚ଼ରଣଙ୍କ ସାହିତ୍ୟ ସମାଲୋଚ଼ନା ଦୀର୍ଘ ଅର୍ଦ୍ଧ ଶତାବ୍ଦୀ ଧରି ଗତିଶୀଳ । ପରବର୍ତ୍ତୀ କାଳରେ ଯେଉଁ ବିପୁଳକାୟ ମୌଳିକ ପ୍ରବନ୍ଧ ଓ ସାହିତ୍ୟ ସମାଲୋଚ଼ନା ସେ ରଚ଼ନା କରିଛନ୍ତି, ସେଥିରୁ ତାଙ୍କୁ ଜଣେ ସଫଳ ପ୍ରବନ୍ଧକାରର ମାନ୍ୟତା ମିଳିଛି ସତ, ହେଲେ ତାଙ୍କ ରଚ଼ିତ ସମାଲୋଚ଼ନାକୁ ସେହି ଗୌରବ ମିଳିନାହିଁ । ତାଙ୍କ ପ୍ରବନ୍ଧଗୁଡ଼ିକୁ ନେଇ ନଅ ଗୋଟି ପୁସ୍ତକ ପ୍ରକାଶିତ । ମଥୁରା ମଙ୍ଗଳ ସମାଲୋଚ଼ନା (୧୯୨୭) ଭକ୍ତକବି ମଧୁସୂଦନ (୧୯୨୮) ସାହିତ୍ୟିକା (୧୯୩୩) ସାହିତ୍ୟ ସମାଚାର (୧୯୩୯), ନେତୃତ୍ୱ ଓ ନେତୃତ୍ୱ (୧୯୪୯) ପ୍ରବନ୍ଧ ସାହିତ୍ୟ (୧୯୬୦ ନୂ.ସଂ.), ସାହିତ୍ୟ ବିଚାର (୧୯୬୫), ସାମୟିକ ସାହିତ୍ୟ ସମୀକ୍ଷା (୧୯୭୨) ଏବଂ Glimpses on Art and literature, Orissa (୧୯୭୬) । ଏତଦ୍‌ଭିନ୍ନ ତାଙ୍କର ଅର୍ଦ୍ଧଶତାଧିକ ମୌଳିକ ପ୍ରବନ୍ଧ, ସମାଲୋଚନା ଓ ସମ୍ପାଦକୀୟ ଯାହା କୌଣସି ପ୍ରବନ୍ଧ ସଂକଳନ ଭୁକ୍ତ ନହୋଇ ବିକ୍ଷିପ୍ତ ଆକାରରେ ବିଭିନ୍ନ ପତ୍ରପତ୍ରିକା ଓ ସଂକଳନରେ ରହିଯାଇଛି । କାଳିନ୍ଦୀ ଚ଼ରଣଙ୍କ ପ୍ରବନ୍ଧ ସାହିତ୍ୟ ସଂପର୍କରେ ଇତିପୂର୍ବରୁ ଡଃ ହେମନ୍ତ କୁମାର ଦାସ, ଡଃ ଅସିତ୍ କବି, ପ୍ରଫେସର ପଠାଣି ପଟ୍ଟନାୟକ, ଡଃ ମଧୁସୂଦନ ପତି, ଡଃ ବାଉରୀବନ୍ଧୁ କର, ଡଃ ଅଜୟ ମିଶ୍ର, ଡଃ ନୃସିଂହ ଷଡ଼ଙ୍ଗୀ ପ୍ରମୁଖ ଆଲୋଚ଼ନା କରିଥିଲେ ହେଁ କେଉଁଠି ଏକ ପୂର୍ଣ୍ଣାଙ୍ଗ ବିଚାର ଆଲୋଚ଼ନାର ଉପଲବ୍ଧ ହୁଏନାହିଁ । ଏହାର ଏକମାତ୍ର କାରଣ ହେଉଛି ପ୍ରବନ୍ଧଗୁଡ଼ିକ ଆଲୋଚକଙ୍କ ନିକଟରେ ସହଜଲବ୍ଧ ହୋଇ ନାହିଁ । ନିକଟରେ 'ଉତ୍କଳ ସାହିତ୍ୟ ସମାଜ' ଦ୍ୱାରା ପ୍ରକାଶିତ 'କାଳିନ୍ଦୀ ଚ଼ରଣ - ସମୀକ୍ଷାୟନ' (୨୦୦୨)ରେ ସ୍ଥାନିତ 'କାଳିନ୍ଦୀଚରଣଙ୍କ ପ୍ରବନ୍ଧର ଭାବବସ୍ତୁ' ପ୍ରବନ୍ଧରେ ସମାଲୋଚ଼କ ଶ୍ରୀ ଦେବେନ୍ଦ୍ର କୁମାର ଦାସ କାଳିନ୍ଦୀଚରଣଙ୍କ ପ୍ରବନ୍ଧର ଯଥାଯଥ ବିଶ୍ଳେଷଣ କରିବାକୁ ଯାଇ ବହୁ ଅନାଲୋଚ଼ିତ ଦିଗ ପ୍ରତି ଦୃଷ୍ଟି ଦେଇଛନ୍ତି, ଯାହା ଅଧିକ ମାତ୍ରାରେ ପ୍ରତି ମୂଲ୍ୟାୟନରେ ସାହାଯ୍ୟ କରିଛି ।

'ମଥୁରା ମଙ୍ଗଳ ସମାଲୋଚ଼ନା' କାଳିନ୍ଦୀଚ଼ରଣଙ୍କ ଦ୍ୱିତୀୟ ସାହିତ୍ୟ ସମାଲୋଚ଼ନା-ମୂଳକ ପ୍ରବନ୍ଧ । ଏହି ନାମକରଣରୁ ପ୍ରବନ୍ଧଟିର ସମାଲୋଚ଼ନାତ୍ମକ ଧାରା ପ୍ରକଟିତ । ୧୯୨୪ ମସିହାରେ ତାଳଚେ଼ର ପ୍ରବନ୍ଧ ପ୍ରତିଯୋଗିତା ପାଇଁ ଏହା ପ୍ରସ୍ତୁତ ହୋଇଥିବାରୁ ତରୁଣ କାଳିନ୍ଦୀ ଚ଼ରଣ ନିଜର ସମସ୍ତ ଜ୍ଞାନ ଗାରିମାକୁ ପ୍ରଦର୍ଶିତ କରିବାକୁ ଚେଷ୍ଟା କରିଛନ୍ତି । ଉକ୍ତ ସମାଲୋଚ଼ନାମୂଳକ ପ୍ରବନ୍ଧର ପ୍ରଥମ ଭାଗରେ କବିତା ସଂପର୍କରେ ଯେଉଁ ତାତ୍ତ୍ୱିକ ଆଲୋଚ଼ନା ଏବଂ ପରେ ପରେ ଶ୍ରୀକୃଷ୍ଣଚ଼ନ୍ଦ୍ରଙ୍କ ସଂପର୍କରେ ଯେଉଁ ସ୍ୱତନ୍ତ୍ର ପ୍ରବନ୍ଧ ଲେଖିଛନ୍ତି, ସେଥିରୁ ଏହାକୁ ସମାଲୋଚ଼ନା ନ କହି ପ୍ରବନ୍ଧ-ନିବନ୍ଧର ସମାହାର କୁହାଯାଇ ପାରିବ ।

ଏଥିରେ ମଧ୍ୟ ରହିଛି କବି ଭକ୍ତ ଚରଣ ଦାସଙ୍କ ଜୀବନ ଦର୍ଶନ । ଏ ସଂପର୍କରେ ଡଃ ମଧୁସୂଦନ ପତିଙ୍କର ମନ୍ତବ୍ୟ ପ୍ରଣିଧାନ ଯୋଗ୍ୟ- ''The young Kalandi, that is to say, offered no merely a competent extended critical introduction but also a rich poetic appreciation, bringing to bear upon the task his entire intellectual and literary equipment, as it were. (Kalindi Charan Panigrahi 2001, Sahitya Akademi, New Delhi, Page-77-78)" ବାସ୍ତବିକ୍ ଓଡ଼ିଆ କବିତା ପ୍ରତି ଥିବା ତରୁଣ ପ୍ରାଣର ପ୍ରତ୍ୟୟବୋଧ ସହିତ କାବ୍ୟିକ ଜିଜ୍ଞାସାର ପ୍ରରିପ୍ରକାଶ ହିଁ 'ମଥୁରା ମଙ୍ଗଳ ସମାଲୋଚନା' ।

ଭକ୍ତକବି ମଧୁସୂଦନ (୧୯୨୮) କାଳିନ୍ଦୀ ଚରଣଙ୍କ ଦୃଷ୍ଟିରେ ପ୍ରବନ୍ଧ ନୁହେଁ, ଏକ ଜୀବନୀ । କାରଣ ୧୯୭୩ ମସିହାରେ ଆତ୍ମ ପ୍ରକାଶ ପାଇଥିବା ଆତ୍ମଜୀବନୀର ଶେଷ ଭାଗରେ ସେ ନିଜ ରଚନାର ଯେଉଁ ତାଲିକା ପ୍ରଦାନ କରିଛନ୍ତି ସେଥିରେ 'ଭକ୍ତିକବି ମଧୁସୂଦନ'ଙ୍କୁ ପ୍ରବନ୍ଧ ପୁସ୍ତକ ପର୍ଯ୍ୟାୟରେ ସ୍ଥାନ ଦେଇନାହାନ୍ତି । ଉକ୍ତ ଗ୍ରନ୍ଥଟି ଏକ ଜୀବନୀ ହୋଇଥିଲେ ହେଁ ତନ୍ମଧ୍ୟରେ କାଳିନ୍ଦୀଚରଣ ମଧୁସୂଦନ ରଚନାବଳୀର ଆକଳନ କରିଛନ୍ତି । ସେ ଗ୍ରନ୍ଥାବଳୀରେ ସ୍ଥାନିତ କବିତାକୁ ଆଭିମୁଖ୍ୟ ଦୃଷ୍ଟିରୁ ପାଞ୍ଚ ଭାଗରେ (ଯଥା - ଶିଶୁ ଗୀତିକା, ବର୍ଣ୍ଣନାତ୍ମକ କବିତା, ଭାବନାତ୍ମକ ସଂଗୀତମାଳା, ଧର୍ମ ଓ ନୀତି ବିଷୟକ, ଅନୁବାଦ ଓ ବ୍ୟଙ୍ଗାଦି ଅନ୍ୟାନ୍ୟ କବିତା) ବିଭକ୍ତ କରି ପ୍ରତିଟି ବିଭାଗ ସଂପର୍କରେ ନିଜସ୍ୱ ଦୃଷ୍ଟିକୋଣରୁ ଆଲୋଚନା କରିଛନ୍ତି । ପୁଣି ମଧୁସୂଦନଙ୍କ କବି ପ୍ରତିଭାର ମୂଲ୍ୟାଙ୍କନ କରିବାକୁ ଯାଇ ସେ କବିବର ରାଧାନାଥଙ୍କ ମାନଦଣ୍ଡରେ ପରିମାପ କରି କହିଛନ୍ତି – ''ରାଧାନାଥ ଉତ୍କଳ ସାହିତ୍ୟକୁ ନୂତନ ଧାରାରେ ତୋଳିଛନ୍ତି । ମଧୁସୂଦନ ସେଥିରେ ଉତ୍କୃଷ୍ଟ ରୁଚିର ପ୍ରବର୍ତ୍ତନ କରିଛନ୍ତି । କବି ବିଚାରରେ ରାଧାନାଥ ମଧୁସୂଦନଙ୍କ ଅପେକ୍ଷା ଯେଉଁଠି ବଡ଼, ରୁଚି ହିସାବରେ ମଧୁସୂଦନ ରାଧାନାଥଙ୍କ ଅପେକ୍ଷା ସେହି ପରିମାଣରେ ଶ୍ରେଷ୍ଠତର ।'' ଦେଖିବାକୁ ଗଲେ 'କବିଦ୍ୱୟଙ୍କ ସଂସାର ଓ ଜୀବନଚିତ୍ର', 'ମଥୁରାମଙ୍ଗଳ ସମାଲୋଚନା' ଓ 'ଭକ୍ତକବି ମଧୁସୂଦନ' ପ୍ରବନ୍ଧ ତ୍ରୟ ସମପର୍ଯ୍ୟାୟର । ପ୍ରାୟତଃ ସବୁଠି କବିର ଜୀବନୀ, ସମସାମୟିକ ପରିବେଶ, ଜୀବନ ଦୃଷ୍ଟି ଓ ସୃଜନ ପ୍ରତିଭାର ବିଶ୍ଳେଷଣ କରାଯାଇଛି ।

କାଳିନ୍ଦୀ ଚରଣଙ୍କ ସାହିତ୍ୟିକା (୧୯୩୩), ସାହିତ୍ୟ ସମାଚାର (୧୯୩୯) ଆଦି ପୁସ୍ତକରେ ସାହିତ୍ୟ ସମାଲୋଚନା ଭଳି ସେମିତି ଉଚ୍ଚକୋଟୀର ରଚନା ସ୍ଥାନିତ ହୋଇନାହିଁ । କଟକ ଷ୍ଟୁଡ଼େଣ୍ଟସ୍ ଷ୍ଟୋର ପୁସ୍ତକ ପ୍ରକାଶନ ସଂସ୍ଥା ଦ୍ୱାରା ପ୍ରକାଶିତ 'କାଳିନ୍ଦୀ ଚରଣ ପ୍ରବନ୍ଧ ସମଗ୍ର' (୧୯୮୬) ଆମ ପାଖରେ ଆଜି ଉପଲବ୍ଧ ହୁଏ । ଉକ୍ତ ଗ୍ରନ୍ଥ ସଂକଳନରେ କାଳିନ୍ଦୀଙ୍କ ପୂର୍ବ ପ୍ରକାଶିତ 'ପ୍ରବନ୍ଧ ସାହିତ୍ୟ', 'ନେତୃତ୍ୱ ଓ ନେତୃତ୍ୱ' ଓ 'ସାହିତ୍ୟ ବିଚାର' ର ୪୪ଟି ପ୍ରବନ୍ଧ ସ୍ଥାନ ପାଇଛି । ଏଥିରୁ ପ୍ରାୟ ଦଶରୁ ଉର୍ଦ୍ଧ୍ୱ ପ୍ରବନ୍ଧ ସମାଲୋଚନାର ନିକଟବର୍ତ୍ତୀ । ମାତ୍ର

ତାହା ସାହିତ୍ୟ ସମାଲୋଚନା ଭାବରେ ଦୁର୍ବଳ ମନେହୁଏ । ହିନ୍ଦୀ, ବଂଗଳା ଓ ଓଡ଼ିଆ ଭାଷା ସାହିତ୍ୟରେ କୃତିତ୍ୱ ଅର୍ଜନ କରିଥିବା ପ୍ରେମଚାନ୍ଦ, ରବୀନ୍ଦ୍ରନାଥ, ଉପେନ୍ଦ୍ରଭଂଜ, ସାରଳାଦାସ, ଫକୀର ମୋହନ, ଗଂଗାଧର, ଯଦୁମଣି, ଆର୍ତ୍ତବଲ୍ଲଭଙ୍କ ଜୀବନୀ ଓ ସାହିତ୍ୟ କୃତିକୁ ଜଣେ ସମାଲୋଚକର ଦୃଷ୍ଟିନେଇ ଆଲୋଚନା କରିଛନ୍ତି କିନ୍ତୁ ଜଣେ ଲେଖକର କୌଣସି କୃତିକୁ ନେଇ ଆଲୋଚନା କରିବାବେଳେ ଯେଉଁ ପ୍ରସ୍ତୁତି ଓ ପାଣ୍ଡିତ୍ୟର ଆବଶ୍ୟକ ଥାଏ, ତାହା ତାଙ୍କ ଅଧିକାଂଶ ସାହିତ୍ୟ ସମାଲୋଚନାମୂଳକ ପ୍ରବନ୍ଧରେ ଲକ୍ଷ୍ୟ କରାଯାଏ ନାହିଁ ।

ଫକୀର ମୋହନଙ୍କ ସାହିତ୍ୟ ସଂପର୍କରେ କାଳିନ୍ଦୀଚରଣ ଦୁଇଗୋଟି ପ୍ରବନ୍ଧ ରଚନା କରିଛନ୍ତି; ଯାହାକୁ ସମାଲୋଚନାର ଅନ୍ତର୍ଭୁକ୍ତ କରାଯାଇ ପାରେ । ଗୋଟିଏ 'ଫକୀର ମୋହନ ପରିକ୍ରମା'ରେ ସ୍ଥାନିତ 'ଫକୀର ମୋହନ ଓ ଓଡ଼ିଆ ଉପନ୍ୟାସ' ଓ 'ଅନ୍ୟଟି କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର'ରେ 'ଫକୀରମୋହନଙ୍କ ଚରିତ୍ର ଚିତ୍ରଣ' । ପ୍ରଥମଟିରେ ଲେଖକ କେବଳ ଫକୀର ମୋହନଙ୍କ 'ଛ' ମାଣ ଆଠ ଗୁଣ୍ଠ'ର କାହାଣୀ ବର୍ଣ୍ଣନା ଓ ଚରିତ୍ରଗୁଡ଼ିକର ନାମୋଲ୍ଲେଖ କରି କିଛି ମତ ଦେଇଛନ୍ତି । ଉକ୍ତ ପ୍ରବନ୍ଧରେ ସେ ଉପନ୍ୟାସ ସଂପର୍କରେ ମତ ଦେଇ କହନ୍ତି "ସମାଜର ସର୍ବାଧୁନିକ ଅର୍ଥନୈତିକ ଅସାମ୍ୟ ଓ ତଜ୍ଜନିତ ଶ୍ରେଣୀ ସଂଘର୍ଷର ଚିତ୍ରକୁ ଯେପରି ସ୍ୱଷ୍ଟତର ଓ ତୀବ୍ରତର ଭାବରେ ଫକୀର ମୋହନ ଫୁଟାଇଛନ୍ତି, ତାହା ତତ୍କାଳୀନ ଓଡ଼ିଆ ସାହିତ୍ୟରେ ଦୁର୍ଲଭ" (ଫକୀରମୋହନ ପରିକ୍ରମା - ପୃ- ୧୨) । ଫକୀର ମୋହନ ସଂପର୍କିତ ଲେଖକଙ୍କର ଦ୍ୱିତୀୟ ପ୍ରବନ୍ଧଟି ଅଧିକ ବିଷୟଗର୍ଭିତ । ଫକୀରମୋହନଙ୍କ ଉପନ୍ୟାସ ଓ ଗଳ୍ପରେ ଯେଉଁ ଚରିତ୍ର ଚିତ୍ରଣ ରହିଛି, ସେ ସଂପର୍କରେ ତାଙ୍କର ମତ ହେଉଛି – "ଇଂରାଜୀ ସାହିତ୍ୟରେ ରାଣୀ ଏଲିଜାବେଥଙ୍କ ସମୟରୁ ଭିକ୍ଟୋରିଆଙ୍କ ଯୁଗ ପର୍ଯ୍ୟନ୍ତ ନାଟ୍ୟକାର ଔପନ୍ୟାସିକ ମାନେ ଭାରତୀୟ ସାହିତ୍ୟର ପୌରାଣିକ ଯୁଗଭଳି ଆଦର୍ଶ ଚରିତ୍ର ଚିତ୍ରଣ ଉପରେ ଅଧିକ ଦୃଷ୍ଟି ଦେଉଥିଲେ । ଫକୀର ମୋହନ ମଧ୍ୟ ସେହି ରୀତି ଅନୁସରଣ କରି ଓଡ଼ିଆ ଉପନ୍ୟାସର ପ୍ରାଣ ପ୍ରତିଷ୍ଠା କରିଛନ୍ତି ।" (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର, ପୃ-୭୭) ମୁଖ୍ୟ ଚରିତ୍ରଠାରୁ ଗୌଣ ଚରିତ୍ର ପର୍ଯ୍ୟନ୍ତ ସେମାନଙ୍କର ଯେଉଁ ସ୍ୱତନ୍ତ୍ର ଦୃଷ୍ଟିଭଙ୍ଗୀ, ତାହା କାଳିନ୍ଦୀଚରଣ ଅନୁଧ୍ୟାନ କରି ଯଥାଯଥ ଭାବରେ ଉପସ୍ଥାପନ କରିବାକୁ ଯତ୍ନବାନ ହୋଇଛନ୍ତି । ଏହି ମର୍ମରେ ଔପନ୍ୟାସିକଙ୍କ ଚରିତ୍ର ଚିତ୍ରଣ ଶୈଳୀକୁ ବିଚାର କରି ସେ ଲେଖିଛନ୍ତି – "ଚରିତ୍ର ବର୍ଣ୍ଣନା ମଧ୍ୟରେ ଯେଉଁସବୁ ବ୍ୟଙ୍ଗ ବିଦ୍ରୂପ ହାସ୍ୟରସ ସୃଷ୍ଟିର ସଂକେତ ବିଦ୍ୟମାନ, ତାହା ଫକୀରମୋହନଙ୍କର ଅନୁକରଣୀୟ ଶୈଳୀ । ଯଥାର୍ଥରେ ଓଡ଼ିଆ ସାହିତ୍ୟରେ ବାସ୍ତବବାଦୀ ଚରିତ୍ର ଚିତ୍ରଣର ଆଧୁନିକ ମୂଳଦୁଆ ପକାଇଛନ୍ତି ଫକୀରମୋହନ । ସମୁଦାୟ ଗ୍ରହ ଉପଗ୍ରହ ସୂର୍ଯ୍ୟ ଚାରିପାଖରେ ପରିକ୍ରମା କଲାଭଳି ଫକୀର ମୋହନଙ୍କ କେନ୍ଦ୍ରସ୍ଥଳ ଗୋଟିଏ । ତାହା ହେଉଛି ଆଲୋକ ଓ ଅନ୍ଧାର, ଆଦର୍ଶ ସମାଜ ଓ ଅମୃତ ଜୀବନ ହିଁ ସେମାନଙ୍କର ଲକ୍ଷ୍ୟ ସ୍ଥଳୀ" (କାଳିନ୍ଦୀଚରଣ ପ୍ରବନ୍ଧ

ସମଗ୍ର, ପୃ-୭୮ ) । ତେବେ ପ୍ରଥମ ପ୍ରବନ୍ଧଟିରେ ଯେଉଁ ଭାବରେ ଜଣେ ସମାଲୋଚକର ଅନ୍ତର୍ଦୃଷ୍ଟି ପ୍ରକାଶିତ ହୁଏ ଦ୍ୱିତୀୟଟିରେ ତାର ଅଭାବ ଦେଖାଦେଇଛି । କେବଳ ଚରିତ୍ର ମାନଙ୍କର ନାମ ଉପସ୍ଥାପନ ଏବଂ କାହାଣୀ ବ୍ୟାଖ୍ୟାନ ମଧ୍ୟରେ ତାହା ସୀମିତ ରହିଛି ।

ଗଙ୍ଗାଧର ମେହେରଙ୍କୁ ଗ୍ରହଣ କରି ମଧ୍ୟ କାଳିନ୍ଦୀଚରଣ ଦୁଇଗୋଟି ପ୍ରବନ୍ଧ ଲେଖିଛନ୍ତି - (୧) ଦିଗବାରଣ ଗଂଗାଧର (୨) କବି ଗଂଗାଧର । ଲେଖକ 'ଦିଗବାରଣ ଗଂଗାଧର'ରେ ଗଂଗାଧରଙ୍କର ଜୀବନୀ, ଜୀବନାଦର୍ଶ ଓ କାବ୍ୟାଦର୍ଶ ସଂପର୍କରେ ଆଲୋଚନା ପରିପ୍ରେକ୍ଷୀରେ ତାହା କିପରି ଆମ ସଂସ୍କୃତିର ସଂରକ୍ଷଣ କ୍ଷେତ୍ରରେ ସହାୟକ ହୋଇଛି ଆଲୋଚନା କରିଛନ୍ତି । ଅପର ପକ୍ଷରେ 'କବି ଗଙ୍ଗାଧର' ପ୍ରବନ୍ଧରେ ଗଙ୍ଗାଧରଙ୍କ କାବ୍ୟକୃତି ଉପରେ ଏକ ଆଲୋଚନା ମାତ୍ର କରିଛନ୍ତି । ତପସ୍ୱିନୀ, ପ୍ରଣୟବଲ୍ଲରୀ, ଇନ୍ଦୁମତୀ, କୀଚକବଧ କାବ୍ୟର ସମ୍ୟକ ଆଲୋଚନା ମାଧ୍ୟମରେ ଗଙ୍ଗାଧରଙ୍କ କବି ପ୍ରତିଭାର ଜୟଗାନ କରିଛନ୍ତି । ''ଭାରତର ତପୋବନ ସଭ୍ୟତାର ମହନୀୟ ପରମ୍ପରା ହିଁ କବି ଗଙ୍ଗାଧରଙ୍କ ସାଧନାର ପ୍ରଧାନ ଉତ୍ସ ଥିଲା । × × × ସେଥି ସଙ୍ଗେ ପ୍ରାଚୀନ ପରମ୍ପରାର ଯାହା କିଛି ଉତ୍କୃଷ୍ଟ, ଜାତୀୟ ଚରିତ୍ରକୁ ସୁସ୍ଥ, ସୁନ୍ଦର, ମଧୁର, ବଳିଷ୍ଠ, ଐଶ୍ୱର୍ଯ୍ୟମଣ୍ଡିତ କରିବା ପାଇଁ ଯାହା କିଛି ଉପାଦେୟ, ତାହାକୁ ହିଁ ସେ ଗ୍ରହଣ କରି ଉଭୟ କାବ୍ୟଧାରା ମଧ୍ୟରେ ଯେଉଁ ସାମଞ୍ଜସ୍ୟର ସନ୍ଧାନ କରିଛନ୍ତି, ତାହା ଅନନ୍ୟ'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର, ପୃ - ୨୩୩) ଉଭୟ ପ୍ରବନ୍ଧକୁ ବିଚାର କଲେ କାଳିନ୍ଦୀଚରଣ ଗଙ୍ଗାଧରଙ୍କ ସମ୍ପର୍କରେ ପରମ୍ପରାଗତ ଆଲୋଚନା ହିଁ କରିଛନ୍ତି ବୋଲି କହିବାକୁ ହେବ ।

'ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମ' ଓ 'ରବୀନ୍ଦ୍ର ଗଳ୍ପର ବିଶେଷତ୍ୱ' ଦୁଇଟି ସମାଲୋଚନାତ୍ମକ ପ୍ରବନ୍ଧ କାଳିନ୍ଦୀଚରଣଙ୍କ ପ୍ରବନ୍ଧ ସମଗ୍ରରେ ସ୍ଥାନିତ । ପ୍ରଥମ ପ୍ରବନ୍ଧରେ ରବୀନ୍ଦ୍ର ସାହିତ୍ୟରେ ବିଶ୍ୱପ୍ରେମକୁ ଅନୁଧ୍ୟାନ କରି ତା'ର ନିର୍ଯ୍ୟାସ ସ୍ୱରୂପ ଲେଖକ କହନ୍ତି – ''ରବୀନ୍ଦ୍ରନାଥ ଏହି ମିଳନର ପୂଜାରୀ । ସକଳ କବି ଓ ଧର୍ମୋପଦେଷ୍ଟା ଯେଉଁ ବିଶ୍ୱମୈତ୍ରୀର ବାଣୀ ଉଚ୍ଚାରଣ କରିଛନ୍ତି, ରବୀନ୍ଦ୍ର ସାହିତ୍ୟର ମର୍ମବାଣୀ ତାହା ହିଁ । ଯେଉଁଠାରେ ବର୍ଣ୍ଣଭେଦ, ଜାତିଭେଦ, ଧନୀ ଓ ଦରିଦ୍ର ଭେଦ, ମୂଲିଆ ଓ ମାଲିକର ଭେଦ, ସବଳ ଓ ଦୁର୍ବଳର ଭେଦ ନିହିତ, ସେହିଠାରେ ହିଁ ଦ୍ୱେଷ, ଈର୍ଷା, ହିଂସା ଓ ସଂଘର୍ଷର ସୂତ୍ରପାତ । ବରୀନ୍ଦ୍ର ରଚନାବଳିରେ ଏହି ଭେଦରାଶିକୁ ମିଥ୍ୟା ଓ ଅବାସ୍ତବ ରୂପେ ପ୍ରମାଣ କରିବାର ଏକ ବିଧିବଦ୍ଧ ମୌଳିକ ପ୍ରଚେଷ୍ଟା ପରିଲକ୍ଷିତ'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର ପୃ - ୭୦) । କାଳିନ୍ଦୀଚରଣଙ୍କ ଦ୍ୱିତୀୟ ପ୍ରବନ୍ଧରେ ରବୀନ୍ଦ୍ରନାଥଙ୍କର ଗଳ୍ପର କେବଳ ଚର୍ଚ୍ଚା ହୋଇଛି । ଉକ୍ତ ପ୍ରସ୍ତୁତିଟି ଆକାଶବାଣୀ କଟକ କେନ୍ଦ୍ର ସୌଜନ୍ୟରୁ ତା ୭ । ୮ । ୫୮ ରିଖ ରବୀନ୍ଦ୍ର ତିରୋଧାନ ଦିବସରେ ପ୍ରଚାରିତ ହୋଇଥିଲା । ଲେଖକ ସମଗ୍ର ବିଶ୍ୱସାହିତ୍ୟ ପ୍ରେକ୍ଷାପଟରେ ରବୀନ୍ଦ୍ର ଗଳ୍ପର ସ୍ଥାନ ନିରୂପଣ କରିଛନ୍ତି । ଗଳ୍ପଗୁଡ଼ିକର ବିଷୟବସ୍ତୁର ଅଭିନବତ୍ୱ ସଙ୍ଗେ ଭାଷା ଓ ବର୍ଣ୍ଣନାର ସାବଲୀଳ ଭଙ୍ଗୀ

ଯେଉଁ ସାମଞ୍ଜସ୍ୟ ରକ୍ଷା କରିପାରିଛି, ତାହା ପ୍ରତି ବିସ୍ମୟ ପ୍ରକାଶ କରି ଲେଖକ କହିଛନ୍ତି – ''ଟଲଷ୍ଟୟ, ଗୋର୍କୀ, ଶେକଫ୍, ଓ' ହେନେରୀ, ବାଲ୍‌ଜାକ୍ କିମ୍ବା ମୋପାଁସା ପ୍ରଭୃତି କ୍ଷୁଦ୍ରଗଳ୍ପ ଜଗତରେ ଯେଉଁ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ଭାରତର ଶ୍ରେଷ୍ଠ ଗାଳ୍ପିକ ରୂପେ ବିଶ୍ୱସାହିତ୍ୟକୁ ରବୀନ୍ଦ୍ରନାଥଙ୍କ ଦାନ ସେହିପରି କିମ୍ବା କେତେକ ସ୍ଥଳରେ ତାଙ୍କ ଅପେକ୍ଷା ଅଧିକ କହିଲେ ଅତ୍ୟୁକ୍ତି ହେବନାହିଁ ।'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର, ପୃ-୨୪୪) ଏହା ସତ୍ତ୍ୱେ ଏହି ଉଭୟ ପ୍ରବନ୍ଧକୁ ସମାଲୋଚନାର ତାତ୍ତ୍ୱିକ ଦୃଷ୍ଟିକୋଣରୁ ବିଚାରକୁ ନିଆଯାଇ ନ ପାରେ । ପ୍ରାନ୍ତୀୟ ବଙ୍ଗଳା ଭାଷାର ମାଇଲ ଖୁଣ୍ଟ ରବୀନ୍ଦ୍ର ସୃଷ୍ଟି ସମୂହକୁ ଅଧ୍ୟୟନ କରିବାର ଯେଉଁ ଗଭୀର ପ୍ରଜ୍ଞା ଓ ଅନ୍ୱେଷାର ଆବଶ୍ୟକତା ଥାଏ, ତାହା ଏହି ପ୍ରବନ୍ଧ ଦ୍ୱୟରୁ ଖୋଜିଲେ ମିଳେନା, ଅବଶ୍ୟ ଆମ ପ୍ରତିବେଶୀ ସାହିତ୍ୟର ଅନୁଶୀଳନ କ୍ଷେତ୍ରରେ କାଳିନ୍ଦୀଚରଣଙ୍କର ଏହା ପ୍ରାଥମିକ ପ୍ରୟାସ, ତେଣୁ ପ୍ରଜ୍ଞା ଓ ଅନ୍ୱେଷାର ଅଭାବ ରହିବ ହିଁ ରହିବ ।

କାଳିନ୍ଦୀଚରଣଙ୍କ 'ହିନ୍ଦୀ ସାହିତ୍ୟ କଥା ସମ୍ରାଟ ପ୍ରେମଚନ୍ଦ', 'ବରିସ୍ ପାସ୍ତରନାକ', 'ଲାବଣ୍ୟବତୀରେ ଉପେନ୍ଦ୍ର ଭଞ୍ଜ', 'ସାହିତ୍ୟ ବଲ୍ଲଭ ଆର୍ତ୍ତବଲ୍ଲଭ', 'ଆଶ୍ଚର୍ଯ୍ୟ ଲେଖକ ଟଲଷ୍ଟୟ', 'ଓଡ଼ିଆ ସାହିତ୍ୟର ପରମ୍ପରା' ପ୍ରଭୃତି ପ୍ରବନ୍ଧ ମାଧ୍ୟମରେ ପ୍ରେମଚନ୍ଦ, ବରିସ୍ ପାସ୍ତରନାକ୍, ଉପେନ୍ଦ୍ର ଭଞ୍ଜ, ଆର୍ତ୍ତବଲ୍ଲଭ, ଟଲଷ୍ଟୟ, ସାରଳା ଦାସ ପ୍ରମୁଖ ଭାରତୀୟ ଓ ପାଶ୍ଚାତ୍ୟ ସାହିତ୍ୟିକଙ୍କ ଜୀବନଦୃଷ୍ଟି ଓ ସାହିତ୍ୟ ସାଧନା ବିଷୟରେ ଆଲୋଚନା ରହିଛି । ଜଣେ ସମାଲୋଚକ ଭାବରେ ସାହିତ୍ୟ ଓ ସାହିତ୍ୟିକଗୁଣକୁ ଯେପରି ଉପଲବ୍ଧି କରିଛନ୍ତି, ତାହାକୁ ସେ ସ୍ୱଭାବ ସୁଲଭ ଶୈଳୀରେ ବ୍ୟକ୍ତ କରିଛନ୍ତି । ହିନ୍ଦୀ ସାହିତ୍ୟର କଥା ସମ୍ରାଟ ପ୍ରେମଚନ୍ଦଙ୍କୁ ଜଣେ ସର୍ବୋତ୍କୃଷ୍ଟ ଲେଖକର ମାନ୍ୟତା ଦେବାକୁ ଯାଇ ହିନ୍ଦୀ ସାହିତ୍ୟର ପ୍ରାଣପ୍ରତିଷ୍ଠାତା ରୂପେ ତାଙ୍କୁ ଉପସ୍ଥାପନ କରିଛନ୍ତି । ଏପରିକି କବି ସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କର ଲାବଣ୍ୟବତୀର ସାହିତ୍ୟିକ ମୂଲ୍ୟ ବିଚାର କାଳରେ ଲେଖକ ତା'ର ଶ୍ରେଷ୍ଠତ୍ୱ ଦାବୀ କରନ୍ତି – ''ଲାବଣ୍ୟବତୀ ଯଥାର୍ଥରେ ବିଶ୍ୱର ସକଳ ଲାବଣ୍ୟର ଏକ ଚରମ ଆଧାର । କେବଳ ଶରୀର ଲାବଣ୍ୟ ନୁହେଁ, ଦେହ, ମନ, ଚରିତ୍ର ଓ ଆତ୍ମାର । ପୁଣି ରୂପ ବର୍ଣ୍ଣନା, ଅନୁରୂପ ଭାଷା ନିର୍ବାଚନ, ଭାବ ପ୍ରକାଶନ ଓ ଉପମା ଅଳଙ୍କାର ଦ୍ୱାରା ରଚନା ଶୈଳୀରେ ଅସାଧାରଣ ସୌନ୍ଦର୍ଯ୍ୟ ଫୁଟି ଉଠିଛି । (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର ପୃ-୬୭)

ସମାଲୋଚକ କାଳିନ୍ଦୀଚରଣଙ୍କ ସମାଲୋଚନା ମଧ୍ୟରେ ରହିଛି ସାହିତ୍ୟ ଇତିହାସ ସମ୍ପର୍କିତ କେତେକ ସୃଷ୍ଟି । 'ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଐତିହାସିକ ଅଭ୍ୟୁତ୍‌ଥାନ' ଏବଂ ପ୍ରାଚୀନ ଓଡ଼ିଆରେ ବ୍ୟଙ୍ଗ ବିଚାର ଦୁଇଟି ଆଲୋଚନା ସାପେକ୍ଷ । ପ୍ରଥମ ପ୍ରବନ୍ଧରେ ସେ ଓଡ଼ିଆ ନାଟକ ଓ ରଙ୍ଗମଞ୍ଚର ଉନ୍ମେଷ ଓ ଉତ୍ତରଣର ଧାରା ପ୍ରଦାନ କରିଛନ୍ତି; ଯାହା ଅଧିକ ତଥ୍ୟାତ୍ମକ ମନେହୁଏ । ଉକ୍ତ ପ୍ରବନ୍ଧଟି ୧୯୫୬ ମସିହା ମାର୍ଚ୍ଚ ମାସରେ ସଙ୍ଗୀତ ନାଟକ ଏକାଡ଼େମୀ ଆନୁକୂଲ୍ୟରେ ଦିଲ୍ଲୀଠାରେ ଅନୁଷ୍ଠିତ ନାଟକ ଚକ୍ରରେ ପଠନ ପାଇଁ ଇଂରାଜୀରେ

ଲେଖାଯାଇଥିଲା । ଏହା ସେହି ପ୍ରବନ୍ଧର ଓଡ଼ିଆ ଅନୁବାଦ । 'ପ୍ରାଚୀନ ଓଡ଼ିଆରେ ବ୍ୟଙ୍ଗ ବିଚାର' ପ୍ରବନ୍ଧଟିରେ ପ୍ରଥମ ପ୍ରବନ୍ଧଭଳି ଗଭୀର ଅନ୍ୱେଷାବୋଧ ନାହିଁ । ଏଥିରେ ବ୍ୟଙ୍ଗ ଓ ହାସ୍ୟର ଆଂଶିକ ଚିତ୍ର ପ୍ରଦାନ କରାଯାଇଛି । କେତେକ ଉଦାହରଣରେ ଏହାକୁ ସୀମିତ ରଖାଯାଇଛି । ତେବେ ଓଡ଼ିଆ ଭକ୍ତି ସଙ୍ଗୀତରେ ବ୍ୟଙ୍ଗ ଓ ହାସ୍ୟରସର ଯେଉଁ ଚଟୁଳ ପ୍ରୟୋଗ ରହିଛି, ତାର ମହତ୍ତ୍ୱ ବିଚାର କରି ସେ କହନ୍ତି – ''ଭକ୍ତି ପ୍ରେମର ପରାକାଷ୍ଠା ଦେଖାଇ ପ୍ରାଚୀନ ଓଡ଼ିଆ କବିମାନେ ଯେଉଁଭଳି ନିର୍ମଳ ଓ ନିର୍ଦ୍ଦୋଷ ବ୍ୟଙ୍ଗ ପରିବେଷଣ କରିଛନ୍ତି, ବିଶ୍ୱ ସାହିତ୍ୟର ଭକ୍ତି ରସାତ୍ମକ ରଚନାବଳୀରେ ତାହା ଅପୂର୍ବ ଓ ଅନନ୍ୟ ବୋଲି ମନେହୁଏ । ଆଧୁନିକ ଭାରତୀୟ ସାହିତ୍ୟର ଶ୍ରେଷ୍ଠ ପୁରୋଧା ରବୀନ୍ଦ୍ରନାଥଙ୍କ ଭକ୍ତିରସାତ୍ମକ ବହୁ ସଙ୍ଗୀତ ଓ ଅନ୍ୟାନ୍ୟ କବିତାରେ କିମ୍ବା ଇଂରାଜୀରେ ନିଉମ୍ୟାନ ଆଦି ସୁପ୍ରସିଦ୍ଧ ପ୍ରାର୍ଥନା ସଙ୍ଗୀତ ରଚୟିତାଙ୍କଠାରେ ସୁଦ୍ଧା ଏରୂପ ବ୍ୟଙ୍ଗ ଦୁର୍ଲଭ ।'' (କାଳିନ୍ଦୀଚରଣ ପ୍ରବନ୍ଧ ସମଗ୍ର, ପୃ - ୨୫୯)

'ସାମୟିକ ସାହିତ୍ୟ ସମୀକ୍ଷା' (୧୯୭୨) ପୁସ୍ତକରେ ସ୍ଥାନିତ ପ୍ରବନ୍ଧ 'ଉପନ୍ୟାସ' ଓ 'ପତ୍ର ପତ୍ରିକା' ଦୁଇଟି କାଳିନ୍ଦୀଚରଣଙ୍କ ସମାଲୋଚନାର ଧାରା ବଜାୟ ରଖିଛି । 'ଉପନ୍ୟାସ'ର ପ୍ରଥମ ଭାଗରେ ଓଡ଼ିଆ ନାଟକ ଓ ଓଡ଼ିଆ ଉପନ୍ୟାସର ସୂଚନା ପ୍ରଦାନ କରିଛନ୍ତି । ତତ୍‌ପରେ ଫକୀର ମୋହନ ସେନାପତିଙ୍କୁ ସାମାଜିକ ପ୍ରଗତିର ଅଗ୍ରଦୂତ ରୂପେ ଅବତାରଣା କରିଛନ୍ତି ଏବଂ ଶେଷରେ ଉପନ୍ୟାସର ଶ୍ରେଣୀ ବିଭାଗ କରି ତାକୁ ଶ୍ଳୀଳ ଓ ଅଶ୍ଳୀଳ ଦୁଇ ଭାଗରେ ବିଭକ୍ତ କରିଛନ୍ତି । ଅପର ପକ୍ଷରେ 'ପତ୍ର ପତ୍ରିକା' ପ୍ରବନ୍ଧରେ ସାହିତ୍ୟ ପତ୍ର ପତ୍ରିକାର ସୂଚନା ପ୍ରଦାନ ଓ ପତ୍ରିକା ସମ୍ପାଦନା କ୍ଷେତ୍ରରେ ରହୁଥିବା ଦୋଷ ତ୍ରୁଟି ସମ୍ପର୍କରେ ଆଲୋଚନା କରାଯାଇଛି ।

କାଳିନ୍ଦୀଚରଣଙ୍କ ପରବର୍ତ୍ତୀ ଇଂରାଜୀରେ ଲିଖିତ ପୁସ୍ତକ "Glimpses on Art and Literature, Orissa" (1976) ରେ ସମୁଦାୟ ନଅଗୋଟି ବ୍ୟାଖ୍ୟାନଧର୍ମୀ ପ୍ରବନ୍ଧ ସ୍ଥାନ ପାଇଥିଲେ ହେଁ Horrors of war in Ancient Oriya Literature, Oriya Dramatic Literature, Modern Trends in Oriya Poetry, Chhau Dance ପରି କେତେକ ପ୍ରବନ୍ଧକୁ ସମାଲୋଚନା ପର୍ଯ୍ୟାୟଭୁକ୍ତ କରାଯାଇପାରେ । ରଚନାଗୁଡ଼ିକ ବିଶେଷତଃ ଟିପ୍‌ପଣୀଧର୍ମୀ ମନେହେଉଥିଲେ ହେଁ ଓଡ଼ିଶାର ସାହିତ୍ୟ, ନାଟକ, କବିତା, ନୃତ୍ୟ ସମ୍ପର୍କରେ ପରିଚିତ କରାଇବା ଉଦ୍ଦେଶ୍ୟରେ ଭିନ୍ନ ଭାଷାଭାଷୀ ପାଠକମାନଙ୍କ ପାଇଁ ରଚିତ । ଏହି ରଚନା ମଧ୍ୟରେ ଲେଖକଙ୍କ ଅନୁସନ୍ଧିତ୍ସୁ ମନୋଭାବର ଅଭାବ ସହିତ ସିଦ୍ଧାନ୍ତର ମଧ୍ୟ ଦୃଢ଼ତା ଅନୁଭବ କରିହୁଏ ନାହିଁ । ବିଶେଷକରି ସାହିତ୍ୟ-ଇତିହାସ ଓ ସାହିତ୍ୟିକଙ୍କ ସମ୍ପର୍କରେ ଲେଖିଥିବା ପ୍ରବନ୍ଧ ମଧ୍ୟରେ ଲେଖକ କେବଳ ପରିଚୟ ପ୍ରଦାନ କରିବା ସାର ହୋଇଛି । ଏହା ବ୍ୟତୀତ ସବୁଜ ସମସାମୟିକ କବିଙ୍କର କାବ୍ୟଭାବନା, ସବୁଜ ଯୁଗର ପୃଷ୍ଠଭୂମି ଓ ଓଡ଼ିଆ

କତିପୟ କବିଙ୍କର କବିତାର ଅନ୍ତର୍ଦୃଷ୍ଟି ସମ୍ପର୍କରେ ସେ ଆଲୋଚନା କରିଛନ୍ତି 'ପ୍ରଥମ ମହାଯୁଦ୍ଧଠାରୁ ଓଡ଼ିଆ କବିତା' ପ୍ରବନ୍ଧ ମାଧ୍ୟମରେ । ଉକ୍ତ ଓଡ଼ିଆ କବିତା ସମ୍ପର୍କିତ ସମାଲୋଚନାଟି ସତ୍ୟବାଦୀ (ନବପର୍ଯ୍ୟାୟ)ରେ ପ୍ରକାଶିତ ହୋଇଥିଲା ।

କାଳିନ୍ଦୀଚରଣ ଥିଲେ ଜଣେ ସୁଯୋଗ୍ୟ ପତ୍ରିକା ସମ୍ପାଦକ । ସେ ବିଭିନ୍ନ ସମୟରେ 'ଭଞ୍ଜ ପ୍ରଦୀପ', 'ମୟୂରଭଞ୍ଜ ଗେଜେଟ୍' ପରି ପତ୍ରିକାର ସମ୍ପାଦନା ଦାୟିତ୍ୱ ତୁଲାଇବା ସହିତ ନିଜ ରଚିତ ପ୍ରବନ୍ଧ ଓ ସମାଲୋଚନାକୁ ପ୍ରକାଶିତ କରାଇଥିଲେ । ୧୯୩୩ ମସିହାରେ ମୟୂରଭଞ୍ଜ ଗେଜେଟ୍‌ର ସହ-ସମ୍ପାଦକ ଭାବରେ ଯୋଗ ଦେଲାପରେ ତାଙ୍କୁ ସମ୍ବାଦଧର୍ମୀ ଓ ସ୍ମୃତିଚାରଣ ଭିତ୍ତିକ ପ୍ରବନ୍ଧ ଲେଖିବାକୁ ପଡ଼ିଥିଲା । ମୟୂରଭଞ୍ଜ ଗେଜେଟ ୩/୨ ଜାନୁୟାରୀ-୧୯୩୪ ସଂଖ୍ୟାରେ ପ୍ରକାଶିତ କାଳିନ୍ଦୀଚରଣଙ୍କ 'ସାଧକ ରାମଚନ୍ଦ୍ର ଆଚାର୍ଯ୍ୟ' ଏକ ସ୍ମୃତିଚାରଣ ଭିତ୍ତିକ ପ୍ରବନ୍ଧ । ଉକ୍ତ ପ୍ରବନ୍ଧରେ ସେ ସାଧକ ରାମଚନ୍ଦ୍ରଙ୍କର ଜୀବନୀ, ଜୀବନଦୃଷ୍ଟି, ସାହିତ୍ୟ ସୃଷ୍ଟି ଓ ଜାତିପ୍ରେମ ସମ୍ପର୍କରେ ଯଥାଯଥ ଉପସ୍ଥାପନ କରିଛନ୍ତି । ଏ ପ୍ରକାର ବ୍ୟକ୍ତିତ୍ୱର ନିରାଜନା ଓ ପ୍ରତିଭାପୂଜା ସମ୍ପର୍କିତ ପ୍ରବନ୍ଧ ରଚନା ତାଙ୍କ ପାଇଁ କମ୍ ଗୌରବର ବିଷୟ ନୁହେଁ । ଏଥି ସହିତ ଉତ୍କଳ ସାହିତ୍ୟ, ନବଭାରତ, ସହକାର, ଭଂଜପ୍ରଦୀପ, ସତ୍ୟବାଦୀ, ଝଙ୍କାର ଆଦି ପତ୍ର ପତ୍ରିକା, 'ସମାଜ'ର ଗୋପବନ୍ଧୁ ବିଶେଷାଙ୍କ, ଗଣକବି ବୈଷ୍ଣବ ପାଣି ସ୍ମରଣିକା, ଗଙ୍ଗାଧର ସ୍ମରଣିକା ପରି ସମସାମୟିକ ସଙ୍କଳନରେ ତାଙ୍କର ବହୁ ଉଚ୍ଚକୋଟୀର ପ୍ରବନ୍ଧ ଓ ସମାଲୋଚନା ମଧ୍ୟ ପ୍ରକାଶିତ । ଆଜି ସେ ସବୁକୁ ଏକତ୍ରିତ କରି ଆଲୋଚନା କରିବା ଶ୍ରମ ଓ ସମୟଭିତ୍ତିକ କାର୍ଯ୍ୟ । ତେବେ ଯାହା ବା ଆମ ହାତ ପାଖରେ ମିଳୁଛି, ତହିଁରୁ ସାହିତ୍ୟ ସମାଲୋଚକ କାଳିନ୍ଦୀଚରଣଙ୍କ କୃତିକୁ ବିଚାର କଲେ ଲେଖକଙ୍କର ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ମିଳେ ।

ସବୁଜଗୋଷ୍ଠୀର ସକ୍ରିୟ ସାଥି କାଳିନ୍ଦୀଚରଣ ମୁଖ୍ୟତଃ ଜଣେ କବି, ଗାଳ୍ପିକ, ଔପନ୍ୟାସିକ, ନାଟ୍ୟକାର ଓ ପ୍ରାବନ୍ଧିକ ଭାବରେ ସମକାଳୀନ ସାହିତ୍ୟରେ ନିଜର ସ୍ଥିତି ଦୃଢ଼ କରିଥିଲେ ମଧ୍ୟ ଓଡ଼ିଆ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ତାଙ୍କର କୃତିତ୍ୱ ଉଲ୍ଲେଖଯୋଗ୍ୟ । ତାଙ୍କ ଦ୍ୱାରା ସଙ୍କଳିତ ବିଭିନ୍ନ ପ୍ରବନ୍ଧ ଗ୍ରନ୍ଥର କେତେକ ପ୍ରବନ୍ଧ ସାହିତ୍ୟ ସମାଲୋଚନା ରୀତିର ବଳିଷ୍ଠ ସ୍ୱାକ୍ଷର ବହନ କରେ । ଓଡ଼ିଆ ସମାଲୋଚନା ସାହିତ୍ୟର ସେ ଚିରସ୍ମରଣୀୟ ହୋଇ ରହିବେ ।



# କାଳିନ୍ଦୀଚରଣଙ୍କ ସୃଷ୍ଟିରେ ସଂସ୍କାରପ୍ରାଣତା

ଡକ୍ଟର ନିରଞ୍ଜନ ସାହୁ

**ପ୍ରଥମ ପ୍ରସଙ୍ଗ :**

ସଂସ୍କାର (ସମ୍+କୃ+ଅ) ଯାହା ଶୋଧନ ବା ଶୁଦ୍ଧତା ବୋଲି ବୁଝାଯାଏ । ଯାହା ପରିଷ୍କରଣ, ନିର୍ମଳୀକରଣ, ଉତ୍କର୍ଷ ସାଧନ ବା ଉନ୍ନତି ବିଧାନ ତଥା ମାର୍ଜନକୁ ବୁଝାଯାଏ । ଶୋଧନ ବା ପତିତ ଅବସ୍ଥାରୁ ଉଦ୍ଧାର ହେଉଛି 'ସଂସ୍କାର' । ଯାହା ଏକ ପରିଶୁଦ୍ଧ ପ୍ରବଣତା ବା ସଂସ୍କୃତ ପରିଶୀଳନ ସଂସ୍କାର କ୍ରମଶୋଧ ବୃତ୍ତି ପ୍ରତିଷ୍ଠିତ ବ୍ୟବସ୍ଥା, ପରଂପରା ଭିତରେ ରହିଥିବା କୁସଂସ୍କାର ଗୁଡ଼ିକୁ ଏଡ଼େଇ ଦେଇ ନବଶୋଧନ ପ୍ରସ୍ତୁତ କରିବା ଏହାର ଅଭିଲକ୍ଷ୍ୟ । ନବ ମନୋଭାବ ନେଇ କୁସଂସ୍କାରବାଦୀ ବ୍ୟବସ୍ଥା ବିରୋଧରେ ସଂଗ୍ରାମ କରେ, କୁସଂସ୍କାର ବିରୁଦ୍ଧରେ ବିପ୍ଳବ କରେ ଜୟଯୁକ୍ତ ହେଲେ ପରଂପରାରୁ ଜନ୍ମନିଏ ନବୀନତା - ଠିକ୍ ସଂବାଳୁଆର ଜୀର୍ଣ୍ଣ ଖୋଷା ଭିତରୁ ରଙ୍ଗୀନ ପ୍ରଜାପତି ଭଳି ।

ସାହିତ୍ୟରେ ସଂସ୍କାର ପ୍ରୟାସ ଏକ ସାମାଜିକ ଆବଶ୍ୟକତା । ଯେଉଁ ସାରସ୍ୱତ ସ୍ରଷ୍ଟା ସମାଜପ୍ରତି ଯେତେ ଅଙ୍ଗୀକାରବଦ୍ଧ, ତାଙ୍କ ସାହିତ୍ୟରେ ସେତେ ପରିମାଣରେ ସଂସ୍କାର ଆଭିମୁଖ୍ୟ ପ୍ରକଟିତ । ଏହି କାନ୍‌ଭାସ୍ ଉପରେ ବରେଣ୍ୟ ସ୍ରଷ୍ଟା କାଳିନ୍ଦୀଚରଣଙ୍କ ସାହିତ୍ୟ ସୃଷ୍ଟିକୁ ଆଲୋଚନା କରାଯାଇପାରେ ।

ରେନେଁସାର ସୂତ୍ରପାତ ସମଗ୍ର ଇଉରୋପରେ ପ୍ରଥମେ ପଞ୍ଚଦଶ ଶତାବ୍ଦୀରେ ସଂଘଟିତ ହୋଇଥିଲା । ଅନୁରୂପ ଭାବରେ ଊନବିଂଶ ଶତାବ୍ଦୀରେ ସମଗ୍ର ଭାରତବର୍ଷରେ ସୂତ୍ରପାତଘଟି ଭାରତରେ ସାମାଜିକ ଜୀବନ, ଜାତୀୟ ଜୀବନ ଓ ସାଂସ୍କୃତିକ ଜୀବନରେ ସଂସ୍କାରିତ ନୂତନ ଚେତନାର ଅଭ୍ୟୁଦୟ ଘଟିଥିଲା । ରେନେଁସା ଏକ ପୁନରଭ୍ୟୁଦୟ । ପାରଂପରିକ ଶିକ୍ଷା ପଦ୍ଧତି ପରିବର୍ତ୍ତେ ପାଶ୍ଚାତ୍ୟ ଶିକ୍ଷାପଦ୍ଧତିର ସୂତ୍ରପାତଘଟି ଭାରତବର୍ଷରେ ଆତ୍ମସମୀକ୍ଷା ବା ଆତ୍ମବିଶ୍ଳେଷଣର ନୂତନ ଆଗ୍ରହ ସୃଷ୍ଟି ହୋଇଥିଲା । ଫଳରେ ମଧ୍ୟଯୁଗୀୟ ରକ୍ଷଣଶୀଳତା ଓ ପରଂପରାକ୍ରମେ ବସାବାନ୍ଧିଥିବା ଅନ୍ଧବିଶ୍ୱାସ, କୁସଂସ୍କାରରୁ ମୁକ୍ତି ପାଇଁ ଜନ୍ମ ନେଇଥିଲା 'ସଂସ୍କାର ଆନ୍ଦୋଳନ' । ମିସନାରୀ ପ୍ରବର୍ତ୍ତିତ ଖ୍ରୀଷ୍ଟଧର୍ମ ରାଜା, ମହାରାଜାମାନଙ୍କର ପୃଷ୍ଠପୋଷକତାରେ ଏ ଦେଶର କୋଣେ ଅନୁକୋଣେ ପ୍ରଚାରିତ ହେଉଥିବାବେଳେ ରାଜା

ରାମମୋହନ ରାୟ ବ୍ରାହ୍ମଧର୍ମ ପ୍ରତିଷ୍ଠା କଲେ । ଯାହାକି ହିନ୍ଦୁମାନଙ୍କର ପବିତ୍ର ଧର୍ମଶାସ୍ତ୍ର ଉପନିଷଦରୁ ଜୀବଧର୍ମର ତତ୍ତ୍ୱସାରକୁ ଗ୍ରହଣ କରି ହିନ୍ଦୁଧର୍ମର ତଥାକଥିତ ରକ୍ଷଣଶୀଳତା ବିରୁଦ୍ଧରେ ପ୍ରଚଣ୍ଡ ବିଦ୍ରୋହ ସୃଷ୍ଟି କରିଥିଲା । ଧର୍ମ ନାମରେ ଧର୍ମାନ୍ଧତା, ଲୋକାଚାର ନାମରେ ଉତ୍ପୀଡ଼ନ, ଦେବତା ନାମରେ ପ୍ରବଞ୍ଚନା ଓ ଶଠତା ପ୍ରଭୃତି ବହୁବିଧ ସାମାଜିକ ଅପଚାର ବିରୁଦ୍ଧରେ ଆନ୍ଦୋଳନର ଉନ୍ମେଷ ଓ ଉତ୍ତରଣ ଘଟିଥିଲା । ତାହାର ପ୍ରତିରୂପ ରୂପାୟିତ ହୋଇଥିଲା ସାହିତ୍ୟରେ । ସଂସ୍କାରପ୍ରାଣତା ଶିଳ୍ପରୂପ ଲାଭ କରିଥିଲା । ବ୍ୟାସକବି ଫକିର ମୋହନ, ବାଗ୍ମୀ ବିଶ୍ୱନାଥ କର, ଜଗନ୍ମୋହନ ଲାଲା, ରାଧାନାଥ, ଗଙ୍ଗାଧର ପ୍ରଭୃତିଙ୍କ ବ୍ୟତୀତ ପରବର୍ତ୍ତୀ ଉତ୍ତର ସାଧକ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କାଳିନ୍ଦୀଚରଣ, ଅନ୍ନଦା ଶଙ୍କର ଓ ବୈକୁଣ୍ଠନାଥ ପ୍ରମୁଖ ସ୍ରଷ୍ଟାଙ୍କ ସୃଷ୍ଟି କାନ୍‌ଭାସକୁ ଉତ୍ତରିତ ହୋଇଛି ।

ସଂସ୍କାର ଆନ୍ଦୋଳନ ମାନବିକ ଚେତନାର ଏକ ବୈପ୍ଳବିକ ଦିଗ । ସ୍ଥାଣୁତ୍ୱକୁ ଆଘାତ କରି ସମାଜର ପ୍ରାଣଧାରାକୁ ଗୀତିମୟତାରେ ଆବେଗ କମ୍ପିତ କରିବା ଏହାର ଲକ୍ଷ୍ୟ । ଯାହା ଅଶିବ, ଯାହା ଅକଲ୍ୟାଣକର ତାର ଅବଲୁପ୍ତି ପାଇଁ ସଂସ୍କାର ଆନ୍ଦୋଳନ ନେଇଛି ବୈପ୍ଳବିକ ଭୂମିକା ।

ସାହିତ୍ୟ, ଚେତନାର ଏକ ଉତ୍ସ ଓ ଉତ୍ତରଣ । ସଂସ୍କାରଲିପ୍‌ସା ଏହି ଚେତନାର ମଧୁକୋଷ । ଯେଉଁଠି ଚେତନାରେ ସଂସ୍କାରଲିପ୍‌ସା ନାହିଁ ସେଇଠି ସର୍ବକାଳିକ ଜୀବନବୋଧ ସାହିତ୍ୟ ହରାଏ । ସାହିତ୍ୟ ଏକ ଜଳପ୍ରବାହ । ନଦୀପରି ତାହା ପ୍ରବହମାନ । ମଣିଷର ଜୀବନ ସେହିପରି ପ୍ରବାହିତ । କାରଣ କୌଣସି ମଣିଷର ଜୀବନ ସ୍ଥାଣୁ ଅଥବା ସ୍ଥିତିଶୀଳ ନୁହେଁ । ସେହିପରି ସମାଜ ସ୍ଥାଣୁ ନୁହେଁ ଅଥବା ସ୍ଥିର ନୁହେଁ । ନଦୀର ପ୍ରବାହପରି ଗତିଶୀଳ । ମୁକ୍ତ-ଅବାଧ ଓ ପ୍ରବହମାନତା ତାର ଧର୍ମ । ଗୋଟିଏ ସ୍ଥିତିରୁ ଆଉ ଗୋଟିଏ ସ୍ଥିତିକୁ । ଗୋଟିଏ ଗଣ୍ଡି ଭିତରୁ ଆଉ ଗୋଟିଏ ଗଣ୍ଡି ଭିତରକୁ ପ୍ରବର୍ତ୍ତିତ । 'ସମାଜ : ପରିବର୍ତ୍ତନ ଓ ବିକାଶ' ପ୍ରବନ୍ଧରେ ଶ୍ରୀ ଚିତ୍ତରଞ୍ଜନ ଦାସ ଲେଖିଛନ୍ତି –''ଆପଣା ଜୀବନ ଓ ଆପଣା ସମାଜକୁ କେବଳ ଗଢ଼ିବାର ଶ୍ରେୟ ମଣିଷର ନୁହେଁ, – ମଣିଷ ହିଁ ଯୁଗେ ଯୁଗେ ନାନା ଆବଶ୍ୟକତାର ଆହ୍ୱାନ ଦ୍ୱାରା ପ୍ରେରିତ ହୋଇ ଆପଣାର ଜୀବନକୁ ଓ ସମାଜକୁ ବଦଳାଇ ଆସିଛି । କୌଣସି ସମାଜ ସ୍ଥିତିଶୀଳ ନୁହେଁ, ସ୍ଥାଣୁ ନୁହେଁ – ଠିକ୍ ଯେପରି କୌଣସି ମଣିଷର ଜୀବନ ମଧ୍ୟ ସ୍ଥାଣୁ ବା ସ୍ଥିତିଶୀଳ ନୁହେଁ । ଆଜି ଯେଉଁ ଜଳପ୍ରବାହକୁ ଆମେ ନଦୀ ବୋଲି କହୁଛୁ, କାଲି ମଧ୍ୟ ତାକୁହିଁ ନଦୀ ବୋଲି କହୁଚୁ । ଅର୍ଥାତ୍ ଆମର କାଲି ଦେଖିଥିବା ନଦୀ ଓ ଆଜି ଦେଖୁଥିବା ମଧ୍ୟରେ ଅବଶ୍ୟ ଏକ ଏକବଦ୍ଧତାର ସୂତ୍ର ରହିଛି । ତଥାପି ନଦୀ ବହିଚାଲିଛି । ନଦୀକୁ ଏକ ସତ୍ୟ ବୋଲି ଗ୍ରହଣ କଲେ ଆମକୁ ତାର ପ୍ରବାହକୁ ମଧ୍ୟ ସତ୍ୟ ବୋଲି ଗ୍ରହଣ କରିବାକୁ ହେବ । ସମାଜ ବେଳକୁ ଠିକ୍ ସେହିପରି । ବର୍ତ୍ତମାନ ଆମ ସମାଜକୁ ଆମେ ଯେଉଁପରି ରୂପରେ ଦେଖିବାକୁ ପାଉଛୁ, ଆବହମାନ କାଳରୁ ଏହା କଦାପି ସେହିପରି ରହି ଆସିନାହିଁ । ନଦୀର

ପ୍ରବାହପରି ଏହା ବହିଚାଲିଛି, ଗୋଟିଏ ସ୍ଥିତିରୁ ଆଉ ଏକ ସ୍ଥିତିକୁ ପରିବର୍ତ୍ତିତ ହୋଇ ଚାଲିଛି ।''

ଏହି ଯୁଗ ଚେତନାର ରସମୟ ଅଭିବ୍ୟକ୍ତି ହେଉଛି ସାହିତ୍ୟ । ସଂସ୍କାର ଆନ୍ଦୋଳନ ସେହି ଯୁଗଚେତନାର ଅଭିବ୍ୟକ୍ତି । ସାହିତ୍ୟର ବିବିଧ ବିଭାଗ ମଧ୍ୟରେ ଏହି ନୂତନ ସଂସ୍କାରଚେତନାଟି ରୂପାୟିତ ଓ ଶୈଳ୍ପିକ ମୁଦ୍ରାରେ କାଳୋତ୍ତୀର୍ଣ୍ଣ ହୁଏ ।

କାଳିନ୍ଦୀଚରଣ ସ୍ୱପ୍ନ ଜୀବନରୁ ସର୍ଜନବୃତ୍ତରେ ଆବଦ୍ଧ ଅଥଚ୍ ପରିବର୍ତ୍ତିତ ପରିପ୍ରେକ୍ଷୀରେ ବାସ୍ତବାୟନ ହେଲା ତାଙ୍କ ସାହିତ୍ୟର ଆଭିମୁଖ୍ୟ । କବି, ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକ ଭାବରେ ତାଙ୍କ ସାହିତ୍ୟର ପରିଧି ପରିବ୍ୟାପ୍ତ । କାଳିନ୍ଦୀଚରଣ ଜୀବନ ଜୀଇଁଥିବା ସମାଜର ବାସ୍ତବ ଦିଗ ପ୍ରତି ଯେତେ ସଚେତନତା ପ୍ରକାଶ କରିଛନ୍ତି, ତାହା ତାଙ୍କ ସାହିତ୍ୟକୁ ଆଚ୍ଛନ୍ନ କରିଛି । ଫଳତଃ ସମାଜ ପ୍ରତି ସେ ହୋଇଛନ୍ତି ପ୍ରତିବଦ୍ଧ । ବୋଧହୁଏ ଏହି ପ୍ରତିବଦ୍ଧତା ହିଁ ତାଙ୍କ ସାହିତ୍ୟରେ ପ୍ରକାଶ କରିଛି ନବ ସଂସ୍କାରବାଦୀ ଆଭିମୁଖ୍ୟ ।

**ଦ୍ୱିତୀୟ ପ୍ରସଙ୍ଗ :**

କବି କାଳିନ୍ଦୀଚରଣ ସବୁଜ କବିଗଣଙ୍କ ମଧ୍ୟରେ ଅନ୍ୟତମ ଅଗ୍ରସାରଥି । କାବ୍ୟରୁ ତାଙ୍କ ସାହିତ୍ୟିକ ପ୍ରତିଭାର ଜନ୍ମ । ସବୁଜଗୋଷ୍ଠୀଙ୍କ ମଧ୍ୟରେ ସେ ଥିଲେ ଅଧିକ ସଚେତନ ଶିଳ୍ପୀ । ସେଥିପାଇଁ ତାଙ୍କ କବିତା ବିଚିତ୍ରବର୍ଣ୍ଣା । ନାନ୍ୟମୁଖୀ ଓ ନୂତନ ଅଭିରୁଚି ପରିପୂର୍ଣ୍ଣ । ଆଧୁନିକ ଚେତନା ପ୍ରତି ଅଧିକ ଉନ୍ମୁଖ କବିପ୍ରାଣ । ସେ ପ୍ରାରମ୍ଭରୁ ସବୁଜଶିଳ୍ପୀ-ରୋମାଣ୍ଟିକ୍, ମାତ୍ର ପରବର୍ତ୍ତୀ କାଳରେ ସେ ମାନବବାଦୀ ଓ ବିପ୍ଳବୀ । ନୂତନ ସଂସ୍କାରବାଦୀ କାବ୍ୟଚେତନାର ବାସ୍ତବବାଦୀ କବି ।

କବି ଜୀବନର ପ୍ରାରମ୍ଭରେ କବି ପରମ୍ପରା ପ୍ରତି ଆସକ୍ତ ଓ ରାଧାନାଥି ରୋମାଣ୍ଟିକ୍ ଚେତନାର ଅନୁପ୍ରାଣିତ ସ୍ୱର ତଥା ରୂପପ୍ରାଣ । ବିରହୀଯକ୍ଷ, ରଜ, ଅର୍ଥସ୍ୱପ୍ନ, କବିର ବ୍ୟଥା, ଲୋହିତ ବ୍ୟଥା ଓ ସବୁଜ କବିତା ପ୍ରଭୃତି କବିତାରେ ରୋମାଣ୍ଟିକ୍ ସ୍ୱପ୍ନପ୍ରବଣତାର ଚିତ୍ର ରହିଛି । ମାତ୍ର 'ପୁରୀ ମନ୍ଦିର' (୧୯୨୭) କବିତାରୁ ତାଙ୍କ କାବ୍ୟସ୍ୱର ବ୍ୟତିକ୍ରମ । ଏଥିରେ ପ୍ରଥାସିଦ୍ଧ ରୂପପ୍ରାଣ ମନନରେ ସଂସ୍କାର ଆସିଛି । କାଳିନ୍ଦୀଚରଣ ସବୁଜ ବିଚ୍ଛିନ୍ନ ହୋଇ ଉଠିଛନ୍ତି । ନୈରାଶ୍ୟ ଚେତନା ବା ବିଷାଦବାଦୀ କାବ୍ୟସ୍ୱର ଶରତ ଆକାଶରୁ ଚଲାବଉଦ ପରି ଭାସିଯାଇଛି । ମାଟି ପ୍ରତି ସମସ୍ତ ମମତା ସାନ୍ଦ୍ର ହୋଇ ଉଠିଛି । ସେ ବିପ୍ଳବୀ କବି । ସୁସ୍ଥ ଅଙ୍ଗୀକାରବଦ୍ଧ କବି । ବାସ୍ତବବାଦୀ କବି । ମନ ଓ ଚରିତ୍ରରେ ସେ ହୋଇଉଠିଲେ ଶୁଦ୍ଧ ବିପ୍ଳବୀ-କମ୍ୟୁନିଷ୍ଟ । କାଳିନ୍ଦୀଚରଣଙ୍କ ଆତ୍ମଜୀବନୀ 'ଅଙ୍ଗେ ଯାହା ନିଭାଇଛି'ର ପରିଶିଷ୍ଟରେ ରାମକୃଷ୍ଣ ପତିଙ୍କ ବକ୍ତବ୍ୟ ହେଉଛି – ''ଜଣେ ଯଥାର୍ଥ ଶିଳ୍ପୀ ସ୍ୱଭାବତଃ କମ୍ୟୁନିଷ୍ଟ ନ ହୋଇ ଆଉ କିଛି ହୋଇ ନପାରେ ।'' ତେଣୁ କାଳିନ୍ଦୀଚରଣଙ୍କ କବି ମାନସ ସବୁଜପର୍ବରୁ ଉତ୍ତୀର୍ଣ୍ଣ

ହୋଇଛି । ଚଳିଷ୍ଣୁ ମନ ପ୍ରଗତିଶୀଳ ହୋଇଛି । ରଙ୍ଗ ବିହ୍ୱଳ-ରୂପପ୍ରାଣ-କଳ୍ପନା ପ୍ରବଣତାରୁ କବିପ୍ରାଣ ଭୂମି ସ୍ପର୍ଶ କରିଛି । ମେଦିନୀର ଆହ୍ୱାନ-ମାଟି ମଣିଷର ପୀଡ଼ିତ ପ୍ରାଣ ହୋଇ ଉଠିଛି କାବ୍ୟସ୍ୱର । ମାଟିପ୍ରତି ଅପୂର୍ବ ମର୍ତ୍ତ୍ୟପ୍ରେମରେ ତାଙ୍କ କାବ୍ୟିକ ଉତ୍ତରଣ ଘଟିଛି । ସେ ପ୍ରାଣଭରି ଭଲ ପାଇଛନ୍ତି ମାଟିକୁ ଆଉ ଶ୍ରଦ୍ଧା କରିଛନ୍ତି ରକ୍ତମାଂସର ମୁକ୍ତ ଜୀବନକୁ । ମାଟି ଓ ମାଟିର ଜୀବ ହୋଇଉଠିଛନ୍ତି ସ୍ରଷ୍ଟାପ୍ରାଣର ସ୍ନେହ ସଦନ । ନିପୀଡ଼ିତ ପ୍ରାଣର ଭାଷା ଓ ହସକାନ୍ଦର ଶୋଧନ ଜୀବନ ହୋଇଉଠିଛି ତାଙ୍କର କବିତା ଶିଳ୍ପର ଭାଷା ଓ ଆତ୍ମା । କବି ଲେଖିଛନ୍ତି –

''ଯେ ବାଣୀ ଛୁଇଁନି –
ଗୋଟିଏ ଜାତିର କୋଟିଏ ବୁକେ
ସେ ବାଣୀ ମୋହର
ନ ହେଉ ଗୋଚର ନ ଆସୁ ମୁଖେ । (ମୋ ବାଣୀ)

୧୯୩୫ ମସିହାରେ କାଳିନ୍ଦୀଚରଣଙ୍କ ପ୍ରିୟ ଅନୁଜ ଶ୍ରୀ ଭଗବତୀ ଚରଣ ପାଣିଗ୍ରାହୀ 'ନବଯୁଗ ସାହିତ୍ୟ ସଂସଦ' ପ୍ରତିଷ୍ଠା କରନ୍ତି । 'ସବୁଜ ସାହିତ୍ୟ ସଂସଦ' ବିପକ୍ଷରେ ଏହି ସଂସଦ ସର୍ତ୍ତହୀନ ଯୁଦ୍ଧ ଘୋଷଣା କରିଛି । ମୁଖପତ୍ର 'ଯୁଗବୀଣା' ବିରୁଦ୍ଧରେ 'ଆଧୁନିକ' ସ୍ୱପ୍ନ ପ୍ରବଣତାର ସମସ୍ତ ଜଡ଼ତାକୁ ଭାଙ୍ଗିଦେଇଛି । ସବୁଜ ସ୍ୱପ୍ନରୁ କାଳିନ୍ଦୀଙ୍କର ମନନ ଓ ଚିନ୍ତନ ସଂସ୍କାରମୁଖୀ ଓ ଶୁଦ୍ଧ ବିପ୍ଳବୀର ସ୍ୱର ନେଇ ନବୀନ କାବ୍ୟସ୍ୱରର ଉତ୍ତରଣ ଘଟିଛି । ସରଳ-ସବୁଜ ମନଟି କମ୍ୟୁନିଷ୍ଟ-ବିପ୍ଳବୀ ହୋଇଉଠିଛି । ନବୀନ ଓ ଶୁଦ୍ଧ କଥା କହିବାରେ ପ୍ରଗଳ୍ଭ ହୋଇଉଠିଛି । ଜଣେ ସଚ୍ଚା ମାର୍କସୀୟ କବି ଭାବରେ କାବ୍ୟିକ ପ୍ରତିକ୍ରିୟା ପ୍ରକାଶ କରିଛନ୍ତି । ଜୀବନ୍ତ ମଣିଷ ହିଁ ଦେବତା, ତା'ର ଉପାସନା କରିବା ପାଇଁ ଆହ୍ୱାନ ଜଣାଇଛନ୍ତି । ଦେବତା ନୁହେଁ - ମଣିଷ ହିଁ ଦେବତାର ପ୍ରତିରୂପ । କାଠ ପଥରର ଦେବତା ପ୍ରତି ଅହେତୁକ ମମତା ପ୍ରତିବଦଳରେ ଜୀବନ୍ତ ମଣିଷ ପ୍ରତି ମମତ୍ୱବୋଧ ପ୍ରକାଶ କରିବା ପାଇଁ ସେ ଆଶାନ୍ୱିତ ଆହ୍ୱାନ ଶୁଣାଇଛନ୍ତି । ପୁରୀ ମନ୍ଦିର, ପ୍ରତିମା, ବିଦାୟ ଭଗବାନରେ ଏହି ସଂସ୍କାରିତ ସ୍ୱର ଶୁଣାଇଛନ୍ତି । ବିଦାୟ ଭଗବାନ କବିତାରେ କବି ସିଧା ସଳଖ ସେଇ କାଳ୍ପନିକ ଭଗବାନଙ୍କ ପ୍ରତି ଅବିଶ୍ୱାସ ପ୍ରକଟ କରିଛନ୍ତି । ଯୁଗ ଯୁଗର ପ୍ରତିଷ୍ଠିତ ଗତାନୁଗତିକ ଭଗବଦ୍ ବିଶ୍ୱାସ ପ୍ରତି ଶ୍ଳେଷାତ୍ମକ କଟାକ୍ଷ କରିଛନ୍ତି । ଭଗବଦ୍ ବିଶ୍ୱାସ ପ୍ରତି କବିଙ୍କର ଶାଣିତ ଶ୍ଳେଷ ନିଶ୍ଚିତ ଭାବରେ ସଂସ୍କାର କାବ୍ୟସ୍ୱର । ଯୁଗଚିନ୍ତାର ପ୍ରତିଧ୍ୱନି, ନବୀନ ଶୋଧନ ମନୋବୃତ୍ତିର ପରିଚୟ ।

ପ୍ରଫେସର ନିତ୍ୟାନନ୍ଦ ଶତପଥୀ ତାଙ୍କର 'ସବୁଜରୁ ସାଂପ୍ରତିକ' ଗ୍ରନ୍ଥରେ ଲେଖିଛନ୍ତି – ''ନବଯୁଗର ଚେତନାର ବାହକ ଭାବେ ସେ ଯେତିକି ପ୍ରଗତିପନ୍ଥୀ, ପ୍ରାଚୀନ ବିଶ୍ୱାସର ପ୍ରବହମାନସ୍ୱରର ପରିପୋଷକଭାବେ ସେ ସେତିକି ପରମ୍ପରାବାଦୀ । ବସ୍ତୁତଃ କାଳିନ୍ଦୀଙ୍କ ଚିନ୍ତାମାନସର ଏହି ଦ୍ୱନ୍ଦ୍ୱ ସମସାମୟିକ ଯୁଗସନ୍ଧିର ଓ ସଙ୍କଟମୟ ସମୟର ।''

'ଜୟ ଭଗବାନ' କବିତାଟି କାଳିନ୍ଦୀଚରଣ କାବ୍ୟ-ମାନସର ଏକ ସାର୍ଥକ ପରିପ୍ରକାଶ । ଏଥିରେ ବିଦ୍ରୂପର ସ୍ୱରଟି ସୁସ୍ପଷ୍ଟ । ଯୁଦ୍ଧଖୋର ରାଷ୍ଟ୍ରନାୟକଙ୍କୁ ଭଗବାନ ଆଖ୍ୟା ଦେଇ କବି ବିଦ୍ରୂପ କରିଛନ୍ତି । କବି ଲେଖିଛନ୍ତି –

''ଧଳା ମଣିଷର ଭଗବାନ ଯେହୁ
କଳାର ସେ ସଏତାନ
ଇଟାଲି ଦେଶର ଭଗବାନ ଖାଏ
ଆବିସିନିଆର ପ୍ରାଣ ।
× × × × × × ×
ଅବଳା କୁଳର ଦେବତା ରୂପରେ
ପୁରୁଷ ବୋଲାଏ ରାଜା
ଭଗବାନ ନାମେ ସବଳ ପିଉଛି
ଦୁର୍ବଳ ଲହୁ ତାଜା ।
ଆଇନ ତଳରେ କେଉଁ ସତୀ କହ
ନ କରେ ବେଶ୍ୟାପଣ
କେଉଁ ଘରେ ନାରୀ ନିଜତ୍ୱ ବିକି
ନ କିଣେ ପୁରୁଷ ମନ ?
କେଉଁ ମନ୍ଦିରେ ନ ଜଳଇ କହ
ହିଂସାର ମହାଦୀପ
ଦେବତାର ଅବତାର ନୋହେ କେଉଁ
ସମାଜର ପୁରୋହିତ ?'' (ଜୟ ଭଗବାନ)

'ଜୟ ଭଗବାନ' କବିତାଟି ଏକ ବିପ୍ଳବାତ୍ମକ ସଫଳ କବିତା । ରାଷ୍ଟ୍ର ନାୟକ ଭଗବାନ ସାଜୁଛି, ମନ୍ଦିରରେ ହିଂସାର ମହାଦୀପ ଜଳୁଛି । ଆଇନ୍ ତଳେ ସତୀନାରୀ ବାରାଙ୍ଗନା ସାଜୁଛି, ନାରୀ ନିଜତ୍ୱକୁ ବିକି ପୁରୁଷର ମନ କିଣୁଛି । ଦେବତାର ମଧ୍ୟସ୍ଥ କରି ପୁରୋହିତ ସରଳ ଭକ୍ତକୁ ପ୍ରଲୁବ୍ଧ କରି ସମାଜକୁ ନିୟନ୍ତ୍ରଣ କରୁଛି; ବିଚାରପତି ଅର୍ଥର ଦାସ ହେଉଛି, ବିଚାରାଳୟ ସତ ମିଛରେ ଓ ଧଳା କଳାରେ ପରିଣତ ହୋଇଛି । ଭଗବାନ ନାମରେ ସବଳ ଦୁର୍ବଳକୁ ଶୋଷଣ କରୁଛି ଆଦିର ସଂସ୍କାର ଚାହିଁଛନ୍ତି କବି । ସମସ୍ତ ରାଷ୍ଟ୍ରନାୟକ ମନୋବୃତ୍ତିକୁ କବି ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି । ବିଦ୍ରୂପାତ୍ମକ ଶୈଳୀରେ ସମାଜର ସଂସ୍କାର କବି ଚାହିଁଛନ୍ତି । ସେହିପରି 'ଯାଦୁଘର' କବିତା କାଳିନ୍ଦୀ କାବ୍ୟ ମାନସର ଆଉ ଏକ ସଫଳ କବିତା । ବିଦ୍ରୂପର ତୀବ୍ର ସ୍ୱର ଏଥିରେ ଅଭିବ୍ୟଞ୍ଜିତ । ଏକ ଶୁଦ୍ଧ ସମାଜ ବା ସଂସ୍କାର କବି ଚାହିଁଛନ୍ତି । ଏକ ଶୋଧନ ସମାଜବ୍ୟବସ୍ଥା ପାଇଁ କବି ଚିନ୍ତାଧାରାରୁ ସୁସ୍ପଷ୍ଟ ହୋଇ ଉଠିଛି । ପ୍ରକୃତ ପରିବର୍ତ୍ତିତ

ସମାଜର ଚେହେରାକୁ ଦେଖିବାକୁ କବି ଚାହିଁଛନ୍ତି । ସେଥିପାଇଁ କବି ବ୍ୟଙ୍ଗ-ବିଦ୍ରୂପ କରିଛନ୍ତି । କବିଙ୍କ ଭାଷାରେ –

''ଧର୍ମ ରଖିଛି ଧରି ଜଗତକୁ ଶୁଣିଲି ବ୍ୟାଖ୍ୟା ବହୁ
ଖୋଜିଲି ଶାସ୍ତ୍ର ଧରିବାକୁ ଏତେ ଧର୍ମ ମଧୁର ମହୁ ।
ଜଡ଼ ଅକ୍ଷର ଭିତରେ ଜଡ଼ିତ ଆଚାର ନିୟମ ଥୋଡ଼ା
ନ ପାଇଲି ଖୋଜି ଅଛି ଅବା ତହିଁ ଆଉ କେଉଁ ହାତୀ ଘୋଡ଼ା
ନଗରେ ନଗରେ ପଥେ ଜନପଦେ ଧର୍ମ ଦେଖିବା ପାଇଁ
ହାତ ବଢ଼ାଇଲି ଧରିବି ବୋଲି ମୁଁ ପୁଛିଲଇଁ କେତେ କାହିଁ !
ଦେଉଳେ ଦେଖିଲି ଧର୍ମ ଯା' ଅଛି ଗୀର୍ଜାରେ ସେତ ଆନ
କିଏ ଅବା ଛେଳି କିଏ ପୁଣି ଗୋରୁ କାଟିବା ପାଇଁ କି ଥାନ
କିଛି ନ କାଟିବା ପାଇଁ ଯେଉଁଠାରେ କହିଲେ ଧର୍ମଗୁରୁ
ଲକ୍ଷ୍ୟ ସେଠାରେ ମଣିଷର ବେକ ମଣିଷର ପାଦ ଉରୁ !
× × × × × × ×
ବୁଦ୍ଧ ଯୀଶୁର ମନ୍ତ୍ର କାହିଁ ବା କାହିଁ ମହମ୍ମଦ ଖୋଦା ?
ସବୁ ଦିଅଁ ଆଜି ବଳି ଲୋଡ଼ିଲେଣି ମଣିଷ ହୋଇଛି ବୋଦା ! (ଯାଦୁଘର)

ଧର୍ମନାମରେ ଭଣ୍ଡାମିର ସଂସ୍କାର କବି ଚାହିଁଛନ୍ତି । ଅଯଥା ଜଡ଼ ଅକ୍ଷରର ଶାସ୍ତ୍ର ବଚନ କହି ଧର୍ମର ଡିଣ୍ଡିମ ପିଟିଲେ ତାହା ଧର୍ମ ହୋଇଯାଏ ନାହିଁ । ଧର୍ମର ପ୍ରକୃତ ମର୍ମ ଖୋଜିବାକୁ କବି ଆହ୍ୱାନ ଜଣାଇଛନ୍ତି । ପ୍ରତି ମଣିଷ ପାଖରେ ଧର୍ମ ଭିନ୍ନ ହୋଇଯାଇଛି । ଏହା ଏକ ମସ୍ତବଡ଼ ବିଘଟଣ । ମନ୍ଦିର ଧର୍ମ ଗୀର୍ଜାରେ ନାହିଁ । ଗୀର୍ଜାର ଧର୍ମ ମନ୍ଦିରରେ ଭିନ୍ନ । ଏହା ଏକ ଅଧଃପତିତ ସମାଜ ବ୍ୟବସ୍ଥାର ଚିତ୍ର । ଧର୍ମପୀଠଗୁଡ଼ିକ ଛେଳି ଅବା ଗୋରୁ କଟା ସ୍ଥଳୀରେ ରୂପାନ୍ତରିତ ହୋଇଛି । ଅନ୍ୟ କେଉଁଠାରେ ଛେଳି / ଗୋରୁ ବଦଳରେ ମଣିଷ କଟା ହେଉଛି । କବି ବୈପ୍ଳବିକ ବାଣୀ ଶୁଣାଇଛନ୍ତି । ବୈପ୍ଳବିକ କାବ୍ୟିକ ସ୍ୱର ସଂସ୍କାର ପାଇଁ ପ୍ରୟାସୀ ହୋଇ ଉଠିଛି ।

'ଛୁରୀଟିଏ ଲୋଡ଼ା' କାଳିନ୍ଦୀ କାବ୍ୟ ମାନସର ଆଉ ଏକ ବୈପ୍ଳବିକ ଉଚ୍ଚାରଣ । ମଣିଷର ମନକୁ କବି ଖୋଜିଛନ୍ତି । ମଣିଷ ପ୍ରତି କବି ଆସକ୍ତ । ପରଶ୍ରୀକାତର, ସ୍ୱାର୍ଥପର ମଣିଷ ନୁହେଁ ସଚ୍ଚା ବନ୍ଧୁତା ପ୍ରତି କବିଙ୍କ ସଂସ୍କାରିତ କାବ୍ୟ ମାନସ ଅଭିଳଷିତ । ମାନବିକ ପ୍ରେମ ପ୍ରତି କବିଙ୍କ ସଂସ୍କାରିତ ମାନସ ପ୍ରତିଶ୍ରୁତିବଦ୍ଧ ହୋଇ ଉଠିଛି; ଯାହା ଫଳରେ ସମଗ୍ର ଜାତିର ପ୍ରାଣ ଗଠିତ ଓ ପରିପୁଷ୍ଟ ହୋଇପାରିବ । ସେହିପରି ଧର୍ମରେ ଦୀକ୍ଷିତ ତାଙ୍କର

ଅନ୍ୟାନ୍ୟ କବିତା ଭିତରେ ଜୀବନର ସ୍ପର୍ଶ, ଦେବତା ମଣିଷ, ବାଜିରାଉତ, ବନ୍ଦୀ ସୈନିକ, ଆଗାମୀ, କିଏ ଶଳା ସଇତାନ ପ୍ରଭୃତି ଉଲ୍ଲେଖଯୋଗ୍ୟ । ଏକ ବାସ୍ତବ ସମାଜବାଦୀ ଚେତନାର କବିତା ହେଉଛି 'ଆଗାମୀ' । ଉଗ୍ର ସାମ୍ୟବାଦୀ ଭାବଧାରାର ରୂପ ଦେବାକୁ କବି ଚାହିଁଛନ୍ତି । ଏଥିରେ ସମାଜ ଓ ଜୀବନ ପ୍ରତି ରହିଛି ସଂସ୍କାରପ୍ରାଣ ବିପ୍ଳବର ପଦଧ୍ୱନି । ଦ୍ୱିଧାହୀନ, ଶଙ୍କାହୀନ ସୁସ୍ଥ ଓ ଶୁଦ୍ଧ ସମାଜର ପରିକଳ୍ପନା କରି କବି କାଳିନ୍ଦୀଚରଣ ଲେଖିଛନ୍ତି –

''କବିତା ଗଢ଼େଁ ଏକ ବିରାଟ ସମାଜର
ସବୁରି ପାଇଁ ଯହିଁ ବଖରେ ହେଲେ ଘର
ସକଳେ ଲଭିବାକୁ ମୁଠାଏ ଦୁଧଭାତ
ଯୋଗ୍ୟ ଯେତେ ଯହିଁ ବାଳକ ବାଳିକା ତ
× × × × ×
କହିବା ପାଇଁ କଥା ସବୁରି ଦାବି ଅଛି
ମୁଁ ସେହି ସମାଜର କବିତା ବସେଁ ରଚି ।
× × × × ×
କବିତା ରଚେଁ ପୁଣି ନୂତନ ଧର୍ମର
ପୁରୋଧା ହୁଏ ଯହିଁ ବିଶ୍ୱେ ଅପାମର
କାହାରି ସେ ଧରମେ ନାହିଁଟି ତିଳେ ଦାବି
ପଡ଼ିବ ମଥାକୋଡ଼ି ମରିବ ଭୟେ ଭାବି !
× × × × × ×
ମିଛରେ ଗଢ଼ା ଯାହା ପଡ଼ିବ ଯେବେ ଭାଜି
ଆଗାମୀ ସେ କାଳର କବିତା ରଚେଁ ଆଜି । (ଆଗାମୀ)

ଦୂରଦ୍ରଷ୍ଟା କବି କାଳିନ୍ଦୀଚରଣ । ଏକ କୁସଂସ୍କାରମୁକ୍ତ ସମାଜବାଦୀ ଓ ସାମ୍ୟବାଦୀ ସମାଜର ସଂଜ୍ଞା ନିର୍ଦ୍ଦିଷ୍ଟ କରିଛନ୍ତି । କବି କାଳିନ୍ଦୀ କାବ୍ୟ ମାନସର ଏକ ସଂସ୍କାରିତ ଉଗ୍ର କାବ୍ୟ ମାନସର ବୈପ୍ଳବିକ ଉଚ୍ଚାରଣ ହେଉଛି – 'କିଏ ଶଳା ସଇତାନ' । କବି ପାଲିସ ବିହୀନ ସ୍ଫୁଲିଙ୍ଗ ଟୋକିଛନ୍ତି । କାବ୍ୟ ସ୍ୱର ନରମ ଅବା ଶିଥିଳ ନୁହେଁ ବରଂ ଅଧିକ ଉଗ୍ର ଓ ସଂସ୍କାରିତ । ଶୋଷିତ ମଣିଷ ପାଇଁ ମାନବିକ ସମ୍ବେଦନଶୀଳତା ଓ ଶୋଷକମାନଙ୍କ ପାଇଁ ପ୍ରକାଶ ପାଇଛି ବୈପ୍ଳବିକ ସ୍ୱର । କବି ଲେଖିଛନ୍ତି –

''ଜନ୍ମ ଆମର ମଣିଷ କୁଳରେ
ନାହିଁ ଇଜ୍ଜତ ମାନ

ଆମ ଝିଅ ବୋହୂ ସବୁରି ଶାଳୀହେ
ଆମେ ଶଳା ସଇତାନ !
ବର୍ଷା ଖରାରେ ସତ୍ତୁଁ ଶୁଖୁଁ ଆମେ
ଯାହା ପାଇଁ ଟେକି ଛାତି ।
ନିଜ ଘରେ ଡାକିଆଣୁଁ ଅନ୍ଧାର
ଯାହା ପାଇଁ ଜାଳି ବତୀ
ଯାହା ପିଲା ପାଇଁ ଭୋଜନ ସଜାଡୁଁ
ନିଜ ପିଲା ମାରି ଭୋକେ
ହଜୁର ମଣିମା ସା'ନ୍ତ ସେମାନେ
ଆମେ ବଜାତ ଲୋକେ । (କିଏ ଶଳା ସଇତାନ)

'ଛୁରୀଟିଏ ଲୋଡ଼ା' କବିତାରେ କବି ସ୍ୱପ୍ନାଲୋକରୁ ଫେରିଲା ପରି ଫେରିଛନ୍ତି । 'ପୁରୀ ମନ୍ଦିର' କବିତାରେ ଯେପରି ଭାବନା ସେହି ଭାବନା 'ଛୁରୀଟିଏ ଲୋଡ଼ା'ରେ ଉତ୍ତୀର୍ଣ୍ଣ ହୋଇଛି । କବି ସାହାସାଥୀହୀନ ମନେ କରିଛନ୍ତି । ତେବେ କବି ନିବିଡ଼ ନିରାଶାରେ ଦେବତା ପାଶରୁ ଫେରିଛନ୍ତି ଓ ମଣିଷ ପାଇଛନ୍ତି । ମାଟି ଓ ମଣିଷ ପାଇଁ ତାଙ୍କ କବିପ୍ରାଣ ବ୍ୟାକୁଳ ହୋଇ ଉଠିଛି । କବି ଆଉ ବିଭ୍ରାନ୍ତ ନ ହୋଇ ଗାଇ ଉଠିଛି –

''ମଣିଷ, ମଣିଷ ଶୁଭିଲା ଦୂରରୁ ଡାକ
ଦୁନିଆର ଯେତେ ଦଳିତ ପୀଡ଼ିତ ଯାକ
ସ୍ପନ୍ଦନ ସେହି ପୁଲକ ପରାସ ରେଖା
ବନ୍ଧୁର ପଥେ ବନ୍ଧୁ ସେ ମୋର ଏକା । (ଛୁରୀଟିଏ ଲୋଡ଼ା)

ସ୍ୱପ୍ନ ନୁହେଁ, ମାୟା ନୁହେଁ ଅବା ଭଗବାନ ନୁହେଁ – ମଣିଷ ଓ ମାଟି ପ୍ରତି ମମତା ହୋଇଛି କବି ସଂସ୍କାର । ସେହି ହେଉଛି ଭଗବାନ, ସେହି ହେଉଛି ଈଶ୍ୱର, ଯାହାର ପ୍ରଥମ କ୍ରନ୍ଦନରେ ମହୀ ହସିଉଠେ ଓ ବିକଶିତ ହୁଏ । ଯୀଶୁଙ୍କ କ୍ରୁଶବିଦ୍ଧ ରୂପ ଓ ହତ୍ୟାକାରୀଙ୍କ ଉଦ୍ଦେଶ୍ୟରେ ଭଗବାନଙ୍କ ନିକଟରେ ତାଙ୍କର ବ୍ୟାକୁଳ ପ୍ରାର୍ଥନା – ''ହେ ପିତା ! ଏମାନଙ୍କୁ କ୍ଷମାକର । କାରଣ ଏମାନେ କ'ଣ କରୁଛନ୍ତି, ତାହା ସେମାନେ ଜାଣନ୍ତି ନାହିଁ ।'' ଏହି ଦୁର୍ଲଭ ସଂସ୍କାର ଭାବନା କବିଙ୍କୁ ବିମୋହିତ କରିଛି । କବି ଲେଖିଛନ୍ତି –

''ଆସ ଦୂତ ଆସ ଆସରେ ଆଲୋକଧାରୀ
ଆସରେ ଅଗ୍ର ଦେଖାଅ ବିଶ୍ୱପଥ
ରଖରେ ଘୋଡ଼ାଇ ଦୀନର ନୟନବାରି
ଶଙ୍ଖ ତୋହରି ବାଜିଉଠୁ ଅବିରତ ।

ଜାଳିଦିଅ ବୀର ଜୀବନର ହୋମାନଳ
ଆସ ଦୁର୍ଦ୍ଦମ, ଆସ ହେ ପୁରୁଷ ନାରୀ !
ମାନବର ରୂପେ ଦେବ ଶିଶୁ ଶତ ଶତ
ନବ ଚେତନାରେ ଚମକୁ ଗଗନ ତଳ ?'' (ଦେବଶିଶୁ ଯିଶୁ)

ଅନେକ କବିତାରେ କାଳିନ୍ଦୀ କାବ୍ୟ ମାନସ ଉଚ୍ଚାଙ୍ଗ । ତାଙ୍କୁ ସବୁଜ କବି କହି ତାଙ୍କ କବି ପ୍ରତିଭାର ଏକଦେଶଦର୍ଶୀ ବିଚାର କଲେ କାଳିନ୍ଦୀ କାବ୍ୟ ସାଧନା ପ୍ରତି ଅବିଚାର ହେବ । କାଳିନ୍ଦୀଚରଣଙ୍କର ବହୁ ଉଚ୍ଚକୋଟୀର କବିତା ସୃଷ୍ଟି ରହିଛି । 'ଗାନ୍ଧାରୀର ଆଶୀର୍ବାଦ' କବିତାର ହୃଦୟ ଭିତର ଦେଇ ଝରିଆସିଥିବା ଚିରନ୍ତନ ମୂଲ୍ୟବୋଧଠାରୁ 'ମନେନାହିଁ' 'ମହାଦୀପ', 'କ୍ଷଣିକସତ୍ୟ', 'ଛୁରୀଟିଏ ଲୋଡ଼ା', 'ମୋ କବିତା' ପ୍ରଭୃତି କବିତା ସଂକଳନରେ ପ୍ରକାଶିତ ବହୁ କବିତାରେ ତାଙ୍କର ସଂସ୍କାରିତ ବୈପ୍ଲବିକ ଓ ଉଚ୍ଚାଙ୍ଗ ସୃଷ୍ଟିର କାବ୍ୟସ୍ୱରକୁ ଚିହ୍ନି ହେବ ।

କାଳିନ୍ଦୀଚରଣ ସ୍ୱପ୍ନ ଜୀବନରୁ ସର୍ଜନବୃତ୍ତରେ ଆବଦ୍ଧ ଅଥଚ ପରିବର୍ତ୍ତିତ ପରିପ୍ରେକ୍ଷୀରେ ବାସ୍ତବାୟନ ହେଲା ତାଙ୍କ ସାହିତ୍ୟର ଆଭିମୁଖ୍ୟ । କବି, ଗାଳ୍ପିକ, ଔପନ୍ୟାସିକ ଓ ପ୍ରାବନ୍ଧିକ ଭାବରେ ତାଙ୍କ ସାହିତ୍ୟର ପରିଧି ପରିବ୍ୟାପ୍ତ । କାଳିନ୍ଦୀଚରଣ ଜୀବନ ଜୀଇଁଥିବା ସମାଜର ବାସ୍ତବ ଦିଗ ପ୍ରତି ଯେତେ ସଚେତନତା ପ୍ରକାଶ କରିଛନ୍ତି, ତାହା ତାଙ୍କ ସାହିତ୍ୟକୁ ସେତେ ଆଚ୍ଛନ୍ନ କରିଛି । ଫଳତଃ ସମାଜ ପ୍ରତି ସେ ହୋଇଛନ୍ତି ପ୍ରତିବଦ୍ଧ । ବୋଧହୁଏ ଏହି ପ୍ରତିବଦ୍ଧତା ହିଁ ତାଙ୍କ ସାହିତ୍ୟରେ ପ୍ରକାଶ କରିଛି ନବ ସଂସ୍କାରବାଦୀ ଆଭିମୁଖ୍ୟ ।

**ତୃତୀୟ ପ୍ରସଙ୍ଗ :**

କାଳିନ୍ଦୀଚରଣଙ୍କ ଗଳ୍ପ ଜଗତ ଅମ୍ଳାନ ଓ ଅସାଧାରଣ । ସାଧାରଣ କଥାବସ୍ତୁକୁ ଅସାଧାରଣ ରୂପ ଦେଇ ଉତ୍କର୍ଷ ସାଧନ କରିବାରେ କାଳିନ୍ଦୀ ଚ଼ରଣ ସିଦ୍ଧହସ୍ତ । କାଳିନ୍ଦୀ ଚ଼ରଣଙ୍କ ଗଳ୍ପ ମାନସ ଉଚ୍ଚତର ଅନୁଭବ, ଭାବପୂର୍ଣ୍ଣ ପ୍ରବଣତା ଓ କଳାତ୍ମକତାରେ ପରିପୂର୍ଣ୍ଣ । କାବ୍ୟିକ ଆବେଦନ, ସଂସ୍କାର ପ୍ରାଣତା ଓ ବୈପ୍ଲବିକ ଅନୁଭବରେ ତାଙ୍କ ଗଳ୍ପର ଶିଳ୍ପକର୍ମ ନିର୍ମିତ । ଜଣେ ବଳିଷ୍ଠ ବାସ୍ତବବାଦୀ ଓ ମାନବ ସମ୍ବେଦନଶୀଳ କବି ହେତୁ ତାଙ୍କ ଗଳ୍ପ ଜଗତ ପ୍ରେମପୂର୍ଣ୍ଣ ଓ ସାର୍ବକାଳିକ ଆବେଦନରେ ଭାସ୍ୱର । ତାଙ୍କର ଗଳ୍ପର ସ୍ଥାପତ୍ୟ ସମାଜ କୈନ୍ଦ୍ରିକ ଓ ଜୀବନଧର୍ମୀ । ଭୂମା ନୁହେଁ ଭୂମି ତାଙ୍କ ସୃଷ୍ଟି କର୍ମର ସର୍ବସ୍ୱ । ସୁସମାଲୋଚ଼କ ଡଃ ଆଦିକନ୍ଦ ସାହୁ ଲେଖିଛନ୍ତି – ''ସେ ଥିଲେ ଏକାନ୍ତ ଜୀବବାଦୀ କବି । ପାଦ ଥାପିଥିବା ଏ ପୃଥିବୀ ତାଙ୍କ ପାଇଁ ସବୁଠାରୁ ପ୍ରିୟ ଓ ବିଶ୍ୱସନୀୟ । ଜୀବନ ଯେତେ ଦୁଃଖଦ ହେଲେ ବି ତାଙ୍କ ପାଇଁ ଦେବତାର ଆଶୀର୍ବାଦ ପରି । ସ୍ୱର୍ଗ ନୁହେଁ ମର୍ତ୍ତ୍ୟ ହିଁ ତାହାଙ୍କ କାମ୍ୟ । ଏହି ମର୍ତ୍ତ୍ୟକୁ କବି ଅମରାବତୀ ବୋଲି ଜ୍ଞାନ କରିଛନ୍ତି । ଏ ମରଜୀବନକୁ କବି ପୁଣି କୋଟିନିଧି ବୋଲି ମନେ କରିଛନ୍ତି । ଏ ଜଗତକୁ ସେ ସୁନ୍ଦର ଓ ଶୁଭଙ୍କର ବୋଲି ମନେ କରିଛନ୍ତି ।''

ପ୍ରଥମ ବିଶ୍ୱଯୁଦ୍ଧ ପରବର୍ତ୍ତୀ କାଳର ସେ ସ୍ରଷ୍ଟା । ଲବଣ ସତ୍ୟାଗ୍ରହ ଓ ଗାନ୍ଧିଜୀଙ୍କ ସ୍ୱାଧୀନତା ସଂଗ୍ରାମ ସମକାଳର ସେ ବଶମ୍ୱଦ ସ୍ରଷ୍ଟା । ସେ ସବୁଜ କବି । ସବୁଜ ଯୁଗର କର୍ଣ୍ଣଧାର ଅଥଚ୍ ସେ କମ୍ୟୁନିଷ୍ଟ, ମାର୍କସ ଚେତନାରେ ମନ୍ତ୍ରୀଭୂତ ପ୍ରଗତିଶୀଳ ତଥା ଗାନ୍ଧି ଆଦର୍ଶରେ ଅନୁପ୍ରାଣିତ ସମାଜବାଦୀ କବି ଓ କଥାକାର । ସ୍ୱାଧୀନତା ପୂର୍ବରୁ ତିନିଦଶନ୍ଧିର ସାମାଜିକ, ସାଂସ୍କୃତିକ, ରାଜନୀତିକ ଓ ମାନବିକ ଦୃଷ୍ଟି ଓ ଦର୍ଶନଠାରୁ ସେ ମୁକ୍ତ ନୁହନ୍ତି । ସମାଜ ଓ ସମାଜବାଦୀ ଚେତନା ତାଙ୍କ ସୃଷ୍ଟିର ମୂଲ୍ୟବୋଧ । ଗାନ୍ଧି ଆଦର୍ଶ, ଅହିଂସା ଆନ୍ଦୋଳନ, ଲବଣ ସତ୍ୟାଗ୍ରହ, ଅସହଯୋଗ, ପ୍ରଥମ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧ, ସମକାଳର ଦୁର୍ଭିକ୍ଷ, ଜମିଦାର ଓ ମହାଜନୀ ଶୋଷଣ, ବିଧବା ସମସ୍ୟା, ରେଙ୍ଗୁନ ଓ କାଳିମାଟିରେ ଶ୍ରମିକ ସମସ୍ୟା ଦୁର୍ଦ୍ଦଶା, ସାଂପ୍ରଦାୟିକ ହିନ୍ଦୁ-ମୁସଲମାନ ସଂଘର୍ଷ ତାଙ୍କ ଗଳ୍ପର କାନଭାସ । ତେଣୁ ତାହାର ଏକ ନିଷ୍କପଟ ଚିତ୍ର ଓ ସଂସ୍କାରିତ କଳାସ୍ପର୍ଶ ଦେବା ପାଇଁ କାଳିନ୍ଦୀ ଗଳ୍ପ ମାନସ ପ୍ରଚେଷ୍ଟିତ ।

କାଳିନ୍ଦୀ ଗଳ୍ପ ମାନସ ମାଟିର ଅନ୍ତରଙ୍ଗ ଆତ୍ମୀୟତାରେ କଳାତ୍ମକ । ଅକୃତ୍ରିମ ମଣିଷ, ପରିବାର ଓ ସମାଜ ତାଙ୍କ ଗଳ୍ପର କେନ୍ଦ୍ରବିନ୍ଦୁ । କପଟହୀନତା, ଶୋଧନପ୍ରାଣତା, ସ୍ୱଚ୍ଛନ୍ଦ ମଣିଷର ପ୍ରେମ ଓ ପ୍ରଣୟ, ସାମାଜିକ ବାସ୍ତବତା, ଆର୍ଥନୀତିକ ସମତୁଲରେ ସଂସ୍କାର, ନବ ବୈପ୍ଳବିକ ଅନୁଭବ ଓ ନିମ୍ନ ବର୍ଗଙ୍କ ପ୍ରତି ସହାନୁଭୂତିଶୀଳତା ତାଙ୍କ ଗଳ୍ପର ଗର୍ଭଗୃହ । ପ୍ରେମ, ଅଶ୍ରୁ, ତ୍ୟାଗ ତାଙ୍କ ଗଳ୍ପର ବୈଭବ । ପରିବାରର ବାପା, ମା, ସ୍ୱାମୀ, ସ୍ତ୍ରୀ, ପୁଅ, ଝିଅଠାରୁ ଆରମ୍ଭକରି ସମାଜଜୀବନର ଜମିଦାର, ସାହୁକାର, ମହାଜନ, ପ୍ରଜା, ଶ୍ରମିକ, ଗାଁର ସାଧାରଣ ନିପୀଡ଼ିତ ମଣିଷ ପର୍ଯ୍ୟନ୍ତ ତାଙ୍କ ଗଳ୍ପରେ ଅଙ୍ଗୀଭୂତ । ଏମାନଙ୍କ ବ୍ୟତୀତ ମାନବେତର କୁକୁର, ବିଲେଇ, ହରିଣ, ଚଢ଼େଇ ଆଦି ତାଙ୍କ ଗଳ୍ପର ସ୍ଥାପତ୍ୟ ।

ସାଗରିକା, ଦ୍ୱାଦଶୀ, ରାଶିଫଳ, ଶେଷରଶ୍ମି, ମୋ କଥାଟି ସରିନାହିଁ ପାଞ୍ଚଗୋଟି ଗଳ୍ପ ସଂକଳନରେ ସଂକଳିତ ସଇଁତିରିଶଟି ଓ ଅସଂକଳିତ ଦୁଇଟି ଗଳ୍ପର ସେ ସ୍ରଷ୍ଟା । ଫକୀର ମୋହନଙ୍କ ପରେ ଯଥାର୍ଥରେ ସେ ଅଦ୍ୱିତୀୟ କଥାକାର । ୧୯୨୩ ମସିହାରୁ ୧୯୪୭ ମସିହା ମଧ୍ୟରେ ଏକ ଘଡ଼ିସନ୍ଧି ମୁହୂର୍ତ୍ତ ମଧ୍ୟଦେଇ ତାଙ୍କ ଗଳ୍ପ ସାହିତ୍ୟର ଗତି ଓ କାୟାବିସ୍ତାର । ବଳିଷ୍ଠ ମାନବୀୟ କଣ୍ଠସ୍ୱର ତାଙ୍କ ଗଳ୍ପରେ ଉଚ୍ଚାରିତ । ଗ୍ରାମ ଓ ଗ୍ରାମ୍ୟ ଜୀବନ ତାଙ୍କ ଗଳ୍ପର ପ୍ରାଣସ୍ୱର । ତେଣୁ ଗାଳ୍ପିକ, ଗ୍ରାମ୍ୟ ଜୀବନ ଓ ଗ୍ରାମ୍ୟ ମଣିଷର ସଂସ୍କାର ଚାହିଁଛନ୍ତି । ଉଗ୍ର ରକ୍ଷଣଶୀଳତାକୁ ଗାଳ୍ପିକ ବିରୋଧ କରିଛନ୍ତି 'ଦାମ୍ପତ୍ୟ ଚିତ୍ର' ଗଳ୍ପରେ । 'ଦାମ୍ପତ୍ୟ ଚିତ୍ର' ଗଳ୍ପ ସମାଜକୁ ଦିଗଭ୍ରଷ୍ଟ କରୁଥିବା ଅଶିକ୍ଷା ଓ କୁସଂସ୍କାରକୁ ବିରୋଧ କରିଛି । ଓଡ଼ିଶାର ଗ୍ରାମ୍ୟ ଜୀବନରେ ଯେଉଁସବୁ କୁସଂସ୍କାର ପ୍ରଚ଼ଳିତ ସେଥିମଧ୍ୟରୁ ନବ ବିବାହିତ ସ୍ୱାମୀ ସ୍ତ୍ରୀଙ୍କ ମଧ୍ୟରେ ମୁକ୍ତ ଭାବରେ ଦି'ପଦ କଥା ହେବାର ସ୍ୱାଧୀନତା ନଥିଲା । ଗୁରୁଜନମାନଙ୍କୁ ସମ୍ମାନ ଦେଖାଇବାକୁ ଯାଇ ପରସ୍ପର ମଧ୍ୟରେ ସାକ୍ଷାତର ମଧ୍ୟ କିଞ୍ଚିତ ସୁଯୋଗ ମିଳୁନଥିଲା । ରାତ୍ରର

ତୃତୀୟ ପ୍ରହର ପର୍ଯ୍ୟନ୍ତ ପ୍ରତୀକ୍ଷା କରିବାକୁ ପଡୁଥିଲା । ଯଦି ଏଥିରେ ବିଘଟଣ ଘଟୁଥିଲା ତେବେ ଅଯଥା ଅପମାନ ଓ ଲାଞ୍ଛନା ଭୋଗିବାକୁ ପଡୁଥିଲା । ସ୍ୱାମୀ ସ୍ତ୍ରୀ ପରସ୍ପରକୁ ସଠିକ ଚିହ୍ନିବାର ମଧ ସୁଯୋଗ ନଥିଲା । ବୁଝାମଣା ଅଭାବରୁ ଅବିଶ୍ୱାସ ଓ ଅବିଶ୍ୱାସରୁ ଦାମ୍ପତ୍ୟ ଜୀବନ ଅସୁଖକର ହେଉଥିଲା । ଅଶିକ୍ଷା ଏହି ରକ୍ଷଣଶୀଳ ଭାବନାର ମୂଳକାରଣ । ତାହାର ସଂସ୍କାର ଗାଳ୍ପିକ ଚାହିଁଛନ୍ତି । ଓଡ଼ିଶାର ପ୍ରଚ଼ଳିତ ଏହି ଅଶିକ୍ଷାଗତ କୁସଂସ୍କାର ବିରୁଦ୍ଧରେ 'ଦାମ୍ପତ୍ୟ ଚିତ୍ର' ଗଳ୍ପ ମାଧମରେ ଆହ୍ୱାନ ଦେଇ ତରୁଣ ଦାମ୍ପତ୍ୟ ଜୀବନରେ ନୂତନ ଆଶାର ସଞ୍ଚାର କରିଛନ୍ତି ।

'ଅପରାଧିନୀ' କାଳିନ୍ଦୀଚରଣଙ୍କ ସଂସ୍କାର ଆଭିମୁଖ୍ୟର ଆଉ ଏକ ପ୍ରତିନିଧି ଶ୍ରେଣୀୟ ଗଳ୍ପ । ସାମାଜିକ କୁସଂସ୍କାର ଓ ବ୍ରାହ୍ମଣମାନଙ୍କର ଉତ୍ପୀଡ଼ନର ଚିତ୍ର ଗଳ୍ପ ବହନ କରିଛି । ସୁଷମା ଦରିଦ୍ର ବ୍ରାହ୍ମଣକନ୍ୟା ବାଲ୍ୟବିବାହ କରିଛି । ତିନୋଟି ସନ୍ତାନର ଜନନୀ । ବୃଦ୍ଧ ସ୍ୱାମୀର ମୃତ୍ୟୁପରେ ସେ ଶାଶୁଘରୁ ବିତାଡ଼ିତା ଓ ଅଲକ୍ଷଣୀ ଭାବରେ ସେ ସମାଜରେ ଲାଞ୍ଛିତା । ଗାଳ୍ପିକ ଏହି ବିଧବା ବ୍ରାହ୍ମଣୀ ଯୁବତୀକୁ ଶିକ୍ଷିତ ଯୁବକ ନବୀନ୍‌ଙ୍କ ସହିତ ପୁନର୍ବିବାହ କରାଇ ଆଦର୍ଶ ସୃଷ୍ଟି କରିଛନ୍ତି । ଈଶ୍ୱର ଚ଼ନ୍ଦ୍ର ବିଦ୍ୟାସାଗର ପ୍ରମୁଖଙ୍କ ବିଧବା ବିବାହ ସପକ୍ଷରେ ଆନ୍ଦୋଳନର ସାକାର ରୂପ 'ଅପରାଧିନୀ' ଗଳ୍ପ ବହନ କରିଛି । ଏହି ଗଳ୍ପରେ ଶିକ୍ଷିତ ଯୁବକ ବାଲ୍ୟ ବିଧବା ବ୍ରାହ୍ମଣୀ କନ୍ୟା ସୁଷମାକୁ ବିବାହ କରିବାପାଇଁ ଆଗେଇ ଆସିବା ସମକାଳରେ ଏକ ସାମାଜିକ ସାହସିକତାର ପରିଚ଼ୟ । ଶିକ୍ଷିତ ବର୍ଗ ଆତ୍ମସ୍ୱାର୍ଥରେ ବ୍ୟସ୍ତଥିବାବେଳେ ଉଚ୍ଚଶିକ୍ଷିତ ଯୁବକ ନବୀନର ବିଧବାକନ୍ୟା ସୁଷମାର ବୈଧବ୍ୟ ପ୍ରତି ଏହି ସହାନୁଭୂତିଶୀଳତା ହେଉଛି କାଳିନ୍ଦୀଗଳ୍ପ ମାନସର ସଂସ୍କାରପ୍ରାଣତା । ଏହି ସମୟକୁ ଓଡ଼ିଶାର ସାମାଜିକ ଜୀବନରେ ଏହି ପ୍ରକାର ପଦକ୍ଷେପ ସମ୍ପୂର୍ଣ୍ଣ ନୂତନ; ତେଣୁ ଗାଳ୍ପିକ ଏହି ସଂସ୍କାରିତ ଭାବନାର ଏକ ଶୈଳ୍ପିକ ରୂପପ୍ରଦାନ କରି ଆଲୋଡ଼ନ ସୃଷ୍ଟି କରିଛନ୍ତି ।

'ନିୟତିର କ୍ରୀଡ଼ା' ଗଳ୍ପ ସମକାଳର ବିଧବା ଜୀବନର ନିର୍ଯ୍ୟାତିତ ପରିଣତିର ଆଉ ଏକ ସଫଳ କୃତି । ସୁରମା ବାଲ୍ୟ ବିବାହ କରି ମାତ୍ର ଦଶବର୍ଷ ବୟସରେ ବିଧବା ହୋଇଛି । ଏହି ବିଧବା କନ୍ୟା ସୁରମା ଶାଶୁଘରର ନିର୍ଯ୍ୟାତନା ପାଇ ବାପଘରକୁ ଆଦରିନିଏ । ମାତୃହରା ଏହି କନ୍ୟାଟି ପିତୃଗୃହରେ ମଧ ଶାନ୍ତି ପାଇପାରିନି । ତାର ବୃଦ୍ଧ ପିତା ତାରି ବୟସର ଗୋଟିଏ କନ୍ୟାକୁ ଦ୍ୱିତୀୟ ବିବାହ କରିଛି । ଫଳତଃ ସୁରମାର ନିର୍ଯ୍ୟାତନା ଓ ମାନସିକ ଯନ୍ତ୍ରଣା ବୃଦ୍ଧିପାଇଛି । ବିଧବା ପାଇଁ ଉଦ୍ଦିଷ୍ଟ ସମସ୍ତ ବିଧି ବ୍ୟବସ୍ଥା ସବୁକୁ ମୁଣ୍ଡପାତି ତାକୁ ସହିବାକୁ ପଡ଼ିଛି । ପଡ଼ୋଶୀ ଯୁବକ ସୁକୁମାରର ପ୍ରଣୟରେ ଆବଦ୍ଧ ହୋଇ ସୁରମା ଅବୈଧ ସନ୍ତାନର ଜନନୀ ହେବାପରେ ସେ ଗାଁରୁ ବିତାଡ଼ିତା ଘୃଣିତା, ଲାଞ୍ଛିତା ଓ ନିର୍ଯ୍ୟାତିତା ହୋଇଛି । ଶେଷରେ ମାନସିକ ଯନ୍ତ୍ରଣାରେ ପାଗଳୀ ହୋଇଛି । ସ୍ୱାର୍ଥପର ମଣିଷ ଓ ସାମାଜିକ କୁସଂସ୍କାର ପ୍ରତି ଗାଳ୍ପିକଙ୍କ ଶାଣିତ ଦୃଷ୍ଟି ଏହି ଗଳ୍ପରେ ପ୍ରକାଶ ପାଇଛି । 'ଛିନ୍ନ ପୃଷ୍ଠା' କାଳିନ୍ଦୀ

ଗଳ୍ପ ମାନସର ଆଉ ଏକ ସଂସ୍କାର ଧର୍ମୀ ଗଳ୍ପ । ଆତ୍ମ ଅଭିବ୍ୟକ୍ତି ଶୈଳୀରେ ନାରୀନିର୍ଯ୍ୟାତନା ଓ ଜମିଦାରର ତୀବ୍ର ଅତ୍ୟାଚାରର ଚିତ୍ର ଚିତ୍ରିତ । ଦରିଦ୍ର ରୂପବତୀ କନ୍ୟା ବିକ୍ରିର କରୁଣଚିତ୍ର ଏଥିରେ ପ୍ରକଟିତ । ବୃଦ୍ଧ ଜମିଦାରକୁ ବିବାହ କରି ଦରିଦ୍ର ରୂପବତୀ ଯୁବତୀ ଦାସୀ ଜୀବନ କଟାଉଥିଲେ ମଧ୍ୟ ଜମିଦାର ପୁତ୍ରର ସହାନୁଭୂତିର ସ୍ପର୍ଶରେ ଦୁଃଖ ଭୁଲିଛି । ସେହିପରି 'ପଙ୍କ', 'ରୁଦ୍ରାକ୍ଷ', 'ନିୟତିର କ୍ରୀଡ଼ା' ପ୍ରଭୃତି ଗଳ୍ପରେ ସଂସ୍କାର ଓ ସହାନୁଭୂତିର ସ୍ୱର ପ୍ରକାଶ ପାଇଛି ।

ଦ୍ୱିତୀୟ ବିଶ୍ୱଯୁଦ୍ଧ ଜନିତ ମୂଲ୍ୟବୃଦ୍ଧି ଓ ଖାଦ୍ୟ ସଙ୍କଟ ଗାଳ୍ପିକ ପ୍ରାଣରେ ସମ୍ବେଦନା ସୃଷ୍ଟିକରିଛି । 'ବିଜୟ ଉତ୍ସବ' ଗଳ୍ପ ଯୁଦ୍ଧକାଳୀନ ଓଡ଼ିଶାର ସାମାଜିକ ଜୀବନର ଏକ କରୁଣ ପରିଣତି । ଅନ୍ନ ପାଇଁ ଦରିଦ୍ର ଜନତା ମୃତ୍ୟୁବରଣ କରିଛନ୍ତି । ମୁକୁନ୍ଦ ସେଇମାନଙ୍କ ମଧ୍ୟରୁ ଜଣେ । ଦରିଦ୍ର ସେ, ଅଥଚ ତାର ପୌରୁଷର ସ୍ୱାଭିମାନ ରହିଛି । ଏହାହିଁ ଗାଳ୍ପିକଙ୍କ କଥାଶୈଳୀରେ ସଂସ୍କାରପ୍ରାଣତା । 'ଚକ ବୁଲୁଥାଏ' କାଳିନ୍ଦୀ ଗଳ୍ପ ମାନସର ଆଉ ଏକ ଉଚ୍ଚାଙ୍ଗ ସୃଷ୍ଟି । ଅର୍ଥନୀତିକ ବୈଷମ୍ୟର ସଂସ୍କାର ଗାଳ୍ପିକ ଚାହିଁଛନ୍ତି । 'ଆଗାମୀ' କବିତାର ସ୍ୱର ଏହି ଗଳ୍ପରେ ସ୍ପନ୍ଦିତ ହୋଇଛି । ଦୟାନିଧି ବାବୁ ଓ ରିକ୍ସାବାଲା ଭେଙ୍କଟ ମଧ୍ୟରେ ଥିବା ସାମାଜିକ ସ୍ଥିତିର ପାର୍ଥକ୍ୟକୁ ଗାଳ୍ପିକ ଦେଖାଇଛନ୍ତି । ଦୁର୍ଘଟଣା ଜନିତ ଭେଙ୍କଟର ମୃତ୍ୟୁରେ କେହି ସମବେଦନା ଜଣାଇ ନାହିଁ । ତା'ର ସ୍ତ୍ରୀ ଛୁଆ କ୍ଷତିପୂରଣ ଅବା ସାନ୍ତ୍ୱନା ପାଇ ନାହାନ୍ତି ଅଥଚ୍ ସେହି ଦୁର୍ଘଟଣାରେ ମୃତ୍ୟୁବରଣ କରିଥିବା ଦୟାନିଧି ବାବୁଙ୍କ ପରିବାରକୁ ମିଳିଛି । ଅର୍ଥନୈତିକ ବୈଷମ୍ୟର ସଂସ୍କାର ଗାଳ୍ପିକ ଚାହିଁଛନ୍ତି । 'ରେଙ୍ଗୁନ ଯାତ୍ରୀ', 'ରୁଦ୍ରାକ୍ଷ', 'ନିୟତିର କ୍ରୀଡ଼ା' ଗଳ୍ପ ପ୍ରଭୃତି ସାମାଜିକ ଜୀବନର ସମସ୍ୟା ତଥା ଦୁଃଖୀ ଜୀବନର କରୁଣ ଦୀର୍ଘଶ୍ୱାସ ସଜଳ ହୋଇ ଉଠିଛି । ଏ ସବୁରୁ ମୁକ୍ତିପାଇଁ ଗାଳ୍ପିକ ଆଶାନ୍ୱିତ ଆହ୍ୱାନ ଶୁଣାଇଛନ୍ତି ।

'ପ୍ରେମ ଓ ପ୍ରଣୟ' କାଳିନ୍ଦୀ ଗଳ୍ପ ମାନସର ଆଉ ଏକ ସଂସ୍କାର ସ୍ୱର । ନାରୀ ପୁରୁଷର ସହଜାତ ପ୍ରେମର ଏକ ଶୁଦ୍ଧ-ସ୍ୱର୍ଗୀୟ ଭାବନା ଗାଳ୍ପିକ ଶୁଣାଇଛନ୍ତି । 'ସାଗରିକା' ଗଳ୍ପରେ ରାଜପ୍ରାସାଦ ହେଲେ ବି ସୁଖ ନାହିଁ । ପ୍ରକୃତି କୋଳରେ ଜନ୍ମ ଓ ବର୍ଦ୍ଧିତ 'ସାଗରିକା' ପ୍ରକୃତି କୋଳକୁ ଫେରି ଯାଇଛି । ଯୌବନ ତାକୁ କାବୁ କରିପାରିନାହିଁ । ସେ ଯୁବତୀ - ଯୌବନ ତାକୁ ଅଥୟ କଲେବି ସେ ପୁରୁଷର ଦୈହିକ ସାନିଧ୍ୟ ଖୋଜିନାହିଁ — ଖୋଜିଛି ନୀଳାମ୍ବୁରାଶି, ଆକାଶ, ପବନ, ହରିଣୀ ଓ ସାମୁଦ୍ରିକ ପକ୍ଷୀ । ଅସୀମ ସହିତ ସେ କ୍ରୀଡ଼ା କରିଛି । ମିଶାଇ ଦେଇଛି ନିଜକୁ ପ୍ରକୃତି ସହିତ । ପ୍ରକୃତି ପ୍ରେମ ନିକଟରେ ମାନବ ପ୍ରେମ ହାର ମାନିଛି । ସେହିପରି 'ବିଟଘର ଓ ରେଳଗାଡ଼ି' ଗଳ୍ପରେ ସ୍ୱର୍ଗୀୟପ୍ରେମର ଶୈଳ୍ପୀକ ରୂପ ଦେଖିବାକୁ ମିଳେ । ଯୁବକ ଦାମର ଗଡେଇ ମାଝିର କନ୍ୟା ଜହ୍ନ ପ୍ରତି ଗଭୀର ପ୍ରେମ ଓ ଆତ୍ମତ୍ୟାଗ କାଳିନ୍ଦୀ ଗଳ୍ପ ମାନସର ପ୍ରେମରେ ସ୍ୱର୍ଗୀୟ ଭାବନା ଫୁଟିଉଠିଛି । 'ନିଶୀଥିନୀ' ଗଳ୍ପରେ ପ୍ରେମର ସେହି ଶାଶ୍ୱତ ଭାବ ଉଭରିତ । 'ଡାଆଣୀ ବୁଢ଼ୀ' ଗଳ୍ପରେ ଗଭୀର ପ୍ରେମର ସଜଳସ୍ମୃତି ଅନ୍ଧକାର ଭିତରେ ବି ଜୀବନ୍ତ ହୋଇଉଠିଛି । ପ୍ରେମରେ ମହନୀୟତା ଫୁଟାଇବା

କାଳିନ୍ଦୀ ଗଳ୍ପ ମାନସର ନୂତନ ସଂସ୍କାରବାଦୀ ଦୃଷ୍ଟିକୋଣର ପରିଚୟ । ଛିନ୍ନପୁଷ୍ପ, ସାବିତ୍ରୀର ଦୁଃଖ, ଜୟହିନ୍ଦ୍, ପ୍ରେମିକ ଆଦିଗଳ୍ପରେ ପ୍ରେମର ମହନୀୟ ଭାବ ଫୁଟିଉଠିଛି ।

କଥାକାର କାଳିନ୍ଦୀ ଚ଼ରଣ କେବଳ ନାରୀ ପୁରୁଷର ମହନୀୟ ପ୍ରେମକୁ ଦେଖାଇ ନାହାନ୍ତି – ସେ ମାନବେତର ଜୀବ ଭିତରେ ମାନବିକ ପ୍ରେମକୁ ମଧ୍ୟ ବର୍ଣ୍ଣନା କରିଛନ୍ତି । ହୃଦୟ, ପୁନଷ୍ଟ, ପଙ୍ଗୁ, ମାଂସର ବିଳାପ, ଆତ୍ମହତ୍ୟା, ପାଷାଣର ପ୍ରତିଷ୍ଠା, ପ୍ରେମିକ ଆଦି ଗଳ୍ପରେ ବାତ୍ସଲ୍ୟ ମମତା, ଅନାସକ୍ତ ଶିଳ୍ପ ପ୍ରେମ, ମାନବିକ ପ୍ରେମ, ମାନବେତର ପ୍ରେମର କମନୀୟ ବର୍ଣ୍ଣନା ଗାଳ୍ପିକ କରିଛନ୍ତି ।

'ମାଂସର ବିଳାପ' ଓ 'ପଙ୍ଗୁ କାଳିନ୍ଦୀ' ଗଳ୍ପ ମାନସର ଶ୍ରେଷ୍ଠ ସଂସ୍କାରିତ ପ୍ରତିକ୍ରିୟା । ମାନବେତର ଚରିତ୍ର ମାଧ୍ୟମରେ ମାନବବାଦୀ ସମ୍ବେଦନଶୀଳତା ପ୍ରକାଶ କରିଛନ୍ତି । ହିଂସ୍ର ପଶୁ ମଧ୍ୟଦେଇ ମାନବିକ ବିଚାରବୋଧର ଦିବ୍ୟ ସ୍ପର୍ଶ ଗାଳ୍ପିକ ପ୍ରଦାନ କରିଛନ୍ତି । ପଶୁ ହୋଇ ମଧ୍ୟ ସେ ମନୁଷ୍ୟଠାରୁ ବଡ଼ ହୋଇ ଯାଇଛି । ହିଂସ୍ର ପଶୁ ପାଖରେ ମଣିଷ ନୀଚ଼ ଓ ଘୃଣ୍ୟ ହୋଇଯାଇଛି । ଏହି ଗଳ୍ପରେ ଏକ ଦେଶୀ କୃଷ୍ଣସାର ଓ ବିଦେଶୀ ଗ୍ରେ- ହାଉଣ୍ଡ କୁକୁରର ନିବିଡ଼ ସମ୍ପର୍କରୁ ଗଳ୍ପଟିର ଆରମ୍ଭ ଘଟିଛି । ଏମାନଙ୍କର ପାଳକ ଜମିଦାର ବାବୁ ସମ୍ଭ୍ରାନ୍ତ, ଶିକ୍ଷିତ ଓ ଆଧୁନିକ ହେଲେ ହେଁ ଭଦ୍ରତାର ଆବରଣ ତଳେ ତାଙ୍କ ମାନବୀୟ ହୃଦୟର ସକଳ ଶ୍ରଦ୍ଧା ଓ ମାନବିକତା ମୃତ୍ୟୁ ବରଣ କରିଛି । ମାନବେତର ବିଦେଶୀ ଜୀବ କୁକୁର ଶାବକ 'ଡୋରା' ଓ ଦେଶୀ ଅରଣ୍ୟର କୃଷ୍ଣସାର 'ଜଲି'ର ବନ୍ଧୁତ୍ୱ ଓ ଅନାବିଳ ପ୍ରେମ ତଥା ସହାବସ୍ଥାନର ପ୍ରୀତିପୂର୍ଣ୍ଣ ପରିଚ଼ୟ ପ୍ରଦାନ କରିଛନ୍ତି । ପରିସ୍ଥିତିର ପ୍ରଭାବରେ ଗୋରା ଡ଼ି.ଆଇ.ଜିଙ୍କ ଆତିଥ୍ୟ ପାଇଁ ଜମିଦାର ଉପାୟହୀନ ହୋଇ ପ୍ରିୟ 'ଜଲି'କୁ ନିର୍ମମ ଭାବରେ ହତ୍ୟା କରି ଭଦ୍ରତାରେ ତାର ମାଂସ ଆତିଥ୍ୟ ଦେଇଛନ୍ତି । ଆବାଲ୍ୟରୁ ସାଥିରେ ବଢ଼ିଥିବା ବନ୍ଧୁ ମାଂସାସୀ ହିଂସ୍ର ପ୍ରାଣୀ କୁକୁର ଡୋରା କୃଷ୍ଣସାର 'ଜଲି' ହତ୍ୟାର ପ୍ରତିବାଦ କରିଛି । ସମସ୍ତେ ମାଂସ ଭକ୍ଷଣ କରିଛନ୍ତି କିନ୍ତୁ ମାଂସାସୀ ପ୍ରାଣୀ ଡୋରା ସ୍ପର୍ଶ କରିନାହିଁ । ଜଲିର ମର୍ମନ୍ତୁଦ ମୃତ୍ୟୁର ବୀଭତ୍ସ ଜ୍ୱାଳାରେ ଛଟପଟ ହୋଇଛି – ପ୍ରତିକ୍ରିୟା ପ୍ରବଣ ହୋଇଉଠିଛି । ବିକଳ ତଥା ଭୟଙ୍କର ଚିତ୍କାରରେ ସମଗ୍ର ଅରଣ୍ୟକୁ ମୁଖରିତ କରିଦେଇଛି । ଡୋରାର ଚାରିତ୍ରିକ ଉଚ୍ଚତା ପାଖରେ ମଣିଷ ନୀଚ଼, ଘୃଣ୍ୟ ଓ ହୀନ ହୋଇ ଯାଇଛି । ଗାଳ୍ପିକ ଡୋରାର ପ୍ରତିକ୍ରିୟାରେ ପ୍ରତିକ୍ରିୟାପ୍ରବଣ ହୋଇ ଶେଷରେ ଲେଖିଛନ୍ତି –

''ଡୋରା କୌଣସି ମତେ ଆହାର କଲା ନାହିଁ । ଦିନମାନ ନିରାହାରରେ ପଡ଼ିରହିଲା ଏବଂ ଜମିଦାର ବାବୁଙ୍କ ପ୍ରଥମ ଅସୁସ୍ଥତା ଦିନ କୌଣସିମତେ ମୁକ୍ତି ପାଇ ଖସି ଚାଲିଗଲା । ମାଧିଆ ଖୋଜି ଖୋଜି ତାକୁ ସେହି ତମ୍ବୁ ପଡ଼ିଥିବା ଜାଗାରେ ଜଲିର ବଧ ଭୂମିକୁ ଆଘ୍ରାଣ କରୁଥିବାର ଦେଖିଲା । × × × କାଠୁରିଆ ମାନେ କହନ୍ତି, ନିବିଡ଼ ଜଙ୍ଗଲ ମଧ୍ୟରେ କାଠ କାଟିଲା ବେଳେ ସେମାନେ ବହୁବାର ରୁଦ୍ଧ ପଶୁକଣ୍ଠର ଗୋଟିଏ କରୁଣ ଆର୍ତ୍ତ ବିଳାପ ଶୁଣିପାରନ୍ତି । ସେ କିନ୍ତୁ ଜଲିର ନା ଡୋରାର ?''

ଗାଳ୍ପିକଙ୍କ ଏହି ପ୍ରଶ୍ନବାଚ଼କ ଚିହ୍ନଟି ଭଦ୍ର, ଶିକ୍ଷିତ ସଭ୍ୟ ମଣିଷଙ୍କ ପାଇଁ । ଭୋଗବାଦୀ, ହିଂସାସର୍ବସ୍ୱ ଓ ନିର୍ମମ ମଣିଷ ପାଇଁ କଥାକାର କାଳିନ୍ଦୀ ଚ଼ରଣଙ୍କର ଏହା ଚରମ ପତ୍ର । ଏହି ଗଳ୍ପରେ ହିଂସା ଉପରେ ଅହିଂସାର, ମଣିଷର ପଶୁତ୍ୱ ଉପରେ ପଶୁର ମାନବିକତାର ଓ ନିଷ୍ଠୁରତା ଉପରେ କରୁଣାର ବିଜୟ ଘୋଷଣା କରାଯାଇଛି । ଏହା ହିଁ କାଳିନ୍ଦୀ ଗଳ୍ପ ମାନସର ସଂସ୍କାର ପ୍ରାଣତା ।

ଏହା ବ୍ୟତୀତ ସାମାଜିକ ଜୀବନର କାରୁଣ୍ୟ, ପ୍ରଥମ ବିଶ୍ୱଯୁଦ୍ଧ ଓ ଦ୍ୱିତୀୟ ବିଶ୍ୱଯୁଦ୍ଧର ଭୟାବହ ପରିଣତିର ସ୍ୱର, ଦରଦାମ, ଅତ୍ୟାଚାର, ଶୋଷଣ ଓ ବାସ୍ତବତା ତାଙ୍କ ଗଳ୍ପର ହେଉଛି କାନଭାସ । ରେଙ୍ଗୁନ୍ ଯାତ୍ରୀରେ ନିପୀଡ଼ିତ ଶ୍ରମିକର ସକରୁଣ ଜୀବନଯାତ୍ରା ମୋ କଥାଟି ସରିନାହିଁରେ ଐତିହ୍ୟ ପ୍ରତି ଶ୍ରଦ୍ଧା । 'ବାଦୀ ପାଲା'ରେ ପ୍ରକାଶ ପାଇଛି ରାଜନୀତିକ ସଂଘର୍ଷର ଚିତ୍ର । ଜୟ ହିନ୍ଦ ଗଳ୍ପରେ ହିନ୍ଦୁ ମୁସଲମାନ ସଂଘର୍ଷ ଓ ସଂପ୍ରଦାୟଗତ ବିଭେଦ ଭୁଲିଯିବା ପାଇଁ ସଂସ୍କାରବାଦୀ ମନନ ।

କାଳିନ୍ଦୀ ଗଳ୍ପ ମାନସ ଅମ୍ଳାନ ଓ ଅସାଧାରଣ । ସାଧାରଣ ଚରିତ୍ର ଓ କଥାବସ୍ତୁକୁ ସେ ଅସାଧାରଣ ରୂପ ଦେଇ ଶୈଳ୍ପିକରୂପ ପ୍ରଦାନ କରିବାରେ ସିଦ୍ଧହସ୍ତ । କାଳିନ୍ଦୀ ଗଳ୍ପମାନସ ଉଚ୍ଚତର ଅନୁଭବ, ଭାବପୂର୍ଣ୍ଣ ପ୍ରବଣତା ଓ ସଂସ୍କାରିତ ସ୍ୱରରେ କଳାତ୍ମକ । କାବ୍ୟିକ ଆବେଦନ ପରିପୂର୍ଣ୍ଣ ତାଙ୍କର ଗଳ୍ପ ସ୍ଥାପତ୍ୟ । ଜଣେ ବଳିଷ୍ଠ କବି ହୋଇଥିବାରୁ ତାଙ୍କ ଗଳ୍ପ ଜଗତ ପ୍ରେମପୂର୍ଣ୍ଣ, ଭାବପୂର୍ଣ୍ଣ, ନୂତନ ଓ ସାର୍ବକାଳିକ ମୂଲ୍ୟବୋଧର ଆବେଦନରେ ଭାସ୍ୱର ।

**ଚତୁର୍ଥ ପ୍ରସଙ୍ଗ :**

କାଳିନ୍ଦୀ ଚ଼ରଣ କଥାକାର । ଜଣେ ଉଚ୍ଚାଙ୍ଗ କଥାଶିଳ୍ପୀ । ମାଟିର ମଣିଷ, ଲୁହାର ମଣିଷ, ମୁଣ୍ଡାଗଡ଼ର କ୍ଷୁଧା, ଅମର ଚିତା ଓ ଆଜିର ମଣିଷ ପାଞ୍ଚଟି ଉପନ୍ୟାସର ସେ ସ୍ରଷ୍ଟା । ମାଟିର ମଣିଷ ଓଡ଼ିଆ ସାହିତ୍ୟରେ ଏକ ଜନପ୍ରିୟ ଜୀବନ କୈନ୍ଦ୍ରିକ ଉପନ୍ୟାସ । ଏହି ଉପନ୍ୟାସରେ ଶାମ ପଧାନଙ୍କ ବଡ଼ ପୁଅ ବରଜୁ ହେଉଛି ମାଟିର ମଣିଷ । ସେ ପରିଶ୍ରମୀ ଓ ମାଟି-ପରିବାର ଓ ଗାଆଁର ମାନ-ଇଜ୍ଜତର ପରିଚ଼ୟ । କଟକ ଜିଲ୍ଲାର ବିରୂପା ନଦୀ କୂଳରେ ପଧାନପଡ଼ା ବୋଲି ଗୋଟିଏ ଛୋଟ ଗ୍ରାମ । ଏହି ଗ୍ରାମରେ ଶାମ ପଧାନର ଘର । ଶାମ ପଧାନ ଆଖପାଖ ଦଶ ପଚାଶ ଗାଁରେ ଭଲଲୋକ ଭାବରେ ଜଣାଶୁଣା । ପଧାନବୁଢ଼ୀ ମଧ୍ୟ ସୁଗୃହିଣୀ । ଶାମ ପଧାନର ଦୁଇପୁଅ ଓ ଦୁଇବୋହୂ । ବରଜୁ ଓ ଛକଡ଼ି ଦୁଇପୁଅ । ହାରାବୋଉ ଓ ନେତ୍ରମଣୀ ଦୁଇବୋହୂ । ଶାମ ପଧାନ ସରକାରୀ ଚାକିରିର ପକ୍ଷପାତି ନୁହନ୍ତି । ସେଥିପାଇଁ ବଡ଼ ପୁଅ ବରଜୁ ଚାକିରି ତ୍ୟାଗକରି ଚାଷବାସରେ ନିଜକୁ ନିୟୋଜିତ କରିଛି । ପଧାନ ବୁଢ଼ାଙ୍କ ଜୀବନର ସ୍ୱପ୍ନ ଥିଲା ସ୍ୱତନ୍ତ୍ର । ସେ ତାଙ୍କର ମୃତ୍ୟୁବେଳେ ବରଜୁକୁ କହିଥିଲେ – ''ତମେତ ଯୋଡ଼ିଏ ଭାଇ—ବିଲ ମଝିରେ ହିଡ଼ ନପଡ଼େ କି ଘର ମଝିରେ ପାଚିରି ନଉଠେ ।

ଏଥିପାଇଁ ତୁ ଜଗିଥିବୁ ।'' ପଧାନବୁଢ଼ା ଓ ବୁଢ଼ୀର ମୃତ୍ୟୁପରେ ଦୁଇ ବୋହୂଙ୍କ ମଧ୍ୟରେ ମନୋମାଳିନ୍ୟ ହୋଇଛି । ବରଜୁ ସବଳ ଚରିତ୍ର ମାତ୍ର ଛକଡ଼ି ଏକ ଦୁର୍ବଳ ଚରିତ୍ର । ଗାଁର ମାମଲତକାର ହରିମିଶ୍ରଙ୍କ କୁମନ୍ତ୍ରଣାରେ ଛକଡ଼ି ଭିନ୍ନେ ହେବା ପାଇଁ ଚାହିଁଛି । ନେତ୍ରମଣି ଘରର ଅନ୍ତର୍ଦ୍ୱନ୍ଦ୍ୱକୁ ତୀବ୍ରତର କରିଛି । ହାରାବୋଉକୁ ବରଜୁ ସଂଯତ କରିବାକୁ ଯାଇ ନିଜେ ନଖାଇ ନପିଇ ନିଜକୁ ଦଣ୍ଡିତ କରିଛି । ଏହି ଗାନ୍ଧିଆଦର୍ଶରେ ବରଜୁ ସଫଳ ହୋଇଛି । ହାରାବୋଉ ପରିବର୍ତ୍ତିତ ହୋଇଛି । ମାତ୍ର ବରଜୁର ସମସ୍ତ ଗାନ୍ଧିବାଦୀ ଦର୍ଶନ ନେତ୍ରମଣି ଓ ଛକଡ଼ି ଚରିତ୍ର ପାଇଁ କାଟୁକରିନାହିଁ, ପ୍ରଭାବ ପକାଇ ପାରିନାହିଁ । ଶେଷରେ ଯେତେବେଳେ ବରଜୁ ଦେଖିଲା ଘରେ ପାଚେରି ପଡ଼ିବ ଓ ବିଲ ବଣ୍ଟା ଯିବା ପରିସ୍ଥିତି ପହଞ୍ଚିଲା ସେତେବେଳେ ସେ ବାଧହୋଇ ପର ଛାଡ଼ି ଦେଲା । ବରଜୁର ଏଇ ପଦକ୍ଷେପରେ ଛକଡ଼ି ଚରିତ୍ରର ପରିବର୍ତ୍ତନ ଘଟିଛି । ନିଜ ଭାଇକୁ ପୁଣି ଘରକୁ ଫେରାଇ ଆଣିବା ପାଇଁ ଛକଡ଼ି ଗୃହତ୍ୟାଗ କରିଛି ।

ବରଜୁ ପଧାନ ବିଶେଷ ପାଠ ପଢ଼ି ନଥିଲେ ମଧ ସେ ସଚ୍ଚୋଟ ଓ ସମାଜ କୈନ୍ଦ୍ରିକ ବିଧି ବ୍ୟବସ୍ଥା ସହିତ ଏକମତ । ଯୌଥ ପରିବାର ବ୍ୟବସ୍ଥା ଭାରତବର୍ଷର ଏକ ପ୍ରାଚୀନ ସଂସ୍କୃତିର ବୈଶିଷ୍ଟ୍ୟ । ସମକାଳୀନ ଗାନ୍ଧୀ ଆଦର୍ଶ ଓ ମାର୍କ୍ସବାଦୀ ଚିନ୍ତାସହିତ ବରଜୁ ବିଶ୍ୱାସୀ । ପାରିବାରିକ ଜୀବନ ଭାଙ୍ଗିପଡୁଥିବା ବେଳେ ଔପନ୍ୟାସିକ କାଳିନ୍ଦୀଚରଣ ଯୌଥ ପାରିବାରିକ ଜୀବନର ସଂସ୍କାର ଆଣିବା ପାଇଁ ଚାହିଛନ୍ତି । ମିଳିତ ଗ୍ରାମୀଣ ଜୀବନ, ସୁସ୍ଥ ପାରିବାରିକ ଜୀବନ ଓ ସୁନ୍ଦର ସମାଜର ପରିକଳ୍ପନା ସେ କରିଛନ୍ତି । ବ୍ରିଟିଶ୍ ବିଧି ବ୍ୟବସ୍ଥାରେ ଚାକିରି ପ୍ରତି ବିତୃଷ୍ଣା ଭାବ ମଧ ଔପନ୍ୟାସିକ ପୋଷଣ କରି କୃଷି ହିଁ ସଂପଦର ବିଶ୍ୱସ୍ତ ଛବି ସେ ପ୍ରଦାନ କରିଛନ୍ତି । ଚାରିତ୍ରିକ ସ୍ଖଳନର ସଂଶୋଧନ ପାଇଁ ଅନଶନ ଓ ସତ୍ୟାଗ୍ରହର ନୂତନ ସଂସ୍କାରର ଚିତ୍ର ସେ ପ୍ରଦାନ କରିଛନ୍ତି । ଗାନ୍ଧିଆଦର୍ଶର ଏହି ସଂସ୍କାରପ୍ରାଣତା 'ମାଟିର ମଣିଷ' ଉପନ୍ୟାସର ମୂଳବିନ୍ଦୁ ।

ଲାଞ୍ଚ ପ୍ରସଙ୍ଗ ଆଉ ଏକ ମହତ୍ତ୍ୱପୂର୍ଣ୍ଣ ପ୍ରସଙ୍ଗ । ମାଟିର ମଣିଷ ଉପନ୍ୟାସରେ ବରଜୁ ସଚ୍ଚୋଟ ଓ ଲାଞ୍ଚ ପ୍ରତି ଅନାସକ୍ତ ଚରିତ୍ର । ବରଜୁ ଅମିନ ହେଲେ ମଧ ଦରମା ଛଡ଼ା କାହାଠାରୁ ଗୋଟିଏ ପଇସା ନିଏନାହିଁ । କିନ୍ତୁ ଲୋକେ ଏହାକୁ ବିଶ୍ୱାସ କରିପାରନ୍ତି ନାହିଁ । ଔପନ୍ୟାସିକ ଲେଖିଛନ୍ତି – ''ଲୋକେ କାବା ହୋଇ କହନ୍ତି, ଲଙ୍କାରେ ହରିଶଦ୍ଧ – ଅମିନ ହୋଇ ଫେରେ ପଇସା ନଖାଇବ – ଦି' ଦିଟା ବନ୍ଦୋବସ୍ତ ଆମେ ଦେଖି ଆସିଲୁଁ – ଏ କଥା କାନ ଶୁଣି ନଥିଲା, ଆଜି ଆଖି ଦେଖିଲା ।'' ଏକଥା ଏକ ସାର୍ବକାଳିକ ବ୍ୟଞ୍ଜନା । ଆଜିବି ଏହି ସଂସ୍କାରିତ ସ୍ୱରର ପ୍ରୟୋଜନୀୟତା ରହିଛି ।

ବ୍ରିଟିଶ ଶାସନ ଅମଳରେ ଓକିଲ, ମୋହରିର, ମୁକ୍ତାର, ମାଜିଷ୍ଟ୍ରେଟ୍ ଓ ପୋଲିସର ଆବଶ୍ୟକତା ଆରମ୍ଭ ହୋଇଛି । ମାତ୍ର ପୂର୍ବରୁ ଗାଁ କଜିଆ ଗାଁରେ ନିଷ୍ପତ୍ତି ହେଉଥିଲା ।

ଚାକିରିଆ ଓ କୃଷିଜୀବୀ ମଧ୍ୟରେ ପାର୍ଥକ୍ୟ ନଥିଲା । ସମସ୍ତେ ସମ ଭାବନାରେ ଥିଲେ । ମାତ୍ର ବ୍ରିଟିଶ ଶାସନ ଅମଳରେ ପାରସ୍ପରିକ ପାର୍ଥକ୍ୟ ବୃଦ୍ଧି ପାଇଛି । ଓଡ଼ିଆ ସାମାଜିକ ଜୀବନ ବିଖଣ୍ଡିତ ହୋଇଛି । ମାଲିମକଦ୍ଦମା, ପୋଲିସ କେସ୍ ଓ କୋର୍ଟ କଚେରି ଆରମ୍ଭ ହୋଇଛି । ସେଥିପାଇଁ ଗାନ୍ଧି ଆଦର୍ଶର ମହାନ ପରିକଳ୍ପନା କରାଯାଇଛି । ବ୍ରିଟିଶ ଚାକିରି ପରିତ୍ୟାଗ ଓ ବିଦେଶୀ ଦ୍ରବ୍ୟ ବର୍ଜନର ଆହ୍ୱାନ ସୃଷ୍ଟି ହୋଇଛି । ଏହି ସଂସ୍କାରିତ ସ୍ୱର 'ମାଟିର ମଣିଷ' ଉପନ୍ୟାସରେ ଲକ୍ଷ୍ୟ କରାଯାଏ । ବରଜୁ ପଧାନ ଏହି ଆଦର୍ଶର ମହାମାନବ ଭାବରେ ଅବତୀର୍ଣ୍ଣ ହୋଇଛି । ବ୍ରିଟିଶ୍ ସରକାର ଅଧୀନରେ ଥିବା ଚାକିରିକୁ ତ୍ୟାଗ କରିଛି । କୃଷି-ମାଟି ଓ ମଣିଷକୁ ଆପଣେଇ ନେଇଛି । ହରିମିଶ୍ର ଅତ୍ୟାଚାରରୁ ଗାଁକୁ ମୁକ୍ତିଦେବା ପାଇଁ ସେ ଗ୍ରାମ ବାସୀଙ୍କୁ ଏକତାବଦ୍ଧ କରାଇଛି । ଅନ୍ୟାୟ ବିରୁଦ୍ଧରେ ଗ୍ରାମବାସୀଙ୍କୁ ସଙ୍ଗଠିତ କରିଛି ! ପାରସ୍ପରିକ ବନ୍ଧୁତ୍ୱ, ଭାଇଚାରା ଓ ସମ୍ବନ୍ଧ ରକ୍ଷାପାଇଁ ଆହ୍ୱାନ ଦେଇଛି । ଏହା ଔପନ୍ୟାସିକଙ୍କର ସଂସ୍କାରିତ ସ୍ୱର ।

ଗାଁରେ ପରସ୍ପର ମଧ୍ୟରେ ମେଳ ରହିବ । ଜଣେ ଅନ୍ୟ ଜଣର ବିପଦରେ ଠିଆହେବ । ଗାଁର ମଙ୍ଗଳ ପାଇଁ ଦରକାର ପଡ଼ିଲେ ନିଆଁକୁ ଡେଇଁବାକୁ ହେବ । ସମସ୍ତେ ଭାଇ ଭାଇର ବନ୍ଧନରେ ଆବଦ୍ଧ । ସ୍ନେହ, ସହାନୁଭୂତି ଓ ଆନ୍ତରିକତା ସୃଷ୍ଟି ଔପନ୍ୟାସିକଙ୍କର ମୂଳ ଉଦ୍ଦେଶ୍ୟ । ଏହି ଉପନ୍ୟାସର ସଂସ୍କାର ହେଉଛି ଆଦର୍ଶ ପ୍ରତିଷ୍ଠା । ସୁସ୍ଥ ପାରିବାରିକ ଓ ସୁସ୍ଥ ସମାଜ କୈନ୍ଦ୍ରିକ ଜୀବନ ଔପନ୍ୟାସିକ ପ୍ରଦାନ କରିଛନ୍ତି । ଏହି ଆଦର୍ଶ ମଧ୍ୟ ଲୁହାର ମଣିଷ ଓ ଆଜିର ମଣିଷ ଉପନ୍ୟାସରେ ଦେଖିବାକୁ ମିଳେ ।

ସେହିପରି କାଳିନ୍ଦୀ ଚରଣଙ୍କ ପ୍ରବନ୍ଧ ସାହିତ୍ୟରେ ସଂସ୍କାରସ୍ୱର ଉତ୍କୀର୍ଣ୍ଣ । ସମକାଳର ସମାଜ ଓ ସାମାଜିକ ସମସ୍ୟାକୁ ଅନୁଭବ କରି ପ୍ରାବନ୍ଧିକ କାଳିନ୍ଦୀ ଚରଣ ସ୍ୱକୀୟ ପ୍ରବନ୍ଧ ମାନଙ୍କରେ ଯୁକ୍ତିନିଷ୍ଠ ଭାବରେ ସଂସ୍କାରିତ ଆଦର୍ଶକୁ ଉପସ୍ଥାପନ କରିଛନ୍ତି । କାଳିନ୍ଦୀ ଚରଣ ବହୁ ପ୍ରବନ୍ଧର ସ୍ରଷ୍ଟା । ସେଥିମଧ୍ୟରୁ ବହୁ ସଫଳ ପ୍ରବନ୍ଧ ରହିଛି । ସତ୍ୟ ଶିବ ସୁନ୍ଦର, ତ୍ୟାଗ ଓ ପ୍ରେମ, ଉତ୍ତରାଧିକାର ବେଗ ହିଁ ଉନ୍ନତିର ଲକ୍ଷଣ, ଓଡ଼ିଆ ସାହିତ୍ୟର ପରଂପରା, ଆଧୁନିକ ନାରୀ, କହି ପୁଛି ଜାଣେ ଯେ, ପୁରାଣର ବିଦୂଷୀ, ସାହିତ୍ୟରେ ବ୍ୟବସାୟ ପ୍ରଭୃତି ପ୍ରବନ୍ଧଗୁଡ଼ିକ ଯୁକ୍ତିନିଷ୍ଠ ଓ ସଂସ୍କାର ଧର୍ମୀ । 'ସତ୍ୟ ଶିବ ସୁନ୍ଦର' ପ୍ରବନ୍ଧରେ ପ୍ରକୃତ ଚିନ୍ତନ ହେଉଛି ଶ୍ରେଷ୍ଠ ବୋଲି ପ୍ରାବନ୍ଧିକ ପ୍ରତିପାଦନ କରିଛନ୍ତି । 'ତ୍ୟାଗ ଓ ପ୍ରେମ' ପ୍ରବନ୍ଧରେ ପ୍ରାବନ୍ଧିକ ତ୍ୟାଗ ଓ ପ୍ରେମର ଅଭେଦତ୍ୱ ଓ ବୈଶିଷ୍ଟ୍ୟକୁ ଉପସ୍ଥାପନ କରିଛନ୍ତି । ପ୍ରାବନ୍ଧିକ ଲେଖିଛନ୍ତି - ''ନିଜର ସଂକୀର୍ଣ୍ଣ ଗଣ୍ଡି ଭେଦକରି ଯେତେବେଳେ ସେ ଜଗତକୁ ପ୍ରେମ କରେ, ସେତେବେଳେ ଦେଖେ ସେ ନିଜକୁ ଜଗତ୍ ଆକାରରେ ପ୍ରେମ କରୁଛି । ଏହି ସମଦର୍ଶନ ଯେଉଁ ପ୍ରେମରେ ଅନୁସୃତ, ତାହା ବିଶ୍ୱ ବିସ୍ତୃତ - ବିରାଟ ।'' ପ୍ରେମ ଓ ସମଦର୍ଶନ ପାଇଁ ପ୍ରାବନ୍ଧିକ ଆହ୍ୱାନ ଜଣାଇଛନ୍ତି । ଏହା ହିଁ ସମାଜ ପାଇଁ ପ୍ରକୃତ ସଂସ୍କାରିତ ସ୍ୱର । 'ଉତ୍ତରାଧିକାର'

ପ୍ରବନ୍ଧରେ ଗାନ୍ଧି ଦର୍ଶନର ଶକ୍ତିଶାଳୀ ଅନୁଭବକୁ ପ୍ରାବନ୍ଧିକ ଦର୍ଶାଇଛନ୍ତି । ପ୍ରାବନ୍ଧିକଙ୍କ ଭାଷାରେ - ଯେତେବଡ଼ ଶୋକ ଆସୁ ପଛକେ ତହିଁରେ କାତର, କ୍ଳୀବ ବା ଅଥର୍ବ ହୋଇ ରହିବା ଗାନ୍ଧିନୀତିର ବିରୋଧୀ । ସେ ନୀତି ସବୁ ଅବସ୍ଥାରେ ଆଶାବନ୍ତ ଓ ଅଗ୍ରଗାମୀ । ଗାନ୍ଧିହତ୍ୟାର ବିରାଟ କଠୋରତା ଆଗରେ ଆଶାବନ୍ତ ହୋଇ ଅଗ୍ରଗାମୀ ଚିନ୍ତା କରିବା ଏକ ଅସମ୍ଭବ ବ୍ୟାପାର ବୋଲି ମନେ ହୋଇପାରେ; କିନ୍ତୁ ଗାନ୍ଧିନୀତି ପୃଥିବୀର ଯେକୌଣସି ଅସମ୍ଭବକୁ ମଧ ଅସ୍ୱୀକାର କରେ । ତାହାର ଅନେକ ପ୍ରମାଣ ଆମେ ଗଲା ତିନିଟା ଦଶନ୍ଧି ଭିତରେ କେତେକ ଘଟଣାରେ ଦେଖି ଆସିଛୁ ।''

'ପୁରାଣର ବିଦୂଷୀ' ପ୍ରବନ୍ଧରେ ମୈତ୍ରେୟୀ, ଗାର୍ଗୀ, ବା ମଦାଳସାଙ୍କର ଉପଖ୍ୟାନ ପାଣ୍ଡିତ୍ୟର ପରିଚୟ ବୋଲି ପ୍ରାବନ୍ଧିକ କହିଛନ୍ତି । ସାହିତ୍ୟର ପହିଲି ପେଶା, ବେଗ ହିଁ ଉନ୍ନତିର ଲକ୍ଷଣ, କୈଶୋର ଜ୍ଞାନ, ବିଶ୍ୱ ରୂପ ଦର୍ଶନ ଓ ଓଡ଼ିଆ ସାହିତ୍ୟର ପରମ୍ପରା ପ୍ରଭୃତି ପ୍ରବନ୍ଧରେ ପରଂପରା ଐତିହ୍ୟ ପ୍ରତି ଆସ୍ଥା ସ୍ଥାପନ ଓ ଶୁଦ୍ଧ ସମାଜବ୍ୟବସ୍ଥା ପ୍ରତି ଶୁଭଗ ଦୃଷ୍ଟି ତଥା ସଂସ୍କାରିତ ଜୀବନ ପ୍ରତି ପ୍ରାବନ୍ଧିକଙ୍କ ଦୃଷ୍ଟିଭଙ୍ଗୀ ପ୍ରତିବଦ୍ଧ । ଏକ ସମାଜ-ପ୍ରତିବଦ୍ଧ ସାହିତ୍ୟିକ ଓ ସଂସ୍କାର ପ୍ରାଣ ସ୍ରଷ୍ଟା ଭାବରେ କାଳିନ୍ଦୀ ଚରଣ ଆମର ପ୍ରାତଃସ୍ମରଣୀୟ । ସମାଜ ପ୍ରତିବଦ୍ଧତା ହିଁ ତାଙ୍କ ସାହିତ୍ୟରେ ପ୍ରକାଶ କରିଛି ନବ ସଂସ୍କାରବାଦୀ ଆଭିମୁଖ୍ୟ ।



# କାଳିନ୍ଦୀଚରଣ : ବିରଳ ବ୍ୟକ୍ତିତ୍ୱ

ଇଂ. ପ୍ରଭାକର ସ୍ୱାଇଁ

ଯିଏ ଅକ୍ଷର ଶିଖିଛି, ଦି ଅକ୍ଷର ପଢ଼ି ଜାଣିଛି ସେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ ଜାଣିଛି । ଚତୁର୍ଥ ଶ୍ରେଣୀରେ ପଢ଼ିଲା ଦିନଠୁ ନବ ସାହିତ୍ୟ ବହିରେ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କ କବିତା ପଢ଼ିଛି । ସେଇ କବିତାର ଏକ ପଙ୍‌କ୍ତି -

''ଅଭ୍ୟାସ ବଳେ ଶିଶୁ ଯଥା
ଶିଖଇ କ୍ରମେ କହି କଥା
ଥରକୁ ଥର ପଡ଼ିତଳେ
ଉଠଇ ଅଭ୍ୟାସର ବଳେ ।''

ଏଯାବତ୍ ଏହି ପଦ୍ୟାଂଶଟି ହୃଦୟରେ ସ୍ଥାନିତ ହୋଇ ରହିଛି । ସେହିପରି ମାଟ୍ରିକୁଲେସନ ଛାତ୍ରଭାବରେ ତାଙ୍କ 'ଗାନ୍ଧାରୀର ଆଶୀର୍ବାଦ' କବିତା ପଢ଼ିଛି । ସତେ କି ମହାନ୍ ନିର୍ଯ୍ୟାସ ସେ କବିତାର । ମନେପଡ଼େ ଏକ ପଙ୍‌କ୍ତି -

''ଘେନ କୁରୁମଣି ଆଶିଷ ମୋହର
ଜନନୀର ବରାଭୟ
ଅକ୍ଷୟ ହେଉ ପୁଣ୍ୟ ଜଗତ
ଧର୍ମର ହେଉ ଜୟ ।''

ବିରଳ ମାତୃହୃଦୟ ଗାନ୍ଧାରୀ । ସେହିଭଳି ବିରଳ କବି କାଳିନ୍ଦୀଚରଣ । ପୁଣି ପଢ଼ିଛି ତାଙ୍କର 'ମାଂସର ବିଳାପ' ଗଳ୍ପଟି । ତାର ମାର୍ମିକ ଅଭିବ୍ୟକ୍ତି ମର୍ମେ ମର୍ମେ ଅନୁଭବ କରିଛି ଏବଂ ଗାଳ୍ପିକଙ୍କୁ ମନେ ମନେ ଶତ ଶତ ପ୍ରଣାମ ଜଣାଇଛି । ବାସ୍ତବରେ ମହାନ୍ ତାଙ୍କର ଚିନ୍ତାଧାରା । କେଡ଼େ ମହାନ୍ ସେ । ପରେ ତାଙ୍କର ବହୁ କବିତା, ଗଳ୍ପ ଓ ଉପନ୍ୟାସ ପାଠ

କରିଛି । 'ମାଟିର ମଣିଷ' ଉପନ୍ୟାସ ପଢ଼ି ହୃଦୟର ଗହ୍ୱରରୁ ତାଙ୍କୁ କୋଟି କୋଟି ପ୍ରଣାମ କରିଛି । କିନ୍ତୁ ବ୍ୟକ୍ତିଗତ ଭାବରେ ନୁହେଁ, କାରଣ ତାଙ୍କୁ ମୁଁ ଦେଖିବାର ସୁଯୋଗ ପାଇ ନଥାଏ । କିନ୍ତୁ ମନ ଭିତରେ ଖୋଜି ବୁଲୁଥାଏ କେବେ ସେହି ବିରାଟ ଲେଖକଙ୍କୁ ଦେଖନ୍ତି କି, ଦି ପଦ କଥା ହୁଅନ୍ତି । ଈଶ୍ୱରଙ୍କ ଇଚ୍ଛା ହେଲେ ଏହା ସବୁ ସମ୍ଭବ ହୁଏ । ବୁର୍ଲାରେ ତାଙ୍କ ସାନ ଝିଅ ଶ୍ରୀମତୀ ଯଶୋଧାରା ମିଶ୍ର (ଲୁସି) ଏବଂ ଜ୍ୱାଇଁ ପ୍ରଫେସର ଗୋପାଳ ଚନ୍ଦ୍ର ମିଶ୍ରଙ୍କ ସମ୍ପର୍କରେ ଆସିଲି ଏବଂ କାଳିନ୍ଦୀଚରଣଙ୍କ ବ୍ୟକ୍ତିଗତ ଜୀବନ ସମ୍ପର୍କରେ ସେମାନଙ୍କଠାରୁ ଶୁଣିବାର ଅବକାଶ ପାଇଲି । ତା ପରେ ମୋର ସେହି ମହାନ୍ ବ୍ୟକ୍ତିତ୍ୱ, ସାରସ୍ୱତ ସ୍ରଷ୍ଟାଙ୍କୁ ଦେଖିବାର ଇଚ୍ଛା ବହୁଗୁଣିତ ହେବାକୁ ଲାଗିଲା ।

୧୯୮୧ ମସିହାରେ ବୁର୍ଲାରୁ ମୁଁ କଟକକୁ ବଦଳି ହୋଇ ଆସେ । ସେଇ ବର୍ଷର ଶେଷ ଭାଗରେ ଚିନ୍ତା କରେ ସାରଳା ସାହିତ୍ୟ ସଂସଦର ପ୍ରତିଷ୍ଠା କଥା । ମନେ ପଡୁଛି ୧୯୮୨ ମସିହା ନବବର୍ଷର ଆଦ୍ୟ ଶୀତ ସକାଳରେ ମୁଁ ପିଠାପୁର ସ୍ୱପ୍ନପୁରୀରେ ଭେଟେ ସେଇ ବିରାଟ ସାରସ୍ୱତ ସାଧକ, କବି, କଥାକାର, ନାଟ୍ୟକାର ଓ ସମୀକ୍ଷକ କାଳିନ୍ଦୀଚରଣ ପାଣିଗ୍ରାହୀଙ୍କୁ । ସେତେବେଳେ ସେ କିଛି ଲେଖୁଥାନ୍ତି ବସି । ମୁଁ ତାଙ୍କୁ ନିଜର ପରିଚୟ ଦେଲି । ଉଲ୍ଲସିତ ହୋଇ ମୋତେ ସେ ଆସନ ଦେଲେ । ସାଂଗେ ସାଂଗେ ତାଙ୍କ ସହଧର୍ମିଣୀଙ୍କୁ ଡାକି ଚିହ୍ନାଇ ଦେଲେ । ସେ ମଧ ମୋତେ ଜଳଖିଆରେ ଆପ୍ୟାୟିତ କଲେ । ତା ପରେ ଆସିବାର କାରଣ ପଚାରିଲେ । ଆଦିକବି ସାରଳା ଦାସଙ୍କ ସ୍ମୃତିରେ ସାଂସ୍କୃତିକ ପ୍ରାଣକେନ୍ଦ୍ର କଟକ ନଗରୀରେ 'ସାରଳା ସାହିତ୍ୟ ସଂସଦ' ଗଠନର ଅଭିପ୍ରାୟ ଜଣାଇଲି ଏବଂ ତାଙ୍କୁ ଏହି ଅନୁଷ୍ଠାନର ସଭାପତି ହେବା ପାଇଁ ଅନୁରୋଧ କଲି । ସେ ଅତ୍ୟନ୍ତ ସହୃଦୟତାର ସହିତ ମୋର ଅନୁରୋଧ ରକ୍ଷା କଲେ । ସେ ହେଲେ ସାରଳା ସାହିତ୍ୟ ସଂସଦର ପ୍ରଥମ ସଭାପତି ।

ଆନୁଷ୍ଠାନିକ ଭାବେ 'ସାରଳା ସାହିତ୍ୟ ସଂସଦ' ଜନ୍ମ ନେଲା ୧୯୮୨ ଜାନୁୟାରୀ ୪ ତାରିଖରେ ତତ୍‌କାଳୀନ ଲୋକ ସେବା ଆୟୋଗର ସଦସ୍ୟ ପ୍ରଫେସର ପ୍ରଫୁଲ୍ଲ କୁମାର ପତିଙ୍କ କଟକସ୍ଥିତ ସରକାରୀ ବାସଭବନରେ। ପରେ ସାରଳା ସାହିତ୍ୟ ସଂସଦର ପ୍ରଥମ ବାର୍ଷିକୋତ୍ସବ ୧୯୮୨ ପବିତ୍ର ମାଘ ସପ୍ତମୀରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଅନୁଷ୍ଠିତ ହେଲା । ଏଥିରେ ସଭାପତିତ୍ୱ କଲେ ପଦ୍ମଭୂଷଣ ଡଃ କାଳିନ୍ଦୀଚରଣ ପାଣିଗ୍ରାହୀ । ବହୁବାର ସାରଳା ସାହିତ୍ୟ ସଂସଦର ବିଭିନ୍ନ କାର୍ଯ୍ୟକ୍ରମ ସମ୍ପର୍କରେ ତାଙ୍କ ସହିତ ଆଲୋଚନା କରେ

ଓ ସେ ବହୁ ସୁଚିନ୍ତିତ ପରାମର୍ଶ ଦିଅନ୍ତି ଓ ସହଯୋଗ କରନ୍ତି । ଏପରିକି ଆମେ ସାଙ୍ଗ ହୋଇ ଭୁବନେଶ୍ୱରରେ ଅତିଥି ନିମନ୍ତ୍ରଣ କରିବାକୁ ବହୁବାର ଯାଇଛୁ । ୧୯୮୬ ପର୍ଯ୍ୟନ୍ତ ସେ ସାରଳା ସାହିତ୍ୟ ସଂସଦର ସଭାପତି ରହିଲେ ଓ ସଂସଦର ବିଭିନ୍ନ କାର୍ଯ୍ୟକ୍ରମରେ ଅକୁଣ୍ଠ ସହାୟତା ପ୍ରଦାନ କଲେ । ବାସ୍ତବରେ ସାରଳା ସାହିତ୍ୟ ସଂସଦର ଶୈଶବରେ ତାଙ୍କର ଯେଉଁ ସାହାଯ୍ୟ ତାହା ଅବିସ୍ମରଣୀୟ । ବ୍ୟକ୍ତିଗତ ଭାବରେ ମୁଁ ତାଙ୍କ ପାଖରେ ଚିର ଋଣୀ । ତାଙ୍କର ଶ୍ରଦ୍ଧା, ସ୍ନେହ ଓ ଆଶୀର୍ବାଦ ମୋତେ ବହୁ ଭାବରେ ଉତ୍ସାହିତ କରିଛି । ସେଥିପାଇଁ ଆତ୍ମୀୟତାର ସହ ମୁଁ ତାଙ୍କୁ ଅଜା ଓ ତାଙ୍କ ସ୍ତ୍ରୀଙ୍କୁ ଆଇ ବୋଲି ସମ୍ବୋଧନ କରେ । ସେ ମୋ ଜୀବନର ଜଣେ ପରମ ହିତୈଷୀ ହୋଇଛନ୍ତି । ଏପରିକି ସେ ମୋ ପରିବାରର ସୁଖ ଦୁଃଖରେ ଠିଆ ହୋଇଛନ୍ତି । ଭାଇ ବାହାଘର ଠାରୁ ପୁଅ ଜନ୍ମଦିନ ପର୍ଯ୍ୟନ୍ତ ସବୁଥିରେ ସେ ଯୋଗ ଦେଇଛନ୍ତି । ମୁଁ ତାଙ୍କୁ କଦାପି ଭୁଲି ପାରିବି ନାହିଁ କିମ୍ବା ସାରଳା ସାହିତ୍ୟ ସଂସଦ ତାଙ୍କୁ କଦାପି ଭୁଲି ପାରିବ ନାହିଁ । ସାରଳା ସାହିତ୍ୟ ସଂସଦ ପାଇଁ ସେ ଚିର ସ୍ମରଣୀୟ ।



# ମୁଁ କାହିଁକି ଲେଖେ

କାଳିନ୍ଦୀଚରଣ ପାଣିଗ୍ରାହୀ

ପ୍ରଥମେ ଯେବେ ଲେଖିବାକୁ ଆରମ୍ଭ କଲି ସେ ବହୁତ କାଳର କଥା । ସେତେବେଳେ ଏ ପୃଥିବୀ ଥିଲା ସମ୍ପୂର୍ଣ୍ଣ ନୂଆ — ଏହାର ସକାଳ, ସଞ୍ଜ, ଖରା, ବର୍ଷା, ଶୀତ, ବସନ୍ତ କାହାରି ସଙ୍ଗେ ମୋର ଭଲ ଭାବରେ ପରିଚୟ ହୋଇନଥିଲା । ଏହାର ପବନ, ଆଲୁଅ, ଜୀବଜନ୍ତୁ, ଗଛଲତା, ଫୁଲଫଳ କିଛି ହେଲେ ପୁରୁଣା ହୋଇନଥିଲା । ଚନ୍ଦ୍ର, ତାରା, ଇନ୍ଦ୍ରଧନୁ ଥିଲେ ଗୋଟିଏ ବିରାଟ ରହସ୍ୟ । ନଦୀ, ପର୍ବତ, ହ୍ରଦ, ଅରଣ୍ୟ, ସାଗର, ଆକାଶ ସବୁରି ଭିତରେ ଲେଖିବା ପାଇଁ ଅସଂଖ୍ୟ ଉପାଦାନ ମିଳୁଥିଲା — ଲେଖ, ଲେଖ, ଲେଖ । ଏହି ଅପରିଚିତ ନୂଆ ଦୁନିଆ ସଙ୍ଗେ ପରିଚୟ ଲାଭ କରିବା ପାଇଁ ଜଗତ ଗୋଟାକୁ ଏକାନ୍ତ ଆପଣାର ବୋଲି ବିଚାରି ଜୀବ ଓ ଜଡ଼ ପ୍ରକୃତି ସହିତ ଆତ୍ମୀୟତା କରିବା ପାଇଁ ପହିଲେ ଲେଖିବାକୁ ଆରମ୍ଭ କଲି । ଆରମ୍ଭ କଲି, ଦୁନିଆଟାକୁ ଅତି ନିକଟରେ ହାତ ପାଆନ୍ତାରେ ପାଇବା ପାଇଁ; ନିଜ ସୁଖ ଦୁଃଖର ସାଥି କରି ଅତି ବିଶ୍ୱାସୀ ବନ୍ଧୁ ଭାବରେ —

କାରଣ ମଝିରେ ମଝିରେ ନିଜକୁ ହୁଏତ ସାହା ସାଥିହୀନ ଏକା ଏକା ବୋଧ କରୁଥିଲି — ସେତେବେଳେ ଦେଖେ ବିଶ୍ୱସ୍ତ ବନ୍ଧୁ ଲୋଡ଼ାଥିଲା ଅନେକ — ଏଭଳି ଅନେକ ବନ୍ଧୁ ଖୋଜି ସଂସାର ଭିତରୁ ବାହାର କରିବାକୁ ହୁଏତ ବେଳ ଆସି ନଥିଲା । ସେଥିପାଇଁ ସମଗ୍ର ଦୁନିଆଟାକୁ ଯୋଡୁଥିଲି ବନ୍ଧୁ ଭାବରେ — ନିରାଶ୍ରୟର ଆଶ୍ରୟ ରୂପରେ — କିନ୍ତୁ ନିରାଶ୍ରୟୀକୁ ଆଶ୍ରୟ ଦେବା ତ ଦୂରର କଥା, ଆଶ୍ରୟକୁ ନିରାଶ୍ରୟ କରିବା ଉଦାହରଣ ଯେ ପ୍ରଚୁର ସେ ବୟସରେ ମୋ ଆଖି ଆଗକୁ ତାହା ଆସି ନଥିଲା — କାନକୁ ଶୁଣାଯାଇ ନଥିଲା – ନିରାଶ୍ରୟର ଆର୍ତ୍ତନାଦ, ସେତେବେଳେ ହୁଏତ ବେଶି ଶୁଭୁଥିଲା କୋଇଲିର କୁହୁ କିମ୍ବା ଗଉଡ଼ ପିଲାର ବଇଁଶୀ । ଦେଖିବାକୁ ଭଲ ଲାଗୁଥିଲା ମୟୂରୀର ନାଚ ଅବା କଅଁଳା ବାଛୁରୀର ଡିଆଁ – ବାଳକ ଅବା ଯୁବକ ଜୀବନରେ ଯେତେ ଆଶା, ଆକାଙ୍କ୍ଷା ଯେତେ ବସ୍ତୁ ଲାଭ କରିବାର ଇଚ୍ଛା ମନରାଇଜରେ ଉଇଁଉଠେ । କିନ୍ତୁ ସବୁଗୁଡ଼ାକୁ ହୁଏତ ମିଳିବାର କଥା ନୁହେଁ ବୋଲି ମିଳେ ନାହିଁ । ସେହି ନ ମିଳିବା ଥାନଟିକୁ ପୂରଣ କରିବା ପାଇଁ ଦୁନିଆଟାକୁ ପାଖକୁ ଟାଣି ଶୁଣାଏଁ ତାହା କାନେ କାନେ ନିଜର ଦୁଃଖ, ଦୁର୍ବଳତା, ଦୁଃସ୍ୱପ୍ନ, ନିଜର ବ୍ୟର୍ଥତା,

ବିଫଳତା ଓ ନୈରାଶ୍ୟର କାହାଣୀ — ଶୁଣାଏ ତାହାକୁ ନିଃସ୍ୱ ହତାଶାର ତୁମୁଳ ପ୍ରତିବାଦ — ଜୀବନରେ ଏଭଳି ଦ୍ୱନ୍ଦ୍ୱ, ଆତ୍ମବିଷାଦ ଓ ଆତ୍ମଘୃଣାରେ କେତେ କବିତା ଗଳ୍ପ ସୃଷ୍ଟି ହୋଇପାରେ, ତାହାର ଉଦାହରଣ ମୋର ପ୍ରାଥମିକ ରଚନାବଳୀର ଅଭାବ ନୁହେଁ । ଦାର୍ଶନିକ ପ୍ଲାଟୋଙ୍କ କବିତାର ସେହି ପୁରୁଣା ସଂଜ୍ଞା କଥାଟି ମନେ ପଡ଼େ — ସେ କହିଥିଲେ, କବିତା ହେଉଛି ପ୍ରକୃତିର ଗୋଟାଏ ନକଲ ମାତ୍ର — ଏହାର ନଦୀ, ବନ, ପ୍ରାନ୍ତର, ଜୀବଜଗତ୍ ଓ ଉଦ୍ଭିଦ ଜଗତ୍ — ଏଇ କବି ଜଗତର ଗୋଟିଏ ନକଲି ଚିତ୍ର, ଗୋଟାଏ ଛାୟା କିମ୍ବା ପ୍ରତିଧ୍ୱନି ।

ଜଡ଼ ଉପାଦାନ, ଜୀବ ଉପାଦାନ ବା ଉଦ୍ଭିଦ ଉପାଦାନଗୁଡ଼ିକ ଯେ କବିତା ସଂଗଠିତ, ନିୟନ୍ତ୍ରିତ ଓ ସନ୍ନିତ କରି ଏହି ତିନୋଟି ଜଗତ ଭିତରେ ଅର୍ଥାତ୍ ଜଡ଼ ଜଗତ, ଜୀବ ଜଗତ ବା ଉଦ୍ଭିଦ ଜଗତ ଭିତରେ ଉନ୍ମାଦନା, ନୂଆ ଜୀବନ, ନୂଆ ବିପ୍ଳବ ଓ ନୂଆ ସୃଷ୍ଟି ଆଣିପାରେ, ମଣିଷ ସମାଜକୁ ଗଢ଼ିପାରେ, ଭାଙ୍ଗିପାରେ ଏହିଭଳି ଅନୁଭୂତି ଭିତରେ ପ୍ଲାଟୋଙ୍କ ସଂଜ୍ଞା ଅନୁସାରେ କେବଳ ପ୍ରକୃତିର ନକଲ କରି ଚିତ୍ର ଆଙ୍କିବାରେ ପ୍ରେରଣା କେତେ ଅଛି, ଚିତ୍ରକୁ ଆଲୋକିତ କରିଛି — କେତେ ବର୍ଷା ନିଶୀଥରେ ଲେଖନୀରୁ ମସୀ ଝରିପଡ଼ିଛି ଅକାରଣ ଅସଂବଦ୍ଧ ଓ ଉଦ୍ଦେଶ୍ୟହୀନ ଭାବରେ — ପୁଣି କେତେ ଚିନ୍ତାର ସଂଘାତ ଭିତରେ ମନର ମଣିଷକୁ ଖୋଜିବାକୁ ପ୍ରାଣ ଧାଇଁଛି କ୍ଷୋଭ ଓ ହତାଶା ଭିତରେ, 'ଆତ୍ମହତ୍ୟା' ବା 'ଛିନ୍ନପୃଷ୍ଠା' ଗଳ୍ପ ଲେଖିଛି — ଅବା 'ପୁରୀ ମନ୍ଦିର' ଭଳି କବିତା ଲେଖିଛି — ସବୁଠାରେ ଖୋଜି ବୁଲିଛି 'ମଣିଷ' । 'ପୁରୀ ମନ୍ଦିର' କବିତାଟିରେ ଦେବତାଙ୍କୁ ନମସ୍କାର ନ କରି କରିଛି ମଣିଷକୁ — ଏହାର ଅନେକ ପରବର୍ତ୍ତୀ ରଚନାରେ ମଧ୍ୟ ଏହି ମଣିଷ ଖୋଜିବା ହିଁ ମୋ ଲେଖନୀର ଗୋଟାଏ ବଡ଼ କାମ ହୋଇପଡ଼ିଛି — 'ମାଟିର ମଣିଷ' କିମ୍ବା 'ଲୁହାର ମଣିଷ' ଆକାରରେ । କହୁଁ କହୁଁ ତ ମୁଁ ଅନେକ ବାଟ ଟପି ଆସିଲିଣି ।

ଯେ କେହି ଲେଖକକୁ ତାହାର ନିଜ କଥାଗୁଡ଼ିକ ନିଜ ଲେଖା ଭିତରେ ଏତେ ବେଶି ବୟାନ କରିବାକୁ ହୁଏ ଯେ, ପୁଣି ସେ କାହିଁକି ଲେଖେ, ଏ ବିଷୟରେ ଗୋଟିଏ ଲମ୍ବା ଚଉଡ଼ା କୈଫିୟତ ଦେବାପାଇଁ ଅଡୁଆ ଲାଗିବାର କଥା । ଆହୁରି ମଧ୍ୟ ଆତ୍ମପ୍ରଶଂସା କରିବାକୁ ଗଲେ ଆତ୍ମନିନ୍ଦା ଆସି ପହଞ୍ଚିଯାଏ ଆଗେ ଆଗେ ।

ନିଜକୁ ଘୃଣା କରିବା ଅବସ୍ଥାରୁ ବାହାରି ଯାଇ ଘୃଣାଟା ପଡ଼େ ଦୁନିଆ ଉପରେ ଶେଷରେ ଯାଇଁ । ଖୋଜିବାକୁ ହୁଏ ଏହି ଘୃଣ୍ୟ ଜୀବନର କାରଣ । ଏହି ପରିବାର ଓ ପ୍ରମାଦ ଭିତରେ ବାଛିନେବାକୁ ହୁଏ କିଏ ସେ ଶତ୍ରୁ । ଦୁନିଆରୁ ପୁଣି ଖୋଜି କାଢ଼ିବାକୁ ପଡ଼େ ତାହାର ବିନାଶର ହେତୁ କେଉଁଠି ? ଜର୍ଜରିତ ଆତ୍ମାର ଅଭିଶାପ ଜଳିଉଠେ ଅନ୍ତର ଭିତରେ । ସବୁ କବିତା, ସବୁ ଗଳ୍ପ, ଉପନ୍ୟାସ ବା ପ୍ରବନ୍ଧ ଭିତରେ ବାଜି ଉଠେ ଏକ ଦୁର୍ଦ୍ଦାନ୍ତ ଅଭିଯୋଗ, ନିଜର ପୁଣି ଦୁନିଆର ବିଫଳତା ଓ ବ୍ୟର୍ଥତା ବିରୁଦ୍ଧରେ ନିର୍ଲ୍ଲଜ ମିଥ୍ୟା ଓ ଅସମ୍ଭବ ବିରୁଦ୍ଧରେ ।

ସେତେବେଳେ ଆଉ କୋକିଳର ସ୍ୱର ଅବା କୁସୁମର ରୂପ ସାନ୍ତ୍ୱନା ଦେଇପାରେ ନାହିଁ; ସାନ୍ତ୍ୱନା ଦିଏ ମନୁଷ୍ୟର ପ୍ରତିହିଂସା ଓ ପ୍ରତିଶୋଧ । ସେତେବେଳେ ମନେହୁଏ ଏଇ ଦୁନିଆ ଉପରୁ ଅନ୍ୟାୟ, ଅନାଚାର ପାପ ଓ ମୂର୍ଖତା ଦୂର ନହେବା ଯାଏ ଚଳାଇବାକୁ ହେବ । ଅବିଶ୍ରାମ ଲେଖନୀର ଅଭିଯାନ, ଆହୁରି ହଜାର ହଜାର ଅନାହାରୀ ରୁଗ୍‌ଣ, ପଙ୍ଗୁ ସୈନିକଙ୍କ ସାଥିରେ ଏକମାତ୍ର ଲେଖନୀ ଅସ୍ତ୍ରଟି ହସ୍ତରେ ଧାରଣ କରି ।

ମୋହର ବାକ୍ୟ ବିନ୍ୟାସ ଶୁଣି ଆପଣମାନେ ହସିବେ ନାହିଁ ବୋଲି ଅନୁରୋଧ । ଏହି କଙ୍କାଳସାର ଶିଳ୍ପୀକୁଳ ଯେ କି ଆମର ସଭ୍ୟତା ଓ ସଂସ୍କୃତିକୁ ଗଢୁଛନ୍ତି । ସେମାନଙ୍କର ରଣ ଅଭିଯାନ କଳ୍ପନା କଲାବେଳେ ଆପଣମାନେ ନିଜକୁ ଯେବେ ଆଣବିକ ବୋମାର ଯୁଗରେ ଅଛନ୍ତି ବୋଲି ସୌଭାଗ୍ୟବାନ ମନେକରନ୍ତି, ତେବେ ହୁଏତ ହସିବାର କାରଣ ଅଛି । ତଥାପି ଏହି କାରଣରୁ ହିଁ ମୁଁ ଲେଖେଁ । ଅର୍ଥାତ୍ ଆପଣମାନଙ୍କୁ ଟିକିଏ ହସାଇବା ପାଇଁ ଓ ନିଜେ ଅନ୍ୟର ହସ ମୁହଁ ଦେଖି ଖୁସି ହେବା ପାଇଁ ମୁଁ ଲେଖେଁ । ଏଠାରେ ପୁଣି ନିଜ କଥା ଆସି ପଡ଼ିଯାଏ ।

କଟକ ବେତାର କେନ୍ଦ୍ର ଆନୁକୂଲ୍ୟରେ ନିଜ କଥା ବା ନିଜେ କାହିଁକି ଲେଖେଁ ତାହା ଦର୍ଶନ କରିବାର ସୁଯୋଗ ପାଇ ଯଦି ନିଜ ବଡ଼ିମା ଟିକିଏ ଗାଇଦିଏଁ ତେବେ କ୍ଷତି କ'ଣ ? କାରଣ ମୁଁ ଜାଣେ ମୋର ବଡ଼ିମା ବଖାଣିବାକୁ, ଗାଇବାକୁ, ଆଉ କାହାରି ହେଲେ ବେଳ ନାହିଁ । ପୁଣି କେହି ଯେବେ ଅକସ୍ମାତ୍ ଗାଇବାକୁ ଚେଷ୍ଟା କରନ୍ତି, ତେବେ ତାଙ୍କୁ ହତାଶ ହେବାକୁ ପଡ଼ିବ, କାରଣ ସେ ଦେଖିବେ ଯେ ପ୍ରକୃତରେ ମୋହର ବଡ଼ିମା ଫଡ଼ିମା କିଛି ନାହିଁ ।

ଯାହା ହେଉ ଏହିପରି ବଡ଼ିମା କିମ୍ବା ଫାଜିଲାମି କରିବାର ଚାତୁରୀ ହୁଏତ କେତେ ଲେଖାରେ ମୋର ଥିବ । କିନ୍ତୁ ସବୁ ଫାଜିଲାମି ମିଳାଇଯାଏ ଯେତେବେଳେ ଆସେ ବଞ୍ଚିରହିବାର ତାଗିଦା । ମୋର ଲେଖିବାର ନାନା କାରଣ ଭିତରେ ଏହାହିଁ ହେଲା ମୂଳ କାରଣ । ନ ଲେଖିଲେ ଯେ ବଞ୍ଚି ରହିବାଟା ହୁଏ ଗୋଟାଏ ପ୍ରାଣହୀନ ପ୍ରେରଣାହୀନ କଠିନ ଜୀବନ । ଏହିଭଳି ଜୀବନଟାକୁ ମଧ୍ୟ ଧରି ରଖିବାକୁ ହୁଏ । ତାହା ପାଇଁ ଏକ ଅନୁକୂଳ ପରିସ୍ଥିତି ସୃଷ୍ଟି କରି ନିଜକୁ ଦୁର୍ଗନ୍ଧରୁ ରକ୍ଷା କରିବା ପାଇଁ ଚାରିଆଡ଼ର ସନ୍ଦେହ, ଅବିଶ୍ୱାସ, କଳହ, ଦ୍ୱନ୍ଦ୍ୱ ଓ ମିଥ୍ୟାକୁ ଦୂର କରି ପୁଣି ସେହି ବଞ୍ଚି ରହିବା ଭିତରେ କଳ୍ପନା ଓ ସତ୍ୟରେ ଗଢ଼ା ଗୋଟିଏ ଗୋଟିଏ ନୂଆ ସୁଖୀ ସଂସାର ଦେଖିଯିବା ପାଇଁ ।

ବଞ୍ଚିବାକୁ ଲେଖେଁ ମୁଁ କେତେବେଳେ ? ଯେତେବେଳେ ବାସ୍ତବତା ସାଙ୍ଗରେ ଆସେ ମୋର ମୁହାଁମୁହିଁ ଗୋଟାଏ ପରିଚୟ । ସେତେବେଳେ ମନେପଡ଼େ ବିଖ୍ୟାତ ଇଂରାଜୀ ନାଟ୍ୟକାର କବି ବର୍ଣ୍ଣାଡ଼ ଶ'ଙ୍କର ଗୋଟିଏ ବଚନ । ଜାହାଜରେ ଯାତ୍ରା କରୁଥିବା ବେଳେ

ଜଣେ ସାମ୍ବାଦିକ ତାଙ୍କୁ ପଚାରିଲେ, ''ଆପଣ କ'ଣ ଜାହାଜରେ ସୁଦ୍ଧା ଲେଖୁଛନ୍ତି ?'' ରହସ୍ୟନିର୍ମାତା ବର୍ଣ୍ଣାଡ଼ ଶ' ତାହା ଶୁଣି ଉତ୍ତର ଦେଇଥିଲେ, ''ଏ କଥା ମୋତେ ନ ପଚାରି ଆଗ ଜାହାଜର କାପ୍ତାନଙ୍କୁ ପଚାର ସେ ଜାହାଜ ଚଳାଉଛନ୍ତି କି ନାହିଁ ?''

ବଞ୍ଚି ରହିବାକୁ ସମସ୍ତେ ଆହାର କରନ୍ତି । ବଞ୍ଚିରହିବାକୁ ଚଷା ହଳ କରେ, ବଢ଼େଇ କାଠ ହାଣେ, ତନ୍ତି ଲୁଗା ବୁଣେ, ବଣିଆ ଗହଣା ଗଢ଼େ, ମୁଁ ମଧ୍ୟ ବଞ୍ଚି ରହିବାକୁ ଲେଖେଁ । ଲେଖିବାଦ୍ୱାରା କେଉଁ ପରିମାଣରେ ବଞ୍ଚେ ଅବା କେଉଁ ପରିମାଣରେ ମରେଁ ସେ ସବୁ କଥା ଗୋଟିଏ ଗୋଟିଏ ବର୍ଣ୍ଣି ବସିଲେ ଆପଣ ମୋତେ ଯେଉଁ ବିଷୟରେ କହିବାକୁ ଆଜି ଦିଆଯାଇଛି ତାହାର ଠିକ୍ ଓଲଟା ଅର୍ଥ ବୁଝାଇଥିବା ବିଷୟ ପଚାରିଥିଲେ ଭଲ ହୋଇଥାନ୍ତା । ଅର୍ଥାତ୍ ମୁଁ କାହିଁକି ଲେଖେ ବୋଲି ନ ପଚାରି ମୁଁ କାହିଁକି ନ ଲେଖେ ପଚାରିଥିଲେ ଠିକ୍ ପ୍ରଶ୍ନ ହୋଇଥାନ୍ତା । କାରଣ ମୋର ଏହି ନ ଲେଖିବାର ଶୂନ୍ୟ ସ୍ଥାନଟା ହିଁ ମୋ ଲେଖକ ଜୀବନରେ ସବୁଠାରୁ ବେଶି ସମୟ ଆବୋରି ବସିଛି ଏବଂ ସବୁଠାରୁ ତାହା ମୋର ବଡ଼ ବ୍ୟର୍ଥତା ।

ତାହାକୁ ପୂରଣ କରିବା ଉଦ୍ଦେଶ୍ୟରେ ମୋତେ ଯେବେ ସବୁ କାରଣ ଓ ଅକାରଣ ବସ୍ତୁ ପାଇଁ ଲେଖିବାକୁ ହୁଏ, ତେବେ ମଧ୍ୟ ଦୁଃଖ ନାହିଁ । କାରଣ ଏହାଠାରୁ ବଡ଼ ବ୍ୟର୍ଥତା ମଧ୍ୟରେ ସୁଦ୍ଧା ମୋତେ ଲେଖିବାକୁ ହୋଉଛି । ମୋ ଲେଖନୀର ସାର୍ଥକତାକୁ ଘେନି ଆପଣମାନଙ୍କ ଆଗରେ କେତେ ବଢ଼ାଇ କରିଛି । ଏହାର ବ୍ୟର୍ଥତା ଶୁଣିଲେ ଆପଣମାନେ କାନରେ ହାତ ଦେବେ । ଏପରିକି ମୋର କୌଣସି ରଚନା ପଢ଼ିବାକୁ ଆପଣମାନଙ୍କର ଇଚ୍ଛା ହେବ ନାହିଁ ।

ସେ ବ୍ୟର୍ଥତା ହେଉଛି ଏହା ଯେ ମୁଁ ବିଶ୍ୱାସ କରିଛି ମନୁଷ୍ୟର ସ୍ନେହରେ, ପ୍ରେମରେ, ମଧୁରତାରେ, କୋମଳତାରେ ପୁଣି ତାହାର ମିଳନରେ ବନ୍ଧୁତାରେ ଓ ଅହିଂସାରେ । ମୋର 'ଅମରଚିତା'' ବା ''ମୁଲ୍ତାଗଡ଼ର କ୍ଷୁଧା'' ଉପନ୍ୟାସ ମନୁଷ୍ୟର ହୃଦୟ ପରିବର୍ତ୍ତନର ଗୋଟାଏ ଗୋଟାଏ ଚିତ୍ର –– ଅତ୍ୟାଚାରୀ ଅମିତବ୍ୟୟୀ ଧନିକର ଅନୁତାପଜନିତ ଜନସେବାରେ ଗୋଟାଏ ନିଦର୍ଶନ । ମୋର ''ମାଟିର ମଣିଷ'' ଘର ସଂସାର ତ୍ୟାଗ କରି ଚାଲିଯାଏ । ହରି ମିଶ୍ର ଉପରେ ପ୍ରତିହିଂସା ନିଏ ନାହିଁ । ଏହାକୁ କେହି କେହି ଏକ ଅସ୍ୱାଭାବିକ ଘଟଣା ବୋଲି ବିଚାର କରନ୍ତି । ମୋତେ ମଧ୍ୟ ଆଜି ତାହା ଅସ୍ୱାଭାବିକ ବୋଲି ବୋଧ ହେଉଛି । ସେଥିପାଇଁ ଗ୍ରନ୍ଥ ଶେଷ କଲାବେଳେ ହରି ମିଶ୍ରଙ୍କୁ ହତ୍ୟା କରିବା ଉଚିତ୍ ବୋଲି କଳ୍ପନା କରୁଛି । କାରଣ ମୁଁ ଦେଖୁଛି ଗାନ୍ଧିଜୀଙ୍କର ଅହିଂସା ବୋଧହୁଏ ଅନେକ ହିଂସାପରେ ସମ୍ଭବ ହେବ । ଅଶୋକଙ୍କର ଅହିଂସା ଯେପରି କଳିଙ୍ଗ ସମର ପରେ ଉଦିତ ହୋଇଥିଲା । ଯାହା ମୋର 'ପ୍ରିୟଦଶ୍ରୀ' ନାଟକର ବିଷୟବସ୍ତୁ ।

ଅବଶ୍ୟ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନର ବ୍ୟାଖ୍ୟା ମୋ ରଚନାଗୁଡ଼ିକୁ ଏକ ସମୟରେ ପ୍ରଭାବିତ କରିଥିଲେ ହେଁ, ଆଉ ମଧ୍ୟ ଜାତିର ଓ ଦେଶର ସ୍ୱାଧୀନତା ପାଇଁ ମୋତେ

ଲେଖିବାକୁ ହେଉଥିଲେ ହେଁ ସେ ଲେଖା ଆଜି ବି ମୋ ସପକ୍ଷରେ ଏକ ବିରାଟ ବିଫଳତା ରୂପେ ଛିଡ଼ା ହୋଇଛି । କାରଣ ମୁଁ ଦେଖୁଛି ଯେଉଁଠି ଅହିଂସାର ମନ୍ତ୍ର ଉଚ୍ଚାରିତ ହେଉଥିଲା, ଠିକ୍ ସେହିଠାରେ ହିଁ ହିଂସାର କୁତ୍ସିତ ଦୃଶ୍ୟ ଚାଲିଛି ।

ଆଉ ଏକ ବିଫଳତା ଏହି ଯେ ମୁଁ ଯେଉଁ କାରଣରୁ ଲେଖେଁ ସେହି ଭାବରେ ମୋ ଲେଖାର ବ୍ୟବହାର ହୁଏନା । ମଣିଷ ଜୀବନରେ ଯାହା କିଛି ଉତ୍କୃଷ୍ଟ ତାହାକୁ ହିଁ ସ୍ପର୍ଶ କରିବା ଯେପରି ମୋ ଲେଖନୀର ଉଦ୍ଦେଶ୍ୟ, ତାହା ମଧ୍ୟରେ ଯାହା କିଛି ଘୃଣ୍ୟ ତାହାକୁ ଆଘାତ କରିବା ମଧ୍ୟ ସେହିପରି ତାହାର ଧର୍ମ । ଓଡ଼ିଆ ଭାଷା ପଢ଼ୁଥିବା ଯେଉଁ ପାଠକମାନଙ୍କ ପାଇଁ ମୁଁ ଲେଖେଁ, ସେହିମାନଙ୍କର ବାସଭୂମି ପାଇଁ ମୁଁ ଲେଖେଁ, ସେହିମାନଙ୍କର ବାସଭୂମି ଓଡ଼ିଶାକୁ ଚିହ୍ନିବା ପାଇଁ, ଏହାର ନଦୀ, ହ୍ରଦ, ପର୍ବତ, କନ୍ଦର ଜାଣିବା ପାଇଁ କେତେ ସୁଯୋଗ ମୋତେ ମିଳିଛି । ଓଡ଼ିଶାର ମିସ୍ତ୍ରୀ, କାରିଗର, ଶିକ୍ଷିତ, ଅଶିକ୍ଷିତ, ସମାଜରେ ଚଳିବାର, ପୁଣି କେତେ ଚାଷୀ, ମୂଲିଆ ଓ କାରଖାନା କୁଲିଙ୍କ ପାଖରେ ବସିବାର, କାହା ଗୃହାଙ୍କ ଘରେ ମୋର ରାତି ପୁହାଇବାର ଓ କେଉଁ ଛାପାଖାନା ଭିତରେ ରାତି ଅଧଯାକେ କାମ କରିବାର ପ୍ରତିଜ୍ଞା ମୋର ହୋଇଛି । ଓଡ଼ିଶାର ଲୋକପ୍ରିୟ ଶାସନର ମନ୍ତ୍ରୀମାନଙ୍କୁ ଚିହ୍ନିବାର ଫୁରୁସତ୍ ମଧ୍ୟ କେତେ ଜୁଟିଛି । ଓଡ଼ିଆ ଜାତିର ସମ୍ଭ୍ରାନ୍ତ ଆଭିଜାତ୍ୟ ସଙ୍ଗେ ଦାରିଦ୍ର୍ୟ ଅନଶନର ଚିତ୍ର ଭିତରେ ଲେଖନୀ ତାର ଖୋରାକ ଖୋଜିଛି, ଗଳ୍ପ ଉପନ୍ୟାସର ଚରିତ୍ର ବାଛିବାକୁ ପାଇଛି ।

ଜୟଗାନ କରିଛି ଏକ ସମାଜର, ଏକ ଭାଷାର ଯାହାକୁ ଶାରଳା, ଜଗନ୍ନାଥ, ଉପେନ୍ଦ୍ର, ଅଭିମନ୍ୟୁ ବଞ୍ଚାଇ ରଖିଥିଲେ । ପୁଣି ଯେଉଁ ସମାଜର ଅବିଚ୍ଛେଦ୍ୟ ଯୋଗ ସ୍ଥାପିତ ହୋଇଛି ପୃଥିବୀର ବିରାଟ ମାନବ ସମାଜ ସହିତ, ସେହି ସ୍ମୃତିରେ ହିଁ ମୋ ଲେଖନୀର ଯୋଗ ଆଜି ଶତ ସହସ୍ର ଅତୀତ ଓ ବର୍ତ୍ତମାନ ଲେଖକଙ୍କ ସଙ୍ଗେ ପ୍ରତିଷ୍ଠିତ ହୋଇଛି । ବିଭିନ୍ନ ଦେଶର ସାହିତ୍ୟ ସଙ୍ଗେ ଇଂରାଜୀ ଭାଷା ଜରିଆରେ ଯେତେବେଳେ ମୋର ପ୍ରଥମ ପରିଚୟ ଘଟେ, ଗେଟେଙ୍କ ଫାଉଷ୍ଟ ପଢ଼ି ଯେତେବେଳେ ଛାତ୍ର ଜୀବନରେ ମୋର ସତ୍ୟ-ମିଥ୍ୟାର ପ୍ରଭେଦ ଜାଣିବାର ଆଗ୍ରହ ଜାଗି ଉଠେ କିମ୍ବା ଭିକ୍ଟୋର ହେଗେଙ୍କର ଲା ମିଜରବ୍ଲସରେ ଯେତେବେଳେ ମଣିଷର ସଦ୍‌ଗୁଣକୁ ମୁଁ ଉଚ୍ଚ ସ୍ଥାନ ଦେଉଥିଲି, ଅଥବା ସେକ୍‌ସପିଅରଙ୍କ ନାଟ୍ୟ ରଚନା କୌଶଳରେ ବିସ୍ମିତ ହେଉଥିଲି, ତାହାପରେ ହୁଏତ କେତେ ଯୁଗ ବିତିଗଲାଣି । କେତେ ସଫଳତା ଓ ବିଫଳତାର ଅନୁଭୂତିରେ ମୋ ଲେଖନୀ ଅନୁପ୍ରାଣିତ, ସ୍ପନ୍ଦିତ ବା ମନ୍ଥର ହୋଇ ପଡ଼ିଛି ।

ତେବେ ସବୁ ଅବସ୍ଥାରେ ଓ ସବୁ କ୍ଷେତ୍ରରେ ମୋର ଲେଖିବାର ଅସଂଖ୍ୟ କାରଣ ପୂର୍ଣ୍ଣ ରହିଛି । ଆଜି ପର୍ଯ୍ୟନ୍ତ ମୋର ସବୁ ରଚନା ଯେବେ ବିଫଳ ହୋଇଥାଏ, ତେବେ ତ ତାହାକୁ ସଫଳ କରିବା ପାଇଁ ବେଶି ଲେଖିବା ଆବଶ୍ୟକ । ନାହିଁ ଯଦି ସଫଳ ହୋଇଥାଏ, ତା ହେଲେ

ଅଧିକ ସଫଳ ହେବାପାଇଁ ପ୍ରସ୍ତାବ କରିବା ତ ସ୍ୱାଭାବିକ । ଆଉ ଯେବେ ଗୋଟାଏ କଥାରେ ଆପଣମାନେ ସନ୍ତୁଷ୍ଟ ହେବାକୁ ଇଚ୍ଛା କରନ୍ତି; ତାହାହେଲେ କହିବି ଯେ ମୁଁ ଲେଖେଁ ଯେହେତୁ ନ ଲେଖିଲେ ବଞ୍ଚି ପାରିବି ନାହିଁ । ମୋଟ୍ ଉପରେ ମୁଁ ବଞ୍ଚିବା ପାଇଁ ଲେଖେଁ ଆଉ ମଧ ମୁଁ ଯେ ଏକାକୀ ନୁହେଁ ବହୁ ସହଯାତ୍ରୀଙ୍କର ସବା ପଛରେ ରହି ମୁଁ ଯେ ଗତି କରେ ପୁଣି ଯେଉଁ ଲେଖନୀ ଆରମ୍ଭରୁ ଆଜି ପର୍ଯ୍ୟନ୍ତ ମଣିଷ ସଭ୍ୟତାକୁ ଗଢ଼ି ଆସିଛି ଓ ଏବେ ମଧ ଅହରହ ତାହାର ଭବିଷ୍ୟତ ଗଢ଼ିବାରେ ଲାଗି ପଡ଼ିଛି, ମୁଁ ଯେ ତାରି ଜଣେ ନ୍ୟୂନତମ ଅଧିକାରୀ ଏବଂ ଭବିଷ୍ୟତ ଲେଖକମାନଙ୍କ ପାଇଁ ଅନ୍ତତଃ ଟିକିଏ ପଥ ପରିଷ୍କାର କରି ଦେଇପାରେ ଏହି ଚିନ୍ତାଧାରାର ଆନନ୍ଦ ହିଁ ମୋ ଲେଖନୀକୁ ବହୁ ଗୁଣରେ ଦୃଢ଼ତର କରିପକାଏ ।

ତେଣୁ ମୁଁ ନିଜେ ଯେମିତି ବଞ୍ଚିବାକୁ ଲେଖେଁ ମୋର ଅତୀତ ଓ ଭବିଷ୍ୟତକୁ ମଧ ସେହିପରି ବଞ୍ଚାଇବାକୁ ଲେଖେଁ ।

('ମୁଁ କାହିଁକି ଲେଖେ' ଗ୍ରନ୍ଥରୁ ସଂଗୃହୀତ)

